# ନଟ
# ନାଟ୍ୟ
# ନାଟ୍ୟାୟନ

ସମ୍ପାଦନା: ଡକ୍ଟର ଜ୍ଞାନୀ ଦେବାଶିଷ ମିଶ୍ର

'ନଟ ନାଟ୍ୟ ନାଟ୍ୟାୟନ' ନାଟ୍ୟକାର ନାରାୟଣ ସାହୁଙ୍କ ନାଟକ ସମ୍ପର୍କୀୟ ସଂଗୃହୀତ ଆଲୋଚନା ସମୂହର ଏକ ଉଲ୍ଲେଖଯୋଗ୍ୟ ପ୍ରୟାସ।

ଏହି ସଂକଳନରେ ୧୯୮୦ ପରବର୍ତ୍ତୀ ସମୟର ପଥିକୃତ ଓଡ଼ିଆ ନାଟ୍ୟକାରମାନଙ୍କର ପରିଚୟାତ୍ମକ ଆଲୋଚନା ସହିତ ନାଟ୍ୟକାର ଶ୍ରୀଯୁକ୍ତ ସାହୁଙ୍କ ସମ୍ପର୍କରେ ବିଶେଷ ଆଲୋଚନା ସ୍ଥାନିତ। ସେ ମଧ୍ୟ ନିଜ ନଟ ଜୀବନର ଅନେକ ଅକୁହା-ଅଜଣା-ଅନ୍ତରଙ୍ଗ କଥାକୁ ବଖାଣିଛନ୍ତି ଆପଣା ଢଙ୍ଗରେ।

ସଂକଳନଟି ନାଟ୍ୟକାର ସାହୁଙ୍କ ନାଟ୍ୟକୃତି ସମ୍ପର୍କରେ ପ୍ରକାଶିତ-ଅପ୍ରକାଶିତ ବିବିଧ ରୁଚିପୂର୍ଣ୍ଣ ସମାଲୋଚନାର ସମ୍ଭାର। ପୁସ୍ତକଟି ୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟ୍ୟଧାରା ତଥା ନାଟ୍ୟକାର ନାରାୟଣ ସାହୁଙ୍କ ନାଟକ ପ୍ରତି ଶ୍ରଦ୍ଧାଶୀଳ ପାଠକଙ୍କ ଦୃଷ୍ଟି ଆକର୍ଷଣର ଅପେକ୍ଷା ରଖେ...

# ନଟ ନାଟ୍ୟ ନାଟ୍ୟାୟନ

(ନାଟ୍ୟକାର ନାରାୟଣ ସାହୁ ସୃଷ୍ଟି ସମୀକ୍ଷା)

ସଂପାଦନା
ଜ୍ଞାନୀ ଦେବାଶିଷ ମିଶ୍ର

ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୨

# ନଟ ନାଟ୍ୟ ନାଟ୍ୟାୟନ

(ନାଟ୍ୟକାର ନାରାୟଣ ସାହୁ ସୃଷ୍ଟି ସମୀକ୍ଷା)

ସଂପାଦନା:
ଜ୍ଞାନୀ ଦେବାଶିଷ ମିଶ୍ର
ଅଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ

ପ୍ରକାଶକ :
ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୨

ପ୍ରଥମ ସଂସ୍କରଣ : ୨୦୧୫

ପ୍ରଚ୍ଛଦ : ପ୍ରକାଶ ମହାପାତ୍ର

ଅକ୍ଷରସଜ୍ଜା :
ମା'ଶାରଳା ଡି.ଟି.ପି.
ସେକ୍ଟର-୬, ସିଡ଼ିଏ, କଟକ

ମୁଦ୍ରଣ :
କାଳିଆ ପ୍ରିଣ୍ଟର୍ସ,
କଟକ

ମୂଲ୍ୟ : ଟ ୧୮୭/-

# NATA NAATYA NAATYAAYANA

*Edited by:*
**Jnanee Debasish Mishra**
Lecturer in P.G.Deptt.of Odia
Ravenshaw University, Cuttack

*Published by :*
**SATYANARAYANA BOOK STORE**
Binod Bihari, Cuttack-753002

*1st Edition :* **2015**

*Cover design :*
**Prakash Mohapatra**

*Laser Typeset :*
**Maa Sarala D.T.P.**
Sec-6, CDA, Cuttack - 14

*Printed by :*
**Kalia Printers,**
Cuttack

**PRICE : Rs. 187/-**

ପ୍ରତ୍ୟେକ ବହି ତା'ର ଭାଗ୍ୟ ନେଇ ଜନ୍ମହୁଏ।

ନାଟ୍ୟକାର ନାରାୟଣ ସାହୁଙ୍କ ନାଟ୍ୟଯାତ୍ରା ସଂପର୍କୀତ ଲେଖାଗୁଡ଼ିକୁ ଏକାଠି କରିବା କଥା ଚିନ୍ତାରେ ଥିଲା। କାମଟି ହାତକୁ ନେବାର ଦି' ବର୍ଷ ବିତିଗଲାଣି ଯା ଭିତରେ। ବିଭିନ୍ନ କାରଣରୁ ପ୍ରକାଶନ ଜନିତ ଏ ବିଳମ୍ବ।

ଉତ୍ତର ଅଶୀ ଓଡ଼ିଆ ନାଟ୍ୟରଚନା କ୍ଷେତ୍ରରେ ନାରାୟଣ ସାହୁ ଏକ ପରିଚିତ ନାମ। ନାଟ୍ୟ ରଚନା ବ୍ୟତୀତ ଶ୍ରୀଯୁକ୍ତ ସାହୁ ସମାଲୋଚନା, ସମ୍ପାଦନା, ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ମଧ୍ୟ ସଫଳତା ପାଇଛନ୍ତି। ଏ ଆଲୋଚନାଟି ଗ୍ରନ୍ଥଟି କିନ୍ତୁ ଶ୍ରୀଯୁକ୍ତ ସାହୁଙ୍କ ନାଟ୍ୟରଚନା ଭିତରେ ହିଁ ସୀମାବଦ୍ଧ। ନାଟ୍ୟକାର ଶ୍ରୀଯୁକ୍ତ ସାହୁଙ୍କ ନାଟ୍ୟରଚନା ଜନିତ ଅବବୋଧ ଓ ଅଭିଜ୍ଞତାର ସଂକଳିତ ସ୍ୱରୂପ।

ସଂକଳନ ପ୍ରସ୍ତୁତି ବେଳେ ନାଟ୍ୟକାରଙ୍କ ନାଟକ ଉପରେ ପୂର୍ବ ପ୍ରକାଶିତ ଅନେକ ଆଲୋଚନାକୁ ସ୍ଥାନିତ କରାଯାଇଛି। ଏଥିରେ ମଧ୍ୟ ସ୍ଥାନ ପାଇଛି ଅନେକ ଅପ୍ରକାଶିତ ଆଲୋଚନା। ଯେଉଁ ପ୍ରାବନ୍ଧିକ ଓ ସମାଲୋଚକମାନେ ନାଟ୍ୟକାର ସାହୁଙ୍କ ନାଟ୍ୟଜଗତ ପ୍ରତି ସମାଲୋଚକୀୟ ଦୃଷ୍ଟି ରଖି ଅନୁରୋଧ ରକ୍ଷାପୂର୍ବକ ଏହି ସଂକଳନ ପ୍ରସ୍ତୁତିରେ ସହାୟକ ହୋଇଛନ୍ତି ସେମାନଙ୍କ ନିକଟରେ ଋଣୀ।

ଏହି ପୁସ୍ତକ ପ୍ରକାଶନ ଅବସରରେ ପାଣ୍ଡୁଲିପି ପ୍ରସ୍ତୁତି ବେଳର ସହାୟତା ନିମିତ୍ତ ଅଧ୍ୟାପକ ସର୍ବେଶ୍ୱର ବେହେରା ଓ ରୁଦ୍ର ପ୍ରସାଦ ମିଶ୍ର, ଶିକ୍ଷକ ରମାକାନ୍ତ ବେହେରା ଓ ଗବେଷକ ମୃତ୍ୟୁଞ୍ଜୟ ଦାସଙ୍କ ସାହାଯ୍ୟକୁ ମନେ ପକାଉଛି। ପ୍ରକାଶନ ସଂସ୍ଥା ସତ୍ୟ ନାରାୟଣ ବୁକ୍ ଷ୍ଟୋର୍, କଟକଙ୍କ ସହୃଦୟତା ମଧ୍ୟ ମନେ ରହିବ।

ପୁସ୍ତକଟି ଓଡ଼ିଆ ନାଟ୍ୟପ୍ରେମୀ, ନାଟ୍ୟ ଗବେଷକ-ଗବେଷିକାଙ୍କ କାର୍ଯ୍ୟରେ ଲାଗିଲେ ଶ୍ରମ ସାର୍ଥକ ହେଲା ଭଳି ମନେହେବ।

**ଜ୍ଞାନୀ ଦେବାଶିଷ**

# ସୂଚିପତ୍ର



## ନାଟ୍ୟାୟନ

(ମଞ୍ଚ ନାଟକ)

| ବିଷୟ | | ପୃଷ୍ଠା |
|---|---|---|

# ପ୍ରତିବାଦ ଓ ପ୍ରତିବଦ୍ଧତାର ସ୍ୱର

ବିଂଶ ଶତାବ୍ଦୀର ଉତ୍ତର ସତୁରୀର ସମୟ କେବଳ ନାଟକ ପାଇଁ ନୁହେଁ, ସମଗ୍ର ଓଡ଼ିଆ ସାହିତ୍ୟ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ସତୁରୀ ପୂର୍ବର ପ୍ରଚଳିତ ସମସ୍ତ ପାଶ୍ଚାତ୍ୟ ମତବାଦଭିତ୍ତିକ ଦୁର୍ବୋଧତାରୁ ମୁକୁଳିବାର ଯେଉଁ ପ୍ରୟାସ ଓଡ଼ିଆ କଥା ଓ କବିତାରେ ୮୦ ଦଶକର ଆଦ୍ୟଭାଗରେ ଦେଖାଯାଏ, ତାହା ନାଟକ କ୍ଷେତ୍ରରେ ମଧ୍ୟ ଦୃଶ୍ୟମାନ ହୁଏ । ଲକ୍ଷ୍ୟ କରିବାର କଥା ଯେ ଷାଠିଏ ଦଶକ ବେଳକୁ ହଠାତ୍ ପରମ୍ପରାରୁ ବିସ୍ମୃତ ତଥା ଛିନ୍ନମୂଳ ହୋଇଯାଇଥିବା ଆମର ସାହିତ୍ୟିକ ପରମ୍ପରା ୮୦ ଦଶକ ବେଳକୁ ପୁଣି ଫେରିଆସେ ଏଇ ଭୂମିର ମୌଳିକ-ସାଂସ୍କୃତିକ-ଲୋକମୁଖୀ ଅବଚେତନ ଭିତରକୁ । କେତେବେଳେ ମିଥ୍‌ର ଅନ୍ତରୀଣ ପ୍ରବାହରେ ତ ଆଉ କେବେ ଲୋକ ଉପାଦାନର ଆରୋପଣ ଭିତରେ ସମୟେ ସମୟେ ସଚେତନଧର୍ମୀ ପ୍ରୟାସ ମଧ୍ୟ ଦେଖିବାକୁ ମିଳେ । ପଛକୁ ଫେରି ପରମ୍ପରାର ଉତ୍ସ ସନ୍ଧାନ ଭିତ୍ତିକ ଏଇ ପର୍ଯ୍ୟାୟରେ ଅନେକ ନାଟ୍ୟକାରଙ୍କ ଆଦ୍ୟଜୀବନ ପ୍ରଭାବିତ ହୋଇଛି, ବିକଶିତ ହୋଇଛି । ୭୦ ଦଶକର ଶେଷ ଓ ୮୦ ଦଶକର ଆରମ୍ଭରେ ଓଡ଼ିଆ ନାଟକ ଯେଉଁ ମୋଡ଼ ବୁଲାଣିର ସମୟ ଦେଇ ଯାଇଛି, ସେଠି ମନୋରଞ୍ଜନ ନାଟ୍ୟକାୟାର ପରିବର୍ତ୍ତନ ଭିତ୍ତିକ 'ନନ୍ଦିକାକେଶରୀ' ଯେତିକି ଗୁରୁତ୍ୱପୂର୍ଣ୍ଣ, ସେତିକି ଗୁରୁତ୍ୱପୂର୍ଣ୍ଣ ଯଦୁନାଥ ଦାଶ ମହାପାତ୍ର, ରମେଶ ପାଣିଗ୍ରାହୀ, ରତ୍ନାକର ଚଇନି, ବିଜୟ ମିଶ୍ର, ପ୍ରଫୁଲ୍ଲ କୁମାର ରଥଙ୍କ ଭଳି ନାଟ୍ୟକାରଙ୍କ ପରୀକ୍ଷାନିରୀକ୍ଷାର ପର୍ବ ।

ମାତ୍ର ବିଂଶ ଶତାବ୍ଦୀର ସତୁରୀ ବା ଅଶୀ ଦଶକରେ ନାଟ୍ୟରଚନା ଆରମ୍ଭ କରି ଯେଉଁମାନେ ଓଡ଼ିଆ ନାଟକର କାୟା-ଆତ୍ମା ତଥା ମଞ୍ଚାୟନରେ ପରିବର୍ତ୍ତନର ସୂତ୍ରପାତ ପୂର୍ବକ ଲୋକନାଟ୍ୟ ପରମ୍ପରାକୁ ବ୍ୟାପ୍ତି ଦେଇଛନ୍ତି, ସେମାନଙ୍କ କଥା ଆଲୋଚନା କଲେ ସାମ୍ନାକୁ ଆସିବେ କାର୍ତ୍ତିକ ଚନ୍ଦ୍ର ରଥ, ରତି ରଞ୍ଜନ ମିଶ୍ର, ଡ. ସୁବୋଧ ପଟ୍ଟନାୟକ,

ନୀଳାଦ୍ରି ଭୂଷଣ ହରିଚନ୍ଦନ, ବିଜୟ ଶତପଥୀ, ପ୍ରମୋଦ କୁମାର ତ୍ରିପାଠୀ, ଶଙ୍କର ତ୍ରିପାଠୀଙ୍କ ଭଳି କେତେକ ନାମ । ଏମାନଙ୍କ ନାଟକରେ ଥିବା ଲୋକପରମ୍ପରାଭିତ୍ତିକ ନୃତ୍ୟ-ପୋଷାକ-ସଙ୍ଗୀତ-ଗୀତର ବ୍ୟବହାରଜନିତ ଫର୍ଚ୍ଚାପଣ ହିଁ ଏମାନଙ୍କୁ ଅଲଗା କରିଦିଏ । ଯେଉଁ ସମୟରେ ପ୍ରଥାବଦ୍ଧ ନାଟକର ଧାରା ପ୍ରାୟ ଶିଥିଳ ଏବଂ ଲୋକ ଉପାଦାନର ବ୍ୟବହାରରେ ଏକ ଚଳଚଞ୍ଚଳ ପ୍ରୟାସ ଦେଖିବାକୁ ମିଳୁଥିଲା, ନାରାୟଣ ସାହୁଙ୍କ ନାଟ୍ୟରଚନା ସେମିତି ଏକ ସନ୍ଧିକ୍ଷଣରେ । ପ୍ରାୟ ୮୦ ଦଶକର ମଧ୍ୟଭାଗରୁ ଆରମ୍ଭ ହୋଇଥିବା ତାଙ୍କ ନାଟ୍ୟ ରଚନାରେ ଉଭୟ ପ୍ରଥାବଦ୍ଧ କାହାଣୀଧର୍ମୀତା ଓ ଲୋକପରମ୍ପରାମୁଖୀ ପ୍ରୟାସର ଏକ ମିଶ୍ର ସମନ୍ୱୟ ଦେଖିବାକୁ ମିଳେ । କଟକର ପ୍ରିମିୟର୍ କ୍ଲବ୍ ଆନୁକୂଲ୍ୟରେ ଅଭିନୀତ 'ତାମସୀ ତୃଷ୍ଣା' ନାଟକ ସହିତ ଆରମ୍ଭ ହୋଇଥିଲା ତାଙ୍କ ନାଟ୍ୟକାର ଜୀବନ । ପରେ ଆମେ ଓଡ଼ିଆ, କଳାବିକାଶ କେନ୍ଦ୍ର, ଅନ୍ନପୂର୍ଣ୍ଣା ଥିଏଟର୍ ସହିତ ଯୋଡ଼ି ହୋଇଯାଆନ୍ତି ସେ । ଆକାଶବାଣୀ ପାଇଁ ମଧ୍ୟ ନାଟକ ଲେଖନ୍ତି । 'ଅସ୍ତ ଜହ୍ନର ଏଲିଜି', 'ଅନ୍ଧକାରର ପୂରବୀ', 'ଅମ୍ବାପଲ୍ଲୀ ସହ ଦିନେ', 'ସବୁଜ ଅନ୍ଧାର', 'ଅନ୍ୟ ଏକ ବର୍ତ୍ତମାନ', 'ଏକ ମୃତ ବ୍ୟକ୍ତି ସପକ୍ଷରେ', 'ଶେଷ ପାହାଚ' ଭଳି ନାଟକ ଆକାଶବାଣୀରେ ପ୍ରଚାରିତ ହୋଇ ତାଙ୍କୁ ଦିଏ ପରିଚିତି ଓ ପ୍ରସିଦ୍ଧି ।

ଅତ୍ୟାଚାରର ଶିକାର ସବୁବେଳେ ଶେଷଲୋକମାନେ ହୁଅନ୍ତି । ତାଙ୍କ ପାଇଁ ସବୁ ଦୁଆର ବନ୍ଦ, ସବୁ ରାସ୍ତା ଠିକଣାବିହୀନ । ତାଙ୍କ ପିଠିରେ ଦେଶର ଭବିଷ୍ୟତ, କାନ୍ଧରେ ଧନୀ ଲୋକଙ୍କର ପାଲିଙ୍କି କିନ୍ତୁ ଦେଶର ଆର୍ଥିକ ଉନ୍ନତିରେ ତାଙ୍କ ଭାଗ୍ୟରେ ପରିବର୍ତ୍ତନ ଆସେ ନାହିଁ । 'ସମ୍ଭାବ୍ୟ ସତ୍ୟ'ର ଚାରିପଟେ ହିଁ ସେମାନେ ବୁଲୁଥାନ୍ତି ଚିରକାଳ । 'କାହାଣୀ ସବାଶେଷ ଲୋକର' (୧୯୮୪) ନାଟକରେ ନାଟ୍ୟକାର ଏହି ଅଧିକାରଶୂନ୍ୟ ନିମ୍ନବର୍ଗର ଲୋକମାନଙ୍କ କଥା ହିଁ କହିଛନ୍ତି । ପୂର୍ବରୁ ଏହା 'ସଂଘର୍ଷ', 'ସବାଶେଷ ଲୋକ', 'ଶେଷ ପାହାଚର ମଣିଷ', 'କ୍ରାନ୍ତି ଓ ଅହିଂସାର ଅନ୍ୟ ନାମ ବିପ୍ଳବ' ଭଳି ନାମ ପରିବର୍ତ୍ତନ ସହ ମଧ୍ୟ ମଞ୍ଚସ୍ଥ । ଚରିତ୍ର ଚିତ୍ରଣ ଦୃଷ୍ଟିରୁ ମଧ୍ୟ ନାଟକଟିର ସ୍ୱାତନ୍ତ୍ର୍ୟ ଅନୁଭବ୍ୟ । କୌଣସି ଚରିତ୍ରଙ୍କୁ ସିଧାସଳଖ ନାମ ସଂଯୁକ୍ତ ନ କରି ମଞ୍ଚକୁ ଅଣାଯାଇଚି ମହାଲୋକ, ଆଗଲୋକ, ପାଖଲୋକ, ନିଜଲୋକ, ଶେଷଲୋକ ଏବଂ ସବାଶେଷ ଲୋକ ଭଳି ପ୍ରତୀକାତ୍ମକ ଚରିତ୍ର । ଯୁଗବ୍ୟାପୀ ନିର୍ଯ୍ୟାତନାର ଶିକାର ହୋଇଥିବା ସବାଶେଷ ଲୋକଟି ଦେହରେ ଆରୋପଣ କରାଯାଇଚି ଏକଲବ୍ୟ, ବିଶୁ ମହାରଣା ଓ ରାମ ପ୍ରଧାନ ଭଳି ଚରିତ୍ର । ଘଟଣା କ୍ରମେ ଆଗଲୋକ ବଦଳି ଯାଇଛି ଯଥାକ୍ରମେ ଦ୍ରୋଣ, ଲାଙ୍ଗୁଳା ନରସିଂହ ଦେବ କିମ୍ବା ମହାପାତ୍ର ବାବୁଙ୍କ ଚରିତ୍ରକୁ । ନିଜଲୋକ ଓ ପାଖଲୋକ ସ୍ୱର

ମିଶଉଛନ୍ତି ଆଗଲୋକଟି ସହ । ପ୍ରତିବାଦ କରୁଚି ଶେଷ ଲୋକ, କିନ୍ତୁ ସେ ପ୍ରତିବାଦ ହୋଇ ଉଠୁଚି ପ୍ରଭାବଶୂନ୍ୟ । ଆଦିଲୋକ (ନାରୀ) ସତ୍ତାଟି କେବଳ ଭୋଗ୍ୟବସ୍ତୁ ହେଇଯାଉଛି । ନାଟ୍ୟକାର ସ୍ୱୀକାର କରିଛନ୍ତି, ନିଜ ଜୀବନର କର୍ମ ଅନ୍ୱେଷଣ ଭିତ୍ତିକ ଘୂର୍ଣ୍ଣାୟମାନ ଅବସ୍ଥାରେ ଖାଲି ହାତରେ ଫେରାଇ ଦେଇଥିବା ବଡ଼ ପଣ୍ଡାମାନଙ୍କ ସ୍ୱାର୍ଥଭିତ୍ତିକ ମତଲବୀପଣରୁ ହିଁ ଏ ନାଟକର ସୃଷ୍ଟି ।(ସାହୁ, ନାରାୟଣ, କାହାଣୀ ସବାଶେଷ ଲୋକର, କଟକ ଷ୍ଟୁଡେଣ୍ଟଷ୍ଟୋର୍, ମୁଖବନ୍ଧ)

ଅତଏବ ପ୍ରଥାବଦ୍ଧତା ବିରୁଦ୍ଧରେ ଉଠିଥିବା ପ୍ରତିବାଦର ସ୍ୱରଟିଏ ହିଁ ଲୁଚି ରହିଚି ସାରା ନାଟକରେ । ନାଟକର ଶେଷପୃଷ୍ଠାରେ ଦେଖିବାକୁ ମିଳୁଚି ପ୍ରତିବାଦ ଜଣେଇବା ନିମିତ୍ତ ପ୍ରେରଣା । ବାକ୍‌ଶକ୍ତିହୀନ ତଥା ପ୍ରତିକ୍ରିୟାଶୂନ୍ୟ ବିପ୍ଲବ ଅପେକ୍ଷା ଗୁରୁତ୍ୱ ଦିଆଯାଉଛି ପ୍ରତିବାଦ କରି ଶିଖିବା ଉପରେ । ଯେଉଁ ସୋସିଆଲ୍ ରିଅଲିଜିମ୍‌ରୁ ନାଟକ ଆରମ୍ଭ ହେଉଥିଲା, ସେ ସ୍ୱର ତୀବ୍ର ହୋଇ ଦଳିତ-ପତିତ-ଶୋଷିତ-ନିଷ୍ପେସିତ ମଣିଷକୁ ପ୍ରତିବାଦ କରିବା ନିମିତ୍ତ ପ୍ରବର୍ତ୍ତାଯାଉଚି ।

> —ତଳସ୍ତରରୁ ତତେ ହିଁ ଉଠିବାକୁ ପଡ଼ିବ। ଏଣିକି ନିଜ କାନ୍ଧଟାକୁ ଟୁ ପଥର କରି ଦେ,ସେମାନେ ଆଉ ଉଠିବାକୁ ସାହସ କରିବେନି । ଫିଙ୍ଗି ଦେ ନିଜ ଭିତରେ ବସାବାନ୍ଧିଥିବା ନିର୍ବୋଧ ସରଳତାକୁ । ନିଜ ହାତମୁଠାଟାକୁ ଆହୁରି ଟାଣ କର। ଦେଖିବୁ ଗୋଟିଏ ପରେ ଗୋଟିଏ ହାତ ତୋ ସହିତ ମିଶିଯିବେ।
>
> (କାହାଣୀ ସବାଶେଷ ଲୋକର,ପୃ-୭୪)

ସମାଜର ନିମ୍ନବର୍ଗୀୟ ଚରିତ୍ର ପ୍ରତି ସହୃଦୟ ଦୃଷ୍ଟିଭଙ୍ଗୀ ତଥା ସାମୂହିକ ପ୍ରତିବାଦର ଏଇ ସ୍ୱପ୍ନଦେଖା ଭିତରେ ସବାଶେଷ ଲୋକ ତା'ର ଭାଗ୍ୟ ପରିବର୍ତ୍ତନର ଆଶା ରଖୁଚି । ଭୋପାଳ ଗ୍ୟାସ୍ ଦୁର୍ଘଟଣା ଭଳି ସମ୍ବେଦନଶୀଳ ବିଷୟବସ୍ତୁକୁ ପୃଷ୍ଠଭୂମିରେ ରଖି ରଚିତ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' (୧୯୮୮) ନାଟକଟି ଧର୍ମ ନାମରେ ଚାଲିଥିବା ବ୍ୟଭିଚାରର ଏକ ସାର୍ଥକ ଫଳଶ୍ରୁତି । ଧର୍ମର ଦ୍ୱାହି ଦେଇ ସମାଜର ବଡ଼ପଣ୍ଡାମାନେ କିପରି ନିଜର ପ୍ରତିଷ୍ଠା-ପତିଆରାକୁ ଦୃଢ଼ କରିଚାଲିଛନ୍ତି ସେହି ଦିଗରେ ନାଟକଟି ଏକ ପ୍ରଭାବଶାଳୀ ପ୍ରଚକ୍ଷୁ । ଦିନକୁ ଦିନ ବୃଦ୍ଧି ପାଉଥିବା ଧର୍ମଭିତ୍ତିକ ସଂରକ୍ଷଣ ଭିତରେ ସାଧାରଣ ଜନଜୀବନ କିପରି ଭୀତତ୍ରସ୍ତ ହୋଇ ଉଠୁଛି, ଧର୍ମର ଦିଗ୍‌ବଳୟ କିପରି ସମଗ୍ର ଜନମାନସକୁ କବଳିତ କରି ପକାଉଛି -- ନାଟକଟି ତା'ର ଏକ ସାର୍ଥକ ଚିତ୍ର । ସମୟ ଆଉ ଈଶ୍ୱରଙ୍କ କଥୋପକଥନ ଜରିଆରେ ଦେଶର ବିଭିନ୍ନ ସାମ୍ପ୍ରଦାୟିକ ଘଟଣାଗୁଡ଼ିକୁ ସାମ୍ନାକୁ ଅଣାଯାଏ । ନବେ ଦଶକରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଅନେକ ଖବରକାଗଜୀୟ

ଶୀର୍ଷକ ନାଟ୍ୟକାରଙ୍କୁ ଏ ଦିଗରେ ପ୍ରେରଣା ଯୋଗାଇ ଥାଇପାରେ । ଧର୍ମକୁ ଆଖିଠାର ମାରି ତାକୁ ନିଜ କାନ୍ଧ ଗାମୁଛା କରି ପକାଇଥିବା ତଥାକଥିତ ମହାପୂଜକ, ମହାସେବକମାନଙ୍କ ପ୍ରସଙ୍ଗ ମଧ୍ୟ ଆଲୋଚନାକୁ ଆସେ । ଦେବଦାସୀ ପରମ୍ପରାର ଅନ୍ଧାରୀ ଦିଗକୁ ମଧ୍ୟ ନାଟ୍ୟକାର ସୂଚେଇ ଦିଅନ୍ତି ନାଟକର ଅଷ୍ଟମ ଦୃଶ୍ୟରେ । କିନ୍ତୁ ସେଇଠି ଥମିଯାଇନି ନାଟକର ମୂଳସ୍ୱର । ଘଟିଥିବା ଘଟଣାରୁ ଧର୍ମର ଦ୍ୱାହି ଦେଇ ସାମ୍ପ୍ରଦାୟିକତାର ରଙ୍ଗ ବୋଳି କିପରି ରାଜନୀତିରେ ବ୍ୟବହାର କରାଯାଇପାରେ, ମହାପୂଜକ ଓ ସୁଲେମାନ୍ ଭିତରେ ଚାଲିଥିବା ରାଜନୀତିକ ଦ୍ୱନ୍ଦ୍ୱବୋଧରେ ସେ ସୂଚନା ମଧ୍ୟ ଉପଲବ୍ଧ । ଯୋସେଫ୍, ସୁଲେମାନ୍ ଓ ମହାସେବକଙ୍କ ଭିତରେ ଥିବା ଧର୍ମଭିତ୍ତିକ ଦ୍ୱନ୍ଦ୍ୱକୁ ଆଶ୍ରାକରି ନାଟ୍ୟକାର ଦେଶର ସାମ୍ପ୍ରଦାୟିକ ବିଦ୍ୱେଷଭାବକୁ ସୂଚେଇବା ନିମିତ୍ତ ପ୍ରୟାସ କରିଛନ୍ତି ।

କଟକ ସହରର ପୃଷ୍ଠଭୂମିରେ ରଚିତ ହୋଇଥିବା 'ସୁବର୍ଣ୍ଣ ସକାଳ' (୧୯୯୦) ନାଟକଟି ରାଜା ମର୍କତକେଶରୀ ଓ ବାଇମୁଣ୍ଡି କିମ୍ୱଦନ୍ତୀର ଆଧାରରେ ତିଆରି । ଉଭୟଙ୍କର ସହର ବୁଲିବା ପ୍ରକ୍ରିୟାରେ ସାମିଲ୍ ହୋଇଚି ନାଟକର ପ୍ରଗତି ଓ ପରିଣତି । ନେତା, ଶ୍ରମିକ ସଂଘର ମୁଖ୍ୟ, ଡାକ୍ତର, ଟ୍ରାଫିକ୍ ପୋଲିସ୍, ପୋଲିସ୍ ଅଧିକାରୀ, ସାମ୍ବାଦିକ, ଜଗନ୍ନାଥ ତତ୍ତ୍ୱର ପ୍ରଫେସରଙ୍କ ଠାରୁ ନଗରପାଳିକାର ବଡ଼ବାବୁଙ୍କ ଯାଏଁ ସବୁଠି କିପରି ଜାତୀୟ ଚରିତ୍ରର ଅବକ୍ଷୟ ଘଟୁଚି, ତାର ଏକ ପ୍ରତିଛବି ହେଉଚି 'ସୁବର୍ଣ୍ଣ ସକାଳ' । ଏହି ଧରଣର ନାଟକରେ କଳ୍ପନା ପ୍ରବଣତାର ସ୍ଥାନ ନଥାଏ । କେବଳ ଯେଉଁଠି ଯାହା ଘଟୁଚି, ତା'ର ଏକତ୍ରୀକରଣ କରି ଗୋଟିଏ ନିର୍ଦ୍ଦିଷ୍ଟ ସମୟସୀମାରେ ଦର୍ଶକଙ୍କୁ ଦେଖାଇବା ହିଁ ଗୁରୁତ୍ୱପୂର୍ଣ୍ଣ । ତେଣୁ କେତେକାଂଶରେ ଚକ୍ଷକ୍ଷୁପକ୍ଷୁଶକ୍ଷବକ୍ଷୁଷସମ ଜରବକ୍ଷସପଛର ପ୍ରଭାବ ଅନୁମେୟ । ମାତ୍ର ସବୁ ସ୍ଥାନରେ ଅବକ୍ଷୟ ହିଁ ଉଜାଗର ହେଉଛି । ଅବଶ୍ୟ ପୂର୍ବରୁ ଅଧ୍ୟାପକ ନାରାୟଣ ଶତପଥୀଙ୍କ ରଚିତ 'ଜଳତରଙ୍ଗ' (୧୯୬୮) ମଧ୍ୟ ଏଇ ବାଇମୁଣ୍ଡି କିମ୍ୱଦନ୍ତୀ ଆଧାରିତ । ଐତିହାସିକ ସତ୍ୟତାମାନଙ୍କୁ ଏକାଠି କରି କାର୍ତ୍ତିକ ଚନ୍ଦ୍ର ରଥଙ୍କର 'କଟକ ନଗର, ବରଷ ହଜାର' (୧୯୮୯) ମଧ୍ୟ ରଚିତ । ମାତ୍ର ଏହି ନାଟକ ଦ୍ୱୟରେ କଟକ ସହରର ଐତିହ୍ୟ ପ୍ରତିପାଦନ ହିଁ ମୂଳ ଲକ୍ଷ୍ୟ ହୋଇଥିବାବେଳେ 'ସୁବର୍ଣ୍ଣ ସକାଳ' ନାଟକଟି ଆଧୁନିକ କଟକ ସହରର ଅନୀତି-ଅବ୍ୟବସ୍ଥାର ଚିତ୍ର ଦେଖାଏ। ନାଟକର ବିଭିନ୍ନ ଦୃଶ୍ୟର ଘଟଣାଗୁଡ଼ିକୁ ତଉଲିଲେ, ସବୁଠି ସ୍ୱପ୍ନଭଙ୍ଗର ସ୍ୱର ହିଁ ଶୁଭେ । ତେବେ ନାଟକର ନାଁ 'ସୁବର୍ଣ୍ଣ ସକାଳ' କାହିଁକି -- ଏ ପ୍ରଶ୍ନ ସ୍ୱାଭାବିକ । ମାତ୍ର ନାଟକର ଶେଷ ଭାଗରେ ବାଇମୁଣ୍ଡି ହତାଶାରେ ଭାଙ୍ଗିପଡୁଥିବା ବେଳେ ରାଜା ମର୍କତକେଶରୀଙ୍କ ଉତ୍ତର ନାଟକର ନାମକରଣକୁ ସମର୍ଥନ କରେ –

–ଆଶା ରଖିବା ଛଡ଼ା ଆମର ଆଉ ଅନ୍ୟ ଗତି ନାହିଁ । ଆଗାମୀ ଅମାବାସ୍ୟାରେ ଆସିବା। ଅମାବାସ୍ୟା ପରେ ନିଶ୍ଚୟ ଜହ୍ନରାତି ଆସିବ । ତେଣୁ ଆଉ ଏକ ସୁବର୍ଣ୍ଣ ସକାଳକୁ ପ୍ରତୀକ୍ଷା କରିବାରେ କ୍ଷତି କ'ଣ !

(ପ୍ରାୟଶ୍ଚିତ ଓ ଅନ୍ୟାନ୍ୟ ନାଟକ,ପୃ-୨୩୪)

ନଟୀ ଚିତ୍ରଲେଖା ଏବଂ ପାଟଳୀପୁତ୍ରର ସାମନ୍ତ ବିଜିଗୁପ୍ତଙ୍କର ପ୍ରେମପ୍ରଣୟର କାହାଣୀକୁ ଭିତ୍ତି କରି 'ଉପାସନା' (୧୯୯୦) ନାଟକର ଗଢ଼ଣ ପର୍ବ । ଜୀବନରେ ପ୍ରେମର ଶାଶ୍ୱତ ପ୍ରବାହ ଏବଂ ପ୍ରେମର ଦିବ୍ୟତ୍ୱ ନିମିତ୍ତ ନିରନ୍ତର ସାଧନା ହିଁ ଉପାସନାର ମୁଖ୍ୟ ଆଧାର। କେବେ ଦିନେ ବିଜିଗୁପ୍ତ ଓ ଚିତ୍ରଲେଖାଙ୍କର ପ୍ରଣୟଧାରାରେ କୁମାରଗିରି ସାଜିଥିଲେ କ୍ଷଣିକ ପ୍ରତିବନ୍ଧକ । ଏପଟେ କିନ୍ତୁ ଶ୍ରେଷ୍ଠୀ ମୃତ୍ୟୁଞ୍ଜୟ ନିଜର କନ୍ୟା ଯଶୋଧାରାର ବିବାହ ବିଜିଗୁପ୍ତଙ୍କ ସହ କରିବା ପାଇଁ ସଚେତନ ପ୍ରୟାସ କରିଚାଲିଥାନ୍ତି। ମାତ୍ର ବିଜିଗୁପ୍ତଙ୍କ ଅନ୍ତରଙ୍ଗ ଶ୍ୱେତାଙ୍କ ଓ ଯଶୋଧାରା ପରସ୍ପର ପ୍ରତି ଆସକ୍ତ। ଏଣେ ବିଜିଗୁପ୍ତଙ୍କୁ ପ୍ରଣୟାସକ୍ତ କରି ରଖିବାର ଅଭିଯୋଗ ଚିତ୍ରଲେଖାଙ୍କ ଉପରେ। ପରିଶେଷରେ ବିଜିଗୁପ୍ତଙ୍କୁ ନିରାଶ କରି ଆଶ୍ରମର ଅନ୍ତେବାସିନୀ ହେଉଛନ୍ତି ଚିତ୍ରଲେଖା। ଅବଶ୍ୟ ଆଶ୍ରମ ଯିବା ପଛରେ ଚିତ୍ରଲେଖାଙ୍କ ମନରେ କୁମାରଗିରିଙ୍କ ବ୍ୟକ୍ତିତ୍ୱ ପ୍ରତି ସମ୍ମାନବୋଧ ମଧ୍ୟ କିଛି କମ୍ ନୁହେଁ ।

ଥରେ ରାତ୍ରିରେ କୁମାରଗିରିଙ୍କ ଚାରିତ୍ରିକ ଅଧୋପତନ ବିବ୍ରତ କରୁଚି ଚିତ୍ରଲେଖାଙ୍କୁ। ଶ୍ୱେତାଙ୍କଠାରୁ ଯଶୋଧାରାଙ୍କ ପ୍ରତି ଦୁର୍ବଳତା କଥା ଶୁଣିବା ପରେ ମୃତ୍ୟୁଞ୍ଜୟଙ୍କ ପାଖରେ ଉଭୟଙ୍କ ବିବାହ ନିମିତ୍ତ ପ୍ରାର୍ଥନା କରିଛନ୍ତି ବିଜିଗୁପ୍ତ । ଏକ ନିରାଶ ଅପରାହ୍ନରେ ଫେରିଲାବେଳେ ଚିତ୍ରଲେଖା ଓ ବିଜିଗୁପ୍ତ ପରସ୍ପରର ଅଭାବ ଅନୁଭବ କରି ପ୍ରେମର ଦିବ୍ୟତ୍ୱ ସ୍ୱୀକାର କରୁଛନ୍ତି । ଅବଶ୍ୟ ଆଲୋଚକମାନେ ନାଟକଟିକୁ ଭଗବତୀ ଚରଣ ବର୍ମାଙ୍କ ଉପନ୍ୟାସ 'ଚିତ୍ରଲେଖା' (୧୯୩୪) ଓ ବାରିଷ୍ଟର୍ ଗୋବିନ୍ଦ ଦାସଙ୍କ 'ଅମାବାସ୍ୟାର ଚନ୍ଦ୍ର'(୧୯୬୩)ର ନାଟ୍ୟରୂପ ବୋଲି କହିଛନ୍ତି ମାତ୍ର ସାଂଳାପିକ କାବ୍ୟିକତା, ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଓ ବୌଦ୍ଧଦର୍ଶନର ପ୍ରଭାବ ନାଟକଟିକୁ ଦେଇଚି ଭିନ୍ନତାର ସ୍ପର୍ଶ ।( ଦାସ, ହେମନ୍ତ କୁମାର, ଓଡିଆ ନାଟକର ଉତ୍ତର ଆଧୁନିକପର୍ବ) ଷୋହଳଟି ଦୃଶ୍ୟ ସଂରଚନାର ଏହି ନାଟକଟି ପରିଣତି ଆଡ଼କୁ ଯିବା ଭିତରେ ସାମ୍ନା କରିଥିବା ଦ୍ୱନ୍ଦ୍ୱ ସବୁ ଘଟଣା ସ୍ତରରେ ଯେତିକି ନୁହେଁ, ଚରିତ୍ରମାନଙ୍କ ମନସ୍ତାତ୍ତ୍ୱିକ ସ୍ତରରେ ସେତେ। ପ୍ରେମ ଓ ସାଧନା, ପାପ ଓ ପୁଣ୍ୟ, ଦେହ ଓ ଦେହୋତ୍ତର ଭିତରର ଦ୍ୱନ୍ଦ୍ୱରେ ହିଁ ପ୍ରବାହିତ ଚରିତ୍ରମାନଙ୍କର ମାନସିକ ଉଦ୍‌ବେଳନ । ଜୀବନରେ ଉପଭୋଗ ଓ ସୌନ୍ଦର୍ଯ୍ୟତୃଷ୍ଣାର ଅବବୋଧ ନିମିତ୍ତ ଯୁକ୍ତି ମଧ୍ୟ

ଅନେକ। କେଉଁଠି କୁହାଯାଇଚି 'ପାପ ଏକ ଆପେକ୍ଷିକ ସଂଜ୍ଞା', ଯାହାର ସ୍ୱରୂପ ଏଯାଏଁ ନିର୍ଦ୍ଧାରଣ ହୋଇନାହିଁ । ତ ପୁଣି କେଉଁଠି ସ୍ୱୀକାର କରାଯାଉଚି, 'ପ୍ରେମର ସମ୍ପର୍କ ଶରୀର ସହିତ ନୁହେଁ, ଆତ୍ମା ସହିତ, ଯାହା ଅଜର, ଅମର ।' ନାଟକର ମଞ୍ଚାୟନ ଜନିତ କଳାପାଟବତା ଦୃଷ୍ଟିରୁ ମଧ୍ୟ ନାଟ୍ୟକାରଙ୍କ ସଚେତନ ପରୀକ୍ଷାଧର୍ମୀ ପ୍ରୟାସ ସମୂହ ଲକ୍ଷ୍ୟଣୀୟ ।

ନାଟକର ଦଶମ ଦୃଶ୍ୟଟିର ପରିକଳ୍ପନା ନାଟ୍ୟକାରଙ୍କ ମଞ୍ଚବୋଧ ଜନିତ ଦୃଷ୍ଟିଭଙ୍ଗୀକୁ ଦର୍ଶାଏ । ଅନେକ କାହାଣୀକୁ ସଂକ୍ଷିପ୍ତରେ ଦର୍ଶାଇବା ନିମିତ୍ତ ନାଟ୍ୟକାର ଯେଉଁ ପନ୍ଥା ଆପଣେଇଛନ୍ତି ତାହା ବେଶ୍ ଆକର୍ଷଣୀୟ । ଲାଇଟ୍‌ଜୋନ୍ ଅନୁସାରେ ଚରିତ୍ରଗୁଡ଼ିକ ବିଭିନ୍ନ ଅଙ୍ଗଭଙ୍ଗୀରେ କେବଳ ଠିଆ ହେଉଛନ୍ତି ସିନା, ଦର୍ଶକଙ୍କୁ କିନ୍ତୁ ଘଟଣାର ଇଙ୍ଗିତ ମିଳିପାରିବ। ବିଜିଗୁପ୍ତଙ୍କ ପାଖରୁ ଚିତ୍ରଲେଖା ଫେରିଆସିବା, କୁମାରଗିରିଙ୍କ ପାଦ ଧୋଇବା, ବିଜିଗୁପ୍ତଙ୍କୁ ଶ୍ୱେତାଙ୍କଙ୍କ ସାନ୍ତ୍ୱନା, କୁମାରଗିରି ଓ ଚିତ୍ରଲେଖାଙ୍କ ସାଧନାମଗ୍ନ ଅବସ୍ଥା, ଯଶୋଧାରାଙ୍କ ସହ ଶ୍ୱେତାଙ୍କଙ୍କ ବାର୍ତ୍ତାଳାପ ଭଳି ଘଟଣାକୁ ପ୍ରଲମ୍ବିତ ନକରି କେବଳ ନିର୍ଦ୍ଦିଷ୍ଟ ଆଲୋକରେ ସ୍ଥିର ଅଭିନୟ ଜରିଆରେ ସୂଚାଇ ଦିଆଯାଇଚି । ଘଟଣାର ପ୍ରବାହକୁ କ୍ରମାନ୍ୱୟରେ ଫଟୋଗ୍ରାଫ୍ ଉତ୍ତୋଳନ ଭଳି ଦେଖାଇ ଦିଆଯାଇଥିବାରୁ ଦର୍ଶକୀୟ ରୁଚିବୋଧକୁ ମଧ୍ୟ ଭିନ୍ନ ସ୍ୱାଦ ମିଳୁଚି । ଫଳତଃ ସେସବୁ ଘଟଣାଗୁଡ଼ିକର ବର୍ଣ୍ଣନା ନିମିତ୍ତ ଅଯଥା ଦୃଶ୍ୟ ସଂରଚନା-ସଂଳାପର ଆବଶ୍ୟକତା ହେଉନାହିଁ । ସ୍ଥିର ଦୃଶ୍ୟାୟନ ସହିତ ଆରମ୍ଭ ହୋଇଥିବା ନାଟକ 'କାହାଣୀ ସବାଶେଷ ଲୋକର' ଠାରୁ ପାଦେ ଆଗେଇ ଯାଇ 'ଉପାସନା' ଏ କ୍ଷେତ୍ରରେ ବେଶୀ ସଫଳ ମନେହୁଏ ।

କାବ୍ୟିକତା ତଥା ଦାର୍ଶନିକ ଅନୁଭବରେ ପୂର୍ଣ୍ଣ ଏହି ନାଟକଟିର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହେଉଚି, ଏହାର ସଂଳାପ । ବୌଦ୍ଧଯୁଗୀୟ ଧର୍ମୀୟ ବାତାବରଣର ଗାମ୍ଭୀର୍ଯ୍ୟମୟ ସଂଳାପ ସଂଯୋଜନାରେ ନାଟ୍ୟକାରଙ୍କ ସ୍ୱତନ୍ତ୍ର ପ୍ରୟାସ ବାରିହୁଏ । ଏହି ସାଂଳାପିକ ସ୍ୱାତନ୍ତ୍ର୍ୟ ହିଁ ନାଟକଟିକୁ ନାଟ୍ୟକାରଙ୍କ ଅନ୍ୟାନ୍ୟ ନାଟକଗୁଡ଼ିକଠାରୁ ଭିନ୍ନ ପ୍ରତିପାଦନ କରି ପାରିଚି । ଉଦାହରଣଟିଏ ଦେଖନ୍ତୁ -

ବିଜିଗୁପ୍ତ- ତଥାପି ତ ଶିଳାରେ ଶତଦଳ ସମ୍ଭବ ହୋଇପାରିଚି। ଶତଦଳର ସୌଗନ୍ଧ ବାରିବାକୁ ହେଲେ ଶିଳାର ଉତ୍ତରଜୀବନ ସହିତ ପରିଚିତ ହେବା କ'ଣ ନିହାତି ଦରକାର ? ଶତଦଳ ପଦ୍ମ ଯଦି ମଧୁସ୍ରାବୀ ନ ହେଲା, ତା'ର ସୌନ୍ଦର୍ଯ୍ୟ ଯଦି ଅନ୍ୟକୁ ଆକୃଷ୍ଟ ନ କଲା,ତେବେ ଧିକ୍ ତା'ର ଜନ୍ମ! ଧିକ୍ ତା'ର ଜନ୍ମଦାତା !

(ଉପାସନା, ପୃ-୪୫, )

ସାମ୍ପ୍ରତିକ ଶାସନ ବ୍ୟବସ୍ଥାର ରାଜନୀତିକ ସ୍ୱାର୍ଥସାଧନ ଭିତରେ ସାଧାରଣ ମଣିଷର ସ୍ୱର ଓ ପ୍ରତିବାଦ କେତେ ନିଷ୍ପ୍ରଭ ତାହା 'ମୂକ' (୧୯୯୬) ନାଟକରୁ ଜଣାଯାଏ। ବୋଲବମ୍ ଯାତ୍ରୀମାନେ ରାସ୍ତାରେ ପଥଶ୍ରମ ଲାଘବ କରୁଥିବାବେଳେ ମଞ୍ଚକୁ ପ୍ରବେଶ କରୁଚି ଛାୟାମୂର୍ତ୍ତିଟିଏ। ତା'ର ବର୍ଣ୍ଣାନାତ୍ମକ ବିବରଣୀର ଫ୍ଲାସ୍‌ବ୍ୟାକ୍ ଭିତରେ ଅଭିନୀତ ହେଉଚି ସମ୍ପୂର୍ଣ୍ଣ ନାଟକ।

ନାଟ୍ୟକାହାଣୀ ଅନୁସାରେ ମହୀପାଳ ଓ ବାଇମନ ଭଳି ଚରିତ୍ରମାନେ ରାଜନୀତିକ କ୍ଷମତା ହାସଲ ପାଇଁ ଯେକୌଣସି ସ୍ତରକୁ ଖସିଯାଇପାରନ୍ତି । ପ୍ରଲୋଭନରେ ପରମଗୁରୁ ଭଳି ଖବରକାଗଜର ସମ୍ପାଦକମାନେ ବଦଳେଇ ଦିଅନ୍ତି ନିଜର ସ୍ୱରୂପ। ଅଭିଜିତ୍ ଆଉ ପୋଲିସ୍ ଇନ୍‌ସ୍ପେକ୍ଟରଙ୍କ ସତ୍ୟାନୁସନ୍ଧାନର ପ୍ରବୃତ୍ତି ବିଭିନ୍ନ ପରିସ୍ଥିତି, ପରିବେଶ ଓ ଚାପ ଆଗରେ ସ୍ଥାଣୁ ପାଲଟିଯାଏ । ସତ୍‌ପଥର ଅଭିଯାତ୍ରୀ ହୋଇ ଅଳକା ଭଳି ଚରିତ୍ରମାନେ ନିର୍ଯ୍ୟାତିତା ହୁଅନ୍ତି । ନାଟକଟିର ଶେଷ ଭାଗରେ ଅଳକାର ଜିଭ କାଟିଦିଆଯିବା, କାଳେ ସତକଥା ଲେଖିଦେବ ବୋଲି ତା'ର ହାତ ଭାଙ୍ଗିଦେବା ଏବଂ ତା'ର ମୃତ୍ୟୁ, ଶବ୍ଦ ଖୋଳୁଥିବା ସତ୍ୟକୁ ନିରବ କରିବା ପାଇଁ ଏକ ପ୍ରତୀକାତ୍ମକ ଆଭାସ କେବଳ । ଜନ୍ମଲାଭ କରିଥିବା ଶିଶୁଟିର କାନ୍ଦି ନ ପାରିବା, ପ୍ରତିବାଦର ସ୍ୱରକୁ ଶବ୍ଦହୀନ କରିଦେବାର ପ୍ରତୀକାତ୍ମକ ସୂଚନା ଜନସାଧାରଣଙ୍କର ପ୍ରତିବାଦହୀନ ବୋକଚାବୁହା ପ୍ରବୃତ୍ତି ଏବଂ ସ୍ଥାଣୁତ୍ୱର ଏକ ପ୍ରତିବାଦ ହେଉଚି ଏହି ନାଟକ । ସତେ ଯେମିତି ଜନ୍ମ ହେବା ମାତ୍ରେ ଇ ମଣିଷ ଶିଶୁର ହସିବା କାନ୍ଦିବାର ନିୟନ୍ତକ ସାଜୁଛନ୍ତି ଏଇ ରାଜନୀତିକ ବଡ଼ପଣ୍ଡାମାନେ ଏବଂ ସୁବିଧାବାଦୀ ଆଭିମୁଖ୍ୟଟିଏ ସହିତ ମଣିଷ ବି ନିରବ କରିଦେଉଚି ନିଜକୁ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ପରିପ୍ରେକ୍ଷୀରେ କେତୋଟି ପ୍ରାସଙ୍ଗିକ ପ୍ରଶ୍ନଗୁଚ୍ଛକୁ ନେଇ ଠିଆ ହୋଇଚି 'ପୁନଶ୍ଚ ସଂଗ୍ରାମ'(୧୯୯୭)। ସ୍ୱାଧୀନତା ଆସିଚି ସତ ମାତ୍ର ଯେଉଁମାନଙ୍କ ପାଇଁ ସ୍ୱାଧୀନତା ଆସିଥିଲା, ସେମାନଙ୍କୁ ତାହା ମିଳିଚି କି ! ପ୍ରତିଶ୍ରୁତି ସବୁ ମଧ୍ୟ ବାସ୍ତବତାକୁ ବଦଳି ପାରିନି । ବୃଦ୍ଧ ନିତାଇରାମଙ୍କ ସ୍ୱାଧୀନତା ପରର ଭାରତ ଗଠନର ସ୍ୱପ୍ନମୟ ଉତ୍ତରଣରେ କଣ୍ଟା ହୋଇ ଠିଆ ହୋଇଛନ୍ତି ଗାଲମାଧବ ଓ ବଗୁଲି ଦାସଙ୍କ ଭଳି ରାଜନେତା । କ୍ଷମତାର ମୋହରେ ଅନ୍ଧତ୍ୱ ବରିନେଇଥିବା ଏହି ଦୁଇ ଚରିତ୍ର ରାଜନୀତିର ପଶାପାଲିରେ ବେଶ୍ ପାରଙ୍ଗମତାର ସହ ଚଳେଇ ପାରିଚନ୍ତି ଗୋଟି। ଏଠି ଚରଣ ଦାସ ନିରୋଳା ସ୍ତାବକ ମାତ୍ର । ସଲିମ୍ ଏହି ରାଜନେତାମାନଙ୍କର ହାତ କଣ୍ଢେଇ ସାଜିଚି । ପରମଗୁରୁ ଓ ମାଲ୍‌ପାଣି ଭଳି ପୋଲିସ୍ ଚରିତ୍ର ସମସ୍ତ ସତ୍ୟତା ଜାଣିବା ସତ୍ତ୍ୱେ ବି ଗାଲମାଧବଙ୍କ ଅଧୀନସ୍ଥ । ଭାରତୀ ନିରନ୍ତର ନିର୍ଯ୍ୟାତିତା, ବିନା ଦୋଷରେ ଦଣ୍ଡିତ ହୋଇଚି ରାମୁ ।

ଯୁଗେଯୁଗେ ନୂତନତାର ମନ୍ତ୍ର ଶୁଣେଇଥିବା ଲୋକଟିକୁ ନେଇ ହିଁ ତିଆରି ହୁଏ ଗୋଷ୍ଠୀ। କିନ୍ତୁ ଥରେ ଗୋଷ୍ଠୀ ଗଠନ ପରେ ହିଁ ଆରମ୍ଭ ହୁଏ ଅସଲ ଗଣିତ । ନୂଆ କଥା କହୁଥିବା, ନୂଆ ସ୍ୱପ୍ନ ଦେଖୁଥିବା ଲୋକଟିର ଛାତିରେ ପାଦରଖି ଆରମ୍ଭ ହୋଇଯାଏ ସ୍ୱରର ରୁନ୍ଧନ ପ୍ରକ୍ରିୟା । ଚିପି ଦିଆଯାଏ ଗଣତନ୍ତ୍ରର ତଣ୍ଟି । ଦେଶ ପାଇଁ ସ୍ୱାଧୀନତା ଆଣିଥିବା ଗାନ୍ଧୀମାନଙ୍କୁ ଅଣଦେଖା କରିଦିଆଯାଇ କେବଳ କାନ୍ଥରେ ଟଙ୍ଗେଇ ଦିଆଯାଏ। ମୁଦ୍ରାରେ ସେମାନଙ୍କ ମୁଣ୍ଡରଖି ଦଲାଲୀ-କଳାବଜାରୀର ବାକ୍‌ଶକ୍ତିବିହୀନ ସାକ୍ଷୀ କରିଦିଆଯାଏ । 'ପୁନଶ୍ଚ ସଂଗ୍ରାମ' ସେଇ ଧାରାରୁ ମୁକ୍ତି ଖୋଜିବାର ପ୍ରୟାସଟିଏ କେବଳ। ନାଟକର ଶେଷ ପର୍ଯ୍ୟାୟରେ ବୃଦ୍ଧ ନିତାଇରାମଙ୍କ ସ୍ୱପ୍ନଭଙ୍ଗକୁ ବିଷାଦବାଦିତାରେ ଭରି ଦେଇଥିଲେ ବି ସେଥିରୁ ଗୋଟିଏ ନୂଆ ଖିଅ ବାହାରୁଚି । ପୁଣି ଗୋଟିଏ ସଂଗ୍ରାମର ସଜବାଜ ପ୍ରକ୍ରିୟା ଭିତରେ କୋଉଠି ନା କୋଉଠି ଲୁଚି ରହିଚି ସୃଜନର ନୂଆ ସ୍ୱପ୍ନଟିଏ, ନୂଆ ଆଶାଟିଏ -

> –ଉଦୟସୂର୍ଯ୍ୟର ଲୋହିତ ଅରୁଣିମାକୁ କେହି କ'ଣ କେବେ ଆଚ୍ଛାଦିତ କରିଦେଇପାରେ ? ପବନର ଗତିକୁ କେହି କଣ ରୋଧିପାରେ । +++ ଯେଉଁଦିନ ସେମାନଙ୍କ ଭିତରେ ଆତ୍ମଚୈତନ୍ୟର ଉଦୟ ହେବ, ସେ ଦିନ ଆପଣା ଛାଏଁ ଲଙ୍ଗଳା ମଣିଷ, ଫୁଙ୍ଗୁଳା ମଣିଷ ଆଗେଇ ଆସିବ ନିଜର ହକ୍ ପାଇଁ... ଜାତିର ହକ୍ ପାଇଁ... ଦେଶର ହକ୍ ପାଇଁ...।
>
> (ପୁନଶ୍ଚ ସଂଗ୍ରାମ,ପୃ-୭୦-୮୦)

'ଅଧାଦେଖା ସ୍ୱପ୍ନ' (୧୯୯୮) ଓ 'ପ୍ରାୟଶ୍ଚିତ' (୨୦୦୧)-- ଉଭୟ ନାଟକର ସମସ୍ୟା ଏକ । ଅବଶ୍ୟ ପରିବେଶ-ପରିସର-ପରିଣତି ଭିନ୍ନ । ଉଭୟ ନାଟକର ନାୟିକା ଦୀପିକା (ଅଧାଦେଖା ସ୍ୱପ୍ନ) ଓ କ୍ରିଷ୍ଣା (ପ୍ରାୟଶ୍ଚିତ) ଅସଦାଚରଣ ଶିକାର ହେବା ପରର ବଦଳି ଯାଇଥିବା ସାମାଜିକ ଦୃଷ୍ଟିଭଙ୍ଗୀ ଘଟଣାକୁ ଭିନ୍ନ ମୋଡ଼ ଦେଇଚି । ଅବଶ୍ୟ 'ଅଧାଦେଖା ସ୍ୱପ୍ନ' ଅପେକ୍ଷା ନାଟ୍ୟ କାହାଣୀ ଦୃଷ୍ଟିରୁ 'ପ୍ରାୟଶ୍ଚିତ' ଅଧିକ ସଂଯୋଜିତ ଲାଗେ । ସମସ୍ୟା ଓ କଥାନକ ଗୋଟିଏ ହେତୁ ପରିଣତି ଆଡ଼କୁ ଗତିଶୀଳତା ହିଁ ସରଳରୈଖିକ । ମାତ୍ର 'ଅଧାଦେଖା ସ୍ୱପ୍ନ'ରେ ଅନେକଗୁଡ଼ିଏ ଘଟଣାର ଚିତ୍ର ଓ ପରିଣତିରେ ବିଫଳତା। ମଣିଭଦ୍ରଙ୍କ ଗାନ୍ଧୀବାଦୀ ଦର୍ଶନ ଓ ବିପ୍ଳବର ଅହିଂସାଜନିତ ଚିନ୍ତାଧାରା, ମହେଶ୍ୱର-ରବି ଭଳି ରାଜନୀତିକ ଚରିତ୍ରମାନଙ୍କର କ୍ଷମତାଲିପ୍ସା, ଅଭିନେତା-ଓକିଲ-ପୋଲିସ୍ ତ୍ରୟୀଙ୍କର ସାଲିସ୍‌ପଣ ଓ ଦୀପିକାର ଅସହାୟତା ଭିତର ଦେଇ ନାଟକଟି ଗତିକରେ। ପ୍ରଥମରୁ ଦୃଶ୍ୟମାନ ହେଉଥିଲେ ମଧ୍ୟ ନାଟକରେ ବଟକୃଷ୍ଣଙ୍କ ଚରିତ୍ରର ଗୁରୁତ୍ୱ

ଅନୁପଲବ୍ଧ। ଠିକ୍ ସେହିପରି ମହେଶ୍ୱରଙ୍କ ପୁଅ ଜିତୁର ଚାରିତ୍ରିକ ବିସଙ୍ଗତିକୁ ଦର୍ଶାଇବା ପାଇଁ ହିଁ ସତେ ଯେମିତି ଜୁଲିର ଉପସ୍ଥିତି କେବଳ। ନାଟକର ବକ୍ତବ୍ୟ ଭାଗ, ଦୃଷ୍ଟି-ଦର୍ଶନ, ସ୍ୱପ୍ନ-ସ୍ୱପ୍ନଭଙ୍ଗ ବୃଦ୍ଧ ସ୍ୱାଧୀନତା ସଂଗ୍ରାମୀ ମଣିଭଦ୍ରଙ୍କ ଦ୍ୱାରା ହିଁ ନିୟନ୍ତ୍ରିତ। ପରିବାର ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ସେ ଯେଉଁ ସ୍ୱାଧୀନ ଭାରତରେ ପାଦ ଦେଇଛନ୍ତି, ସେଠି ବିଫଳତା ଓ ସ୍ୱପ୍ନଭଙ୍ଗମାନେ ହିଁ ତାଙ୍କର ସହଚର। ଘଟଣାର ବହୁମୁଖୀନତା ନାଟକଟିକୁ ନିର୍ଦ୍ଦିଷ୍ଟ କଥାନକଠାରୁ ସାମାନ୍ୟ ଦୂରେଇ ଦେଲା ଭଳି ମନେ ହୁଏ। ଆବଶ୍ୟକତା ଠାରୁ ଅଧିକ ଚରିତ୍ରମାନଙ୍କର ମଞ୍ଚ ପ୍ରବେଶ ମଧ୍ୟ ନାଟକର ଚରିତ୍ରମାନଙ୍କୁ ବ୍ୟାପକତା ଦେଇପାରିନାହିଁ। ମାତ୍ର 'ପ୍ରାୟଶ୍ଚିତ'ର ସମସ୍ୟା ଗୋଟିଏ ଓ ଚରିତ୍ରମାନଙ୍କର ଆଧିକ୍ୟ ସତ୍ତ୍ୱେ କଥାନକ ଭାଗଟି ପୀନବଦ୍ଧ । କାହାଣୀ ଭାଗର ଗତିଶୀଳତା କ୍ରିଷ୍ଣାର ଘଟଣାବହୁଳ ଜୀବନକୁ ନେଇ। ଜୀବନରେ ଅତ୍ୟାଚାରର ଶିକାର ହୋଇଥିବା କ୍ରିଷ୍ଣା, ତାକୁ ନୂତନ ଜୀବନ ଦେଇଥିବା ଅଧ୍ୟାପକ ରଣଜିତ୍‌ଙ୍କ ଘରେ ରହୁଚି। ତା'ର ବାପା ବିଜୟ ଘଟଣାଚକ୍ରରେ ରାଜନୀତିର ଗୋଟିଚାଳନା ସହିତ ସାଲିସ୍ କରିଯାଇଛନ୍ତି। ପ୍ରେମିକ ପ୍ରମୋଦଙ୍କୁ ଭରସା କରି ରଣଜିତ୍‌ଙ୍କ ଘରୁ ବାହାରି ଯାଇଥିବା କ୍ରିଷ୍ଣା ପ୍ରମୋଦ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ଫେରିଆସୁଛି। ମାତ୍ର ସେତେବେଳକୁ ଅନ୍ୟାୟର ପ୍ରତିରୋଧ କରି ରଣଜିତ୍ ପରାଜିତ ଓ ପାଗଳପ୍ରାୟ। କ୍ରିଷ୍ଣା ଫେରୁଛି ସେଇ ଅସଜଡ଼ା ଜିନିଷକୁ ସଜାଡ଼ି ନେବା ପାଇଁ। 'ଅଧାଦେଖା ସ୍ୱପ୍ନ'ରେ ଦୀପିକା ଓ ବିପ୍ଳବ ମୃତ, ମଣିଭଦ୍ର ନାଟକର ପରିଣତିରେ କେବଳ ଉଦ୍‌ବୋଧନ ଦେଉଛନ୍ତି। ମାତ୍ର 'ପ୍ରାୟଶ୍ଚିତ'ରେ କ୍ରିଷ୍ଣା ଜୀବନର ବିଫଳତା ଠାରୁ ଦୂରେଇ ଯାଇନି। ମଣିଷ ପ୍ରତି ମଣିଷର ଆବେଗ ନିକଟରେ ସେ ବନ୍ଧା। ଏଣୁ ସେ ଜୀବନକୁ ହିଁ ଫେରୁଛି। ଭାଙ୍ଗିଯାଇଥିବା ଅତୀତକୁ ସଜାଡ଼ିବାର ଉଦ୍ୟମ କରୁଛି। ରଣଜିତ୍‌ଙ୍କୁ ନେଇ ସେ ଆରମ୍ଭ କରିବାକୁ ଯାଉଥିବା ଜୀବନରେ ଅନୁରାଗ ଓ ପ୍ରେମ ହିଁ ଗୁରୁତ୍ୱପୂର୍ଣ୍ଣ ମନେ ହେଉଛି। ଏସବୁ ଦୃଷ୍ଟିରୁ ବିଚାରିଲେ, 'ଅଧାଦେଖା ସ୍ୱପ୍ନ'ଠାରୁ 'ପ୍ରାୟଶ୍ଚିତ'ର ପରିଣତି ଦୁଇପାଦ ଆଗେଇ ଯାଇଚି । କରିଥିବା ଭୁଲର ପ୍ରାୟଶ୍ଚିତ ସହିତ ନୂଆ ଆଶାନେଇ ଜୀବନ ଗଢ଼ିବାର ଭରସା ଟିକକ ବି ନାଟକର ପରିଣତିକୁ ଆଶ୍ୱାସନାମୟ କରୁଚି।

ରାଜା ଭାନୁପ୍ରତାପଙ୍କ ଜୀବନ କାହାଣୀକୁ ନେଇ ରଚିତ 'ଅପରାହ୍ନର ଅବସୋସ' (୨୦୦୧) ଏକ ଭିନ୍ନ ସ୍ୱାଦର ନାଟକ। ନାଟକଟି ପୂର୍ବରୁ 'ଅସ୍ତରାଗ', 'ଅସ୍ତରାଗର ଏଲିଜି' ନାମରେ ମଧ୍ୟ ପରିବେଷିତ ହୋଇଥିଲା । ରାଜା ଓ ରାଜତନ୍ତ୍ରର ଦୋଷତ୍ରୁଟିକୁ ନେଇ ନାଟକ ରଚନାର ପ୍ରୟାସ ପର୍ବ ଅବଶ୍ୟ ନୂତନ ନୁହେଁ । ଏହି ନାଟକର ନୂତନତା

ଅଛି ରାଜା ଭାନୁପ୍ରତାପଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ । ଗୋଟେ ସମୟରେ ଭାରତୀୟ ନାଟ୍ୟ ଭୂଖଣ୍ଡରେ 'ତୁଗ୍‌ଲକ୍' (ଗିରୀଶ କର୍ନାଡ), ଘାସିରାମ୍ କୋତ୍‌ୱାଲ୍ (ବିଜୟ ତେନ୍ଦୁଲ୍‌କର) ଭଳି ନାଟକ ଯେଉଁ ପ୍ରଭାବ ବିସ୍ତାର କରିଥିଲେ, ତା'ର ସ୍ୱରୂପ ଆମେ ଦେଖୁ ବିଶ୍ୱଜିତ୍‌ଙ୍କ 'କାଲିଗୁଲା', କୁଞ୍ଜ ରାୟଙ୍କ 'ବିଦାୟ ବକ୍ରାଦିତ୍ୟ', ରମେଶ ପାଣିଗ୍ରାହୀଙ୍କ 'ମହାନାଟକ', ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ', କାର୍ତ୍ତିକ ରଥଙ୍କର 'ବହ୍ନିମାନ', ଡ. ସୁବୋଧ ପଟ୍ଟନାୟକଙ୍କ 'ଯେଥୁ ଅନ୍ତେ', ବିଜୟ ଶତପଥୀଙ୍କର 'ଏଇ ଯେ ସୂର୍ଯ୍ୟ ଉଏଁ', ରତ୍ନାକର ଚଇନିଙ୍କ 'ସୁନାକଳସ', ପ୍ରମୋଦ ତ୍ରିପାଠୀଙ୍କର 'ଶୁଣିବା ହେଉ ଏ କାହାଣୀ' ଭଳି ନାଟକର ପରମ୍ପରାରେ । ଅବଶ୍ୟ ଏ ସମସ୍ତ ନାଟକରେ ରାଜତନ୍ତ୍ରକୁ Fiction allegory ହିସାବରେ ହିଁ ଗ୍ରହଣ କରାଯାଇଚି । ମାତ୍ର 'ଅପରାହ୍ନର ଅବସୋସ'ର ପ୍ରସଙ୍ଗ ଓ ପରିସର ଭିନ୍ନ । ଭାନୁ ପ୍ରତାପଙ୍କ ରାଜତ୍ୱ ଚାଲିଯିବା ପରେ ରାଜା ଭାବରେ ରହି ଆସିଥିବା ତାଙ୍କର ମାନସିକ ଅଭୀପ୍‌ସାବୋଧର ଅପମୃତ୍ୟୁ ଯେ ମନସ୍ତାତ୍ତ୍ୱିକ ସ୍ତରରେ କିପରି ଦୁର୍ବିସହ ପରିସ୍ଥିତି ସୃଷ୍ଟି କରିପାରେ ନାଟକଟି ସେ ଦିଗ ପ୍ରତି ବିଶେଷ ଭାବରେ ଯତ୍ନଶୀଳ।

ରାଜକୀୟ କ୍ଷମତା ହରାଇବା ତଥା ସରକାରୀ ଭତ୍ତା ବନ୍ଦ ହେବା ପରେ ମଧ୍ୟ ଭାନୁପ୍ରତାପ ବାସ୍ତବତାକୁ ଗ୍ରହଣ କରିବାକୁ ନାରାଜ । ସମୟକ୍ରମେ ତାଙ୍କୁ ନିଜର ସର୍ବନିମ୍ନ ଆବଶ୍ୟକତା ନିମିତ୍ତ ସମସ୍ତ ସମ୍ପତ୍ତିର ବିକ୍ରି କରିବାକୁ ପଡୁଚି । ବିଗତ ଦିନର ଅର୍ଥ-ପ୍ରତିପତ୍ତି-କ୍ଷମତା-ପ୍ରତିଷ୍ଠା-ଆଧିପତ୍ୟ କିମ୍ବା ଔଦ୍ଧତ୍ୟ ଆଉ ନାହିଁ । ତଥାପି ମଧ୍ୟ ସେ ମାନସିକ ସ୍ତରରେ ରାଜା ଭାବରେ ରହିବାକୁ ହିଁ ପସନ୍ଦ କରୁଛନ୍ତି । ସତେ ଯେମିତି ଏ ଧରାରେ ସେ ଜନ୍ମ ହୋଇଛନ୍ତି, ରାଜା ଭାବରେ ଶାସନ କରିବା ପାଇଁ । କାହାର ନିୟନ୍ତ୍ରଣାଧୀନ ହେବା ପାଇଁ ନୁହେଁ । ମାତ୍ର ତାଙ୍କ ପରିବାର ଏହି ବୃଥା ରାଜକୀୟ ଆଧିପତ୍ୟ ଓ ଆସ୍ଫାଳନକୁ ଅସ୍ୱୀକାର କରେ । ତାଙ୍କ ଇଚ୍ଛା ବିରୁଦ୍ଧରେ କୁମାରର ବିବାହ ତାଙ୍କୁ ଧକ୍‌କା ଦିଏ, ପତ୍ନୀ ସୁଭଦ୍ରାଙ୍କର ମୃତ୍ୟୁ ତାଙ୍କୁ ଅସହାୟ କରିଦିଏ । ଏଯାଏଁ ସେ ସୁଭଦ୍ରା ପଠାଉଥିବା ଅର୍ଥରେ ଚଳୁଥିଲେ ଏକଥା ଜାଣି ପକ୍ଷାଘାତର ଶିକାର ହୁଅନ୍ତି । ଯେଉଁ ଅର୍ଦ୍ଧଭଗ୍ନ ରାଜପ୍ରାସାଦ, କଳଙ୍କି ଲଗା ତରବାରୀ ଓ ବନ୍ଧୁକ, ମଳିନ ମୁକୁଟ ଓ ଧୂଳି ଜମିଥିବା ସିଂହାସନ ଭିତରେ ସେ ସମ୍ରାଟ ହୋଇ ରହୁଥିଲେ, ସେଥିରୁ ସେ ଅତ୍ୟନ୍ତ ଅସହାୟ ଭାବରେ ବିଦା ନେଉଛନ୍ତି । ନାଟକଟି କେତେକାଂଶରେ ଅନ୍ତିମ ମୋଗଲ୍ ସମ୍ରାଟ ବାହାଦୂର ଶାହଜାଫର୍‌ଙ୍କ କରୁଣ ଚିତ୍ରକୁ ମନେ ପକେଇଦିଏ । ଅବଶ୍ୟ ନାଟକରେ ସୁଭଦ୍ରା ଠାରୁ ଆସୁଥିବା ମନିଅର୍ଡର ଫର୍ମରେ ସୁଭଦ୍ରାର ନାଁ ନ ରହିବା ତଥ୍ୟ ଦୃଷ୍ଟିରୁ ଅଯୌକ୍ତିକ । ମାତ୍ର ଏଠି ପ୍ରସଙ୍ଗ ଭାନୁ ପ୍ରତାପଙ୍କ ମାନସିକ ଅସ୍ଥିରତାର ଚିତ୍ର ପ୍ରଦାନ ନିମିତ୍ତ ଉଦ୍ଦିଷ୍ଟ ।

ରାଜାଙ୍କର ମନସ୍ତାତ୍ତ୍ୱିକ କ୍ରିୟା ପ୍ରତିକ୍ରିୟାକୁ ନେଇ ବ୍ୟୋମକେଶ ତ୍ରିପାଠୀଙ୍କ 'କଂସା କବାଟ'(୧୯୬୩) ନାଟକର ଅବତାରଣା ଏଠାରେ କରାଯାଇପାରେ । ଥାଟରାଜା ପ୍ରବୀରଙ୍କ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଓ ଆତ୍ମହୀନମନ୍ୟତା ଭିତ୍ତିକ ଆତ୍ମହତ୍ୟା ନିଷ୍ପତ୍ତି ଭିତରେ ହିଁ ଗୋଟେ ଅଦୃଷ୍ଟ ଅସହାୟତା ହିଁ ବସା ବାନ୍ଧିଥିଲା । ସାମାଜିକ ପରିବେଶ ବଦଳିବା ସହିତ ଭାନୁପ୍ରତାପଙ୍କ ମାନସିକ ଅବସ୍ଥା ବଦଳି ପାରୁନି । ରାଜତନ୍ତ୍ର ଚାଲିଯିବା ପରର କ୍ଷୋଭ ତଥା ଅହଙ୍କାର-ଅହମିକାର ପ୍ରାଚୀର ହିଁ ଗୁରୁତ୍ୱପୂର୍ଣ୍ଣ ହୋଇଯାଇଚି । ରାଜା ଚରିତ୍ରର ମନସ୍ତାତ୍ତ୍ୱିକ ଆକଳନ ଦୃଷ୍ଟିରୁ ଥାଟରାଜା ପ୍ରବୀର ଓ ଭାନୁ ପ୍ରତାପଙ୍କ ମଧ୍ୟରେ କେତେକ ସାମ୍ୟ ରହିଥିଲେ ମଧ୍ୟ ଉଭୟ ନାଟକର ଉପସ୍ଥାପନା ଓ ପରିବେଷଣ ଶୈଳୀ ଭିନ୍ନ।

ରାଜ୍ୟ ତଥା ଦେଶର ବିଭିନ୍ନ ଅଞ୍ଚଳରେ ଏକ ଗୁରୁତର ସମସ୍ୟା ରୂପେ ମୁଣ୍ଡ ଟେକିଥିବା ନକ୍ସଲ୍ ଆନ୍ଦୋଳନର ମୂଳଦୁଆ ଉପରେ ଠିଆ ହୋଇଚି ନାଟକ 'କ୍ରାନ୍ତି' । ନାଟକଟି 'କ୍ରାନ୍ତି' ନାମରେ ନାମିତ ହୋଇଥିଲେ ମଧ୍ୟ କ୍ରାନ୍ତି ଚରିତ୍ରଟି ନାଟକର ମୂଳସ୍ୱର ନୁହେଁ । ଏଠି ମୂଳ ନାୟକ ହେଉଚି ଜେ.ପି. ଓରଫ୍ ଜଗତ୍ ପ୍ରକାଶ। ଜଗତ୍ ପ୍ରକାଶ ଜୀବନର ଘଟଣା ସବୁ ହିଁ ନାଟକର କାହାଣୀ ଭାଗ। ଧୀରେ ଧୀରେ ନକ୍ସଲ୍ ଆନ୍ଦୋଳନ ପ୍ରତି ବଢୁଥିବା ସମର୍ଥନକୁ ମଧ୍ୟ ସମ୍ବେଦନଶୀଳତାର ସହ ଛୁଇଁଛନ୍ତି ନାଟ୍ୟକାର । କ୍ରାନ୍ତି ଚରିତ୍ରଟି ଆଗାମୀ କାଲି ପାଇଁ ସାଇତା ହୋଇ ଥୁଆ ହୋଇଛି। ଜଗତ୍ ପ୍ରକାଶ ସାମ୍ନା କରିପାରିନଥିବା ଘନଘଟାକୁ ବାଟ ଦେଖାଇବା ପାଇଁ ହିଁ ସତେ ଯେମିତି କ୍ରାନ୍ତିର ଜନ୍ମ। ହୋଇପାରେ ମଧ୍ୟ ଏ କ୍ରାନ୍ତି ଜୟପ୍ରକାଶ ନାରାୟଣଙ୍କ ସମ୍ପୂର୍ଣ୍ଣ କ୍ରାନ୍ତିର ସ୍ୱରୂପ । ନାଟକର ଫାଶୀ ଦଣ୍ଡାଦେଶ ପାଇଥିବା ଜେ.ପି.ର ଅନ୍ଧ ହୋଇଯାଇଥିବା କ୍ରାନ୍ତିକୁ ଚକ୍ଷୁଦାନ ପ୍ରସଙ୍ଗଟି ସତେ ଯେମିତି ସରିନଥିବା ବା ଅଧାରେ ରହିଯାଇଥିବା ସଂଗ୍ରାମର ପ୍ରକ୍ରିୟାକୁ ଆଗେଇ ନେବା ନିମିତ୍ତ ଏକ ଅଭିନୟାତ୍ମକ ଆଭାସ । ନାଟକର ପ୍ରାୟ ସମସ୍ତ ଚରିତ୍ର ପୁଣି ଗୋଟିଏ ନୂତନ କ୍ରାନ୍ତିର ସପକ୍ଷରେ । ଜେ.ପି. ଦ୍ୱାରା ଉଠାଯାଇଥିବା କ୍ରାନ୍ତି ପ୍ରସଙ୍ଗକୁ ସନାତନ, ମାଣ୍ଡିଆ, ତୁଲ୍‌ସୀ ପ୍ରଥମରୁ ହିଁ ସ୍ୱୀକାର କରିନେଉଛନ୍ତି। ନାଟକର ଗତି ସହ ତାଳ ଦେଇ ପରବର୍ତ୍ତୀ ପର୍ଯ୍ୟାୟରେ ସାମ୍ବାଦିକ ବର୍ମା, ପୋଲିସ୍ ଇନ୍‌ସ୍ପେକ୍ଟର, ଜେଲର୍, ଅନ୍‌ୱାର୍, ରାଓ, ଟିକ୍ରା ମିଶଉଛନ୍ତି ବିପ୍ଳବ ସହିତ ନିଜର ସ୍ୱର। ସ୍ୱାଧୀନତା ସଂଗ୍ରାମର ବିପ୍ଳବ ଯେ ସବୁ ସଂଗ୍ରାମର ଶେଷ ନୁହେଁ, ବରଂ ପ୍ରକୃତ ସ୍ୱାଧୀନତା ନିମିତ୍ତ ଆଉ ଗୋଟିଏ ବିପ୍ଳବ ତଥା ନୂତନ କ୍ରାନ୍ତିର ଆବଶ୍ୟକତା ଅଛି, ସେ କଥା ସ୍ୱୀକାର କରୁଛନ୍ତି ସମସ୍ତେ। ଜୟପ୍ରକାଶଙ୍କ Total Revolutionର ଚିନ୍ତାଧାରା ନାଟକକୁ ଅନେକତ୍ର ଆଚ୍ଛନ୍ନ କରି ରଖିଥିବା ଭଳି ବୋଧ ହୁଏ । କ୍ରାନ୍ତି ମୁହଁରେ ସମ୍ପୂର୍ଣ୍ଣ ସଂଗ୍ରାମର ବାର୍ତ୍ତା ଦେଖନ୍ତୁ –

—ତମ ଅଧା ଦେଖା ସ୍ୱପ୍ନକୁ ଏଇ କ୍ରାନ୍ତି ସାକାର କରିବ, ସମାଜର ପାପତାପର ବିନାଶ ପାଇଁ କ୍ରାନ୍ତିର ହେବ ନବଜନ୍ମ । ହଁ, ନବଜନ୍ମ । ଏ ସମାଜ ପାଇଁ ଦରକାର ଗୋଟାଏ ସମ୍ପୂର୍ଣ୍ଣ କ୍ରାନ୍ତି ।

(କ୍ରାନ୍ତି,ପୃ-୮୯)

ସମାଜରେ ଅନ୍ୟାୟ ଅତ୍ୟାଚାର ମଞ୍ଜି ବୁଣୁଥିବା ମଣିଷମାନେ କୌଣସି ପଶୁଙ୍କ ଠାରୁ ମଧ କମ୍ ନୁହଁନ୍ତି ଏବଂ ମଣିଷଖିଆ ପଶୁଙ୍କୁ ମାରିଲେ ପୁରସ୍କାର ହିଁ କାମ୍ୟ-- ଜେ.ପି. ଚରିତ୍ରର ଏଇ ଚିନ୍ତାଧାରା ଭିତରେ ସାମ୍ୟବାଦୀ ଆନ୍ଦୋଳନର କର୍ଣ୍ଣଧାର ଭଗବତୀ ପାଣିଗ୍ରାହୀଙ୍କ 'ଶିକାର' ଗଳ୍ପର 'ଘିନୁଆ' ସାମ୍ନାକୁ ଆସେ।

ଜେ.ପି. —+++ ତମେମାନେ ଯାହାକୁ ମଣିଷ କୁହ, ମୋ ଭାଷାରେ ସେମାନେ ଜାନୁଆର୍। ଜାନୁଆର୍ ହିଂସ୍ର ହେଲେ ସେମାନଙ୍କୁ ଶିକାର କରାଯାଏ । ଆଉ ସେଇ ଶିକାର ମୁଁ କରିଚି, ଗୋଟାଏ ନୁହେଁ ପାଞ୍ଚ ପାଞ୍ଚଟା ଶିକାର...

(କ୍ରାନ୍ତି, ପୃ-୪୯)

ମୋଟ ଉପରେ 'କ୍ରାନ୍ତି' ହେଉଚି ଅଧାରେ ରହିଯାଇଥିବା ଗୋଟିଏ ସଂଗ୍ରାମକୁ ସମ୍ପୂର୍ଣ୍ଣତା ଆଡ଼କୁ ନେବାର ଅଭୀପ୍ସାବୋଧ ।

ଓଡ଼ିଶାରେ ପେଷାଦାର୍ ରଙ୍ଗମଞ୍ଚର ପାଦପ୍ରଦୀପ ଲିଭିଆସୁଥିବା ବେଳେ ଥିଏଟର୍ ଦଳମାନଙ୍କର ସଂଘର୍ଷମୟ ଜୀବନଯାତ୍ରା ସହିତ ହିଁ ଆଗକୁ ଯାଇଚି 'ନିଷିଦ୍ଧ ସଂଳାପ' ଏବଂ 'ଶେଷ କଥା' ନାଟକର ଆଖ୍ୟାନ ଭାଗ । ନାଟକ ଓ ନାଟ୍ୟକାରଙ୍କୁ ପୃଷ୍ଠଭୂମିରେ ରଖି ନାଟ୍ୟକାହାଣୀ ତିଆରିବାର କଳା ଆମେ ରମେଶ ପାଣିଗ୍ରାହୀଙ୍କ 'ଆତ୍ମଲିପି'ରେ ଦେଖିଥିଲେ। ରତ୍ନାକର ଚଇନିଙ୍କ 'ମଞ୍ଚ ନାୟିକା' ଓ ଅଧାପକ ରାମଚନ୍ଦ୍ର ମିଶ୍ରଙ୍କ 'ଏକ ସୂର୍ଯ୍ୟ, ଅନେକ ପୃଥିବୀ'ରେ ମଞ୍ଚ ଉପରେ ଗ୍ରୀନ୍‌ରୁମ୍‌ର ଅବତାରଣା କିମ୍ୱା ଶଙ୍କର ତ୍ରିପାଠୀଙ୍କ 'ରାବଣଛାୟା'ର ଚରିତ୍ରମାନେ ନାଟକ ସମୟରେ ନାଟକ ବାହାରର କଥା କହିବା କିମ୍ୱା ପ୍ରମୋଦ ତ୍ରିପାଠୀଙ୍କର 'ବୁଲାକୁକୁରର ଜନ୍ମ ବୃତ୍ତାନ୍ତ'ରେ ଜଣେ ଦାସକାଠିଆ ଶିଳ୍ପୀର କାହାଣୀମୟ ଜୀବନଯନ୍ତ୍ରଣାର କରୁଣ ଦୃଶ୍ୟ ଭିତରେ ଆମେ ନାଟକ ଜରିଆରେ ନାଟ୍ୟଜଗତର ପରିସରକୁ ନେଇ ହେଇଥିବା ବିଭିନ୍ନ ପରୀକ୍ଷା ନିରୀକ୍ଷାକୁ ଦେଖିପାରୁ । ନାରାୟଣ ସାହୁଙ୍କ ଏହି ଦୁଇ ନାଟକ ମଧ ନାଟକର ପରିସରକୁ ନେଇ ନାଟ୍ୟରୂପ ପାଇଚି।

'ନିଷିଦ୍ଧ ସଂଳାପ' (୨୦୦୭)ରେ ନାଟ୍ୟଦଳଗୁଡ଼ିକର କେତେକ ଅନ୍ଧାରୀ ଦିଗ ବିଷୟରେ ନାଟ୍ୟକାର ସ୍ୱତନ୍ତ୍ର ଦୃଷ୍ଟି ଦେଇଛନ୍ତି । ନାଟକର ସୂତ୍ରଧର ଜନତାଙ୍କୁ ବିଚାରକର ଆସନ ଦେଇ କଥାବସ୍ତୁ ଆରମ୍ଭ କରିବାର ପ୍ରଣାଳୀ ନାଟ୍ୟବକ୍ତବ୍ୟ ଉପସ୍ଥାପନର ଏକ

ବିଶେଷ ଦିଗ । ସମସ୍ୟାଟି ସହିତ ଦର୍ଶକମାନେ ନାଟକର ଶେଷଯାଏଁ ଯିବା ଏବଂ ସମଗ୍ର ନାଟକର ଭିତ୍ତିରେ ତା'ର ପ୍ରାସଙ୍ଗିକତା ଉପଲବ୍ଧି କରିବା ହିଁ ଏଠି ବଡ଼କଥା । ଆଉ ଗୋଟିଏ ଲକ୍ଷ୍ୟ କରିବାର କଥା ହେଉଚି, ନାଟକର ଦ୍ୱିତୀୟ ଦୃଶ୍ୟରେ ସିଦ୍ଧାନ୍ତ ମହାପାତ୍ରଙ୍କୁ ଚିନ୍ତାଶୀଳ କରାଇ ନାଟକର କାହାଣୀ ନିମିତ୍ତ ନୂତନତା ଖୋଜିବା । ନାଟ୍ୟକାର ତଥା ଆଲୋଚକ ରମେଶ ପ୍ରସାଦ ପାଣିଗ୍ରାହୀ ନାଟ୍ୟକାର ସାହୁଙ୍କର ଏହି କୌଶଳକୁ ଆତ୍ମସଚେତନ (self-conscious) କ୍ରୀଡ଼ା ବୋଲି କୁହନ୍ତି । ଏପରି କ୍ରୀଡ଼ାରେ ଗୋଟିଏ ବର୍ଣ୍ଣନାକାରୀ ଆସି ଦର୍ଶକମାନଙ୍କ ଯାହା ଘଟିବାକୁ ଯାଉଚି ସବୁ ଖୋଲାଖୋଲି କହିଦେଇ ଦର୍ଶକମାନଙ୍କର ବିଶ୍ୱାସଭାଜନ ହୋଇଯାଏ, ସେ ଏତେ ବିଶ୍ୱାସୀ ବର୍ଣ୍ଣନାକାରୀ ଯେ, ତା'ର ବର୍ଣ୍ଣନା ଭିତରେ କିଛି ଲୁଚାଛପା ନାହିଁ ବୋଲି କହିବା ମାତ୍ରେ ହିଁ ଭ୍ରାନ୍ତିର କ୍ରୀଡ଼ାଟି ଆରମ୍ଭ ହୋଇଯାଏ । ଦର୍ଶକ ଯେତେ ବେଶୀ ନାଟକଟି ସହିତ ଜଡ଼ିତ ହୋଇଯିବ, ନାଟକଟି ସେତେ ବେଶୀ ସଫଳ ହେବ ବୋଲି ସ୍ୱୀକାର କରି ଶ୍ରୀଯୁକ୍ତ ପାଣିଗ୍ରାହୀ ନାଟ୍ୟକାରଙ୍କର ଆଖ୍ୟାନଭାଗ ଜନିତ କ୍ରୀଡ଼ା କୌଶଳକୁ ନେଇ Peter Hutchinsonଙ୍କ 'Games Author Play' ପୁସ୍ତକର ଅବତାରଣ କରିଛନ୍ତି । ଆତ୍ମସଚେତନ ତଥା ନିରୀକ୍ଷଣ ଚରିତ୍ରଟି କିପରି ସମସ୍ତ ଗୋପନୀୟତାକୁ ଭାଙ୍ଗି ଦର୍ଶକଙ୍କୁ ଅଭିବାଦନ ପୂର୍ବକ କଥାବାର୍ତ୍ତା ଜରିଆରେ ନାଟକ ସହିତ ଯୋଡ଼ି ଆଖ୍ୟାନଭାଗକୁ ଗତିଶୀଳ କରେ ଓ ନାଟକ ଆରମ୍ଭର ଭ୍ରମମୟ ପରିବେଶ ତିଆରିପାରେ, ପିଟର୍‌ଙ୍କ ଉଦ୍ଧୃତିଟି ତାହା ସୂଚାଉଛି ।(ପାଣିଗ୍ରାହୀ, ରମେଶ ପ୍ରସାଦ, କ୍ରାନ୍ତି +, (ଦ୍ୱିତୀୟଭାଗ) ମୁଖବନ୍ଧ, ପୃ-୮) ।

ନାଟ୍ୟଭାରତୀ ଅନୁଷ୍ଠାନର ସମ୍ବର୍ଦ୍ଧନା ସଭାରୁ ଆରମ୍ଭ ହୋଇଥିବା ନାଟକଟିରେ ପଦର ସ୍ୱୀକାରୋକ୍ତି ଭିତରେ ହିଁ କାହାଣୀ ଭାଗଟି ଗତିଶୀଳ । 'Drama within a drama' ଭଳି କଥାନକ ଆଗକୁ ବଢୁଚି । ନାଟ୍ୟକାର ସିଦ୍ଧାନ୍ତ ମହାପାତ୍ରଙ୍କ ଲେଖକୀୟ ପ୍ରସିଦ୍ଧି-ପରିଚିତିର ମୋହରେ ଉଚ୍ଚ ଶିକ୍ଷିତା ସାଗରିକା ଘର ଛାଡ଼ି ମଞ୍ଚକୁ ଆଦରି ନେଇଛି । ମାତ୍ର ନିର୍ଦ୍ଦେଶକ ବିନୋଦ ଓ ଅଭିନେତା ଅଞ୍ଜନଙ୍କ ସଫଳତା ପାଇବାର ଧୃଷ୍ଟ ମାନସିକତା ଭିତରେ ଛନ୍ଦି ହୋଇଯାଉଛି ସିଦ୍ଧାନ୍ତ ଓ ସାଗରିକାଙ୍କ ପରିବାର । ପରିସ୍ଥିତିରେ ପଡ଼ି ବାଧ୍ୟରେ ମଞ୍ଚକୁ ଓହ୍ଲାଇଚି ସାଗରିକା । ଅଭିନୟ ଭିତରେ ସାଗରିକା ଓ ଅଞ୍ଜନ ପରସ୍ପର ପ୍ରତି ଆସକ୍ତ ହୋଇପଡ଼ିଛନ୍ତି । ଅଞ୍ଜନ ସହ ଘର ଛାଡ଼ିଚି ସାଗରିକା । କିଛି ଦିନ ପରେ ଅଞ୍ଜନ ଅଧାବାଟରେ ଛାଡ଼ି ଦେଇଚି ସାଗରିକାକୁ । ଏଇ ଦୁର୍ଦ୍ଦିନରେ ସହାୟତାର ହାତ ବଢ଼େଇଚି ସିଦ୍ଧାନ୍ତଙ୍କ ଅନୁଗତ ପଦ୍ମ । ସାଗରିକାର ଗର୍ଭରେ ଥିବା ସନ୍ତାନକୁ ପିତୃତ୍ୱର ପରିଚୟ ଦେଇଛି । କିନ୍ତୁ ତଥାପି କାହାର ଅସଜଡ଼ା ଜୀବନ ସଜାଡ଼ି ହୋଇ ପାରିନାହିଁ ।

ଅଞ୍ଜନର ଏକାଧିକ ପତ୍ନୀ ଥିବା ସତ୍ତ୍ୱେ ସାଗରିକା ପ୍ରତି ଆସକ୍ତି, ବିନୋଦର ଜାଣିଶୁଣି ଅଞ୍ଜନ ଓ ସାଗରିକାଙ୍କୁ ନିକାଞ୍ଚନରେ ମିଶିବା ପାଇଁ ସୁଯୋଗ ଦେବା ଭିତରେ ନାଟ୍ୟଜଗତର ଚାରିତ୍ରିକ ଅସଜଡ଼ାପଣଟି ହିଁ ଦିଶୁଛି । ଦୀନବନ୍ଧୁ ଦାସ(ଟିମା)ଙ୍କ ଆତ୍ମଜୀବନୀ 'ଜଣେ କଳାକାରର କାହାଣୀ' ପଦୁର ସ୍ୱୀକାରୋକ୍ତିକୁ କେତେକାଂଶରେ ପ୍ରଭାବିତ କରିଥିବା ମନେହୁଏ।

ପରବର୍ତ୍ତୀ ପର୍ଯ୍ୟାୟରେ ରଚିତ 'ଶେଷକଥା' ନାଟକଟି 'ନିଷିଦ୍ଧ ସଂଳାପ' ସହ ସୂକ୍ଷ୍ମ ସମ୍ପର୍କରେ ସଂଯୋଗୀକୃତ। ଏହି ନାଟକର ପୃଷ୍ଠଭୂମିରେ ମଧ୍ୟ ଜଣେ କଳାକାରର ଅସହାୟତା ଦେଖିବାକୁ ମିଳେ। ନାୟକ ସନ୍ତୋଷ ଚୌଧୁରୀ ଅଭିନୟ ପାଇଁ ଘର ଛାଡ଼େ। ତା'ର ବୈବାହିକ ଜୀବନ ଭାଙ୍ଗିଯାଏ, ଦୁଇ ପୁଅ, ସ୍ତ୍ରୀ ଓ ବୃଦ୍ଧ ପିତାଙ୍କ ଦାୟିତ୍ୱକୁ ପଛରେ ପକାଇ ସେ ମଞ୍ଚମାୟାର ଏକାତ୍ମ ହୋଇଯାଏ। ମାତ୍ର ବୟସ ବଢ଼ିବା ପରେ ତାଙ୍କର ଶାରୀରିକ ଅସାମର୍ଥ୍ୟତାକୁ ଆଳ କରି ତାଙ୍କୁ ମଞ୍ଚରୁ ଦୂରେଇ ଦିଅନ୍ତି ମଞ୍ଚପରିଚାଳକ ପଣ୍ଡାବାବୁ। ଏପଟେ ସନ୍ତୋଷର ପିତା ବୁଢ଼ାଚୌଧୁରୀ ନିଜର ଦୁଇ ନାତି ପ୍ରକାଶ ଓ ସିଲୁଙ୍କୁ ମଣିଷ କରିବାରେ ତା'ର ସମୟ ବିତାଏ । ପ୍ରକାଶ ସହିତ ବେବୀର ବିବାହ ସହିତ ଭିନ୍ନ ଏକ ପ୍ରସଙ୍ଗ ନାଟକର କାହାଣୀ ସହିତ ମିଶିଯାଏ । ବୁଢ଼ା ଚୌଧୁରୀ ଓ ପ୍ରକାଶ-ସିଲୁ-ବେବୀଙ୍କର ଚିନ୍ତାଧାରାଗତ ବ୍ୟବଧାନ ଭିତରେ ନାଟକ ଆଗକୁ ଯାଏ। ମାତ୍ର ପ୍ରତି କ୍ଷେତ୍ରରେ ନାୟକ ସନ୍ତୋଷ ଚୌଧୁରୀଙ୍କ ଜୀବନ ସଂଘର୍ଷ, ମାନସିକ ଦ୍ୱନ୍ଦ୍ୱବୋଧ ଓ ଅସହାୟତା ହିଁ ନାଟକକୁ ପ୍ରଭାବିତ କରେ। ମଞ୍ଚ ଅଭିନେତ୍ରୀ ସରସ୍ୱତୀଙ୍କ ସହ ସନ୍ତୋଷଙ୍କର ଆବେଗିକ ନିବିଡ଼ତା ନାଟକକୁ ଭିନ୍ନ ସ୍ପର୍ଶ ଦିଏ । କିନ୍ତୁ ଉପରୋକ୍ତ ଦୁଇ ନାଟକର ପୃଷ୍ଠଭୂମିଗତ ସାମ୍ୟତା ସତ୍ତ୍ୱେ କଥାନକ ପରିବେଷଣଗତ ଭିନ୍ନତା ଲକ୍ଷ୍ୟଣୀୟ।

ଏବେ 'ଶେଷ କଥା' ନାଟକର ପୂର୍ବରୁ ରଚିତ ଓ ପ୍ରଦର୍ଶିତ 'ଦୂର ଆକାଶର ତାରା' (୨୦୦୭) ନାଟକକୁ ଆସିବା। ନୀତି ଓ ଆଦର୍ଶବୋଧର ପୁରୋଧା ଦୁଷ୍ମନ୍ତଙ୍କ ପୁଅ ଭାରତ ଜଣେ ମେଧାବୀ ଛାତ୍ର। ମାତ୍ର ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବା ପରେ ମଧ୍ୟ ତା ନିକଟରେ ରୋଜଗାରର କୌଣସି ମାଧ୍ୟମ ନାହିଁ । ବାଲ୍ୟବନ୍ଧୁ ହୋଇଥିବା ସତ୍ତ୍ୱେ ଦୁଷ୍ମନ୍ତ ବାବୁ ଓ ମନ୍ତ୍ରୀ ଅରବିନ୍ଦ ପଟ୍ଟନାୟକଙ୍କ ବୈଚାରିକ ଦ୍ୱନ୍ଦ୍ୱ ଭିତରେ ନଷ୍ଟ ହୋଇଯାଇଚି ଭାରତର ଜୀବନ। ଭାରତ ଓ ଦେବିକା ଏକତ୍ର ଦେଖିଥିବା ସ୍ୱପ୍ନ ସାକାର ହୋଇପାରୁନି। ରାଜନୀତିର ପଶାପାଲିରେ ଲଟକି ଯାଇଛି ଭାରତ ଭଳି ଛାତ୍ରମାନଙ୍କର ଭବିଷ୍ୟତ। ନାଟକଟିରେ ବିଶ୍ୱବିଦ୍ୟାଳୟସ୍ତରୀୟ ନିର୍ବାଚନ ରତ୍ନାକର ଚଇନିଙ୍କ 'ନାଗଫେଣୀ ଋତୁ' ନାଟକଟିକୁ ମନେ ପକେଇଦିଏବ। ମାତ୍ର 'ଦୂର ଆକାଶର

ତାରା'କେବଳ ବିଶ୍ୱବିଦ୍ୟାଳୟ ନିର୍ବାଚନ ପ୍ରସଙ୍ଗରେ ଅଟକିଯାଇନାହିଁ। ଦୁଷ୍ମନ୍ତ ଓ ଭାରତ -- ଉଭୟଙ୍କ ଭିତରର ପିଢ଼ିଗତ ଦ୍ୱନ୍ଦ୍ୱ ମଧ୍ୟ ନାଟକର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ନିଜ ପାଇଁ ସାଲିସ୍‌ପଣର ଯେଉଁ ପ୍ରସ୍ତାବ ଧରି ବିଶ୍ୱଜିତ୍‌ଙ୍କ 'ମୃଗୟା'ର ସାରଥି ତାର ବାପା ବିବେକାନନ୍ଦଙ୍କ ପାଖକୁ ଆସିଥିଲା, ଭାରତ ଓ ଦୁଷ୍ମନ୍ତଙ୍କ କଥୋପକଥନ ସେହି ଦୃଶ୍ୟ ମଧ୍ୟ ତିଆରେ । କିନ୍ତୁ ନାଟକରେ ଅନ୍ତିମ ପର୍ବରେ ଭାରତର ମୃତ୍ୟୁ ସହିତ ସତେ ଯେମିତି ପରିବର୍ତ୍ତନ ପ୍ରୟାସୀ ଆଭିମୁଖ୍ୟଟି ଅଧାରେ ରହିଯାଏ । ପରିବର୍ତ୍ତନ ପାଇଁ ପ୍ରୟାସ କରୁଥିବା ସବୁ ନଈର ଧାର କ'ଣ ମରୁଭୂମିରେ ହଜିଯିବା ପାଇଁ ହିଁ ଆଗେଇଯାଏ । ଭାରତ ଭଳି ଚରିତ୍ରମାନେ ଜୀବଦ୍ଦଶାରେ ଅବୁଝାପଣରେ ଜୀବନ ବିତାନ୍ତି ସିନା, ଦୂର ଆକାଶର ତାରା ହୋଇ ନିଷ୍ପ୍ରଭ ହୋଇଯାଆନ୍ତି। ଜୀବନର ଏଇ ବାସ୍ତବ ଦିଗକୁ ସାମ୍ନାକୁ ଆଣିଚନ୍ତି ନାଟ୍ୟକାର। ସଂଳାପ କୋମଳ ହେଲେ ହେଁ ତୀବ୍ର ଆବେଦନ ସୃଷ୍ଟିକାରୀ । ପ୍ରତ୍ୟେକ ଚରିତ୍ରର ଦ୍ୱିଧା-ଶଙ୍କା-ପୀଡ଼ା ଓ ଅକୁହା ରହିଯିବାର ଦରଜକୁ ଦେଖିଲେ ନାଟ୍ୟ ଚରିତ୍ରଗୁଡ଼ିକର ଅସହାୟତା ବାରିହୁଏ। ଜୀବନର ସେଇ ଅସହାୟ ପରିସ୍ଥିତିମାନଙ୍କୁ ଆମେ ମଞ୍ଚ ତଳେ ବି ଭେଟୁନାହେଁ କି ! ମୋଟ୍ ଉପରେ 'ଦୂର ଆକାଶର ତାରା' ଜୀବନବୋଧର ଏକ ଅଦେଖା କ୍ଷତ ଓ ଅବ୍ୟକ୍ତ ଦରଜ ହିଁ ଦେଖାଏ।

ଲକ୍ଷ୍ୟ କରିବାର କଥା ହେଉଛି ଯେ ଆଧୁନିକ ନାଟକର ମୁଖ୍ୟ ଚରିତ୍ର (Protagonist) ଅଧିକାଂଶ ସମୟରେ ପରାଜୟର ସାମ୍ନା କରେ । ଏ ପରାଜୟ କେବଳ ବ୍ୟକ୍ତିବିଶେଷର ନୁହେଁ, ବରଂ ଚିରନ୍ତନ ମୂଲ୍ୟବୋଧର, ବିଚାରଜନିତ ଚିନ୍ତାଧାରାର । ଏହି ପରାଜୟ ମଞ୍ଚରେ ଚରିତ୍ରଟିକୁ ଅସହାୟ କରିଦିଏ ସିନା, ଦର୍ଶକ କିନ୍ତୁ ପ୍ରତିକ୍ରିୟାଶୀଳ ହୁଏ। 'ନାଟ୍ୟକାର ଏ ନାଟକର ପରିଣତି ଭିନ୍ନ ଢଙ୍ଗରେ କରିପାରିଥାନ୍ତେ' କହିବା ଭିତରେ ଦର୍ଶକ ନାଟ୍ୟ ଚରିତ୍ରଟି ପ୍ରତି ଆକୃଷ୍ଟ ହୋଇ ସାରିଥାଏ । ଚରିତ୍ରଟିର ଅସହାୟତା ହିଁ ଦର୍ଶକକୁ ଗ୍ରାସ କରେ। ତାରି ଭିତରୁ ତିଆରି ହୁଏ ଗୋଟେ ମାନସିକ ମନ୍ଥନର ପ୍ରକ୍ରିୟା। ଚରିତ୍ରଟିର ଅସହାୟତା ଓ ଯନ୍ତ୍ରଣାକୁ ନେଇ ଦର୍ଶକର ପ୍ରତିକ୍ରିୟାଶୀଳ ହେବା ହିଁ ଦର୍ଶକକୁ ନାଟ୍ୟ ପରିସର ସହିତ ଆବେଗିକ ଭାବରେ ଯୋଡ଼ିଦିଏ ଓ ସେ କ୍ରମେ କ୍ରମେ ନାଟ୍ୟ-ବକ୍ତବ୍ୟ ପାଖରେ ପହରେ। ନିଜର ଅଧିକାଂଶ ନାଟକରେ ନାଟ୍ୟକାର କଥା କହିବାର ଏଇ ବାଗଟି ଗ୍ରହଣ କରିଛନ୍ତି। ସାମସମୟିକ ବ୍ୟବସ୍ଥା ବିରୋଧରେ ଶ୍ରୀଯୁକ୍ତ ସାହୁଙ୍କ ବିଦ୍ରୋହ ନାଟ୍ୟଚରିତ୍ରଗୁଡ଼ିକରୁ ବେଶ୍ ସ୍ପଷ୍ଟ। ହୁଏତ ଅଧ୍ୟାପକ ରଣଜିତ୍ ପଟ୍ଟନାୟକ (ପ୍ରାୟଶ୍ଚିତ) ଭଳି ସେ ପରାଜୟର ସାମ୍ନା କରିଥାଇପାରେ, ମାତ୍ର ପ୍ରଥାବଦ୍ଧ ଶଗଡ଼ଗୁଳାକୁ ଗ୍ରହଣ କରିପାରିନାହିଁ।

ନାରାୟଣ ସାହୁଙ୍କ ନାଟକର ଆରମ୍ଭ ମଧ୍ୟ ବେଶ୍ ଆକସ୍ମିକ ଓ ଦର୍ଶନୀୟ ପ୍ରଭାବ ବିସ୍ତରଣରେ ସଫଳ ମନେହୁଏ । କେଉଁଠି ଓସ୍ତାଦ୍-ଈଶ୍ୱରଙ୍କ ମାଙ୍କଡ଼ ନାଚ ଭିତରେ ବାରି ହୋଇ ପଡୁଥାଏ ଈଶ୍ୱରଙ୍କର ଅସହାୟତା (ଆଶ୍ରା ଖୋଜିବୁଲୁଥିବା ଈଶ୍ୱର) ତ କେଉଁଠି ବସ୍ତିବାସିନ୍ଦାଙ୍କ 'ବଡ଼ବଡ଼ିଆ ହୋ' ଭିତରେ ଦୀପାବଳି ପାଳନର ଉତ୍ତେଜନା (ସୁବର୍ଣ୍ଣ ସକାଳ) । ପୁଣି କାହିଁ ବୋଲବୋମ୍ ଯାତ୍ରୀଙ୍କ ଗୀତରୁ ଆରମ୍ଭ ହେଉଛି ନାଟକ (ମୂକ) ତ କେଉଁଠି ମଞ୍ଚରେ ଅଭିନୀତ ହେଉଚି ନାଟକ ପୂର୍ବରୁ ହେଉଥିବା ସଭାର ଦୃଶ୍ୟ (ନିଷିଦ୍ଧ ସଂଳାପ) । 'ଅଧା ଦେଖା ସ୍ୱପ୍ନ', 'ଦୂର ଆକାଶର ତାରା' କିମ୍ବା 'ମୂକ' ନାଟକରେ ପ୍ରଥମ ଦୃଶ୍ୟ ସହିତ ଅନ୍ଧକାରକୁ ଯୋଡ଼ି ନାଟ୍ୟ ଉତ୍କଣ୍ଠାଜନିତ ପରିସରଟିଏ ତିଆରି କରାଯାଇଛି । କାହାଣୀ ଭାଗକୁ ପରସ୍ପର ସହ ସଂଯୋଜିତ କରିବା ନିମିତ୍ତ 'କାହାଣୀ ସବାଶେଷ ଲୋକର' ନାଟକରେ ନିଆଯାଉଛି ଦାସ୍କାଠିଆର ସାହାଯ୍ୟ । 'ସୁବର୍ଣ୍ଣ ସକାଳ'ରେ ମର୍କତକେଶରୀ ଓ ବାଇମୁଣ୍ଡିଙ୍କ କଥା କହି ଲୋକଙ୍କ ସ୍ମୃତିରେ ବଞ୍ଚିରହିବା ମୋଟିଫ୍‌ଟିକୁ ଗ୍ରହଣ କରି ସେଇ ଦୁଇ ଚରିତ୍ରଙ୍କ ଉପରେ ହିଁ ନାଟକର ଭାର ଲଦି ଦିଆଯାଉଛି । ଏଣୁ ନାଟକଗୁଡ଼ିକର ଆରମ୍ଭ ତଥା ନାଟ୍ୟଦୃଶ୍ୟର ପାରସ୍ପରିକ ସଂଯୋଗ ନିମିତ୍ତ ନାଟ୍ୟକାରଙ୍କ ପରୀକ୍ଷା ନିରୀକ୍ଷାଧର୍ମୀ ପ୍ରୟାସଟି ଦେଇଛି ସତେଜତାର ସ୍ପର୍ଶ ।

ନାଟ୍ୟକାର ସାହୁଙ୍କର ନାଟକଗୁଡ଼ିକୁ ଏକାଠି କଲେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ସାମ୍ନାକୁ ଆସେ । ସାମ୍ପ୍ରତିକ ଘଟଣାବଳୀ ନିମିତ୍ତ ଆଖି ଖୋଲା ରଖି ସମସ୍ୟା ଓ ତା'ର ସମାଧାନ ନିମନ୍ତେ ନାଟକ ଲେଖୁଥିବା ନାଟ୍ୟକାରଙ୍କ ସଂଖ୍ୟା ସବୁବେଳେ କମ୍ । ପୁନଶ୍ଚ ନାଟ୍ୟକାରଙ୍କ ପ୍ରଭାବିତ କରିଥିବା ତତ୍ତ୍ୱଟି ଯଦି ଆବଶ୍ୟକତା ଠାରୁ ଅଧିକ ପ୍ରଭାବ ବିସ୍ତାର କରି ନାଟକର ମୂଳ ବକ୍ତବ୍ୟକୁ ଆଛନ୍ନ କରିପକେଇବ, ତେବେ ନାଟକର ଅସଲ ଉଦ୍ଦେଶ୍ୟଟି ବ୍ୟାହତ ହେବା ସ୍ୱାଭାବିକ । ତତ୍ତ୍ୱଧର୍ମୀ ହେବା ଅପେକ୍ଷା ବରଂ ଭଲ ହେବ, ଆମେ ଯାହା କହିବାକୁ ଚାହୁଁଛୁ, ଯଦି ତାହା ଆଉ ଜଣେ ଠିକ୍ ବୁଝିପାରିଲା । ଏଇ ସରଳତା ହିଁ ନାଟ୍ୟକାର ସାହୁଙ୍କ ନାଟକର ଉଲ୍ଲେଖଯୋଗ୍ୟ ଘଟଣା । ଅବଶ୍ୟ କେତେକ କ୍ଷେତ୍ରରେ ନାଟ୍ୟକାର ଘଟଣାବଳୀମାନଙ୍କୁ ଅଧିକ ମାତ୍ରାରେ ପ୍ରକାଶ କରି ନାଟକର ପ୍ରତୀକାତ୍ମକ ଦିଗକୁ ସାମାନ୍ୟ କ୍ଷୀଣ କରିଦେଇଛନ୍ତି ବୋଲି ଅଭିଯୋଗଟିଏ ଅଣାଯାଇପାରେ । ମାତ୍ର ନାଟକର ସାବଲୀଳତା ଓ ଦର୍ଶକଙ୍କ ପାଖରେ ନାଟ୍ୟବକ୍ତବ୍ୟ ପହଞ୍ଚିବା ଜନିତ ସୁବିଧା ସୁଯୋଗ ଦୃଷ୍ଟିରୁ ବିଚାରିଲେ ନାଟକଗୁଡ଼ିକରେ ସଫଳତା ଅନୁମେୟ । ସିଧାସଳଖ ଦର୍ଶକଙ୍କ ପାଖରେ ପହଞ୍ଚିବାର ଯେଉଁ କଳା-କାରିଗରୀରେ ଶ୍ରୀଯୁକ୍ତ ସାହୁ ବିଶ୍ୱାସ କରନ୍ତି, ସାମ୍ପ୍ରତିକ ନାଟ୍ୟଧାରାର ତାହା ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ନାଟକର ବକ୍ତବ୍ୟ, ଅଭିନୟ,

ପରିବେଷଣ ଶୈଳୀ ଯଦି ଦର୍ଶକୀୟ ଗ୍ରହଣଶୀଳତାରେ ଦୁର୍ବୋଧ ହୋଇଗଲା, ତେବେ ନାଟକ ସାଧାରଣରୁ ଦୂରେଇଯିବାର ଭୟଟିଏ ତିଆରି ହେବ । ଶ୍ରୀଯୁକ୍ତ ସାହୁଙ୍କ ନାଟକର ସ୍ୱର ପ୍ରତିବାଦର ସ୍ୱର। ସେ ସ୍ୱର ସ୍ଲୋଗାନଧର୍ମୀ ନୁହେଁ, ଚରିତ୍ର-ଘଟଣା-ପରିସ୍ଥିତି ସହିତ କାହାଣୀଭାଗକୁ ମିଶେଇ ତିଆରି ହେଉଥିବା ପରିବେଶ ମଧ୍ୟ ଅତ୍ୟନ୍ତ ହୃଦୟଗ୍ରାହ୍ୟ। "ଡକ୍ଟର ସାହୁଙ୍କର ପ୍ରତ୍ୟେକଟି ନାଟକ ସାମାଜିକ ଅଙ୍ଗୀକାରବଦ୍ଧତାର ନାଟକ । ପ୍ରତ୍ୟେକରେ ସମାଜ-ମଣିଷମାନଙ୍କ ପ୍ରତି ଅଛି ସ୍ୱଷ୍ଟ ଓ ବଳିଷ୍ଠ ବାର୍ତ୍ତା । ଏହି ବାର୍ତ୍ତା କିନ୍ତୁ କେଉଁଠି ପ୍ରଚାରଧର୍ମୀ ନୁହେଁ, ଚରିତ୍ରମାନଙ୍କ କ୍ରିୟାକଳାପ ଓ ସଂଳାପ ମଧ୍ୟ ଦେଇ ବିଷୟ ବା ଥିମ୍‌ଗର୍ଭିତ । ଫଳରେ ଡକ୍ଟର ସାହୁ ନିରୋଳା ପ୍ଲେ-ରାଇଟ୍ ହୋଇନାହାନ୍ତି ବା ନିରୋଳା ଡ୍ରାମାଟିଷ୍ଟ ହୋଇନାହାନ୍ତି; ହୋଇଛନ୍ତି ଉଭୟର ମଧୁର ସମନ୍ୱୟ ।"(ସାମଲ, ବୈଷ୍ଣବ ଚରଣ, କ୍ରାନ୍ତି+ (ପ୍ରଥମଭାଗ) ମୁଖବନ୍ଧ, ପୃ-୫)

ମଣିଷକୁ ନେଇ ହିଁ ତାଙ୍କ ନାଟକର ସୀମା ଓ ସରହଦ । ଆଧୁନିକ ମଣିଷ ସାମ୍ନା କରୁଥିବା ସାମାଜିକ ବିସଙ୍ଗତିବୋଧ ପ୍ରତି ସଚେତନ ସେ । ସେଇ ବିସଙ୍ଗତିବୋଧ ବ୍ୟକ୍ତିଗତ ନୁହେଁ ବରଂ ସାମୂହିକ । ନାଟକର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଚରିତ୍ର କହୁଥିବା କଥା କ'ଣ ସତରେ ସେଇ ନିର୍ଦ୍ଦିଷ୍ଟ ଚରିତ୍ରଟି ଭିତରେ ସୀମିତ ! "ସେହି ମଣିଷର ହସ-କାନ୍ଦ, ସୁଖ-ଦୁଃଖ, ଆଶା-ନିରାଶା, ଅହଂକାର, ଆତ୍ମପୀଡ଼ନ, ବ୍ୟକ୍ତିବାଦୀ ଚିନ୍ତାଧାରା, ସ୍ଥିତିପ୍ରତି ସଂଶୟାତ୍ମକ ଦୃଷ୍ଟି, ଯୁକ୍ତିସର୍ବସ୍ୱ ଜୀବନ, ବୃଥା ଆସ୍ଫାଳନ, ନିଃସଙ୍ଗତା, ଅପ୍ରାପ୍ତଜନିତ ଅବସୋସ ଓ ମାନସିକ ସମ୍ବେଦନଶୀଳତା ହୋଇଚି ତାଙ୍କ ନାଟକର ମୁଖ୍ୟ ସ୍ୱର । ତାଙ୍କ ସୃଷ୍ଟ ଚରିତ୍ରଗୁଡ଼ିକ ପ୍ରତି ନିୟତ ଆମ ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା ସାଧାରଣ ମଣିଷ । ତେଣୁ ସେମାନଙ୍କୁ ଖୋଜିବାକୁ ବେଶୀ ଦୂର ଯିବାକୁ ପଡ଼େନି । ସମସାମୟିକ ସାମାଜିକ ଚିନ୍ତନ ସହିତ ବାର୍ତ୍ତମାନିକ ମଣିଷର ଅନ୍ତଃରୂପ ଉଦ୍‌ଘାଟନ କରି ସେ ନିଜ ପାଇଁ ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଛନ୍ତି।"(ପ୍ରଧାନ, କୃଷ୍ଣଚନ୍ଦ୍ର, ଅପରାହ୍ନର ଅବସୋସ, ଦୂର ନିରନ୍ତର ଶିକ୍ଷା ନିର୍ଦ୍ଦେଶାଳୟ, ପୃ-୫) ନାଟ୍ୟକାହାଣୀର ସରଳତା ସହିତ କଥା ପ୍ରକାଶଭଙ୍ଗୀର ଭିନ୍ନତା ହିଁ ନାରାୟଣ ସାହୁଙ୍କ ନାଟକକୁ ଦିଏ ଆବେଗମିଶ୍ରିତ ସହୃଦୟତା। ସମ୍ବେଦନଶୀଳ ବିଷୟବସ୍ତୁକୁ କାହାଣୀଟିଏ ସହିତ ଯୋଡ଼ିଦେଇ ବକ୍ତବ୍ୟ ଉପସ୍ଥାପନ କରିବାର ଏଇ କଥକସୁଲଭ ଶୈଳୀ ନାଟକ ସବୁକୁ ପରିବେଷଣ ନିମିତ୍ତ ବୋଧଗମ୍ୟ କରାଏ ଏବଂ ପଠନ ନିମିତ୍ତ ସରସତା ମଧ୍ୟ ।

ସ୍ୱୀକାର କରାଯାଇପାରେ ଯେ; ନାରାୟଣ ସାହୁଙ୍କ ନାଟକରେ ସାମାଜିକ ଦାୟବଦ୍ଧତାର ପରିମାଣ ପ୍ରଚଳିତ ଧାରା ଠାରୁ ଭିନ୍ନ ଏବଂ ତୀବ୍ର । ସମାଜ ପ୍ରତି

ଅଙ୍ଗୀକାରବଦ୍ଧତା, ଶୋଷିତ ପ୍ରତି ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଓ ସହୃଦୟତା ତଥା ଉଦାର ମାନବିକତା ତାଙ୍କର ନାଟକକୁ ପ୍ରଭାବିତ କରିଛି, ଆବେଗାତ୍ମକ ମଧ୍ୟ କରିଛି । ମାତ୍ର ଆବେଗ ଭିତରେ ପ୍ରତିବାଦର ସ୍ୱର ଲୁହ ଭଳି ବହିଯାଇନି । ବରଂ ଯୁଗଯୁଗର ପୁଞ୍ଜିଭୁତ ଅସନ୍ତୋଷ ଲୁହ ହୋଇ ନ ପାରି ସେମିତି ଲୁଚି ରହିଛି ଛାତିରେ । ସେଇ କୋହରୁ ହିଁ ପ୍ରତିବାଦର ସ୍ୱର ବାହାରୁଚି । ପ୍ରତିବାଦ ପୁଣି ବ୍ୟକ୍ତିର ନୁହେଁ, ସମୂହର । ଚାଲିବା ଆଉ ଝୁଣ୍ଟିବାର ଏଇ ଜୀବନବୋଧ ଭିତରେ ଚରିତ୍ରମାନେ କିନ୍ତୁ ପରାଜୟ ସ୍ୱୀକାର କରିବାକୁ ନାରାଜ । ସେମାନେ ଅପେକ୍ଷା କରନ୍ତି ନୂତନ ସୂର୍ଯ୍ୟୋଦୟର । ଅପେକ୍ଷାର ସେଇ ପର୍ବ ସହିତ ପରିବର୍ତ୍ତନ ପ୍ରୟାସୀ ଆଭିମୁଖ୍ୟଟିଏ ମଧ୍ୟ ଜଡ଼ିତ ହୋଇଥାଏ ।

ପ୍ରତିବାଦ ଓ ପ୍ରତିବଦ୍ଧତାର ଏ ସ୍ୱର ନାରାୟଣ ସାହୁଙ୍କ ଆଗାମୀ ନାଟକ ସବୁକୁ କେତେ ପ୍ରଭାବିତ କରୁଚି, ଦେଖିବାକୁ ବାକି ରହିଲା ।

ଜ୍ଞାନୀ ଦେବାଶିଷ ମିଶ୍ର

# 'ନିଷିଦ୍ଧ ସଂଳାପ' ପାଇଁ କିଛି ନାଟକୀୟ ସଂଳାପ

**ଡ. ରମେଶପ୍ରସାଦ ପାଣିଗ୍ରାହୀ**

ନାଟକଟି ପଢ଼ିସାରିଲା ପରେ ଏହାର ଶୀର୍ଷକ 'ନିଷିଦ୍ଧ ସଂଳାପ' କାହିଁକି ହେଲା ବୁଝିପାରି ନଥିବା ସତ୍ତ୍ୱେ ଏହି ନାଟକ ସମ୍ପର୍କରେ କିଛି ପାଠକୀୟ ପ୍ରତିକ୍ରିୟା ପ୍ରକାଶ କରିବାର ଲୋଭ ସମ୍ଭାଳି ହେଉନାହିଁ। ଡଃ ନାରାୟଣ ସାହୁଙ୍କ ସମବୟସ୍କ ନାଟ୍ୟକାର ପ୍ରମୋଦ ତ୍ରିପାଠୀ, ଆକାଶ, ରଣଜିତ୍ ପଟ୍ଟନାୟକ, ବିଜୟ କୁମାର ପ୍ରଧାନ, ଗୋଲୋକ ତ୍ରିପାଠୀ, ସଂକର୍ଷଣ ଜେନା, ମନୋଜ ପଟ୍ଟନାୟକ, ଧୀର ମଲ୍ଲିକ, ପ୍ରଦୀପ କୁମାର ରଥ, ସରୋଜ ମିଶ୍ର, ହୃଷିକେଶ ପଣ୍ଡା, ରମାକାନ୍ତ ମହାନ୍ତି, ଡୋଳାମଣି କାଂଧେର ଓ ନବୀନ ପରିଡ଼ା ପ୍ରଭୃତିଙ୍କ ନାଟ୍ୟଶୈଳୀ ଓଡ଼ିଆ ନାଟ୍ୟସାହିତ୍ୟକୁ ପରିମାଣାତ୍ମକ ପ୍ରାଚୁର୍ଯ୍ୟ ଯେତିକି ଦେଇଛି ତା'ଠାରୁ ଅଧିକ ଦେଇଛି ଶୈଳୀ ଓ ବସ୍ତୁଗତ ପାର୍ଥକ୍ୟ ଓ ନୂତନତା। ଏହି ନୂତନତା କିଛି ପରିମାଣରେ ପରମ୍ପରାର ଧାରାରେ ଓ ଅନ୍ୟକିଛି ବ୍ୟକ୍ତି ପ୍ରତିଭାର ଉନ୍ମେଷଶାଳିନୀ ଚମକ ଭିତରେ।

ଓଡ଼ିଆ ନାଟକର ଆଧୁନିକ ଯୁଗରେ ୧୯୫୪ ରୁ ୧୯୫୭ ଭିତରେ ଜନ୍ମଗ୍ରହଣ କରିଥିବା ଏହି ୧୫ ଜଣ ନାଟ୍ୟକାରଙ୍କ ଭିତରେ ଡ.ନାରାୟଣ ସାହୁ (୧୯୫୫) ସାହିତ୍ୟ ଏକାଡେମୀ ପୁରସ୍କାର ଓ ଆକାଶବାଣୀର ଶ୍ରେଷ୍ଠ ନାଟ୍ୟକାର ଭାବେ ପୁରସ୍କାର ପାଇଥିବା ଯେତେ ବଡ଼ କଥାନୁହେଁ, ତା'ଠାରୁ ବଡ଼ ତାଙ୍କର କାହାଣୀ ମନସ୍କତା। ଉପରୋକ୍ତ ଏହି ୧୫ ଜଣ ନାଟ୍ୟକାର ମନୋରଞ୍ଜନ-ବିଶ୍ୱଜିତ୍-ବିଜୟ ମିଶ୍ର ଯୁଗର ତଥାକଥିତ ଅଣନାଟକୀୟ, ପ୍ରତୀକାତ୍ମକ ଶୈଳୀ ଏବଂ ତଦ୍‌ଜନିତ ଆସନ୍ନ ଦୁର୍ବୋଧ୍ୟତାକୁ ପ୍ରତ୍ୟାଖ୍ୟାନ କରିଛନ୍ତି ଏବଂ କିଛିମାତ୍ରାରେ ଦୂରେଇ ଯାଇଛନ୍ତି ରମେଶ ପାଣିଗ୍ରାହୀ, କାର୍ତ୍ତିକ ରଥ, ରତ୍ନାକର ଚଇନି ଏବଂ ଅକ୍ଷୟ ମହାନ୍ତି ପ୍ରଭୃତିଙ୍କ ଚରିତପ୍ରଧାନ ନାଟକମାନଙ୍କଠାରୁ-ଯେଉଁ ନାଟକମାନଙ୍କରେ କାହାଣୀଟି ଗୌଣ, ଚରିତ୍ର ତଥା ଘଟଣା ମୁଖ୍ୟ।

ସେହିପରି ନୀଳାଦ୍ରି ଭୂଷଣ ହରିଚନ୍ଦନ, ସୁବୋଧ ପଟ୍ଟନାୟକ, ଦିଲ୍ଲୀଶ୍ୱର ମହାରଣା, ପ୍ରସନ୍ନ କୁମାର ଦାଶ, ପୂର୍ଣ୍ଣଚନ୍ଦ୍ର ମଲ୍ଲିକ, ମହେନ୍ଦ୍ର ଆଚାର୍ଯ୍ୟ, ଉପେନ୍ଦ୍ର ନାୟକ, ଅଧ୍ୟାପକ ରାମଚନ୍ଦ୍ର ମିଶ୍ର, ପ୍ରଦୀପ ଭୌମିକ, ବିଜୟ ଶତପଥୀ ଏବଂ ମିହିର ମେହେର ବା ରତି ମିଶ୍ରଙ୍କର ଶୈଳୀରେ ମଧ୍ୟ ଲେଖୁ ନାହାନ୍ତି ନାଟ୍ୟକାର ନାରାୟଣ ସାହୁ।

ଅବଶ୍ୟ, ଉପରେ ଯେଉଁ ନାଟ୍ୟକାରମାନଙ୍କ ନାମ ଦିଆଗଲା, ସେମାନେ ଓଡ଼ିଆ ନାଟକଟିକୁ ସହଜ ଓ କାହାଣୀଭିତ୍ତିକ କରିବାକୁ ଚେଷ୍ଟା କଲେ ମଧ୍ୟ ସେମାନେ କାହାଣୀରେ ପ୍ରତୀକ, ସାହିତ୍ୟିକ ଅନ୍ୱୟ ଏବଂ ରୂପକଳ୍ପିକ ନିର୍ମାଣମାନଙ୍କର ନାନ୍ଦନିକ ଆକର୍ଷଣକୁ ଏଡ଼ାଇ ପାରୁ-ନାହାନ୍ତି। ନୀଳାଦ୍ରି ଭୂଷଣ ଓ ବିଜୟ ଶତପଥୀ ମନୋରଞ୍ଜନଙ୍କ ବୌଦ୍ଧିକ ଶୈଳୀକୁ ଅନୁକରଣ କରୁକରୁ ସାଂଘାତିକ ଅଣନାଟକୀୟ ଗଦ୍ୟମୟତା ଓ ବୌଦ୍ଧିକ ରସଶୂନ୍ୟତା ଭିତରେ ଛଟପଟ ହେଉଛନ୍ତି। ଅଧ୍ୟାପକ ରାମଚନ୍ଦ୍ର ମିଶ୍ର ଓ ପୂର୍ଣ୍ଣ ମଲ୍ଲିକ, ନୀଳାଦ୍ରୀ ଓ ବିଜୟଙ୍କଠାରୁ ଅଧିକ ମଂଚଭିତିକ ଓ ନାଟକୀୟ ମନେ ହେଉଥିଲେ କି ଦୁର୍ବୋଧ୍ୟ। ସୁବୋଧ ପଟ୍ଟନାୟକ ନିଜେ ଅଭିନେତା ଏବଂ 'ଧୃତରାଷ୍ଟ୍ର ଆଖି' ପରି ନାଟକ ନିର୍ଦ୍ଦେଶକ ହୋଇଥିବା ସତ୍ତ୍ୱେ ତାଙ୍କର 'ହୋ ଭଗତେ'ର ଶିଳ୍ପ ଓ ଅଣରୈଖିକ ଗଳ୍ପାୟନ ସାଧାରଣ ଦର୍ଶକମାନଙ୍କୁ ବୋଧଗମ୍ୟ ହୋଇନପାରେ, ଅସ୍ପଷ୍ଟ ଆଖ୍ୟାନ କ୍ରୀଡ଼ାଯୋଗୁଁ।

କିନ୍ତୁ ଡ. ନାରାୟଣ ସାହୁଙ୍କ ଗୋଷ୍ଠୀର ୧୫ ଜଣ ନାଟ୍ୟକାର ନିଜ ନିଜ କୃତିର ସମସ୍ତ ବୌଦ୍ଧିକ ଆବେଦନ ରଖିଥିବା ସତ୍ତ୍ୱେ ଏକ ନୂତନ ଆଖ୍ୟାନ କୌଶଳ ଓ ଗଳ୍ପାୟନ ପଦ୍ଧତି ଆପଣାର କରି ନାଟକକୁ ଦର୍ଶକମାନଙ୍କର ନିକଟତର କରିବାର ପ୍ରୟାସ କରି ସଫଳ ହୋଇଛନ୍ତି। ମୋର ମନେହୁଏ ଡ. ନାରାୟଣ ସାହୁ ଜଣେ ଅଧ୍ୟାପକ (ଅର୍ଥାତ୍ ଜଣେ ବିଶ୍ଳେଷଣାତ୍ମକ ପାଠକ) ହୋଇଥିବାରୁ ସେ ତାଙ୍କର ଉପର ପିଢ଼ିର ପରମ୍ପରାକୁ ଭଲଭାବରେ ବୁଝିବାର କ୍ଷମତା ରଖିଛନ୍ତି ଏବଂ ନିଜ ନାଟକରେ ନାଟକୀୟତାର ସଂଳ ପ୍ରୟୋଗ କରିପାରୁଛନ୍ତି।

ତାଙ୍କ ପଢ଼ିର ନାଟ୍ୟକାରମାନଙ୍କ ଭିତରେ ଡ.ସାହୁଙ୍କ ସ୍ୱାତନ୍ତ୍ର୍ୟ ହେଲା ଯେ ସେ ଗୋଟିଏ ପଟେ ସମ୍ପୂର୍ଣ୍ଣ ଆବେଗିକ ଓ ନାନ୍ଦନିକ ହୃଦୟଟିଏର ଅଧିକାରୀ ହେଲାବେଳେ ଅନ୍ୟପଟେ ଆଧୁନିକ ମଂଚ ପାଇଁ ଲେଖୁଥିବା ଅଧିକାଂଶ ଭାରତୀୟ ଓ ଓଡ଼ିଶୀ ନାଟକମାନଙ୍କର ଉତ୍ସାହୀ ଦ୍ରଷ୍ଟା। ଫଳରେ ତାଙ୍କର ଆଖ୍ୟାନ ଶୈଳୀ ସାବଲୀଳ, ଭାଷା ସମୟେ ସମୟେ ଆବେଗ ଗୁମ୍ଫିତ ଓ ତରଳ।

'ନିଷିଦ୍ଧ ସଂଳାପ' ପଢୁପଢୁ ଆରମ୍ଭରୁ ହିଁ ମୁଁ ଝୁଂଟିଲି, କାରଣ ମୋର ଆତ୍ମଲିପି (୧୯୭୬) ନାଟକଟା ଆରମ୍ଭ ହେଉଛି 'ଏଇ ଜୀବନଟା ଏକ ନାଟକ' ଗୀତରୁ ଏବଂ ଡ. ସାହୁଙ୍କ ନାଟକ ଆରମ୍ଭ ହେଉଛି ସେଇ ଗୀତର ଦ୍ୱିତୀୟ ଅନ୍ତରାଳରୁ। 'ଆତ୍ମଲିପି'ର ଶେଷ ଦୃଶ୍ୟରେ ଶେଲୀ 'ଆତ୍ମଲିପି'ର ପାଣ୍ଡୁଲିପିଟାକୁ ନାଟ୍ୟକାର ସାମ୍ନାରେ ଜାଳିଲାବେଳେ ଭାଙ୍ଗି ପଡୁ ପଡୁ ଶୁଭୁଛି "ଶେଷ ଅଙ୍କରେ ଶେଷ ଯବନିକା..."ଏବଂ ଡ. ସାହୁଙ୍କ ନାଟକର ଆରମ୍ଭ ଏଇଠୁ।

ଡ.ସାହୁ 'ନିଷିଦ୍ଧ ସଂଳାପ'ରେ ମଧ୍ୟ ମନ୍ମଥଙ୍କ ନାଟକର 'କର୍ମକର୍ତ୍ତା' ଚରିତ୍ର ପରି ନାଟ୍ୟଭାରତୀର କର୍ମକର୍ତ୍ତା ଆଶୀଷ ମହାପାତ୍ର ମାଇକ୍ରୋଫୋନ୍ ଧରୁଛନ୍ତି। ଏ ସବୁ

ଲେଖିବାର ଉଦ୍ଦେଶ୍ୟ ନୁହେଁ "ପ୍ରଭାବ ଅଧ୍ୟୟନ"କରିବା। "ପ୍ରଭାବ ଅଧ୍ୟୟନ" ତୁଳନାତ୍ମକ ସାହିତ୍ୟ ସମୀକ୍ଷାର ଶୃଙ୍ଖଳାରେ ଅନ୍ତର୍ନିହିତ ଥିବା ଏକ ବଳିଷ୍ଠ ଅଧ୍ୟାୟ ହୋଇଥିଲେ ସୁଦ୍ଧା ମୁଁ 'ନିଷିଦ୍ଧ ସଂଳାପ'ର ମୁଖବନ୍ଧ ଲେଖିଲାବେଳେ ପ୍ରଭାବ ଅଧ୍ୟୟନ ପ୍ରସଙ୍ଗକୁ ଯିବି ନାହିଁ, ସେପଟକୁ ଗଲେ ପ୍ରଥମ ଶରବ୍ୟ ହେବେ ଫକୀର ମୋହନ ସେନାପତି ଓ ଗୋପୀନାଥ ମହାନ୍ତି-ବଙ୍ଗଳା ପଢି ଓଡ଼ିଆ ଉପନ୍ୟାସ ଲେଖିଥିବା ପର୍ଯ୍ୟାୟରେ ଉଭୟ ଆଧୁନିକ ସୃଜନ ଶିଳ୍ପାୟନ ଓ ସୃଜନ ବିପଣନର ଧାରାରେ 'ଜ୍ଞାନପୀଠ' ଓ 'ସରସ୍ୱତୀ' ପୁରସ୍କାର ISI ମାର୍କା ସାହିତ୍ୟ ନାମକ ଉପଭୋକ୍ତା ସାମଗ୍ରୀକୁ ଅଧିକ ପ୍ରସାର/ ବିକ୍ରୟ/ପଠନଯୋଗ୍ୟ କରିପାରୁନାହିଁ, ସେ ଗୁଡ଼ିକ ଟି.ଭି. ଓ ଖବରକାଗଜ ଇଂଟରଭ୍ୟୁ ଶେଷ ହେଲା ପରେ କେବଳ ଡ୍ରଇଂରୁମ୍‌ର ଶୋଭାବର୍ଦ୍ଧନ କରନ୍ତି। କିନ୍ତୁ ଯେଉଁ ଫାଲ୍‌ତୁ ଉପାୟରେ କ୍ଷମତାଶାଳୀ ସାହିତ୍ୟକିଟି ନିଜପାଇଁ ଏଇ ମହାନ୍ ପୁରସ୍କାରଗୁଡ଼ିକ ଯୋଗାଡ଼ କରିଥାଏ ତାକୁ ପୁରସ୍କାର ର୍ୟାକେଟ୍‌ର ମାଫିଆ ଗୁଣ୍ଡା ଓ ଗ୍ୟାଙ୍ଗ୍‌ମାଷ୍ଟରମାନଙ୍କ ଦ୍ୱାରା ଏତେ ପରିମାଣରେ ଶୋଷଣ କରାଯାଇଥାଏ ଯେ ତା'ର ଆତ୍ମାଟି ଫୋପଡ଼ା ଯିବା ପୂର୍ବର ଆମ୍ବପରି ଦିଶେ। ବହୁ ପୁରସ୍କାର ଏବଂ "ପଦ୍ମଶ୍ରୀ" ଇତ୍ୟାଦି ପୁରସ୍କାର ଯୋଗାଡ଼ କରିଥଇବା ଏହି କଳଙ୍କିତ ଅନ୍ତର୍ପୁରୁଷଟି ହଠାତ୍ ନିଜ ବିଭଙ୍ଗ ମାନସିକତାର ରୂପ ସମ୍ଭାଳି ନପାରି Schitzophreniaର ଶିକାର ହେଇଯାଏ ଏବଂ ନିଜ ପୁରସ୍କାର ଓ ଖାଦ୍ୟମାନଙ୍କ ଉପରେ ନିଜେ ପରିସ୍ରା କରେ। ନିଜପ୍ରତି ଜମାଟ ବାନ୍ଧିଥିବା ଘୃଣା ଏମିତି ତରଳିଯାଏ ଅନ୍ତିମ ଦୃଶ୍ୟରେ। ଆତ୍ମିକ ଓ ମାନସିକ ବିପର୍ଯ୍ୟୟରେ।

ଡ. ସାହୁ ଜଣେ ସ୍ରଷ୍ଟାର ଦୟାର୍ଦ୍ର ଆଖିରେ ଦେଖିଛନ୍ତି "ପୁରସ୍କାର"ର ଏଇ ଛଦ୍ମ ପୃଥିବୀ ଭିତରେ ଖୁନ୍ଦି ହୋଇ ରହିଥିବା ଆତ୍ମପ୍ରତାରଣାମାନଙ୍କୁ। ତେଣୁ ନାଟକର ନାୟକ ଜଣେ ନାଟ୍ୟକାର। ମୃତ ନାଟ୍ୟକାର । ନିଜ ସଂବେଗ ସଂସ୍କୃତ ନିୟତିକୁ ସାକ୍ଷୀ ରଖି ନିଜ ପ୍ରାଣବାୟୁଟିକୁ ଚାରମିନାର୍ ଦୁର୍ଗ ସାମ୍ନାର ପାରାମାନଙ୍କ ପରି ଉଡ଼େଇ ଦେଲାପରେ ତା'ର ମରଣୋତ୍ତର ପୁରସ୍କାର ନେବା ପାଇଁ ଆସୁଛନ୍ତି ନାଟ୍ୟ ନାୟକ, ନାଟ୍ୟନାୟିକା, ନାଟ୍ୟଚରିତ୍ର (ପଦ୍ମ) ଓ ନାଟ୍ୟ ନିର୍ଦ୍ଦେଶକ ଇତ୍ୟାଦି। ସମସ୍ତଙ୍କ ଭିତରେ ଚାଲିଛି "ଅହଂ"ର ଯୁଦ୍ଧ। ନିଜ ନିଜ ସୁନ୍ଦର ଶରୀରମାନଙ୍କୁ ମଂଚ ଆଲୁଅରେ ପ୍ରଦର୍ଶନ କରି/ବିକ୍ରୀ କରି ମନୋରଞ୍ଜନ ବଜାରରେ ପ୍ରତିଷ୍ଠା ପାଇବାକୁ ହେଲେ ଏପରି "ଅହଂ"ର ଯୁଦ୍ଧ କରିବାକୁ ହୁଏ। ଭାଗ୍ୟବଶତଃ. ସମସ୍ତ ମୂର୍ଖଣାକାଳିଆ ଏବଂ କେହି ବୁଝୁ ନାହାନ୍ତିଯେ ନାଟ୍ୟାୟନ ଏକ ସମବାୟ କଳା : ଗଣତାନ୍ତ୍ରିକ ଶାସନପରି। ଏଠି କେହି ଏକୁଟିଆ ସବୁ ସମ୍ମାନ, ପୁରସ୍କାର ଓ ମାନ୍ୟତା ଲୁଣ୍ଠନ କଲେ ଏପରି ଆଖପାଖର କଳା-ପରିଧି ଭିତରେ ଘୁରୁଥିବା ଅହଂମାନେ ମୁଣ୍ଡଟେକି ଉଠିବେ, ସାକାର ହେବେ, 'ନିଷିଦ୍ଧ ସଂଳାପ"ରେ ସେୟା ଘଟିଛି। ନାଟକର

ସଫଳ ବିପଣନ ପାଇଁ କିଏ ଦାୟୀ ? ନାଟ୍ୟକାର ନା ନିର୍ଦ୍ଦେଶକ ନା ହିରୋ ନା ହିରୋଇନ୍ ? ବୋଧହୁଏ ସମସ୍ତେ । ସମବାୟ ଭାବରେ ।

'ନିଷିଦ୍ଧ ସଂଳାପ', 'ଆତ୍ମଲିପି' ପରି ନାଟକର ନାଟକ, କଳାକାରମାନଙ୍କ ନାଟକ। ଡ.ସାହୁଙ୍କ ସମବୟସ୍କ ନାଟ୍ୟକାର ପ୍ରମୋଦ ତ୍ରିପାଠୀ 'ବୁଲାକୁକୁର' ନାଟକରେ ଏବଂ ପରେ ପରେ ପ୍ରଶାନ୍ତ ମାଝୀଙ୍କ 'ରାମ୍‌ଦାସ୍'ର କଥାନୀରେ ମଧ୍ୟ କଳାକାରମାନଙ୍କ ଜୀବନ ଉପରେ ନାଟକ ଲେଖାଯାଇଛି। କିନ୍ତୁ ସେଗୁଡ଼ିକ ନାଟକର ନାଟକ ନୁହେଁ; କିନ୍ତୁ 'ନିଷିଦ୍ଧ ସଂଳାପ'ର ନାଟକୀୟ ପରିମଣ୍ଡଳ କଥା ଚିନ୍ତାକଲାବେଳେ ଏହି ନାଟକଗୁଡ଼ିକର ଗଳ୍ପାୟନର ଭିତ୍ତି ଓଡ଼ିଆ ନାଟକର ଆଧୁନିକ ପରମ୍ପରା ଭିତରେ ହିଁ ବିଦ୍ୟମାନ ବୋଲି ମୁଁ କହିବାକୁ ଚାହେଁ । ଶସ୍ତା, ବୃତ୍ତିଭିତ୍ତିକ ସମୀକ୍ଷକମାନେ Professional critics ଏହାକୁ ପ୍ରଭାବ ଅଧ୍ୟୟନ ନକହି ଡ. ସାହୁ 'ମାରି ଦେଇଛନ୍ତି' ବୋଲି କହିବେ । ଏହା କେବଳ ଓଡ଼ିଆ ଅଧ୍ୟାପକୀୟ ବୃତ୍ତିରେ ଦରମା ବଢ଼ିବାପାଇଁ ଲେଖାଯାଇଥିବା ବୃତ୍ତିଭିତ୍ତିକ ସମୀକ୍ଷାରେ ସମ୍ଭବ, ସେମାନେ ଜାଣିରଖିବା ଉଚିତ ଯେ ଉତ୍ତର ଆଧୁନିକ ସମୀକ୍ଷା ତତ୍ତ୍ୱରେ Simulacrum ହେଉଛି "ସମାନାନୁକୃତି" ଏବଂ Pastische ହେଉଛି "ବ୍ୟଙ୍ଗାନୁକୃତି" । ଆପଣ ସ୍ରଷ୍ଟା ହିସାବରେ କୌଣସି ସୃଷ୍ଟିକୁ ନିଜର Orginality ବୋଲି କହିପାରିବେ ନାହିଁ । ଯଥା- 'ଦେହାତୀତ' (ପ୍ରତିଭା ରାୟ) ଉପନ୍ୟାସ ପଢ଼ିଲାବେଳେ ଆପଣ ଦେଖିବେ, 'ଦିଲ୍ ଏକ ମନ୍ଦିର୍' ଏବଂ 'ମୟୂରୀ' ନାମକ ଦୁଇଟି ସିନେମାରୁ ବିଷୟବସ୍ତୁ କିପରି ଆନୀତ ହୋଇଅଛି ।

ତେଣୁ "ଆତ୍ମଲିପି"ଠାରୁ ଆରମ୍ଭକରି "ରାମ୍‌ଦାସ୍‌ର କଥାନୀ" ପର୍ଯ୍ୟନ୍ତ ସବୁ ନାଟକର ଗଳ୍ପାୟିତ ପରିବେଶମାନଙ୍କ ମଧ୍ୟରେ "ନିଷିଦ୍ଧ ସଂଳାପ"ର ସ୍ଥାନ ନିରୂପଣ କରାଯାଇପାରେ। ତା'ପୂର୍ବରୁ ଲକ୍ଷ୍ୟ କରିବାର କଥା, କଥାବସ୍ତୁ ଏବଂ ଆଖ୍ୟାନ ଶୈଳୀରେ ସମ୍ପୂର୍ଣ୍ଣ ନୂତନତାର ଝଲକଟିଏ ନ ପାଇଲେ ଡ. ନାରାୟଣ ସାହୁ ଆଦୌ ଲେଖନ୍ତି ନାହିଁ। ତାଙ୍କର ସବୁଠାରୁ ବଳିଷ୍ଠ ନାଟକ (ମୋ ଦୃଷ୍ଟିରେ) 'ଉପାସନା' (୨୦୦୨)ରେ ପ୍ରେମକୁ ଏକ 'ଉପାସନା' ବୋଲି କହିପାରୁଥିବା ଏହି ନାଟ୍ୟକାର ଗୋଟାଏ ରୂପକଳ୍ପ ପ୍ରୟୋଗ କରି ତିଆରି କରିପାରିଛନ୍ତି ଜହ୍ନରାତିରେ ତିଆରି ଗୋଟିଏ ଅନ୍ଧାର (ଶେଷ ଦୃଶ୍ୟ)। ଏଇଟା ଅନ୍ଧାର ନୁହେଁ ନାଟକର; ଲିଭ ଲିଭି ଦିଶୁଥିବା ଏବଂ ଦିଶିଦିଶି ଲିଭିଯାଉଥିବା ଆଧୁନିକ ମଂଚକଳ୍ପର "ଉଦୟ" ଏବଂ "ଅସ୍ତ" ପରି । ଏକ ଦିଗମ୍ବର ସୃଜନ ଆତ୍ମାର ଶୀତ୍କାର ପରି, "ଅପରାହ୍ଣର ଅବଶୋଷ" (୨୦୦୨) ଏବଂ "ଅଧାଦେଖା ସ୍ୱପ୍ନ" (୨୦୦୪) ମଧ୍ୟ ସେଠାରେ ସଂବେଗିକ ସାନ୍ଦ୍ରତାର ସ୍ପର୍ଶ ମିଳିବ କଥାଶୀର୍ଷମାନଙ୍କରେ ।

ଏପରି ଏକ ନାଟ୍ୟକାର "ନିଷିଦ୍ଧ ସଂଳାପ'ରେ "ଅପରାଜିତା ଥିଏଟର୍" ନାମକ ଏକ କାଳ୍ପନିକ ବ୍ୟବସାୟଭିତ୍ତିକ ନାଟ୍ୟଦଳର ପରିସୀମା ଭିତରେ ଜଣେ ନାଟ୍ୟକାର,

ଜଣେ ନିର୍ଦ୍ଦେଶକ, ଜଣେ ନାୟକ, ଜଣେ ନାୟିକା ଏବଂ ଜଣେ ଗୌଣ ଚରିତ୍ରକୁ ନେଇ ଗଳ୍ପ ତିଆରି କରିଛନ୍ତି। କିନ୍ତୁ କୌଣସି ପ୍ରଫେସନାଲ୍ ଦଳ ସହିତ ବୋଧହୁଏ ତାଙ୍କର ସିଧାସଳଖ ସମ୍ପର୍କ ନଥିଲା ବା ଥିବାର ସୌଭାଗ୍ୟ ମିଳିନାହିଁ ।

ରକ୍ଷଣଶୀଳ ଅଧ୍ୟାପକୀୟ ନୈତିକତାର ମାପକାଠିରେ ଅଞ୍ଜନ ପରିଜା, ବିନୋଦ ଓ ସାଗରୀକାମାନଙ୍କର ଯୌନ ଜୀବନକୁ ଆଦୌ ଦେଖାଯାଇନପାରେ । ସାଗରୀକା ଏମ୍.ଏ ପଢୁଥିବା ସମୟରେ ଅପରାଜିତା ଥିଏଟରର ଲେଖକ ପାଖକୁ ଚାଲିଆସିବା ଏବଂ ନିର୍ଦ୍ଦେଶକ କିମ୍ବା ନାୟକ ସାଙ୍ଗରେ ରଖିଥିବା ଆବେଗିକ ସମ୍ପର୍କକୁ ଶାରୀରିକ ସମ୍ପର୍କରେ ରୂପାନ୍ତରିତ କରିବା ଘଟଣା ଭିତରେ ନୈତିକତା ସମ୍ପୂର୍ଣ୍ଣ ଅନାବଶ୍ୟକ ପ୍ରସଙ୍ଗ, କାରଣ ଜଣେ ଅଭିନେତ୍ରୀକୁ ଅଭିନୟ କଳା ଉପରେ ଦକ୍ଷତା ହାସଲ କରିବାକୁ ହେଲେ ଇନ୍ଦ୍ରିୟାନୁଭୂତି ଏକାନ୍ତ ପ୍ରୟୋଜନ । ଦୃଶ୍ୟ, ଆଘ୍ରାଣ ଓ ସ୍ପର୍ଶ ଇତ୍ୟାଦି ଇନ୍ଦ୍ରିୟମାନେ ସକ୍ରିୟ ନରହିଲେ ଅଭିନୟପାଇଁ ଆବଶ୍ୟକ ପଡୁଥିବା ରସର କ୍ଷରଣ ହେବନାହିଁ ।ତେଣୁ ନାଟକର ନାୟିକାଟେ ସାବିତ୍ରୀ କିମ୍ବା ସୀତାଙ୍କ ପରି ଇନ୍ଦ୍ରିୟମାନଙ୍କୁ ଦମନକରି ରଖିଲେ ଅଭିନୟ ବିଦ୍ୟାଟି ହାସଲ ହୋଇପାରିବ ନାହିଁ। ଏଣୁ ଅଭିନୟ ଶିକ୍ଷାର ପ୍ରଥମ ଆବଶ୍ୟକତା ହେଲା-ଯେ କଳାକାର ନିକଟତମ ଶାରୀରିକ ଦୂରତ୍ୱ ବା ସ୍ପର୍ଶ ପାଇଲାବେଳେ ଉତ୍ତେଜିତ ନ ହେବାକୁ ଅଭ୍ୟାସ କରିବା। ତାହା ଦମନ ବିଦ୍ୟା ଦ୍ୱାରା ନୁହେଁ, ଉପଭୋଗ ଦ୍ୱାରା ନିଜ ଶରୀରକୁ ଅଭ୍ୟସ୍ତ କରି । ଏଣୁ ଅର୍ଥଶାସ୍ତ୍ର ଲେଖାହେବା ସମୟରେ ମଧ୍ୟ ଅଭିନେତା / ଅଭିନେତ୍ରୀ, ନୃତ୍ୟଶିଳ୍ପୀ, 'ରୂପଦକ୍ଷ' ଓ 'ପ୍ଲାବକ'ମାନଙ୍କୁ ନଗରର ଉପାନ୍ତରେ ସ୍ଥାନିତ କରାଯାଉଥିଲା, ରାଜା ସେମାନଙ୍କୁ ସମୟେ ସମୟେ ଅନ୍ୟ ଦେଶରୁ ଆଗତ ଅତିଥିମାନଙ୍କ ଶରୀରର ବିନୋଦନ ଏବଂ ଗୁପ୍ତଚର କାର୍ଯ୍ୟରେ ନିୟୋଜନ କରୁଥିଲେ । ଏଥିପାଇଁ ଅଭିନେତ୍ରୀମାନଙ୍କୁ ଶିକ୍ଷାଦାନ କରାଯାଉଥିଲା। ଅଷ୍ଟାଦଶ ଶତାବ୍ଦୀରେ ଇଂରେଜ ଶାସନ କାଳରେ କିଛି Puritan ସମ୍ପ୍ରଦାୟ ନାଟ୍ୟ ପ୍ରଦର୍ଶନ ଏବଂ ଉପନ୍ୟାସ ପଠନ ଇତ୍ୟାଦିକୁ ଅନୈତିକ କାର୍ଯ୍ୟ ବୋଲି ବାରଣ କରୁଥିଲେ ଏବଂ ଏପରି ଛଦ୍ମ ନୈତିକତା ଯୋଗୁଁହିଁ ଶେକ୍ସପୀୟରଙ୍କ ପରେ ମଞ୍ଚର ଆଲୋକ ଲିଭିଗଲା ଓ ଇଂରାଜୀ ଭାଷାରେ ଭଲ ନାଟ୍ୟକାରଟେ ଉଧେଇ ପାରିଲା ନାହିଁ ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ।

"ଅପରାଜିତା ଥିଏଟର" ହେଉ କି ଅନ୍ୟ କୌଣସି ବ୍ୟବସାୟିକ ଅଭିନୟ କଳା ଅନୁଷ୍ଠାନ ହେଉ, ଯୌନ ଅଭିଜ୍ଞତା, ଅଭିନୟ ଓ ସମସ୍ତ ପ୍ରଦର୍ଶନ କଳା ପାଇଁ ଏକ ଅପରିହାର୍ଯ୍ୟ ଆବଶ୍ୟକତା-୨୦୦୭ ମସିହାର ପାଠକ / ପାଠିକା ହୁଏତ ଏପରି ଏକ ନୈତିକ ଚେତନାକୁ ପ୍ରାଚୀନପନ୍ଥୀ ବୋଲି ଧରିନେଇ ପାରନ୍ତି ।

ନାଟକ ସମ୍ପର୍କରେ ନାଟକ ଲେଖାଯିବା, କବିତା ସମ୍ପର୍କରେ କବିତା ଲେଖାଯିବା କିମ୍ବା ଗଳ୍ପ/ଉପନ୍ୟାସ ସମ୍ପର୍କରେ ଗଳ୍ପ/ଉପନ୍ୟାସ ଲେଖାଯିବା ଉଦାହରଣ କ୍ୱଚିତ୍ ମିଳେ ଓଡ଼ିଆ

ସାହିତ୍ୟ ସ୍ରଷ୍ଟାମାନଙ୍କ ରଚନାମାନଙ୍କରେ। ଅଥଚ ପୃଥିବୀର ଶ୍ରେଷ୍ଠ ସାହିତ୍ୟିକମାନେ ଏପରି 'ସାହିତ୍ୟ କ୍ରୀଡ଼ା' କରି ପାଠକ / ଦର୍ଶକ ମାନଙ୍କୁ ଆପ୍ୟାୟିତ କରି ଆସିଛନ୍ତି ।

"ଆତ୍ମଲିପି" ନାଟକର ଆରମ୍ଭରେ ନାଟ୍ୟକାର ଯେମିତି ନାଟକ ଲେଖିବା ମୁଦ୍ରାରେ ବସିଥିଲେ "ନିଷିଦ୍ଧ ସଂଳାପ"ର ଦ୍ୱିତୀୟ ଦୃଶ୍ୟରେ ସେହିପରି ସିଦ୍ଧାନ୍ତ ମହାପାତ୍ର ବସିଛି । ନାଟ୍ୟକାର ଡ.ନାରାୟଣ ସାହୁ ଲେଖକ ସିଦ୍ଧାନ୍ତ ମହାପାତ୍ର ମୁହଁରେ କହୁଛନ୍ତି- "ନୂଆ କାହାଣୀଟିଏ ଚିନ୍ତା କରୁଥିଲି । ଗୋଟିଏ ପ୍ରକାର ନାଟକ ଦେଖି ଦେଖି ଦର୍ଶକ 'ବୋର୍' ହୋଇଗଲେଣି । ତେଣୁ କିଛିଟା ମୋଡ଼୍ ଦରକାର।" (ପୃ-୧୩) ସିଦ୍ଧାନ୍ତର ଏହି ସଂଳାପଟି ନିଜେ ନାଟ୍ୟକାର ଡ. ସାହୁଙ୍କର । ଅର୍ଥାତ୍ ନାଟ୍ୟକାର, ନାଟ୍ୟକାର ସିଦ୍ଧାନ୍ତ ମହାପାତ୍ର ଭିତରେ ଲେଖକୀୟ କାୟା ପ୍ରବେଶ କରାଇ ଏ କଥା କହୁଛନ୍ତି। ଏଇ ନୂଆ ମୋଡ଼ଟି ହେଉଛି "ନିଷିଦ୍ଧ ସଂଳାପ"ର ଆଖ୍ୟାନ କୌଶଳ। କୌଶଳଟି କ୍ରୀଡ଼ାତ୍ମକ, ଏଣୁ ଏଠାରେ ଡ.ସାହୁ ଦର୍ଶକମାନଙ୍କ ସାଙ୍ଗରେ ଖେଳୁଥିବା ନାଟ୍ୟକ୍ରୀଡ଼ାଟି ପ୍ରତି ଆଲୋକ ସଂପାତ କରାଯାଉ।

ନାଟକରେ ନାଟକ ସମ୍ପର୍କିତ କଥାବସ୍ତୁ ପ୍ରସ୍ଫୁଟିତ ହେଲେ, ତାକୁ ଆତ୍ମସଚେତନ Self Conscious କ୍ରୀଡ଼ା କୁହାଯାଏ । ଏପରି କ୍ରୀଡ଼ାରେ ଗୋଟିଏ ବର୍ଣ୍ଣନାକାରୀ ଆସି ଦର୍ଶକମାନଙ୍କୁ ଯାହା ଘଟିବାକୁ ଯାଉଛି ସବୁ ଖୋଲାଖୋଲି କହିଦେଇ ଦର୍ଶକମାନଙ୍କର ବିଶ୍ୱାସଭାଜନ ହୋଇଯାଏ, ସେ ଏତେ ବିଶ୍ୱାସୀ ବର୍ଣ୍ଣନାକାରୀ ଯେ ତା'ର ବର୍ଣ୍ଣନା ଭିତରେ "ଲୁଚାଛପା" ନାହିଁ ବୋଲି କହିବା ମାତ୍ରେ ହିଁ ଭ୍ରାନ୍ତିର କ୍ରୀଡ଼ାଟି ଆରମ୍ଭ ହୋଇଯାଏ ଏବଂ ଉପନ୍ୟାସ ହୋଇଥିଲେ ପାଠକ ଓ ନାଟକ ହୋଇଥିଲେ ଦର୍ଶକ ତା'ରି ଭିତରେ ଫସିଯାଏ। ଦର୍ଶକଟିଏ ଆରମ୍ଭରୁ ନାଟକ ଭିତରେ ହଜିଗଲେ ନାଟକ ସଫଳ ।

Peter Hutchinson ଏ ସମ୍ପର୍କରେ ଖଣ୍ଡେ ଗ୍ରନ୍ଥ ଲେଖିଛନ୍ତି ଏବଂ ଗ୍ରନ୍ଥଟିର ନାମ ହେଉଛି–Games Author Play (Methun, 1983) । ସେଥିରେ ପିଟର୍ ଲେଖିଛନ୍ତି, The Self-conscious narrator keeps-or pretennds to keep-no secrets from those he is addressing, indeed, he may expose himself before the reader in most disarming manner."

'ନିଷିଦ୍ଧ ସଂଳାପ' ନାଟକ ଆରମ୍ଭ ହେଲା ନା ନାଟକ ପୂର୍ବରୁ ଆରମ୍ଭ ହେଲା ଗୋଟାଏ ସଭା ଆପଣ ଜାଣିପାରିବେ ନାହିଁ- ଦେଖନ୍ତୁ-

ଆଶୀଷ- ନମସ୍କାର ଦର୍ଶକ ବନ୍ଧୁ! ନାଟ୍ୟଭାରତୀ ଅନୁଷ୍ଠାନ ତରଫରୁ ଆପଣମାନଙ୍କୁ ସ୍ୱାଗତ ଜଣାଉଛି, ମୁଁ ସମ୍ପାଦକ ଆଶୀଷ ମହାପାତ୍ର। ପ୍ରତିବର୍ଷ ପରି ଆମେ ଚଳିତ ବର୍ଷ ମୋହନସୁନ୍ଦର ଦେବ ଗୋସ୍ୱାମୀ ପୁରସ୍କାର ପ୍ରଦାନ କରିବାକୁ ଯାଉଛୁ ××× (ପୃଷ୍ଠା-୧-୨)

ଏହା ହିଁ ନାଟକର ବିଷୟବସ୍ତୁ ଏବଂ ଏହା ହିଁ ସଭାର ଆରମ୍ଭ ସଂଳାପ, ଅତଏବ ନାଟକୀୟ ବାସ୍ତବତା ବୋଲି ଯାହାକୁ କହିବେ, ତାହା ଏକ ଭ୍ରାନ୍ତି ଏବଂ ଭ୍ରାନ୍ତି ବୋଲି ଯାହାକୁ କହିବେ ତାହାହିଁ ନାଟକୀୟ ବାସ୍ତବତା। ବାସ୍ତବତା ବୋଲି ଯୋଉ ପଞ୍ଚାଏ. ଲୋକ ଚିତ୍କାର କରନ୍ତି ଉତ୍ତର ଓଡ଼ିଶାରେ (ତାହା ଇଂରେଜୀ ସାହିତ୍ୟରୁ ବଙ୍ଗଳା ସାହିତ୍ୟ ବାଟେ ବାଲେଶ୍ୱର, ଭଦ୍ରକ ଓ ବାରିପଦା ଆସିଛି)-ଏହା ତାହାପ୍ରତି ଏକ ନିଷ୍ଠୁର ବ୍ୟଙ୍ଗ, ବାସ୍ତବତାର କୂଳ ଲଂଘି ଡେଇଁପଡୁଥିବା ଗୋଟାଏ ସୃଜନ ବନ୍ୟା। ଅନ୍ୟ ପକ୍ଷରେ ବାସ୍ତବବାଦୀ ନାଟକ ଗୋଟେ mockery.

"the narrator addresses the reader directly, gleefully exposes himself as an exuberant fabricator, the characters reveal themselves as pure inventions, the plot as fantasy, the charecters names and individual key words as anagrams, signals to the reader, or humorous constructs, all this within-or rather, against-the traditional novel form." (Hutchinson, P.-33)

ଡ.ସାହୁ ଏପରି ଏକ "ଆରମ୍ଭ" ଶୈଳୀରେ ନାଟକ ଲେଖି ୩ୟ ଦୃଶ୍ୟରେ ଗୋଟାଏ ନାଟକର ରିହାରସାଲ ଚଳେଇଛନ୍ତି। ତା'ଅର୍ଥ, ନାଟକ ଭିତରେ ଆଉ ଏକ ନାଟକ। ପ୍ରସ୍ତ ପ୍ରସ୍ତ ଭ୍ରାନ୍ତି ଭିତରେ ଖୁନ୍ଦିହୋଇ ରହିଥିବା ବାସ୍ତବତାର ମଂଚ ଓ ବାସ୍ତବତାର ମଂଚ ଭିତରେ ପ୍ରସ୍ତ ପ୍ରସ୍ତ ହୋଇ ନିର୍ମିତ ହୋଇଥିବା ନାଟକର ଐନ୍ଦ୍ରଜାଲିକତା । ଏହା ହିଁ କ୍ରୀଡ଼ା। ତା'ରି ଭିତରେ ଖେଳୁଛି ସାଗରୀକା, ଅଞ୍ଜନ କିମ୍ବା ବିନୋଦର ଆକାଶରେ ଉଡୁଥିବା କଟା ଗୁଡ଼ିଟିଏ ପରି । ତଥାପି ତା'ର ଭ୍ରାନ୍ତିମୟ ଲାଜରେ ଗଢ଼ାହେଉଚି ସିଦ୍ଧାନ୍ତ ମହାପାତ୍ରର ସୂର୍ଯ୍ୟାସ୍ତ। ତା'ରି ସାମ୍ମୁକରା କେଶରେ ଲିଭିଯାଉଛି ଥିଏଟର ଅପରାଜିତାର ଶେଷ ପାଦ ପ୍ରଦୀପ ଏବଂ ଗଢା ହେଉଚି ତା'ର "ଅଧା ପ୍ରେମ, ଅଧା ପ୍ରତାରଣା"ରେ ଗଢ଼ା ଅଂଜନ ପରି ଗୋଟେ ମଂଚ ତାରକାର ଏକୁଟିଆ ପାହାନ୍ତି।

ଥରେ ନାଟକ ପାଇଁ ଖେଳ ଆରମ୍ଭ ହେଇଚି ମାନେ ତାହା ଜୀବନର ଶ୍ରେଷ୍ଠତମ ଦ୍ୟୂତକ୍ରୀଡ଼ା, ସେଇଠି ବାଜି ଲାଗିଯାଆନ୍ତି ସ୍ୱପ୍ନର ଅସଂଖ୍ୟ ଦ୍ରୌପଦୀ ଏବଂ ସେଇଠି ଛିଣ୍ଡିଯାଆନ୍ତି ସତୀତ୍ୱର/ନୈତିକତା ସବୁ ସୂକ୍ଷ୍ମ ପରଦା। ଜିତିବା ହାରିବା ବଡ଼ କଥା ନୁହେଁ। ନାଟକ ଚାଲିଛି। ଏମିତି ଚାଲିଥିବ ଡ. ସାହୁଙ୍କ ପରି ଗୋଟାଏ ଜହ୍ନ କିମ୍ବା ଅସଂଖ୍ୟ ତାରକାଙ୍କର ମିଟି ମିଟି ଆଲୁଅରେ ସେଇଟା ହିଁ ଉତ୍ତର ଆଧୁନିକ ନାଟକର ନିର୍ଜନ ପାହାନ୍ତି। "ନାଟକ ମରିଗଲା" ବୋଲି ଚିତ୍କାର କରୁଥିବା ସମସ୍ତ ସାହିତ୍ୟିକ ଚକ୍ରାନ୍ତର ଅନ୍ଧାର ପରେ ଗୋଟେ ଉଜ୍ଜ୍ୱଳ ଉଷା।

ମୁଁ, ଆମ୍ଭେ ଓ ଆମ୍ଭେମାନେ

୧୦୫, ରସୁଲଗଡ଼, ଭୁବନେଶ୍ୱର

●●●

# 'କ୍ରାନ୍ତି' ନାଟକ ସମ୍ପର୍କରେ...

ପ୍ର. ବୈଷ୍ଣବଚରଣ ସାମଲ

ଶ୍ରଦ୍ଧେୟ ଡକ୍ଟର ନାରାୟଣ ସାହୁଙ୍କର 'କ୍ରାନ୍ତି' ନାଟକ ପଢ଼ିବାର ସୌଭାଗ୍ୟ ପାଇଲି; କେବଳ ଏଇ ନାଟକ ନୁହେଁ, ପୂର୍ବରୁ ମଧ୍ୟ ତାଙ୍କର ଅନ୍ୟ କେତେକ ନାଟକ ପଢ଼ିଥିଲି। ମୁଁ ଜାଣେ ଯେତେବେଳେ କୌଣସି ଛାତ୍ର ତା'ର ପ୍ରଜ୍ଞା ଓ ପ୍ରତିଜ୍ଞା ବଳରେ ତା'ର ଗୁରୁକୁ ଅତିକ୍ରମ କରିଯାଏ ସେତେବେଳେ ଜଣେ ସଦ୍‌ଗୁରୁ ଗଭୀର ଆତ୍ମସନ୍ତୋଷ ଲାଭକରେ, ତା'ର ଅନ୍ତର ବିସ୍ଫୋରିତ ହୋଇଯାଏ, ଭାବରୁ ଭାବାନ୍ତର ଦେଇ ସେ ତନ୍ମୟ ହୁଏ।'କ୍ରାନ୍ତି' ନାଟକ ମୋତେ ପ୍ରକୃତରେ ବିସ୍ତାରିତ କରିଦେଇଛି, ଉନ୍ନୟନ (Sublimation) କରିଦେଇଛି । ଡକ୍ଟର ସାହୁଙ୍କର ପ୍ରତ୍ୟେକଟି ନାଟକ ସାମାଜିକ ଅଙ୍ଗୀକାରବଦ୍ଧତାର ନାଟକ। ପ୍ରତ୍ୟେକରେ ସମାଜ-ମଣିଷମାନଙ୍କ ପ୍ରତି ଅଛି ସ୍ପଷ୍ଟ ଓ ବଳିଷ୍ଠବାର୍ତ୍ତା। ଏହି ବାର୍ତ୍ତା (Message) କିନ୍ତୁ କେଉଁଠି ପ୍ରଚାରଧର୍ମୀ ନୁହେଁ ଚରିତ୍ରମାନଙ୍କ କ୍ରିୟାକଳାପ ଓ ସଂଳାପ ମଧ୍ୟ ଦେଇ ବିଷୟ ବା ଥିମ୍ ଗର୍ଭିତ ହୋଇଯାଇଛି। ଫଳରେ ଡକ୍ଟର ସାହୁ ନିରୋଳା ପ୍ଲେ-ରାଇଟ୍ ହୋଇ ନାହାନ୍ତି ବା ନିରୋଳା ଡାମାଟ୍ରିଷ୍ଟ ହୋଇ ନାହାନ୍ତି; ହୋଇଛନ୍ତି ଉଭୟର ମଧୁର ସମନ୍ୱୟ। 'କ୍ରାନ୍ତି' ନାଟକ ଏହି ଦ୍ୱିବିଧ ଗୁଣର କଳାତ୍ମକ ପରିପ୍ରକାଶ।

'କ୍ରାନ୍ତି' ବିପ୍ଲବର ବାର୍ତ୍ତା। ସାମାଜିକ ଅନୀତି, ଦୁର୍ନୀତି, ଶୋଷଣ, ସ୍ୱେଚ୍ଛାଚାର ବିରୋଧରେ ସାଗ୍ନିକ ଆହ୍ୱାନ, ପ୍ରଶାସନିକ, ବିଚାର ବ୍ୟବସ୍ଥା ଓ ରାଜନୀତିକ ହିପୋକ୍ରାସି ପ୍ରତି ଶାଣିତ ବିଦ୍ରୂପ। ଅହଂକାର ଓ ନିଷ୍ଠୁରତା ଉପରେ ବିବେକ ଓ ହୃଦୟର ବିଜୟ ହିଁ ଏହାର ବାଣୀ-ମନ୍ତ୍ର। ଯିଏ ବିପ୍ଲବୀ, ଯିଏ କ୍ରାନ୍ତିରେ ବିଶ୍ୱାସୀ ସିଏ ସାଲିସ୍ ଚାହେଁନାହିଁ, ଶାସକ-ପୋଲିସ୍-ବିଚାରକ ନିକଟରେ ସେ ନିଜ ଜୀବନକୁ ବଞ୍ଚାଇବା ପାଇଁ ସତ୍ୟକୁ ଲୁଚାଏ ନାହିଁ, ପୋଲିସ୍‌ର ନିର୍ମମ ପ୍ରହାରକୁ ଖାତିର କରେ ନାହିଁ। ନିଜର ବିବେକ ଓ ବିଚାରରେ ପରିଚାଳିତ ହୁଏ, ମୃତ୍ୟୁକୁ ଭୟ କରେନାହିଁ, ଫାସି ଖୁଣ୍ଟରେ ହସି ହସି ବେକ ଦେଖାଇଦିଏ, କାହାରି ନିକଟରେ କ୍ଷମାପ୍ରାର୍ଥୀ ହୁଏନାହିଁ। ସେ ଅଟଳ ପାହାଡ଼ ପରି। ତା' ବିବେକ ନିକଟରେ ସେ କେବଳ ଦାୟବଦ୍ଧ। ତା'ର ବଜ୍ର ବ୍ୟକ୍ତିତ୍ୱ ନିକଟରେ ସଇତାନମାନେ ତରଳି ଯାଆନ୍ତି, ଅନୁତପ୍ତ ହୁଅନ୍ତି, ତା'ର ମୃତ୍ୟୁରେ ଜନଗଣ ଉତ୍ତେଜିତ

ହୁଅନ୍ତି, ସଂଘବଦ୍ଧ ହୁଅନ୍ତି, ଶାସନ-ରାହୁର ମୁଣ୍ଡ ଗଡ଼ିପଡ଼େ। ବିପ୍ଳବ ମରେ ନାହିଁ। ଗୋଟିଏ ବିପ୍ଳବୀକୁ ମାରିଦେଲେ କୋଟିଏ ବିପ୍ଳବୀ ଜନ୍ମ ନେଇଯାଆନ୍ତି। ବିପ୍ଳବ ସେହି ପର୍ଯ୍ୟନ୍ତ ଚାଲେ ଯେଉଁ ପର୍ଯ୍ୟନ୍ତ ଶୋଷଣ ଓ ସ୍ୱେଚ୍ଛାଚାର ଶେଷ ହୋଇ ନଥାଏ । ତେଣୁ ବିପ୍ଳବର ପଥ ଅସରନ୍ତି। ପଥ ବନ୍ଧୁର ମାତ୍ର ଲକ୍ଷ୍ୟ ମହତ୍ ।

ଡକ୍ଟର ସାହୁ ଉପରୋକ୍ତ ଆଦର୍ଶକୁ ନେଇ ରଚନା କରିଛନ୍ତି 'କ୍ରାନ୍ତି' ନାଟକ। ବୃଦ୍ଧ ସମାଜସେବୀ ସନାତନ ଉଦାର ହୃଦୟ ମଣିଷ। କୌଣସି ପ୍ରକାର ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରିନାହିଁ। ତାଙ୍କର ପୁତ୍ର ଜେପି ବା ଜଗତ୍‌ପ୍ରକାଶ। ସେ ଶିକ୍ଷିତ ମାତ୍ର ବିପ୍ଳବୀ। ଅନ୍ୟାୟ, ଅତ୍ୟାଚାର, ଶୋଷଣ ବିରୋଧରେ ସେ ସ୍ୱର ଉତ୍ତୋଳନ କରିଛି। ଶୋଷକମାନଙ୍କୁ ହତ୍ୟା କରିଛି। ଲୋକମାନଙ୍କୁ ପ୍ରେରଣା ଦେଇଛି ନିଜ କଥା ନିଜେ ବୁଝିବା ପାଇଁ । ଲାଂଚ ନେଇଥିବା ପୋଲିସ୍ ଓ ସରକାରୀ କର୍ମଚାରୀଙ୍କୁ ସେ ଚେତାବନୀ ଶୁଣାଇଛି। ସେ ହତ୍ୟା କରିଛି ପାଂଚଜଣ ଶୋଷକ ସଇତାନଙ୍କୁ। ପୋଲିସ୍‌ଦ୍ୱାରା ଧରାହୋଇ ଜେଲ୍ ଯାଇଛି। ତା'ର ବିଚାର ହୋଇ ତାକୁ ଫାଶି ହୁକୁମ ହୋଇଛି। ସେ କିନ୍ତୁ ଅବିଚଳିତ। ଫାଶିକୁ ସେ ଭୟ କରେନାହିଁ। ତା'ର ବିଶ୍ୱାସ ତା'ର ମୃତ୍ୟୁପରେ ଆହୁରି ଅନେକ ବିପ୍ଳବୀ ଜନ୍ମନେବେ। ସେହିମାନେ ଏ ଦେଶର ଅତ୍ୟାଚାର, ସ୍ୱେଚ୍ଛାଚାର, ଶୋଷଣ, ପୀଡ଼ନକୁ ଜାଳିପୋଡ଼ି ଛାରଖାର କରିଦେବେ। ତାକୁ ଜେଲର୍ ପିଟିଛି ନିର୍ମମ ଭାବରେ, ପୋଲିସ୍ ଇନ୍‌ସ୍ପେକ୍ଟର ତାକୁ ଧରିଛି କୌଶଳରେ, ତା ନାମରେ ମିଥ୍ୟା କେଶ୍ କରିଛି ମାତ୍ର ସେ ଦବିଯାଇ ନାହିଁ, ବରଂ ତା'ର ନିର୍ଭୀକ ବ୍ୟକ୍ତିତ୍ୱ ନିକଟରେ ଦଳି ଯାଇଛନ୍ତି ଜେଲର୍ ଓ ଇନ୍‌ସ୍ପେକ୍ଟର। ଫାଶି ପାଇବା ପୂର୍ବରୁ ତା'ର ବାପାଙ୍କ ସହିତ ଉକ୍ତି ବାସ୍ତବିକ ତା'ର ମହନୀୟ ବ୍ୟକ୍ତିତ୍ୱର ପରିଚୟ ଦିଏ। ପୁଅର ନିର୍ଭିକତା ଉପଲବ୍ଧି କରି ସନାତନ କହିଛି, "I am proud of my son." କେତେଜଣଙ୍କୁ ଏ ସୌଭାଗ୍ୟ ମିଳେ! ତୋ ବୋଉଟା ଭାଙ୍ଗିପଡ଼ିଛି ତ। ମୁଁ ତାକୁ ବୁଝେଇ ଦେଇଛି। ମୋ ପୁଅ ବାଘ ଶିକାର କରିଛି। ମଣିଷଖିଆ ବାଘ। ପଶୁହତ୍ୟା ଅଭିଯୋଗରେ ଯଦି ତାକୁ ଫାଶି ମିଳେ କ୍ଷତି କ'ଣ ?"

ସନାତନ ସମାଜସେବୀ, ଗାନ୍ଧିବାଦୀ ଅଥଚ ପୁଅର ହିଂସାତ୍ମକ ବିପ୍ଳବକୁ ସେ ସମର୍ଥନ କରିଛି। ସେ ଜାଣିଛି ଯେଉଁଠି ଗାନ୍ଧୀ ନାମରେ ଶୋଷଣ ଚାଲେ, ବର୍ବରତା ଚାଲେ, ସେଠି ଅହିଂସା କଥା କହି ମଣିଷକୁ ବଦଳାଇ ହୁଏ ନାହିଁ। ସେଠି ହିଂସା ଅନିବାର୍ଯ୍ୟ। ଏହି ହିଂସା ବ୍ୟକ୍ତି-ସ୍ୱାର୍ଥ ପାଇଁ ନୁହେଁ; ସମୂହ କଲ୍ୟାଣ ପାଇଁ। ଜେପିକୁ ଆରେଷ୍ଟ କରିଥିବା ପୋଲିସ୍ ଇନ୍‌ସ୍ପେକ୍ଟର ଓ ତା' ଉପରେ ଅତ୍ୟାଚାର କରୁଥିବା ଜେଲର ସମସ୍ତେ ଜେପିର ବ୍ୟକ୍ତିତ୍ୱ ନିକଟରେ ବଦଳି ଯାଇଛନ୍ତି। ସେମାନେ ଜେପି ଭିତରେ

ଉପଲବ୍ଧି କରିଛନ୍ତି ଅସାଧାରଣ ବ୍ୟକ୍ତିତ୍ୱ। ତେଣୁ ଜେପିର ଫାଶି ଦଣ୍ଡରେ ସେମାନେ ବିଚଳିତ ହୋଇଛନ୍ତି, ତା'ର ମୁକ୍ତି ପାଇଁ ଚେଷ୍ଟା କରିଛନ୍ତି। ମାତ୍ର ଜେପି କ୍ଷମାପ୍ରାର୍ଥନା କରିନାହିଁ। ବିପ୍ଳବୀ ପ୍ରଚଳିତ ଢ଼ଇନ ନିକଟରେ କ୍ଷମାମାଗେ ନାହିଁ । ସେ ହସି ହସି ମୃତ୍ୟୁ ବରଣ କରେ। ତା'ର ମୃତ୍ୟୁରେ କେତେ ସଇତାନଙ୍କର ହୃଦୟ ପରିବର୍ତ୍ତିତ ହୋଇଯାଏ। ସେ ପୁଣି କ୍ରାନ୍ତି ପ ବିପ୍ଲବୀ ଛାତ୍ରର ନଷ୍ଟ ହୋଇଯାଇଥିବା ଆଖି ପାଇଁ ନିଜର ଆଖିକୁ ମୃତ୍ୟୁ ପୂର୍ବରୁ ଦାନ କରିଦେଇ ଯାଇଛି। ଏହା ତା'ର ମହାନତାର ପରିଚାୟକ। କ୍ରାନ୍ତି ମଧ୍ୟ ସେହି ବିପ୍ଳବର ଧ୍ୱଜା ଧରିବାକୁ ଶପଥ ନେଇଛି। ଆଦିବାସୀ ଯୁବତୀ ତୁଲ୍‌ସୀକୁ ଜେପି ପତ୍ନୀ ଭାବରେ ଗ୍ରହଣ କରିଛି। ତାକୁ ସ୍ୱାଗତ କରିଛନ୍ତି ତା'ର ପିତା ଓ ମାତା। ତା'ର ଗର୍ଭ ବିଦାରି ୯ରି ଆସିଛି ଆଗତ ବିପ୍ଳବର କୁଆଁ ଧ୍ୱନି। ନାଟକରେ ସୂଚାଇ ଦିଆଯାଇଛି ବିପ୍ଳବ ମରି ନାହିଁ; ମରିପାରେ ନାହିଁ। ବିପ୍ଳବ ଚିରନ୍ତନ। ଜେପି, କ୍ରାନ୍ତି, ତୁଲ୍‌ସୀ ମାଣ୍ଡିଆ ଓ ତୁଲ୍‌ସୀର ନବଜାତ ସନ୍ତାନ ମଧ୍ୟ ଦେଇ ବିପ୍ଳବ ସୃଷ୍ଟି କରିନ୍ତି ୯ଙ୍କାର।

ହୃଦୟ ପରିବର୍ତ୍ତିତ ହୋଇଛି ପୋଲିସ୍ ଇନ୍‌ସ୍ପେକ୍ଟରର। ତୁଲ୍‌ସୀକୁ ଦେଖି ତା'ର ମନେ ପଡ଼ିଛି ପତ୍ନୀ ଯମୁନା କଥା। ଯମୁନାର ସାମଞ୍ଜସ୍ୟ ତୁଲ୍‌ସୀ ଠାରେ। ତା'ର ପିତୃ ହୃଦୟ ଦୋହଲି ଯାଇଛି। ଜେପିକୁ ବଂଚାଇବାକୁ ସେ ଚେଷ୍ଟା କରିଛି ମାତ୍ର ତା'ର ଚେଷ୍ଟା ହୋଇଛି ବ୍ୟର୍ଥ। ଜେପିର ବ୍ୟକ୍ତିତ୍ୱ ନିକଟରେ ସେ ହୀନପ୍ରଭ ହୋଇପଡ଼ିଛି। ପରିବର୍ତ୍ତିତ ହୋଇଛି ମଧ୍ୟ ଜେଲର୍। ସମଗ୍ର ନାଟକରେ ନାଟ୍ୟକାର ଶୁଣାଇଛନ୍ତି ବିପ୍ଳବର ଅଗ୍ନିଗର୍ଭ ବାଣୀ। ସୂଚାଇ ଦେଇଛନ୍ତି ବିପ୍ଳବର ମୃତ୍ୟୁନାହିଁ। ଯେଉଁଠି ଶୋଷଣ, ପୀଡ଼ନ ସେଇଠି ବିପ୍ଳବ ଆସିବଇ ଆସିବ। ବିପ୍ଳବ ଆସେ ସଚେତନ ମଣିଷର ମନକୁ ଅଭିଭୂତ କରି। ବିପ୍ଳବୀ ଚାହେଁ ସୁସ୍ଥ ସମାଜ। ତେଣୁ ତାକୁ ହିଂସ୍ର କହି ଆଇନ ବିରୋଧୀ କହି ଦଣ୍ଡ ଦେବା ଅନୁଚିତ, ବରଂ ତା'ର ବକ୍ତବ୍ୟକୁ ବୁଝିବା ଓ ଆଦର୍ଶକୁ ଚିନ୍ତା କରିବା ଉଚିତ। ଯେଉଁମାନେ ଆଇନ ନାମରେ ଅତ୍ୟାଚାର କରୁଛନ୍ତି, ଅନ୍ୟାୟ କରୁଛନ୍ତି ସେମାନଙ୍କୁ କିଏ ଦଣ୍ଡ ଦେବ? ସେମାନଙ୍କ ଦଣ୍ଡ ଏହି ବିପ୍ଳବୀଙ୍କ ହାତରେ।

ନାଟ୍ୟକାର ଚମତ୍କାର ଭାବରେ ଉକ୍ତ ନାଟକଟି ପରିକଳ୍ପନା କରିଛନ୍ତି । ନକ୍‌ସାଲଙ୍କୁ ଦମନ କରିବା ନାମରେ ଯେପରି ହିଂସ୍ରତା ସୃଷ୍ଟି ହେଉଛି ତାହାରି ପ୍ରତିକ୍ରିୟାରେ ଏହି ନାଟକର ସୃଷ୍ଟି। ନାଟ୍ୟକାର ନକ୍‌ସାଲ ଉପଦ୍ରୁତ ଅଂଚଳ ବୁଲି ଓ ନକ୍‌ସାଲ ତଥା ଆଦିବାସୀମାନଙ୍କୁ ସାକ୍ଷାତ କରି ଯେଉଁ ଅନୁଭୂତି ଅର୍ଜନ କରିଛନ୍ତି, ତାହାକୁ ଉକ୍ତ ନାଟକରେ ଉପସ୍ଥାପନ କରିଅଛନ୍ତି। ସ୍ପଷ୍ଟ ଭାବରେ ନାଟ୍ୟକାର ଉଲ୍ଲେଖ କରିଛନ୍ତି ଯିଏ ନକ୍‌ସାଲ ହୋଇ ହତ୍ୟାର ତାଣ୍ଡବ ସୃଷ୍ଟି କରୁଛି ତା'ର ଅନ୍ତରର କଥାକୁ ବୁଝିବା ଉଚିତ-ବିପ୍ଳବର

କାରଣ ଅନୁଶୀଳନ କରିବା ଉଚିତ। ତାହା ନକରି କେତେକ ପୋଲିସ ଓ ଅଫିସରଙ୍କ ସତମିଛ କଥାରେ ଭାସି ବିପ୍ଳବୀଙ୍କ ସଂହାର ପାଇଁ ଉଦ୍ୟମ ହେଲେ ବିପ୍ଳବ ତ ମରିବ ନାହିଁ; ବରଂ ଅନେକ ବିପ୍ଳବୀ ସୃଷ୍ଟି ହେବେ ଯାବତୀୟ ମିଥ୍ୟାଚାର, ସ୍ୱେଚ୍ଛାଚାର, ଶୋଷଣ, ପୀଡ଼ନ ଓ ବର୍ବରତାକୁ ଜାଳିପୋଡ଼ି ଧ୍ୱସେଇ ଦେବାକୁ । 'କ୍ରାନ୍ତି' ନାଟକ ଏହି ସତ୍ୟର ବାର୍ତ୍ତାବହ। ବିପ୍ଳବ ଓ ହୃଦୟ ପରିବର୍ତ୍ତନର ଯୁଗ ଭାବ ଯେପରି ଏହି ନାଟକଟିକୁ ପ୍ରାଣବନ୍ତ କରିଛି ତାହା ବାସ୍ତବିକ ହୃଦ୍ୟ।

ନାଟ୍ୟକାର ଶ୍ରୀ ସାହୁ ଦୀର୍ଘଦିନ ଧରି ନାଟକ ଲେଖିଆସୁଛନ୍ତି। ଅନେକ ନାଟକ ତାଙ୍କର ଅଭିନୀତ ଓ ପ୍ରକାଶିତ। କେତେକ ମଧ୍ୟ ଅପ୍ରକାଶିତ। ପ୍ରତ୍ୟେକ ନାଟକ ତାଙ୍କର ସାମାଜିକ ଅଙ୍ଗୀକାରବଦ୍ଧତାର ନିଦର୍ଶନ। ଏକ ନିର୍ଦ୍ଦିଷ୍ଟ ସାମାଜିକ ଆଦର୍ଶକୁ ଲକ୍ଷ୍ୟ ରଖି ସେ ନାଟକ ଲେଖୁଥିବାରୁ ତାଙ୍କ ନାଟକ ହେଉଛି ଏକାଗ୍ର ଓ ସାମାଜିକ କ୍ରାନ୍ତିର ଅଭିମୁଖୀନ। 'କ୍ରାନ୍ତି' ନାଟକ ତାଙ୍କ ବୈପ୍ଳବିକ ଆଭିମୁଖ୍ୟର ସଫଳ ଅଭିବ୍ୟକ୍ତି କହିଲେ ସତ୍ୟର ଅପଳାପ ହେବନାହିଁ। ଏ ନାଟକରେ ବିପ୍ଳବ ଅଛି, ବୌଦ୍ଧିକତା ଅଛି; ମାତ୍ର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ 'ହୃଦୟ' ନେଇଛି ଗୁରୁତ୍ୱପୂର୍ଣ୍ଣ ସ୍ଥାନ। ନାଟ୍ୟକାର ସୂଚାଇ ଦେଇଛନ୍ତି ବୁଦ୍ଧି ନୁହେଁ; ହୃଦୟର ଜାଗରଣ ହେଲେ ହିଁ ସାମାଜିକ କ୍ରାନ୍ତି ସମ୍ଭବ ଓ ଏହି ହୃଦୟବତ୍ତା ପ୍ରତିଷ୍ଠା କରିବ ଏକ ନୂତନ ଶୋଷଣମୁକ୍ତ ସମାଜ । 'କ୍ରାନ୍ତି' ନାଟକ ଏହି ଚିନ୍ତନର ସଫଳ ଅଭିବ୍ୟକ୍ତି ।

ନାଟକର ଗୌରବ ନିଜେ ନାଟକ, ନାଟକ କହୁ ନିଜ କଥା।

ଅପର୍ଣ୍ଣା ନଗର

କଟକ

●●●

# ଓ' ସବାଶେଷଲୋକ : ଏକ ସାରସ୍ୱତ ଆକଳନ

ପ୍ର. ନୀଳାଦ୍ରି ଭୂଷଣ ହରିଚନ୍ଦନ

ନାରାୟଣ ସାହୁ ନବଚେତନାଧର୍ମୀ ଓଡ଼ିଆ ନାଟ୍ୟଜଗତର ଅନ୍ୟତମ ଯଶସ୍ୱୀ ନାଟ୍ୟକାର। ତାଙ୍କର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ଏକଦା ନାଟ୍ୟାମୋଦୀମାନଙ୍କ ମନରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା। ତାଙ୍କର 'ଓ'ସବାଶେଷଲୋକ' ଆକାଶବାଣୀ ମାଧ୍ୟମରେ ସର୍ବଭାରତୀୟ ସ୍ତରରେ ପ୍ରସାରିତ ହୋଇ ଏବଂ ବିଭିନ୍ନ ନାଟ୍ୟସଂସ୍ଥା ଦ୍ୱାରା ଅଭିନୀତ ହୋଇ ଶ୍ରୋତା ଓ ଦର୍ଶକମାନଙ୍କର ସତୃଷ୍ଣା ପରିତୃପ୍ତ କରିପାରିଛି।

'ସବାଶେଷଲୋକ' କାଳ କାଳ ଧରି ସମାଜରେ ଲାଂଛିତ ଅବହେଳିତ। ସେ ଚିରଦିନ ସୁଭଗ ଶ୍ରେଣୀର ଅନ୍ୟାୟ, ଅତ୍ୟାଚାର ଓ ଶୋଷଣର ଶିକାର ହୋଇଆସିଛି। ନିଶ୍ଚେଷ୍ଟ, ପ୍ରତିକ୍ରିୟାଶୂନ୍ୟ, ଆତ୍ମପ୍ରତ୍ୟହହୀନ, ସବାଶେଷ ଲୋକଟି ସମସ୍ତଙ୍କ ପଛରେ ରହିବାକୁ ନିଜର ଧର୍ମ ବୋଲି ମାନି ନେଇଛି। ସାମନାକୁ ଆସିବାର ଶକ୍ତି ଓ ସାହସ ତା'ର ନାହିଁ। ଚିରକାଳ ସାମାଜିକ ଅସମ୍ମାନ ଭୋଗ କରିବା ତା'ର ଭାଗ୍ୟଲିପି। ଏହିପରି ଏକ ସମାଜ ବାସ୍ତବବାଦୀ ଚିନ୍ତାକୁ ଉପଜୀବ୍ୟ କରି 'ଓ ସବାଶେଷଲୋକ'ର ସୃଷ୍ଟି ପ୍ରୟାସ। ଏହି ଭାବବସ୍ତୁଟି ଉପସ୍ଥାପିତ ହୋଇଛି ଏକ ବୃହତ୍ତର ପଟ୍ଟଭୂମିରେ, ବ୍ରେକ୍‌ଶ୍‌ଟୀୟ ଏପିକ୍ ନାଟ୍ୟଶୈଳୀରେ। ଭାରତବର୍ଷର ପୌରାଣିକ, ଐତିହାସିକ ଓ ସାଂପ୍ରତିକ ପ୍ରେକ୍ଷାପଟ୍ଟରେ ସାମାଜିକ, ଆର୍ଥନୀତିକ ଓ ରାଜନୈତିକ ପ୍ରତାରଣାର ନଗ୍ନ ସ୍ୱରୂପ ଉଦ୍‌ଘାଟନ ଲାଗି ନାଟକଟି ଉଦ୍ଦିଷ୍ଟ।

ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ ପ୍ରବଳ ପରାକ୍ରାନ୍ତ ଇଂରେଜ ସରକାର ବିରୁଦ୍ଧରେ ଜୀବନମୂର୍ଚ୍ଛା ସଂଗ୍ରାମ କରିଥିଲେ ସେମାନେ ସ୍ୱାଧୀନତାପ୍ରାପ୍ତି ପରେ ଏକ ଶୋଷଣମୁକ୍ତ ସ୍ୱର୍ଣ୍ଣିଳ ଭାରତବର୍ଷର କଳ୍ପନା କରିଥିଲେ । କିନ୍ତୁ ସ୍ୱାଧୀନତା ପରେ ଏକ ସୁବିଧାବାଦୀ ଗୋଷ୍ଠୀର ଉଦ୍ଭବ ଘଟିଲା। ସେମାନେ କୌଶଳକ୍ରମେ ରାଜନୈତିକ ଶକ୍ତି ଓ କ୍ଷମତାତନ୍ତ୍ରକୁ କରାୟତ କରିନେଲେ। ପ୍ରକୃତ ତ୍ୟାଗ ସ୍ୱୀକାର କରିଥିବା ଜାତୀୟତାର ସ୍ୱପ୍ନବିଭୋର ବ୍ୟକ୍ତିମାନଙ୍କୁ ଦେଶ ଶାସନଠାରୁ ଦୂରେଇ ଦିଆଗଲା। ଧନୀ, ଜମିଦାର, ପୁଞ୍ଜିପତି, ବ୍ୟବସାୟୀ, ରାଜନେତା, ପ୍ରଶାସକ, ଧର୍ମାଧିକାରୀ ପ୍ରଭୃତି ବିଭିନ୍ନ ବିତ୍ତଶାଳୀ ଗୋଷ୍ଠୀ ପ୍ରଭାବ ବିସ୍ତାର କରି ବସିଲେ। ଏହି ଗୋଷ୍ଠୀଗୁଡ଼ିକ ଦ୍ୱାରା ସାମାଜିକ, ଆର୍ଥନୀତିକ,

ରାଜନୈତିକ ଓ ଧର୍ମୀୟ କ୍ଷେତ୍ରରେ ନିମ୍ନବିତ ଓ ଦରିଦ୍ର ଲୋକମାନେ କ୍ରମାଗତ ଶୋଷଣର ସମ୍ମୁଖୀନ ହେଲେ । ବିତ୍ତଶାଳୀ ଓ ବିତ୍ତହୀନଙ୍କ ମଧ୍ୟରେ ଏକ ବିରାଟ ବିଭାଜନ ଦେଖାଗଲା । ଶୋଷିତ ଓ ଅତ୍ୟାଚାରିତ ଜନସାଧାରଣଙ୍କ ଦୁଃଖ ଓ ଦାରିଦ୍ର୍ୟ ଅନ୍ତହୀନ ହୋଇଉଠିଲା । ଏହା ହିଁ ହେଉଛି ଭାରତବର୍ଷର ବାର୍ତ୍ତମାନିକ ଚିତ୍ର । ମୂଳ ବକ୍ତବ୍ୟର ଶକ୍ତିଶାଳୀ ଉପସ୍ଥାପନ ଲାଗି ନାଟ୍ୟକାର ଅତୀତକାଳୀ ପୁରାଣ ଓ ଇତିହାସର କେତେକ ଶୋଷଣ ଚିତ୍ର ସଂଯୋଜିତ କରିଛନ୍ତି ।

ନାଟକଟି ମୂଳତଃ ସମାଜ ବାସ୍ତବବାଦୀ ଚିନ୍ତା ସମ୍ବଳିତ । ନାଟ୍ୟକାର ଯୁଗ ଯୁଗ ଧରି ଚାଲି ଆସିଥିବା ଶୋଷଣ ଓ ଅନ୍ୟାୟ ଅତ୍ୟାଚାରର ଛିନ୍ନଚିତ୍ର ପରିବେଷଣ କରି ଜନଚିତ୍ତରେ ଆଲୋଡ଼ନ ସୃଷ୍ଟି କରିବାର ପ୍ରୟାସ କରିଛନ୍ତି । ଶୋଷିତ ସମାଜକୁ ଜାଗ୍ରତ କରି ତା'ମନରେ ନୂତନ ଶକ୍ତି ଓ ସାହସ ଭରି ଦେଇଛନ୍ତି । ତାକୁ ଅନ୍ୟାୟର ପ୍ରତିରୋଧ ଲାଗି ଦଢ଼ ଭାବରେ ଠିଆହେବାର ପ୍ରେରଣା ଯୋଗାଇଛନ୍ତି । ନାଟକର ଶେଷ ଅଂଶରେ ଏଇ ସ୍ୱରଟି ଧ୍ୱନିତ ହୋଇ ଉଠିଛି- "ତୋ ଦୁର୍ବଳତାର ସୁଯୋଗ ନେଇ ସେମାନେ ତୋ କାନ୍ଧ ଉପରେ ପାଦ ଦେଇ ଉପରକୁ ଉପରକୁ ଉଠିଲେ । କେବେ ବି ତୁ ପ୍ରତିବାଦ କଲୁନି । କେତେ ଦିନ ଏମିତି ପଡ଼ି ରହିଥିବୁ ? ନିଜ ଭିତରର ଶକ୍ତିକୁ ଜାଗ୍ରତ କର ।" (ପୃ.୩୪)

ଚିରଦିନ ଅନାର୍ଯ୍ୟ ଗୋଷ୍ଠୀ ଉପରେ ଆର୍ଯ୍ୟଗୋଷ୍ଠୀର ଅତ୍ୟାଚାର ଲାଗି ରହିଛି । ଅବଶ୍ୟ ବନବାସୀ ସଂପ୍ରଦାୟ ବେଳେବେଳେ ଅନ୍ୟାୟର ପ୍ରତିରୋଧ କରିଛି । ତା'ଉପରେ ଆକ୍ରମଣ ହେଲେ ସେ ପ୍ରତି ଆକ୍ରମଣ କରିଛି । ତା'ର ଜୀବନ ପ୍ରତି ଭୟ ନାହିଁ । ନିଜର ସମ୍ମାନ ରକ୍ଷା ପାଇଁ ସେ ପ୍ରାଣପାତ କରିପାରେ । ନାଟକର ପ୍ରଥମ ପର୍ଯ୍ୟାୟରେ ପ୍ରଦର୍ଶିତ ହୋଇଛି ମହାଭାରତର ଗୋଟିଏ ଚିତ୍ରଜାରା ଶବରର ପତ୍ନୀକୁ ବଳାତ୍କାର କରିବାକୁ ଉଦ୍ୟମ କରିଛନ୍ତି ଦୁରାତ୍ମା ଦୁର୍ଯ୍ୟୋଧନ ଓ ତା'ର ଅପରିଣାମଦର୍ଶୀ ଭାଇମାନେ । ସେମାନେ ସହସା ସମ୍ମୁଖୀନ ହୋଇଛନ୍ତି ଜାରା ଶବରର ପ୍ରଚଣ୍ଡ ଆକ୍ରମଣର । ଅବିମୃଶ୍ୟକାରିତାର ଉପଯୁକ୍ତ ଶାସ୍ତିବିଧାନ କରିବାକୁ ଯାଇ ସମସ୍ତ କୌରବ ଭ୍ରାତାଙ୍କୁ ପ୍ରଚଣ୍ଡ ଶରାଘାତରେ ନିଧନ କରିଛି ବୀର ଜାରା । କିନ୍ତୁ ଏଥିରେ ପରବର୍ତ୍ତୀ ଘଟଣାଟି ବଡ଼ ମର୍ମସ୍ପର୍ଶୀ । ଗୁରୁ ଦ୍ରୋଣ ଯେତେବେଳେ ଘଟଣାସ୍ଥଳରେ ପହଂଚି ଏ ଦୃଶ୍ୟ ଦେଖନ୍ତି, ଜାରାର ଅସାଧାରଣ ଶକ୍ତି ସଂପର୍କରେ ଅବହିତ ହୋଇଯାନ୍ତି । ଭାବନ୍ତି, ଜାରା ଅସ୍ତ୍ରଚାଳନା କୌଶଳ ନିକଟରେ ସମସ୍ତ ପାଣ୍ଡବ-କୌରବଙ୍କ ବୀରତ୍ୱ ନିଷ୍ପ୍ରଭ । ରାଜପୁତ୍ରମାନଙ୍କୁ ତାଙ୍କର ଅସ୍ତ୍ରଶିକ୍ଷାଦାନ ବ୍ୟର୍ଥ । ସରଳତାବଶତଃ ଜାରା ଦ୍ରୋଣଙ୍କ ଠାରୁ ପରୋକ୍ଷ ଭାବେ ଶିକ୍ଷାଲାଭ କରିଛି ବୋଲି ସ୍ୱୀକାର କରିଛି । ଗୁରୁଙ୍କ ଅନୁରୋଧରେ ମୃତ କୌରବମାନଙ୍କୁ ଶରଦ୍ୱାରା ଜୀବନ୍ୟାସ ଦେଇଛି । କିନ୍ତୁ ଗୁରୁଙ୍କ କପଟତାରେ ଏହି ଅପ୍ରତିଦ୍ୱନ୍ଦ୍ୱୀ ବୀରର ଜୀବନରେ ଚରମ ବିପର୍ଯ୍ୟୟ

ଓହ୍ଲାଇ ଆସିଛି । ଗୁରୁ ଦ୍ରୋଣ କୌଶଳକ୍ରମେ ଗୁରୁଦକ୍ଷିଣା ନାଁରେ ଏକଲବ୍ୟର ବୃଦ୍ଧାଙ୍ଗୁଳିକୁ ଛେଦନ କରାଇଛନ୍ତି; ତା'ର ଶରଚାଳନା ସାମର୍ଥ୍ୟକୁ କ୍ଷୁଣ୍ଣ କରିଛନ୍ତି । ଅଦ୍ୱିତୀୟ ଧନୁର୍ଦ୍ଧର ଏକଲବ୍ୟ ଆର୍ଯ୍ୟଗୁରୁଙ୍କର ଜଘନ୍ୟ ପ୍ରବଂଚନାରେ ଜଣେ ସାଧାରଣ ଅସ୍ତ୍ରାଚାରୀ ସ୍ତରକୁ ଅବନମିତ ହୋଇଯାଇଛି । ଜାରା ବା ଏକଲବ୍ୟ ବନବାସୀ ଅନାର୍ଯ୍ୟ ଗୋଷ୍ଠୀର ପ୍ରତୀକ ଭାବେ ଉପସ୍ଥାପିତ ହୋଇଥିବାବେଳେ ଦ୍ରୋଣ ଗୁରୁ ଉପସ୍ଥାପିତ ହୋଇଛନ୍ତି ନଗରବାସୀ ଆର୍ଯ୍ୟଗୋଷ୍ଠୀର ପ୍ରତୀକଭାବେ । ଆଜିବି ବନବାସୀମାନେ ନଗରବାସୀମାନଙ୍କ ଦ୍ୱାରା ଏପରି ଶୋଷଣ ଓ ପ୍ରତାରଣାର ଶିକାର ହୋଇ ଚାଲିଛନ୍ତି ।

ପରବର୍ତ୍ତୀ ଚିତ୍ର ଭାବରେ କୋଣାର୍କ ମନ୍ଦିର ନିର୍ମାଣର ଇତିହାସର ଏକ ପୃଷ୍ଠା ନାଟ୍ୟ ରୂପାୟନ ଲାଭ କରିଛି । ନରସିଂହ ଦେବ ଯୁଗଯୁଗ ପାଇଁ ନିଜର ଅମରକୀର୍ତ୍ତି ସ୍ଥାନଲାଗି କୋଣାର୍କ ମନ୍ଦିରର ପରିକଳ୍ପନା କଲେ । ବାରଶହ ବଢ଼େଇ ରାଜାଦେଶରେ କଠିନ ପରିଶ୍ରମ କରି ମନ୍ଦିର ଗାତ୍ରରେ ସୂକ୍ଷ୍ମ କାରୁକଳା ଫୁଟାଇଲେ । ରାଜାଦେଶର ପ୍ରଚଣ୍ଡ ପରିଣତି ଚିନ୍ତା କରି ସେମାନେ ବାରବର୍ଷକାଳ ଭୋକଶୋଷ ଭୁଲିଗଲେ, ଜୀବିକାର୍ଜନ ଭୁଲିଗଲେ; ସର୍ବୋପରି ଭୁଲିଗଲେ ସେମାନଙ୍କ ପରିବାର, ପିତାମାତା, ସ୍ତ୍ରୀ ପୁତ୍ର ସମସ୍ତଙ୍କୁ । ଏଇ ଦୀର୍ଘକାଳ ଭିତରେ ଅନେକ ଶିଳ୍ପୀ ଖାଦ୍ୟ ଅଭାବରେ ରୁଗ୍‌ଣ ହୋଇପଡ଼ିଲେ, କେତେକ ମୃତ୍ୟୁବରଣ କଲେ । ପରିବାରର ଲୋକେ ଅଭାବ, ଅନଟନରେ ସନ୍ତପ୍ତ ହେଲେ । ରାଜାଙ୍କର ଉଚ୍ଚାଭିଳାଷ ସାର୍ଥକ ହେଲା । ତାଙ୍କର କୀର୍ତ୍ତିଧ୍ୱଜା ଆକାଶରେ ଉଡ଼ିଲା । ମନ୍ଦିର ନିର୍ମାଣ ପଶ୍ଚାତରେ ରହିଥିବା ଚରମ ଶୋଷଣର ଚିତ୍ର କିନ୍ତୁ ଦୁନିଆ ଆଖିକୁ ଦିଶିଲା ନାହିଁ । ନରସିଂହ ଦେବଙ୍କ ମହାନ୍ କୀର୍ତି ସମସ୍ତଙ୍କୁ ମୁଗ୍ଧ, ଚକିତ କଲା । କିନ୍ତୁ ଶୋଷଣଗ୍ରସ୍ତ ଶିଳ୍ପୀମାନଙ୍କର ଅନ୍ତରର ବ୍ୟଥା ଲୋକ ଲୋଚନର ଅନ୍ତରାଳରେ ରହିଗଲା, କେହି ବି ଥରେ ପ୍ରଶ୍ନ ଉଠାଇଲେନି ।

ତୃତୀୟ ପର୍ଯ୍ୟାୟରେ ବର୍ତ୍ତମାନ ସମୟର ରାଜନୈତିକ ଶୋଷଣ, ପ୍ରତାରଣା, ଅତ୍ୟାଚାର ଓ ଅନ୍ୟାଚାରର ଚିତ୍ର ଉପସ୍ଥାପିତ । ସମାଜର ସବା ଶେଷ ସ୍ତରର ଲୋକ ଅତୀତରେ ଶୋଷିତ ହେଉଥିଲା, ଏବେମଧ୍ୟ ଶୋଷିତ ହେଉଛି ଦୁର୍ନୀତିଗ୍ରସ୍ତ ରାଜନେତାଙ୍କ ଦ୍ୱାରା ।ଅତ୍ୟାଚାର ଓ ଶୋଷଣର ପରିସମାପ୍ତି ନାହିଁ । ଶେଷ ଲୋକ ସମାଜରେ ଚିରଦିନ ଶେଷ ଲୋକ ହୋଇ ରହିଯାଇଛି । ତା'ର ଉତ୍‌ଥାନ ନାହିଁ ତା'ର ଆତ୍ମପ୍ରତ୍ୟୟ ନାହିଁ ।ସେ ଅନ୍ୟାୟ, ଅତ୍ୟାଚାର, ପ୍ରବଂଚନା, ମିଥ୍ୟାଚାର ସଂପର୍କରେ ସଚେତନତା ସୃଷ୍ଟିକରି ସାଧାରଣ ମଣିଷ ମନରେ ବୈପ୍ଳବିକ ପ୍ରେରଣା ଓ ଆତ୍ମପ୍ରତ୍ୟୟ ଭରିଦେବା ଆଜିର ନାଟ୍ୟକାରର କର୍ତ୍ତବ୍ୟ । ସେ କର୍ତ୍ତବ୍ୟ ପାଳିତ ହୋଇଛି ଏ ନାଟକରେ ।

ଇତିହାସର ପୁନରାବର୍ତ୍ତନ ଘଟେ। ଅତୀତ ଫେରିଆସେ ବର୍ତ୍ତମାନକୁ। ସମୟ ବଦଳେ, ପରିବେଶ ବଦଳେ, ଚରିତ୍ର ବଦଳେ କିନ୍ତୁ ଉତ୍ପୀଡ଼ନ ଶେଷହୁଏ ନାହିଁ। ସମାଜର ଉଚ୍ଚଶ୍ରେଣୀ ଓ ନୀଚଶ୍ରେଣୀ ଏକ ସମତଳକୁ ଆସିପାରନ୍ତି ନାହିଁ। ସମାଜର ସବୁ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରେ ଆଗ ଲୋକ, ସବୁ ଦୁଃସ୍ଥିତିର ସମ୍ମୁଖୀନ ହୁଏ ପଛଲୋକ। ଏହା ଏକ ଚିରନ୍ତନ ପ୍ରକ୍ରିୟା। ଏହି ସାଂପ୍ରତିକ ଅବସ୍ଥାର ପ୍ରଭାବଶାଳୀ ଉପସ୍ଥାପନ ଲାଗି ନାଟକଟି ବର୍ତମାନ ସହିତ ଅତୀତକୁ ସଂଯୁକ୍ତ କରାଯାଇଛି। ମହାକାବ୍ୟିକ ନାଟ୍ୟରୀତିରେ ଭିନ୍ନ ପଟ୍ଟଭୂମିର ପାରସ୍ପରିକ ସଂଯୋଗ ଏବଂ ଦର୍ଶକ ସହ ସମନ୍ୱୟ ସ୍ଥାପନଲାଗି ପ୍ରସଂଗ ଦୃଶ୍ୟର ଗୀତମାନ ସଂଯୋଜିତ। ଏକ ବକ୍ତବ୍ୟଧର୍ମୀ ନାଟକରେ ସ୍ୱତନ୍ତ୍ର ଚରିତ୍ର ସୃଷ୍ଟିର ଆବଶ୍ୟକତା ନାହିଁ। ସେହି ଦୃଷ୍ଟିରୁ ଏଥିରେ ଚରିତ୍ର-ରୂପାନ୍ତରୀକରଣ ରୀତି ଅବଲମ୍ବନ କରାଯାଇଛି।

ନାଟକଟି ଏକ ସଫଳ ସମାଜ ଚେତନାଧର୍ମୀ ସୃଷ୍ଟି। ଏହା ସହୃଦୟ ପାଠକ ଓ ନାଟ୍ୟାମୋଦୀମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିବ ବୋଲି ମୋର ବିଶ୍ୱାସ।

୧୬୮ / କେ-୩

କଳିଙ୍ଗ ନଗର, ଭୁବନେଶ୍ୱର - ୩

●●●

# ଅନନ୍ତ ଅନୁଭୂତିର ଆଲେଖ୍ୟ : ଉପାସନା

ପ୍ର. ଆଦିକନ୍ଦ ସାହୁ

ନାରାୟଣ ସାହୁଙ୍କ ରଚିତ ନାଟକ 'ଉପାସନା' ଏକ ଅତି ସଫଳ ନାଟକ। ଏହି ନାଟକରେ ସମୁଦାୟ ବିଷୟପିଣ୍ଡ ହେଉଛି ଗୋଟେ ସମୁନ୍ନତ ପ୍ରେମିକତା।

ପ୍ରେମ ସର୍ବତ୍ର ସବୁ ଭାଷା ସାହିତ୍ୟରେ ଏକ ଧ୍ରୁପଦୀ ବା ଏପିକ୍‌ର ବିଷୟ। ଯୁଗଯୁଗ ଧରି ଯାହା ମନୁଷ୍ୟ ହୃଦୟରେ ଏକାନ୍ତ ଗୋଟେ ଏସ୍‌ଥେଟିକ୍ ମହନୀୟତା ଭିତରେ ଚିରନ୍ତନ ହୃଦୟ ବୃତ୍ତି ରୂପେ ରହିଆସିଛି।

ନାଟକଟିର ପ୍ରତିପାଦ୍ୟ ହେଉଛି ପ୍ରେମ ଉପାସନା; ଯାହାର ଆରମ୍ଭ ଅଛି ହେଲେ ଅନ୍ତ ନାହିଁ।

ପ୍ରେମ ମନୁଷ୍ୟତା ହୃଦୟର ସର୍ବୋତ୍ତମ ବିଗଳନର ବିଷୟ। ଭଗୀରଥର ଚିତ୍ତ ପ୍ରଶାନ୍ତିର କାରଣ।

ବିଜିଗୁପ୍ତ ଆଉ ଚିତ୍ରଲେଖା ଚରିତ୍ର ଦୁଇଟି ମହିମାମଣ୍ଡିତ ହୋଇଛି ସେଇ ପ୍ରେମର ଗୌରବରେ। ପ୍ରେମ ବସ୍ତୁତଃ ଆତ୍ମ ବିଜୟର ପୂଜା।

ନାଟ୍ୟକାରଙ୍କ ଗ୍ରାହକତାକୁ ମୁଁ ସବୁଠାରୁ ବେଶୀ ପ୍ରଶଂସା କରୁଛି, ଯେ ରାଜା ହେଉ କି ପ୍ରଜା ହେଉ ଯେଉଁ ମଣିଷ ତା ଅନ୍ତଃସ୍ଥଳରେ ତା ପ୍ରେମିକତାକୁ ଐଶ୍ୱର୍ଯ୍ୟ ବୋଲି ମନେକରେ ନାଟ୍ୟକାର ପ୍ରଫେସର ସାହୁ ତା ଜୀବନର ମହନୀୟତାକୁ ପ୍ରତିପାଦନ କରିଛନ୍ତି ଏଇ ନାଟକରେ।

ନାଟକର ନାମକରଣଟି ଅଧିକ ପ୍ରଶଂସାଯୋଗ୍ୟ।'ଉପାସନା' ଶବ୍ଦଟିର ଭାବବଳୟ ଯେପରି ଚିତ୍ତପ୍ରବୋଧକ ସେହିପରି ବିସ୍ତୀର୍ଣ୍ଣ। ଉପସନା ଶବ୍ଦଟି ମୋତେ ପୁଣି ତା'ର ପ୍ରଭାବ ଓ ଆବେଦନ ଦୃଷ୍ଟିରୁ ଅଧିକ ପ୍ରେରଣାଦାୟକ ଲାଗିଲା।

ଯେ କୌଣସି ପ୍ରେମ କାହାଣୀ ପଢ଼ିବା ଆଦୌ କ୍ଳାନ୍ତିକର ହୋଇନଥାଏ। ଯଥେଷ୍ଟ ଉତ୍ସୁକତାର ସହିତ ମୁଁ ଏ ନାଟକଟି ପଢିଛି ଓ ଆନନ୍ଦଲାଭ କରିଛି। ମନେମନେ ନାଟ୍ୟକାରଙ୍କ ଏପରି ବିଷୟ ଚୟନକୁ ଭାରି ତାରିଫ କରିଛି।

ମୋ ଉପଲବ୍ଧିରେ ଆମ ଓଡ଼ିଆ ପ୍ରଫେସରମାନେ କେମିତି ଟିକିଏ ଅଧିକ ରକ୍ଷଣଶୀଳ ଲାଗନ୍ତ। ରକ୍ଷଣଶୀଳତା ଭଲ କି ମନ୍ଦ ସେକଥା ମୁଁ କିଛି କହୁନି। ହେଲେ

ଗୋଟେ ନିର୍ଦ୍ଧାରିତ ଜୀବନନିଷ୍ଠ କଳା ସୃଷ୍ଟିପାଇଁ ରକ୍ଷଣଶୀଳତା ବେଳେବେଳେ ବାଧକ ହୋଇଥାଏ।

ମୋତେ ଭାରି ଖୁସି ଲାଗିଲା ନାଟ୍ୟକାର ନାରାୟଣ ସାହୁ ସେ ବଳୟରୁ ମୁକୁଳି ଆସିଛନ୍ତି। ସେ ଏ ନାଟକ ଜରିଆରେ ଚିରକାଳ ସତ୍ୟକୁ ଯେପରି ବୟାନ କରିଛନ୍ତି।

ଗୋଟେ ପ୍ରଗାଢ଼ ପ୍ରେମ ମନୁଷ୍ୟକୁ ଋଷିତୁଲ୍ୟ ସାଧୁତା ପ୍ରଦାନ କରେ। ଉପାସନା ନାଟକଟି ଭାରତୀୟ ବାଙ୍ମୟରେ ସେମିତି ଗୋଟେ ବର୍ଣ୍ଣାଢ୍ୟ ଆଲେଖ୍ୟ। ବଳିଦାନର ପରାକାଷ୍ଠା ନଥିଲେ କେହି ଜଣେ ସତ କହିଲେ ବିଜିଗୁପ୍ତ ପରି ପ୍ରେମିକ ପ୍ରବର ହୋଇପାରିବନି।

ପାପପୁଣ୍ୟ ସବୁକିଛି ଉର୍ଦ୍ଧ୍ୱରେ ପ୍ରେମାସ୍ପଦ ପ୍ରିୟ ନାରୀଜଣକ ଅନନ୍ତ ଅକଳନ୍ତି ଅନୁଭୂତିର ଉତ୍ସ। ଚେତନାର ସହଚରୀ।

ନାଟ୍ୟକାରଙ୍କର ଏହା ପ୍ରାଣବାଣୀ ହୋଇନଥିଲେ ଏତେ ଭାବ ପରିଚ୍ଛନ୍ନତାର ନିବିଡ଼ତା ମିଳିନଥାନ୍ତା। ସଂଳାପ ଗୁଡ଼ିକ ସଂକ୍ଷିପ୍ତ, ଭାବନିଷ୍ଠ ଓ ସବୁଦୃଷ୍ଟିରୁ ବୋଧ୍ୟ ହୋଇଛି। ଗୋଟେ ବର୍ଣ୍ଣାଢ଼୍ୟ ସୂର୍ଯ୍ୟୋଦୟ ସହିତ ନାଟକର ଯବନିକା ଯୋଡ଼ା ହୋଇଛି। ତାହା ନାଟକର ସମୁଦାୟ ଭାବ ଚେତନାକୁ ଆହୁରି ମାର୍ମିକ, ଆହୁରି ଅର୍ଥପୂର୍ଣ୍ଣ କରି ଦେଇଛି।

ପ୍ରେମୀଯୁଗଳ ବିଜିଗୁପ୍ତ ଓ ଚିତ୍ରଲେଖା ଅନନ୍ତ ପ୍ରେମର ପତାକା ଉଡ଼ାଇ ରାତିର ତମିସ୍ରା ଡେଇଁ ଗାଟେ ତାମ୍ର ସକାଳ ଆଡ଼େ ମୁହାଁଇଛନ୍ତି।

ନାଟକର ନିର୍ବହତା ଦୃଶ୍ୟଟି ଅଦ୍ଭୁତ ଭାବରେ କବିତାମୟ ହୋଇ ଯାଇଛି। ଏହି 'ଉପାସନା' ନାଟକର ତାହାହ ଗୋଟେ ବଡ଼ ସଫଳତା।

କୁହାଯାଇଛି ସବୁ କବିତାରେ ହିଁ ଶେଷ ହୁଏ। 'Every thing ends in poetry.'ଏହି କାବ୍ୟ ପ୍ରଭାବ ଯେ କୌଣସି କଳାକୃତିପାଇଁ ଗୋଟେ ବଡ଼ କଥା। ଏମିତି ଏହି କାବ୍ୟ ପ୍ରଭାବଟି ବଡ଼ ଅନ୍ତରୀଣ ବିଷୟ।

ସେ କଳା ରେଖାରେ ହେଉ କି ରଂଗରେ ହେଉ କି ଶବ୍ଦରେ ହେଉ ତା'ର ଅସଲ ଚମତ୍କାରିତା ଏହି କାବ୍ୟ ପ୍ରଭାବରେ।

ବିଶ୍ୱବିଖ୍ୟାତ ସେକ୍‌ସପିୟର କିମ୍ବା ଅଶ୍ୱଘୋଷ, କାଳି ଦାସଙ୍କ ନୃକଂଳ ସବୁ ଏତେ ମାତ୍ରାରେ କାର୍ବ୍ୟିକ ହେବାର ଗୋଟେ ବଡ଼ କାରଣ ହେଉଛି ପ୍ରେମ। ତାହାହିଁ ଚିରକାଳ ପୃଥିବୀର ଜୀବନ୍ତ କବିତା। ସେ ଗଦ୍ୟ ଲେଖନ୍ତୁ କି ପଦ୍ୟ ଲେଖନ୍ତୁ, ଗଳ୍ପ ଲେଖନ୍ତୁ କି ନାଟକ ଲେଖନ୍ତୁ ବନ୍ଧ୍ୟା ଶିଳ୍ପୀ ମନ କେବେ ପ୍ରେମକୁ ଲେଖି ପାରନ୍ତିନି।

ପ୍ରେମ ହେଉଛି ନିଃସର୍ତ୍ତ ଭାବରେ ଗୋଟେ ଏପିକ୍ ବିଷୟ; ତାହା ସାଟାୟର ପରି ଚଳମାନ, ପରିବର୍ତ୍ତନଶୀଳ ବିଷୟ ନୁହେଁ। ବହୁ ଭାବରେ ବରଂ ଶାଶ୍ୱତ ଓ ବିବର୍ତ୍ତନୀୟ।

ଉପାସନା ଗୋଟିଏ ଛୋଟିଆ ନାଟକ ହେଲେ ବି ଏହାର ଗୋଓେ ନାନ୍ଦନିକ ତୁଙ୍ଗିମା ଅଛି। ଚିତ୍ରଲେଖାମାନେ ହିଁ ବିଜିଗୁପ୍ତଙ୍କ ପରି ପ୍ରେମୀପୁରୁଷଙ୍କୁ ଉଜାଗ୍ରତ କରନ୍ତି। ଗଣିକା ଭିତରେ ଗୋଟେ ଶୁଦ୍ଧ ବିଗଳନକୁ ଚିହ୍ନଟ କରିବାର ପ୍ରବଣତାଟିଏ ବେଶ୍ ବାରି ହୋଇପଡ଼େ ନାଟକରୁ।

ନାଟକଟି ପଢ଼ି ମୁଁ ଖାଲି ମୁଗ୍‌ଧ ହୋଇନି ନାଟ୍ୟକାର ନାରାୟଣଙ୍କୁ ମୁଁ ମୋର ସମଗୋତ୍ରୀୟ ମନେ କରିଛି।

ସେଇ ଭାବରେ ସମଧର୍ମା ହୋଇଥିବା କାରଣରୁ ଏଇ ଉପାସନା ନାଟକଟିକୁ ସେ ମୋତେ ପଢ଼ିବାକୁ ଦେଇଥିଲେ।

ଏହି ଉପାସନା ନାଟକଟି ମୋର ମନପସନ୍ଦ ହେବାର କାରଣଟି ହେଉଛି, ଜୀବନର ଉଷ୍ଣ ଓ ପ୍ରାଣବାନ ଯୌନପ୍ରେମ (Passionate Love) ଆସକ୍ତିର ଓ ଅସ୍ଥିରତାକୁ ନାଟ୍ୟକାର ବେଶ୍ ଫୁଟାଇ ପାରିଛନ୍ତି ବୋଲି।

ଏହି ପ୍ରସଙ୍ଗରେ ପ୍ରସିଦ୍ଧ ନାଟ୍ୟକାର ଜର୍ଜ ବର୍ଣ୍ଣାଡ଼୍ ଶଙ୍କ ଅଭିମତଟିଏ ସ୍ମରଣକୁ ଆସେ। ସେ ଥରେ କହିଥିଲେ 'Without human passion everything is mnvear.

ଅସଲ ନାଟ୍ୟକାର ସେ, ଯେ ଗନ୍ଧର୍ବ ପ୍ରେମକୁ ନଲେଖି ମଣିଷ ଓ ତା ଚତୁଃପାର୍ଶ୍ୱର ଭୂମି ସଂଲଗ୍ନ ବାସ୍ତବତାକୁ ଲେଖେ। ସବୁଠାରୁ ଅଧିକ ଆକର୍ଷଣୀୟ ଚରିତ୍ରଟି ହେଉଛି ପାଟଳୀ ପୁତ୍ରର ଅନିନ୍ଦ୍ୟ ସୁନ୍ଦରୀ ନର୍ତ୍ତକୀ ଚିତ୍ରଲେଖା, ଯାହାର କାମ କାମିନୀ ଭାବ ନାରୀର ନାଗରୀପଣକୁ ପ୍ରଦର୍ଶିତ କରିଛି। କାମକାମନୀ ଭାବ ନଥିବା ନାରୀଟିଏ ତ ଗୋଟେ ମାଂସ ପିଣ୍ଡୁଳା ଯେ କାହାକୁ ସ୍ପନ୍ଦିତ କରିପାରେ ନାହିଁ।

ନାଟକଟିର ଗୋଟେ ପାଖ ଲାମ୍ପଟ୍ୟ ଓ ପୁରୁଷର ଜାନ୍ତବ ଦେହ ଭୋଗ କାମନା ତ ଆଉ ଗୋଟେ ପାଖ ପ୍ରେମୀ ପୁରୁଷର ଏକାନ୍ତ ଉତ୍ସର୍ଗୀକୃତ ଜୀବନ। ଏହାର ସମାନ୍ତରାଳ ଓ ସଂଘର୍ଷମୟ ଅଭିଲିପି ହେଉଛି ଯେମିତି ନାଟ୍ୟକାର ଶ୍ରୀ ସାହୁଙ୍କ ଉପାସନା।

ପୁଣି ଗୋଟେ ଉର୍ଦ୍ଧ୍ୱତର ଚେତନାର ଚିତ୍ର ଆମେ ବିଜିଗୁପ୍ତଙ୍କଠାରେ ଦେଖୁଁ; ଯେ ତାଙ୍କର ସମସ୍ତ ଧନରତ୍ନ ଓ ସାମନ୍ତ ପଦବୀ ଶ୍ୱେତାଙ୍କକୁ ଦାନ କରି ତା'କୁ ଯୋଗ୍ୟ ଓ ସମର୍ଥ କରାଇଛନ୍ତି। ଏହି ଦାନ ପଶ୍ଚାତରେ ରହିଛି ମଧ୍ୟ ପ୍ରେମର ସେହି ଅପ୍ରତିହତ ଅନୁରୋଧ।

ମଣିଷର ପ୍ରେମ ଓ କରୁଣା ଏକ ସମୁନ୍ନତ ପ୍ରସ୍ତାବନା ହୋଇ ନାଟକଟିରେ ପ୍ରକଟିତ ହୋଇଛି। ନହେଲେ ସାହିତ୍ୟ କୃତିଟି ଶିକ୍ଷାତ୍ମକ didactive ହେବନି।

'ଉପାସନା' ଦ୍ୱନ୍ଦ୍ୱ ଓ ନାଟକୀୟ ଉତ୍‌କଣ୍ଠା ଭରପୂର ହୋଇ ରହିଛି। ନାଟକଟିର ଫୋର୍ସ ମଧ୍ୟ ରହିଛି। ଚିତ୍ରଣ ବା ଉପସ୍ଥାପନରେ ରହିଛି ଗୋଟେ ସ୍ୱାଗତଯୋଗ୍ୟ ମାର୍ମିକତା ସେମିତି ରହିଛି ତୀକ୍ଷ୍ଣତା ଓ ସର୍ବୋପରି ଆବଶ୍ୟକୀୟ ନାଟକୀୟତା।

ନାଟକଟି ମୋଟ ଉପରେ ସୁଖପାଠ୍ୟ ଓ ଚିତ୍ତପ୍ରବୋଧକ।

ଗଳ୍ପ ଉପନ୍ୟାସ, ନାଟକ କାବ୍ୟ କବିତା ଆଦି ଭାରତୀୟ ସାହିତ୍ୟରେ ଏହି ଚିତ୍ରଲେଖା ପରି ବିପୁଳ ଗଣିକା ଜୀବନ ଚିତ୍ରିତ ହୋଇଛି ଯାହା ନାରୀପ୍ରେମୀ ପୁରୁଷ ପ୍ରାଣକୁ ଖାଲି ପ୍ରବୋଧିତ କରିନି ଉଦ୍ବେଳିତ କରିଛି ମଧ୍ୟ।

ମୁଁ ଠିକ୍ କରି ତଥାପି କହି ପାରୁନି ଏ ନାଟକରେ ସେମିତି ଅବସର ଥିଲା କି ନାହିଁ। ନାରୀ ପୁରୁଷ ମିଳନର ଆଉ ଟିକିଏ ଅନ୍ତରଙ୍ଗ ଚିତ୍ର ଆଙ୍କିଥିଲେ ନାଟକଟିର ବିଷୟପିଣ୍ଡ ହୁଏତ ଅଧିକ ଟିକିଏ ଜୀବନମୟ ହୋଇ ପାରିଥାଆନ୍ତା।

ଅସ୍ବର୍ଣ୍ଣ, ଇବସନ, ପିଣ୍ଟର ଆଦି ତ ମଣିଷ ଜୀବନର ଅନ୍ତଶ୍ଚେତନକୁ ଉପରକୁ ଉଟାରି ଆଣିଛନ୍ତି। ଓଡ଼ିଆ ନାଟ୍ୟକାର ମନୋରଂଜନ ଦାସଙ୍କ ଏ ବିଷୟକ ସିଦ୍ଧି ଉଲ୍ଲେଖଯୋଗ୍ୟ।

ତ୍ରିଭୂଜ ପ୍ରେମର ଚିତ୍ର ବି ଉପାସନା ନାଟକଟିକୁ ଅଧିକ ନାଟକୀୟ ଦ୍ୱନ୍ଦ୍ୱ ଯୋଗେଇ ଦେଇଛି।

କିଂକର୍ତ୍ତବ୍ୟବିମୂଢ଼ ବିଜିଗୁପ୍ତଙ୍କର ଗୋଟିଏ କଡ଼େ ପ୍ରାଣସଙ୍ଗିନୀ ଚିତ୍ରଲେଖା ଆଉ ଅନ୍ୟପକ୍ଷରେ ବୟସ୍କ ଶ୍ରେଷ୍ଠୀ ମୃତ୍ୟୁଂଜୟ ସୁପୁତ୍ରୀ ଯଶୋଧାରା ଚରିତ୍ର ଦୁଇଟି ନାଟକଟିକୁ ବେଶ ଗତିଶୀଳ କରିଛି।

ନାଟକଟିକୁ ପଢିଲେ ବୌଦ୍ଧ ଯୁଗକୁ ଚାଲିଗଲା ଭଳି ଲାଗେ। ଅଧିକାଂଶ ବୌଦ୍ଧଭିକ୍ଷୁ ଓ ଶ୍ରମଣଙ୍କ ଆଗରେ ଏହି ଦ୍ୱନ୍ଦ୍ୱ ଥିଲା-ଆସକ୍ତି ଓ ଅନାସକ୍ତିର।

ନାଟକଟିରେ ଯଦିଓ ନାରୀପୁରୁଷଙ୍କ ପ୍ରେମ ବର୍ଣ୍ଣିତ ତାହା କଦାପି 'boy meets girl story'ପର୍ଯ୍ୟାୟର ନୁହେଁ। ନାଟକଟିର ବିଷୟବସ୍ତୁ ବେଶ ଶାସ୍ତ୍ରୀୟ ଲାଗେ।

ବିଶ୍ୱବ୍ରହ୍ମାଣ୍ଡରେ ତ କୋଟି କୋଟି ବିଷୟ ପଡ଼ିଛି। ହେଲେ ବିଷୟ ଚୟନର ମାନ ରହିଛି। 'ଉପାସନା' କ୍ଲାସିକ ପର୍ଯ୍ୟାୟର ନାଟ୍ୟଗୁଣ ବିମଣ୍ଡିତ ଏକ ସଫଳ ନାଟକ ବୋଲି ବର୍ଣ୍ଣନା କରାଯାଇ ପାରେ।

ସାଧକ ଓ ସାମନ୍ତ ସୌଦାଗର ଯୁଗରେ ଏ ସବୁ ବ୍ୟାପକ ଭାବରେ ଘଟୁଥିଲା। ଆଉ କେହି ନୁହେଁ ଏମିତି ସାମାଜିକ ଉଦ୍‌ବେଳନ କେନ୍ଦ୍ରରେ ଥିଲା ଚିତ୍ରଲେଖାଙ୍କ ପରି ସ୍ୱାଧୀନଭର୍ତ୍ତୃକା ନାରୀ।

ସାମାଜିକ ବାସ୍ତବତା ଦୃଷ୍ଟିରୁ ନାଟକଟିର ସଫଳତାକୁ ଆଉ ଟିକିଏ ମୂଲ୍ୟ ଦେଇ ବିବେଚନା କରାଯାଇପାରେ।

କଳିଙ୍ଗ ନଗର
ଭୁବନେଶ୍ୱର – ୩

●●●

# 'ଶେଷକଥା'ର ଶେଷ ହେଉନଥିବା କଥା

ପ୍ର. ସଂଘମିତ୍ରା ମିଶ୍ର

ନାଟକ କଥାକୁହା ସାହିତ୍ୟ, ଦର୍ଶକମାନେ ଏହାକୁ ଏକ ସମୟରେ ଦେଖନ୍ତି ଓ ଶୁଣନ୍ତି। ଖାଲି ଦେଖନ୍ତିନି ଅନୁଭବ କରନ୍ତି ଓ ତହିଁରୁ ସମୟର ପ୍ରାଣ ସ୍ପନ୍ଦନକୁ ଖୋଜି ପାଆନ୍ତ। ସେହି ନାଟକ ଗୁଡ଼ିକ ସଫଳ ଯାହାର କଥାବସ୍ତୁ, ଚରିତ୍ର, ସଂଳାପ ଦର୍ଶକ ମାନଙ୍କ ଆଗ୍ରହକୁ ଧରି ରଖିବାରେ ସମର୍ଥ। ସେହି କଥାବସ୍ତୁର ମଂଚାୟନ ଦେଖି ଦର୍ଶକ ଭାବେ ଏ ମୋର ପରିଚିତ ପରିବେଶର କଥାବସ୍ତୁ। ଏ ଚରିତ୍ରମାନେ ମୋର ଭାଇ ବନ୍ଧୁ କୁଟୁମ୍ବ ପଡ଼ୋଶୀ। ପୁଣି ଏଭଳି ଭାଷା ତ ମୁଁ ସାଧାରଣ ଭାବେ ଶୁଣିଥାଏ। ଏହି ଦୃଷ୍ଟିରୁ ଦେଖିଲେ ୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟକ ଓଡ଼ିଶାର ସାମାଜିକ ଜୀବନର ପ୍ରତଫଳନ ପାଲଟିଛି। କେବେ ପୁରାଣ ଇତିହାସ ଓ କିମ୍ବଦନ୍ତୀକୁ ସାଂପ୍ରତିକ ଜନଜୀବନର ସମସ୍ୟା ସହିତ ଏକାତ୍ମ କରାଯାଇଛି ତ କେବେ ଖବର କାଗଜର ବା ଟିଭିର ସମ୍ବାଦ ମଧ୍ୟ ନାଟ୍ୟକାରଙ୍କୁ ବିଚଳିତ କରି ଲେଖନୀ ଧରାଇ ଦେଇଛି। ସେ ନାଟକ ପାଲଟିଛି ସମୟର ଇସ୍ତାହାର। ଆଲୋଚ୍ୟ ନାଟକ 'ଶେଷକଥା' ସେହିଭଳି କେତେକ ଜ୍ୱଳନ୍ତ ସାମାଜିକ ସମସ୍ୟାକୁ ଏକତ୍ର କରି ସୃଷ୍ଟି ଯେଉଁ ସମସ୍ୟାର ଚେର ମନସ୍ତତ୍ତ୍ୱରେ ସମାୟିତ। ଯାହାର ଶାଖା ପ୍ରଶାଖା ହେଉଛନ୍ତି ସାଂସ୍କୃତିକ ଅବକ୍ଷୟ, ରାଜନୀତିକ ଚକ୍ରବ୍ୟୁହ ସର୍ବୋପରି ସୂକ୍ଷ୍ମ ମାନବୀୟ ସମ୍ବେଦନାର ଅଭ୍ୟୁଦୟ। ଏହାର ସ୍ରଷ୍ଟା ହେଉଛନ୍ତି ନାରାୟଣ ସାହୁ।

ନାରାୟଣ ସାହୁ ୧୫.୧୦.୧୯୫୫ରେ କେନ୍ଦ୍ରାପଡ଼ାର ଅରଡ଼ା ସାହିରେ ଜନ୍ମ। ପିତା ହରେକୃଷ୍ଣ ଓ ମାତା ମାଳତୀ ଦେବୀଙ୍କର ସେ ଥିଲେ ବହୁ ପ୍ରତିକ୍ଷିତ ସନ୍ତାନ, ଯିଏ ନିଜର ଖାଲି କୁଳ ଉଜ୍ଜ୍ୱଳ କରିନାହାନ୍ତି ବରଂ ଓଡ଼ିଆ ସାହିତ୍ୟର ଦିଗନ୍ତକୁ ଉଜ୍ଜ୍ୱଳ କରିପାରିଛନ୍ତି। ଅଭାବୀ ଘରର ସନ୍ତାନ ଭାବେ ପିଲାଦିନୁଁ ସେ ଜୀବନ ସଂଗ୍ରାମ ଆରମ୍ଭ କରିଛନ୍ତି। ସର୍ବୋଦୟ ରିଲିଫ୍ କମିଟି ଠାରୁ ଇଣ୍ଡିୟାନ୍ କ୍ୟାନ୍‌ସର୍ ସୋସାଇଟି ପର୍ଯ୍ୟନ୍ତ ସେ ଜୀବିକା ଅନ୍ୱେଷଣରେ ଘୂରିବୁଲିଛନ୍ତି। ପୁଣି ଆସିଛି ସମ୍ବାଦ, ଧରିତ୍ରୀ ପ୍ରଭୃତି ଦୈନିକରେ କାର୍ଯ୍ୟ କରିବାର ସମୟ। ଏସବୁ ଭିତରେ ଶାରୀରିକ ଅସୁସ୍ଥତା ତାଙ୍କୁ ବ୍ୟତିବ୍ୟସ୍ତ କରିଛି। ତା'ପରେ ମଧ୍ୟ ସେ ନିଜର ସଂଗ୍ରାମ ଜାରିରଖି ପ୍ରଥମେ ଓୟୁଏଟି ତା'ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ଦୂରନିରନ୍ତର ପାଠ୍ୟକ୍ରମରେ ଅଧ୍ୟାପକ ଭାବେ ଯୋଗ ଦେଇଛନ୍ତି। ଶେଷରେ ତାଙ୍କ ପ୍ରତିଭାର

ବିକାଶ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗ ଯୋଗାଇ ଦେଇଛି ବଳିଷ୍ଠ ଭିତ୍ତିଭୂମି। ତାଙ୍କ ପ୍ରଥମ ନାଟକ 'ତାମସୀ ତୃଷ୍ଣା' କଟକର ପ୍ରିମିୟର କ୍ଲବ୍ ଦ୍ୱାରା ମଂଚସ୍ଥ ହୋଇଥିଲା।

ନାଟ୍ୟକାର ସାହୁ ରେଡ଼ିଓ ନାଟକ ଜଗତରେ ଏକ ପରିଚିତ ନାମ। ଏହି ନାଟକ ଗୁଡ଼ିକ ତାଙ୍କ ଭାବପ୍ରବଣତା ଓ ଅନୁଭୂତିସିଦ୍ଧ ସତ୍ୟର ଉଚ୍ଚାରଣରେ ଅଦ୍ୱିତୀୟ। ୧୯୯୪ରେ ତାଙ୍କାରବେତାର ନାଟକ 'ଆଉ ଏକ ଇଲ୍ଲାକା'। ଓଡ଼ିଶାର ବିଭିନ୍ନ ବେତାର କେନ୍ଦ୍ରରୁ ବହୁବାର ପ୍ରସାରିତ ହୋଇଛି।

ମଂଚନାଟକ ରଚନା କରିବାରେ ମଧ୍ୟ ସେ ଯଶସ୍ୱୀ। "ଆଶ୍ରାଖୋଜି ବୁଲୁଥିବା ଈଶ୍ୱର" ନାଟକ ପାଇଁ ସେ ୧୯୯୧ରେ ଓଡ଼ିଆ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି। ମୂକ, ପୁନଶ୍ଚ ସଂଗ୍ରାମ, ଅପରାହ୍ନର ଅବଶୋଷ, ସୁବର୍ଣ୍ଣ ସକାଳ, ଉପାସନା ଓ କ୍ରାନ୍ତି ପ୍ରଭୃତି ତାଙ୍କର ବିଶିଷ୍ଟ ମଂଚ ନାଟକ। ଏତଦ୍‌ବ୍ୟତୀତ ସେ ଶିଶୁ ନାଟକ ରଚନାରେ ମଧ୍ୟ ଯଶସ୍ୱୀ। ଦୂରଦର୍ଶନ ତଥା ପଥପ୍ରାନ୍ତ ନାଟକ ରଚନାରେ ମଧ୍ୟ ସେ ସିଦ୍ଧହସ୍ତ। ଚଳଚ୍ଚିତ୍ର ରଚନାରେ ମଧ୍ୟ ସେ ହାତ ଦେଇଛନ୍ତି। ତାଙ୍କର ଏକାଙ୍କିକା ଗୁଡ଼ିକ ସାଂପ୍ରତିକ ସମସ୍ୟାକୁ ଆଲୋକିତ କରିବାରେ ସକ୍ଷମ। ସେଗୁଡ଼ିକ ହେଲା କୁମ୍ଭକର୍ଣ୍ଣ, ନାହିଁ ନାହିଁର ନକ୍‌ସା, ଝଡ଼ର ଫୁଲ, କାଳିଦାସ କଥା, ଶେଷ ଅଙ୍କ, ମୂଷା, ଫ୍ରଣ୍ଟ ଲାଇନ୍ , ବଡ଼ପୁଅ, ଥରେ ଗୋଡ଼ ଖସିଗଲେ, ଅଭିମାନ ଓ ରେବତୀ ପ୍ରଭୃତି।

ମନୋରଂଜନଙ୍କ ନାଟ୍ୟଦିଗନ୍ତ ଓ ଗୋପାଳ ଛୋଟରାୟ ନାଟ୍ୟମାନସ ତାଙ୍କ ସଂପାଦନା କୃତିଦ୍ୱର ପରିଚାୟକ। ଏତଦ୍‌ବ୍ୟତୀତ ସେ ବ୍ୟାକରଣ ଓ ରୂଢ଼ିକୋଷ ସଂକଳନ ସହିତ ମଂଚନାଟକର କଳା କୌଶଳ ଓ ନାଟ୍ୟତତ୍ତ୍ୱ ବିଚାର ଭଳି ଆଲୋଚନା ପୁସ୍ତକର ରଚୟିତା।

'ଶେଷକଥା' ନାଟକ ୦୩.୦୨.୨୦୦୬ରେ 'ଆମେ କ୍ରାନ୍ତି' ଗ୍ରୁପ୍ ପକ୍ଷରୁ ସ୍ୱସ୍ତି ଝଙ୍କାର ରାଉରକେଲାରେ ପ୍ରଥମେ ମଂଚସ୍ଥ ହୋଇଥିଲା। ପୁନର୍ବାର ଏହା ୨୧.୦୫.୨୦୦୭ ଏବଂ ୨୯.୦୧.୨୦୦୯ରେ ଅନୁଗୁଳ ନାଟ୍ୟମେଳାରେ ଅଭିନୀତ ହୋଇଛି। ଆମେକ୍ରାନ୍ତି ବ୍ୟତୀତ 'କଳାକାର' ଓ କଳିଙ୍ଗ କଳାପରିଷଦ ମଧ୍ୟ ଏହାକୁ ମଂଚସ୍ଥ କରିଛନ୍ତି।

ଏହାର କାହାଣୀ ହେଉଛି ବୟସ୍କ ମଂଚକଳାକାରଙ୍କର କାହାଣୀ। ଯାତ୍ରା, ମଂଚ ପାଇଁ ପରିବାରକୁ ପଛକରି ଚାଲି ଯାଇଥିବା ସନ୍ତୋଷ ଚୌଧୁରୀ ନାଟ୍ୟ ସମ୍ରାଟ ଭାବେ ଦର୍ଶକ ସମାଜରେ ପ୍ରଶଂସା ଓ ସମ୍ମାନର ଅଧିକାରୀ। ବୟସ ବୃଦ୍ଧି ସହିତ ତାଙ୍କୁ ଚରିତ୍ର ଅଭିନୟରେ ସନ୍ତୁଷ୍ଟ ହେବାକୁ ପଡ଼ିଛି। ଯାତ୍ରାର ମ୍ୟାନେଜର୍ ପଣ୍ଡାବାବୁ ପାର୍ଟିର ସ୍ୱାର୍ଥପାଇଁ

କୌଣସି ଭାବପ୍ରବଣତାକୁ ପ୍ରଶ୍ରୟ ଦିଅନ୍ତି ନାହିଁ। ପଦୁ ଯାତ୍ରା ପାର୍ଟିରୁ ଆସି ସନ୍ତୋଷ ବାବୁଙ୍କ ସାହାଯ୍ୟରେ ଚାହା ଦୋକାନ କରେ। ପାର୍ଟିର ଅଭିନେତାମାନେ ଚାହାପିଇ ଦୁଃଖ ସୁଖ ହୁଅନ୍ତି ଯାହା ପଣ୍ଡାବାବୁଙ୍କ ପାଇଁ ଅସହ୍ୟ ହୁଏ। ସନ୍ତୋଷ ଚୌଧୁରୀଙ୍କ ଜୀବନରେ ଯାତ୍ରା ପାର୍ଟିରେ ଥିବା ସରସ୍ୱତୀ ଆସନ୍ତି ଉଭୟ ପରସ୍ପର ସହିତ ଏକାଠି ରହି ଅଭିନୟ ଜୀବନର ଉତ୍‌କର୍ଷ ସାଧନ କରନ୍ତି। ପଣ୍ଡାବାବୁ ସରସ୍ୱତୀ ଓ ସନ୍ତୋଷଙ୍କ ଭିତରେ ମତଭେଦ ସୃଷ୍ଟି କରନ୍ତି ଓ ଅଭିମାନରେ ସରସ୍ୱତୀ ଅନ୍ୟପାର୍ଟିରେ ଯୋଗ ଦିଅନ୍ତି।

ଅପରପକ୍ଷରେ ସନ୍ତୋଷବାବୁଙ୍କ ପିତା ବୁଢ଼ା ଚୌଧୁରୀ ନିଜର ଦୁଇ ନାତି ପ୍ରକାଶ ଓ ସିଲୁ ସହିତ ପୈତୃକ ବାସଗୃହରେ ଅବସ୍ଥାନ କରନ୍ତି। ପତିଙ୍କ ଶ୍ରଦ୍ଧାରୁ ବଂଚିତ ଶ୍ରଦ୍ଧା ମାନସିକ ରୋଗୀ ପାଲଟି ସେଣ୍ଟ୍ରାଲ୍ ହସ୍ପିଟାଲ୍‌ରେ ରହିଥାଆନ୍ତି। ପ୍ରକାଶ ନିଜ ପସନ୍ଦରେ ମୁସଲମାନ ଝିଅ ବେବିନାଜ୍‌କୁ ବିବାହ କରିବାରୁ ଜେଜେ ତାଙ୍କୁ ଘରେ ଭର୍ତ୍ତି କରିଦେବେ ନାହିଁବୋଲି ଆଶଙ୍କା କରେ। ସାନଭାଇ ସିଲୁ ଜେଜେଙ୍କ ସହିତ ଥଟ୍ଟା ପରିହାସ କରେ। ପ୍ରକାଶ ନିଜ ପତ୍ନୀକୁ ଘରକୁ ଆଣିବାକୁ ସାହସ କରେ ନାହିଁ, ମାତ୍ର ସିଲୁ ସହିତ ଗୁପ୍ତ ମନ୍ତ୍ରଣା କରି କେବିନାଜ୍‌କୁ ସିଲୁର ପ୍ରେମିକାଭାବରେ ଘରେ ସ୍ଥାନ ଦିଏ। ବୁଢ଼ା ଚୌଧୁରୀ ନାତି ମାନଙ୍କ ସହିତ ପରିହାସ କରନ୍ତି ମାତ୍ର ପୁତ୍ର ବିଚ୍ଛେଦ ତାଙ୍କୁ ବେଶ୍ ବାଧିଥାଏ।

ସନ୍ତୋଷ ପିଲାଙ୍କ ପାଇଁ ପରିବାର ପାଇଁ କିଛି କରି ନପାରିଥିବାର ଅବସୋସରେ ଘାରି ହୁଅନ୍ତି। ପ୍ରକାଶ ଓ ବେବି ସନ୍ତୋଷଙ୍କୁ ଖୋଜିବାକୁ ଆସି ପଦୁ ପାଖରୁ ତାଙ୍କ ଖବର ପାଆନ୍ତି। ସରସ୍ୱତୀ ସମସ୍ତଙ୍କ ଅଜାଣତରେ ବୁଢ଼ା ଚୌଧୁରୀ ଘରକୁ ଯାଇ ସେଠା ପରିସ୍ଥିତି ଅନୁଧ୍ୟାନ କରିବା ପରେ ସନ୍ତୋଷଙ୍କୁ ଘରକୁ ଅବଶ୍ୟ ଫେରାଇ ଆଣିବେ ବୋଲି ଶପଥ କରନ୍ତି। ଶ୍ରଦ୍ଧାଙ୍କ ଭାଇ ଅନୁରାଗ ମଧ୍ୟ ତାହା ଚାହାନ୍ତି। ସନ୍ତୋଷ ଘରକୁ ଫେରନ୍ତି ଓ ବେବି ପ୍ରଶ୍ନର ଉତ୍ତର ଦେବାକୁ ଅସମର୍ଥ ହୁଅନ୍ତି। ବାପାଙ୍କୁ ଅପମାନିତ କରିଥିବାରୁ ବେବି ଉପରକୁ ପ୍ରକାଶ ହାତ ଉଠାଏ। ସନ୍ତୋଷଙ୍କୁ ଦେଖି କ୍ରମେ ବୁଢ଼ା ଚୌଧୁରୀ ସୁସ୍ଥ ହୁଅନ୍ତି ଓ ହୁଇଲ୍ ଚେୟାର ଛାଡ଼ି ଠିଆ ହୁଅନ୍ତି ସନ୍ତୋଷଙ୍କ କାନ୍ଧକୁ ଆଶ୍ରୟ କରି। ଘରେ ଆନନ୍ଦର ପରିବେଶ ସୃଷ୍ଟି ହୁଏ, ସନ୍ତୋଷଙ୍କ ଜନ୍ମଦିନ ପାଳିତ ହୁଏ। କ୍ରମେ ସନ୍ତୋଷ ଅସୁସ୍ଥ ହୁଅନ୍ତି। ଅନୁରାଗଙ୍କ ଠାରୁ ଖବର ପାଇଁ ସରସ୍ୱତୀ ପଦୁ ଟିକିଲି ଆସି ପହଞ୍ଚନ୍ତି ଓ ପୁନର୍ବାର ରିହିଅର୍‌ସାଲ୍ ଆରମ୍ଭ ହୁଏ। ପାରାଲିସିସ୍ ଭୋଗୁଥିବା ସନ୍ତୋଷ କ୍ରମଶଃ ଦୃଷ୍ଟି ଶକ୍ତି ହରାଇ ବସନ୍ତି। ସବୁ ଆଗ୍ରହ ପାଣି ଫାଟିଯାଏ।

ଏଠାରେ ନାଟ୍ୟକାର ନୂତନ ଭାବେ ନାଟକର ଶେଷଦୃଶ୍ୟ ଅଂକନ କରିଛନ୍ତି। ନାଟକରେ ଅଛି ଯେ ଶେଷ ଦୃଶ୍ୟରେ ସନ୍ତୋଷଙ୍କର ମୃତ୍ୟୁ ହେବ। ସନ୍ତୋଷ ଚରିତ୍ରରେ ଅଭିନୟ କରୁଥିବା ଅଭିନେତା ଚାହାନ୍ତି ସେ ମରିବେ ନାହିଁ। ଯଦି ମରିବେ ବୁଢ଼ା ଚୌଧୁରୀ

ମରିବେ। ବୁଢା ଚୌଧୁରୀ ମଧ୍ୟ ଏକା କଥା କୁହନ୍ତି। ଅନୁରାଗ ଓ ସରସ୍ୱତୀ ଚାହାନ୍ତି ସେମାନଙ୍କ ଚରିତ୍ର ବୃଦ୍ଧିପାଇଁ। ବେବିନାଜ୍ କୁହନ୍ତି ଯେ ସେ କ'ଣ ପାଇଁ ନାଟକର ଏକମାତ୍ର ମୁସଲ୍‌ମାନ୍ ଚରିତ୍ର ହେବେ। ପଣ୍ଡାବାବୁ ତାଙ୍କ ଚରିତ୍ରର ଦମ୍ଭ କାମନା କରନ୍ତି। ଟିକିଲି ତା'ର ଭବିଷ୍ୟତ ଚାହେଁ। ତେଣୁ ନାଟକର ଅନ୍ତିମ ଦୃଶ୍ୟ କ'ଣ ହେବା ଉଚିତ ତାହା ଦର୍ଶକ ମାନଙ୍କ ଉପରେ ଛାଡ଼ି ଦିଆଯାଏ।

ନାଟକର ପ୍ରାରମ୍ଭରେ ଯତୀନ ଗାଇଡ୍ ପଥପ୍ରଦର୍ଶକ ବା ନିର୍ଦ୍ଦେଶକ ଭାବେ ମଂଚାକୁ ଆସିଥିଲେ। ତାଙ୍କ ହାତର ସ୍ପର୍ଶରେ ଚରିତ୍ରମାନେ ଚଳତ୍‌କ୍ଷମ ହୋଇଥିଲେ। ନାଟକ ମଝିରେ ଯତୀନ୍ ବୁଢ଼ା ଚୌଧୁରୀଙ୍କ ଘରେ ଷ୍ଟୁଡ଼ିଓ କରିବାକୁ ଚାହାନ୍ତି। ସେମାନଙ୍କର କେବଳ ଲାଭ ସହିତ କିଛି ପରିଚିତ ଦେବାକୁ ସେ ବେବିନାଜ୍ ସହିତ କଥାବାର୍ତ୍ତା କରିଛନ୍ତି। ସେମିତି ପ୍ରକାଶ ଓ ସିଲୁ କୌଣସି ବିଲ୍‌ଡ଼ରକୁ ସେ ଜାଗା ଦେଇ ୫ଟା ଫ୍ଲାଟ୍ ଘର ସହିତ ୨୦ଲକ୍ଷ ଟଙ୍କା ପାଇବାର କାମନା କରନ୍ତି। ଉଭୟଙ୍କ ପ୍ରସ୍ତାବରେ ବୁଢା ରାଜି ହୁଅନ୍ତି ନାହିଁ।

## ସମକାଳୀନ ସମସ୍ୟାର ରୂପାୟନରେ 'ଶେଷକଥା':

ସମକାଳୀନ ଅନେକ ସମସ୍ୟାର ମିଳିତ ସ୍ୱର 'ଶେଷକଥା'ରେ ସ୍ପଷ୍ଟ ଶୁଣାଯାଏ। ପାରିବାରିକ ସମସ୍ୟା ଭିତରେ ବୟସ୍କ ପିତାଙ୍କୁ ଛାଡ଼ି ପତ୍ନୀଙ୍କ ଦାୟିତ୍ୱକୁ ଭୁଲି ସନ୍ତାନ ମାନଙ୍କ ଭବିଷ୍ୟତ ପ୍ରତି ଉଦାସୀନ ହୋଇ ଯାତ୍ରା ଜୀବନକୁ ଆଦରି ନେଇଥିବା ସନ୍ତୋଷ ଉଭୟ କୁଳ ହରାଇ କ୍ଲାନ୍ତ ହୋଇଛନ୍ତି। ସରସ୍ୱତୀଙ୍କ ସହିତ ତାଙ୍କର ମାନସିକ ନିୟମ ମଧ୍ୟରେ ବିବାହ ହୋଇନାହିଁ ବରଂ ଏକ ଦୁର୍ବଳ ମୁହୂର୍ତ୍ତରେ ସେ ସରସ୍ୱତୀଙ୍କୁ ଉପଭୋଗ କରିଛନ୍ତି ଓ ତାଙ୍କ ଜୀବନବୃତ୍ତରେ ସ୍ଥାୟୀ ହୋଇ ରହିଯାଇଛନ୍ତି। ଏପକରିକି ସେ ବିବାହିତ ନା ଅବିବାହିତ ତାହା ମଧ୍ୟ ସରସ୍ୱତୀ ଜାଣନ୍ତି ନାହିଁ।

ପ୍ରକାଶ ସମସ୍ତଙ୍କ ଅଜାଣତରେ ମୁସଲମାନ୍ କନ୍ୟା ବେବିନାଜ୍‌କୁ ବିବାହ କରେ। ଉପାର୍ଜ୍ଜନକ୍ଷମା ବେବିନାଜ୍ ଶାଶୁଙ୍କର ଅପମାନପାଇଁ ଶ୍ୱଶୁରଙ୍କ ଉପରେ ରାଗେ ମାତ୍ର ଏଭଳି ନିର୍ବିକାରରେ ସେ ରହିପାରିବ ନାହିଁବୋଲି ପ୍ରକାଶ ସହିତ ଯୁକ୍ତିକରେ। ସବୁରି ଅଜାଣତରେ ପୈତୃକ ଘରବାରିକୁ ଷ୍ଟୁଡ଼ିଓରେ ପରିଣତ କରିବାପାଇଁ ସେ ଯତୀନ ଠାରୁ ଅଗ୍ରୀମ ମଧ୍ୟ ନେଇଆସେ। କାରଣ ସେ ନିଜକୁ ଘରର ବୋହୁଭାବେ ସାବ୍ୟସ୍ତ କରିବାକୁ ଚାହେଁ। ଅନୁରୂପ ଭାବରେ ଅଯୋଗ୍ୟ ପ୍ରକାଶ ଓ ସିଲୁ ପୈତୃକ ଭିଟାମାଟିରେଫ୍ଲାଟ୍ ତିଆରି କରିବାକୁ ବିଲଡ଼ରଙ୍କ ପ୍ରସ୍ତାବକୁ ଗ୍ରହଣ କରିନିଅନ୍ତି କାରଣ ସେମାନେ ବିନା ପରିଶ୍ରମରେ ଲାଭ କରିବାକୁ ଚାହାନ୍ତି, ଯାହା ଚଳନ୍ତି ପଢ଼ିର ଯୁବକମାନେ ସାଧାରଣତଃ କରୁଛନ୍ତି।

ଟିକିଲି ପ୍ରସଙ୍ଗ ନିକଟ ଅତୀତରେ ବିସ୍ମୟବାଳକ ବୁଦ୍ଧିଆର ପ୍ରସଙ୍ଗକୁ ମନେପକାଇଦିଏ ଯାହାର କୋଚ୍‌ଙ୍କୁ ବିଚ୍ ରାସ୍ତାରେ ହତ୍ୟା କରାଯାଇଥିଲା। ଟିକିଲି

ଢେର୍‌ଦିନ ଦଉଡ଼ା ଦଉଡ଼ି କରି ଯାହା ପ୍ରଶଂସା ପାଇଥିଲା ନିଜ କୋଚ୍‌ସାରଙ୍କ ମୃତ୍ୟୁପରେ ତାପାଇଁ ସେ ସୁଯୋଗ ନାହିଁ। ବରଂ ସେ ମନ୍ତ୍ରୀ ଓ ନେତାମାନଙ୍କର ହାତର କଣ୍ଢେଇ ହୋଇଯାଇଛି। ସ୍କୁଲ୍‌ରୁ ତଡ଼ା ଖାଇବାପରେ ସେ ଚାହା ଦୋକାନରେ ଗ୍ଲାସ୍ ଧୋଇଛି ସିନା ସହରକୁ ଫେରିବାକୁ ଚାହିଁନାହିଁ।

ଯାତ୍ରାପାର୍ଟିରେ କାମକରୁଥିବା ମଣିଷ ବୟସ୍କ ବା ରୁଗ୍‌ଣ ହୋଇଗଲେ ତାଙ୍କୁ ବାହାର କରିଦିଆଯାଏ। ଏକଦା ଯେ ସେମାନଙ୍କ ତ୍ୟାଗ ଫଳରେ ପାର୍ଟି ଉନ୍ନତି କରିଥିଲା ତାହା ସମସ୍ତେ ଭୁଲି ଯାଆନ୍ତି। ପଣ୍ଡାବାବୁ ଚରିତ୍ର ସେହିଭଳି ଜଣେ ପରିଚାଳକର ଚରିତ୍ର।

## 'ଶେଷକଥା'ର ଚରିତ୍ରାୟନ:

'ଶେଷକଥା'ର ମୁଖ୍ୟ ଚରିତ୍ର ହେଉଛନ୍ତି ନାଟ୍ୟ ସମ୍ରାଟ ସନ୍ତୋଷ ଚୌଧୁରୀ। ଜୀବନର ସାୟାହ୍ନରେ ସେ ଛାଡ଼ି ଯାଇଥିବା ପରିବାରକୁ ଫେରି ଯଥେଷ୍ଟ ଆତ୍ମାରଣର ସହିତ ଗୃହୀତ ହୋଇଛନ୍ତି ମାତ୍ର ପାରାଲିସିସ୍, କ୍ୟାନ୍‌ସର ଭଳି ରୋଗରେ ପୀଡ଼ିତ ହୋଇ ସେ ନିଜର ଅନ୍ତିମ ସମୟରେ ଆନନ୍ଦ ଗ୍ରହଣ କରିବାରେ ଅକ୍ଷମ ହୋଇଛନ୍ତି। ଯାତ୍ରା ମଂଚରୁ ଛିଟିକି ପଡ଼ିଥିବା ଏହି ସ୍ୱାଭିମାନୀ ଚରିତ୍ର ନିଜର କୃତିତ୍ୱ ପାଇଁ ଲଜ୍ଜିତ। ଅନ୍ୟ ପକ୍ଷରେ ଟିକିଲି ଓ ପଦୁ ପାଇଁ ସେ ମହାନ କଳାକାର।

ବୁଢା ଚୌଧୁରୀ ସନ୍ତୋଷଙ୍କର ପିତା। ଦୁଇ ନାତିଙ୍କୁ ନେଇ ତାଙ୍କର ସଂସାର। ସେ ନାତିମାନଙ୍କ ସହିତ ପରିହାସ କରନ୍ତି ମାତ୍ର ପ୍ରକାଶ ଭିନ୍ନଧର୍ମୀ ଝିଅକୁ ବାହାହେବ ଏକଥା ସହ୍ୟ କରିପାରନ୍ତିନି। ପ୍ରତି ମୁହୂର୍ତ୍ତରେ ସନ୍ତୋଷଙ୍କ ଆଗମନ ପାଇଁ ଛାତିରେ ସ୍ୱାଗତ 'କଳ ଝୁଲାଇ ବସିଥିବା ବୃଦ୍ଧ ସନ୍ତୋଷଙ୍କ ଫେରିବାପରେ କ୍ରମେ ସୁସ୍ଥ ହୋଇ ଉଠନ୍ତି ଓ ଦୀର୍ଘଦିନୁ ଆଶ୍ରୟ କରିଥିବା ହୁଇଲ୍ ଚେୟାରକୁ ଭୁଲି ଯାଆନ୍ତି।

ଯାତ୍ରାପାର୍ଟିର ମ୍ୟାନେଜର୍ ପଣ୍ଡାବାବୁ, ଷ୍ଟୁଡ଼ିଓ କରିବାକୁ ଚାହୁଁଥିବା ଯତୀନ୍ ପ୍ରଭୃତି ନିଜ ନିଜ ସ୍ତରରେ ସ୍ୱତନ୍ତ୍ର। ପଣ୍ଡାବାବୁଙ୍କ ବୁଦ୍ଧି ସନ୍ତୋଷ ଓ ସରସ୍ୱତୀଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିଛି। ଫଳରେ ସରସ୍ୱତୀ ପାର୍ଟି ଛାଡ଼ି ଚାଲି ଯାଇଛନ୍ତି ଓ ସନ୍ତୋଷ ଆହୁରି ଅସହାୟ ହୋଇ ପଡ଼ିଛନ୍ତି। ପଦୁ ଓ ଟିକିଲି କିନ୍ତୁ ସନ୍ତୋଷଙ୍କୁ ସମ୍ମାନ କରନ୍ତି। ତାଙ୍କ ପାଇଁ କିଛି କରିବାକୁ ଚାହାନ୍ତି କାରଣ ଯାତ୍ରାପାର୍ଟିରୁ ବାହାରିଯିବାପରେ ସନ୍ତୋଷହିଁ ପଦୁପାଇଁ ଚାହା ଦୋକାନ ଖୋଲିବାରେ ସାହାଯ୍ୟ କରିଥିଲେ। ଅନୁରାଗ ଶ୍ରଦ୍ଧାଙ୍କ ଭାଇ ଯେଉଁ ଶ୍ରଦ୍ଧାଙ୍କୁ ଦର୍ଶକ ଦେଖି ପାରନ୍ତିନି ମାତ୍ର ସହାନୁଭୂତିରେ ତାଙ୍କୁ ପ୍ଲାବିତ କରିଦିଅନ୍ତି। ଅନୁରାଗଙ୍କ ଠାରୁ ଶ୍ରଦ୍ଧାଙ୍କ ଅସୁସ୍ଥତା ଖବର ଜାଣି ସରସ୍ୱତୀ ତାଙ୍କୁ କୌଣସି ମତେ ଘରକୁ ଫେରାଇ ଆଣିବାକୁ ଶପଥ କରିଛନ୍ତି।

ଏହି ଚରିତ୍ରମାନେ ନିଜ ପରିସରରେ ରହି ନାଟକର ଅଗ୍ରଗତିରେ ସହାୟକ ହୁଅନ୍ତି। ମାତ୍ର ପରିଣତିରେ ନିଜେ ନିଜେ ଚରିତ୍ରର ଗୁରୁତ୍ୱ ବୃଦ୍ଧି ପାଇଁ ପ୍ରୟାସ କରି କଳିଗୋଳ କରନ୍ତି। ପ୍ରଥମେ ଯେଉଁ ଯତୀନ ନିଜ ସ୍ପର୍ଶରେ ଚରିତ୍ରମାନଙ୍କୁ ଚଳନକ୍ଷମ କରିଥିଲା ସେ ଆସି କହେଁ- "ଥାଉ ବହୁତ ହୋଇଗଲା। ଏଇଟା ଶେଷ ନାଟକ ନୁହେଁ କିମ୍ବା ନାଟକର ଶେଷ ଦୃଶ୍ୟ ବି ନୁହେଁ। ମୁଁ ଚାହିଁଥିଲି ମୋ ବାଟରେ ନାଟକ ଶେଷ କରିବାପାଇଁ। କିନ୍ତୁ ସେତିକି ବି ମତେ କରେଇ ଦେଲ ନାହିଁ। ଗୋଟାଏ ଏଣ୍ଡିଙ୍ଗ ବି ସ୍ଥିର କରି ପାରିଲ ନାହିଁ"। (ଶେଷକଥା:ପୃ:୭୮)

## 'ଶେଷକଥା'ର ସଂଳାପ ବୈଚିତ୍ର୍ୟ

'ଶେଷକଥା'ରେ ଅନେକ ପ୍ରକାର ସଂଳାପ ଦୃଷ୍ଟିଗୋଚର ହୁଏ। ନାଟ୍ୟସମ୍ରାଟ ସନ୍ତୋଷ ଚୌଧୁରୀ କୁହନ୍ତି : "ଆଜିତ ସବୁଠି ଖଳନାୟକମାନେହିଁ ନାୟକ। ଅଭିନୟକୁ ପଚାରେ କିଏ ?"(ପୃ:୧୭)। କିନ୍ତୁ ପ୍ରକୃତ କଳାକାର ମାନସିକତା ଦେଇ ସେ ଜାଣନ୍ତି "କୌଣସି ରୋଲ୍ ଛୋଟ କି ବଡ଼ ନୁହେଁ। କଳାକାରପାଇଁ କଳା ହେଉଛି ଗୋଟାଏ ଉପାସନା। ସବୁକିଛି ନିର୍ଭର କରେ ସାଧନା ଆଉ ସିଦ୍ଧି ଉପରେ।" (ପୃ:୧୫୬) ଏତେ ବେଶୀ କଳାପାଇଁ ସମର୍ପିତ ସନ୍ତୋଷ କିନ୍ତୁ ବେବି ଓ ପ୍ରକାଶକୁ ବୁଝାନ୍ତି, "ଆରେ କଳି ଝଗଡ଼ା ମାରପିଟରେ ସଂସାର ଗଢାଯାଏନି। ସେଥିପାଇଁ ଦରକାର ତ୍ୟାଗ ମିଳାମିଶା ସ୍ନେହ ସଂପର୍କ" (ପୃ.୪୭) ସରସ୍ୱତୀ ସନ୍ତୋଷଙ୍କର ବିବାହିତା ପତ୍ନୀ ନୁହଁନ୍ତି ମାତ୍ର ତାଙ୍କ ପ୍ରତି ସମର୍ପିତା। ସନ୍ତୋଷଙ୍କ ପରିସରରୁ ଫେରିବାପରେ ସେ ନିଜର ତ୍ରୁଟି ସହିତ ସନ୍ତୋଷଙ୍କର ସ୍ୱାର୍ଥପରତା ବୁଝିପାରିଛନ୍ତି। ତେଣୁ ସେ ସନ୍ତୋଷଙ୍କ ସହିତ କଥାବାର୍ତ୍ତା କରିବାବେଳେ:-

ସନ୍ତୋଷ- କୋଉଥିରେ ବି ତମକୁ ତ ଅଭାବରେ ରଖିନି। ତମକୁ ଖୁସି କରାଇବା ପାଇଁ ମୁଁ ସ୍ତ୍ରୀ ପିଲା ପରିବାର ସହିତ ସଂପର୍କ ତୁଟେଇଛି। କେବଳ ତମରି ପାଇଁ।

ସରସ୍ୱତୀ- ହସଖୁସି ଭରା ଗୋଟାଏ ପରିବାରକୁ ଦରିଆ ମଝିରେ ଠେଲି ଦେଇ, ତମେ କେମିତି ଭାବିଥିଲ ଯେ ମତେ ସୁଖୀ କରେଇ ଥାଆନ୍ତ। ତା'ରି ଯନ୍ତ୍ରଣା ମୁଁ ଆଜି ମର୍ମେ ମର୍ମେ ଅନୁଭବ କରୁଛି। ଯେତେ ଅନୁତାପ କଲେ ବି ମୋ ପାପର ପ୍ରାୟଶ୍ଚିତ ସମ୍ଭବ ନୁହେଁ। (ପୃ-୪୨)

ବେବିନାଜ୍ ଉପାର୍ଜନକ୍ଷମ ଯୁକ୍ତିଶୀଳା ଶିକ୍ଷିତା। ତେଣୁ ତା'ର ସଂଳାପରେ ତୀକ୍ଷ୍ଣତା ପରିଦୃଷ୍ଟ ହୁଏ। ସେ ପ୍ରକାଶକୁ ସିଧାସଳଖ କୁହେ:- "କର୍ତ୍ତବ୍ୟରେ ଖିଲାପ କରୁଥିବା ମଣିଷକୁ ମୁଁ କେବେ କ୍ଷମା ଦିଏନା। ଜନ୍ମଦାତା ? ଏଇଭଳି ମଣିଷମାନଙ୍କୁ ତମେ ଦେଖାଇବାକୁ କହୁଛ ? (ପୃ:୨୮) ପୁନଶ୍ଚ ଘରକୁ ଫେରିଥିବା ସନ୍ତୋଷଙ୍କୁ ବେବି କୌଣସି

ପ୍ରଶ୍ନକରି ଅସୁବିଧାରେ ପକାଉ, ତାହା ପ୍ରକାଶ ଚାହେଁ ନାହିଁ। ବେବି ତାକୁ ଜବାବ୍‌ଦିଏ "ମୋ କଥା ମତେ କହିବାକୁ ଦିଅ। ଇଏ ହେଉଛି ସେଇ ପରିବାର, ଯୋଉଠି ବୋହୁକୁ ଧର୍ମ ସଂପ୍ରଦାୟ ନାମରେ ବିଚାର କରାଯାଏ। ଇଏ ହେଉଛି ପାରିବାରିକ ଆଦର୍ଶ ଯୋଉଠି ପୁରୁଷ ଦୁଇ ଦୁଇଟା ସ୍ତ୍ରୀ ଗ୍ରହଣ କରିପାରେ।" (ପୃ:୪୭)

'ଫ୍ଲାସ୍‌ବ୍ୟାକ୍‌ରେ ପଦୁ ଓ ସନ୍ତୋଷ ସଫଳ ନାଟକର ସଂଳାପ ଉଚ୍ଚାରଣ କରୁଥିବା ଧର୍ମନାମରେ ଚାଲିଥିବା ଏ ପ୍ରତାରଣାକୁ ତମେ କ'ଣ ବନ୍ଦ କରିପାରିବନି ରାଜା ?

ସନ୍ତୋଷ- ବିଶ୍ୱନିୟନ୍ତା ହୋଇ ଆପଣ ଯେତେବେଳେ ନିରୂପାୟ, ସେତେବେଳେ ସାଧାରଣ ମଣିଷଟେ ହୋଇ ମୁଁ ବା କ'ଣ କରିପାରିବି ? ମୁଁ ରାଜା ହେଲେ କି ମୋ ଉପରେ ଗଣତନ୍ତ୍ରର ଅଙ୍କୁଶ (ପୃ.୬୭)।

ଏହା ସମକାଳୀନ ଧର୍ମ ଓ ରାଜନୀତିର ଦ୍ୱନ୍ଦ୍ୱର ପରିଚାୟକ।

## ଶେଷକଥାର ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା

ଦ୍ୱନ୍ଦ୍ୱ ହିଁ ନାଟକର ପ୍ରାଣ। ଉତ୍କଣ୍ଠାକୁ ଶେଷ ଯାଏ ଧରିରଖିବା ସଫଳ ନାଟକର ଗୁଣ। 'ଶେଷକଥା'ରେ ଦ୍ୱନ୍ଦ୍ୱ ପତ୍ନୀ ଓ ପ୍ରେମିକାର ଦ୍ୱନ୍ଦ୍ୱ। ପତ୍ନୀ ମଂଚକୁ ଆସିନାହାନ୍ତି କିନ୍ତୁ ସେ ଘରଛାଡ଼ି ଯାଇଛନ୍ତି, ମାନସିକ ଚିକିତ୍ସାଳୟରେ ରହିଛନ୍ତି ଏବଂ ନିରବରେ ପରପାରିକୁ ମଧ୍ୟ ଯାଇଛନ୍ତି। ପ୍ରେମିକା ହୋଇ ମଧ୍ୟ ସରସ୍ୱତୀ ତାଙ୍କ ଦୁଃଖରେ ସମଦୁଃଖିନୀ ଓ ନିଜକୁ ତାଙ୍କର ଦେହାନ୍ତ ପାଇଁ ଦାୟୀ କରିଛନ୍ତି।

'ଶେଷକଥା'ର ଦ୍ୱନ୍ଦ୍ୱ ଉଚ୍ଚଶିକ୍ଷା ଓ ପାରିବାରିକ ଦାୟର ଦ୍ୱନ୍ଦ୍ୱ। ବୁଢା ନିଜର ସ୍ୱାର୍ଥରକ୍ଷା ପାଇଁ ସିଲୁକୁ ଉଚ୍ଚଶିକ୍ଷାରୁ ବଂଚିତ କରିଛନ୍ତି। ସିଲୁ ଏଥିପାଇଁ ବୁଢାକୁ ସ୍ୱାର୍ଥପର କହିଛି। ପୁଣି ପତ୍ନୀତ୍ୱ ଓ ବଂଧୁଗଣ ଉଚ୍ଚଶିକ୍ଷିତା ତଥା ଉପାର୍ଜନକ୍ଷମା ବେବି ମନରେ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି କରିଛି ତାହା ହେଉଛି କର୍ତ୍ତବ୍ୟ ଓ ଅଧିକାରର ଦ୍ୱନ୍ଦ୍ୱ। ସେ ନିଜଘରେ ଭଡ଼ାଟିଆ ଭାବେ ରହିବାକୁ ପସନ୍ଦ କରେ ନାହିଁ ମାତ୍ର କାହାକୁ ନଜଣାଇ ଘରେ ଷ୍ଟୁଡ଼ିଓ କରିବା ପାଇଁ ଯତୀନ୍ ବାବୁଙ୍କ ଠାରୁ ଲକ୍ଷେଟଙ୍କା ଅଗ୍ରୀମ ଆଣିପାରେ। ଶ୍ୱଶୁରଙ୍କୁ ଭର୍ତ୍ସନା କରିବାପରେ ମଧ୍ୟ ତାଙ୍କ ଉଦାରତା ଯୋଗୁଁ ବେବିକୁ ଘର ଛାଡ଼ିବାକୁ ପଡ଼େ ନାହିଁ। ଟିକିଲି ମନରେ ଦ୍ୱନ୍ଦ୍ୱ ତାକୁ ସହର ଯିବାକୁ ବାରଣ କରେ। ବରଂ ସେ କପ୍ ଗ୍ଲାସ୍ ଧୋଇବ କିନ୍ତୁ ସହରରେ କାହା ଇଙ୍ଗିତରେ ଆଉ ନାଚି ପାରିବ ନାହିଁ। ପଣ୍ଡାବାବୁ ଏଠାରେ ଲୁଚିଛି ବୋଲି ପୋଲିସ୍‌କୁ କହିଦେବେ କହି ତାକୁ ଧମକାନ୍ତି। ଫଳରେ ଭୟଭୀତ ଟିକିଲି ତାଙ୍କୁ ଚାହା ପଇସା ମାଗିପାରେ ନାହିଁ। ଚତୁର ବ୍ୟକ୍ତିମାନେ ଏମିତି ସାଧାରଣ ମଣିଷର ଦୁର୍ବଳତାରେ ଆଘାତ କରି ନିଜର ସ୍ୱାର୍ଥରକ୍ଷା କରିଥାଆନ୍ତି। ଅନୁରାଗ ମୂଳରୁ ସନ୍ତୋଷବାବୁଙ୍କ ଦ୍ୱିତୀୟ ପତ୍ନୀ

ସରସ୍ୱତୀଙ୍କୁ ନିଜ ଭିଣୋଇଙ୍କ ଦୁର୍ଦ୍ଦଶାପାଇଁ ଦାୟୀ କରୁଥିଲେ ହେଁ ପରେ ସରସ୍ୱତୀଙ୍କୁ ବୁଝି ପାରିଛନ୍ତି ଓ ତାଙ୍କ ପ୍ରତି ସହାନୁଭୂତିଶୀଳ ହୋଇଛନ୍ତି। ନାଟକର ପ୍ରାନ୍ତଭାଗରେ ସେ ସରସ୍ୱତୀଙ୍କୁ ଛାଡ଼ି ରୁଗ୍‌ଣ ଭିଣୋଇଙ୍କ ପାଖରେ ରହିବାକୁ ଅନୁରୋଧ କରିଛନ୍ତି। ସରସ୍ୱତୀଙ୍କ ଭାଇ ଡାକ ତା'ମନରେ ସମସ୍ତ ଦ୍ୱନ୍ଦ୍ୱର ଅବସାନ ଘଟାଇଛି।

ମାନବୀୟ ସମ୍ବେଦନଶୀଳତା ନାଟକର ଚରିତ୍ରମାନଙ୍କୁ ଦ୍ୱନ୍ଦ୍ୱରୁ ଉତ୍ତରିତ କରିଛି ଓ ସମସ୍ତେ ନିଜ ନିଜ ପରିସରରେ ରହି ବିକ୍ଷିପ୍ତ ପାରିବାରିକ ଜୀବନକୁ ସଜାଡ଼ିବାକୁ ପ୍ରୟାସ କରିଛନ୍ତି।

## 'ଶେଷକଥାର'ମନସ୍ତାତ୍ତ୍ୱିକ ବଳୟ:

ମନସ୍ତତ୍ତ୍ୱ ରୂପାୟନରେ 'ଶେଷକଥା' ବେଶ୍ ସମାହିତ। ଏଥିରେ ଏକ ବିଷମବାହୁ ପ୍ରେମ ତ୍ରିଭୁଜ ରହିଛି ଯାହାର ଶୀର୍ଷରେ ବୟସ୍କ କଳାକାର ସନ୍ତୋଷ ଚୌଧୁରୀ ରହିଛନ୍ତି। ଏହାର ଗୋଟିଏ ବାହୁରେ ପରିଣୀତା ଶ୍ରଦ୍ଧା ଓ ଅପରବାହୁରେ ପ୍ରେମିକା ସରସ୍ୱତୀ। ଉଭୟଙ୍କ ପାଇଁ ସନ୍ତୋଷଙ୍କର ପ୍ରେମର ସୀମା ନାହିଁ। ଶ୍ରଦ୍ଧା ଦୁଇଟି ପୁତ୍ର ସନ୍ତାନର ଜନନୀ ମାତ୍ର ଅଭିନେତ୍ରୀ ସରସ୍ୱତୀଙ୍କ ଗର୍ଭସ୍ଥ ସନ୍ତାନ ଜନ୍ମ ନେବା ପୂର୍ବରୁ ସଂସାରରୁ ବିଦାୟ ନେଇଛି ଓ ସରସ୍ୱତୀ ସମଗ୍ର ଜୀବନ ମାଆ ହେବାର ସୌଭାଗ୍ୟରୁ ବଂଚିତା। ସରସ୍ୱତୀ ନିଜର କୃତକର୍ମପାଇଁ ପ୍ରାୟଶ୍ଚିତ କରିବାକୁ ପ୍ରସ୍ତୁତ ଓ ସନ୍ତୋଷ ନିଜର ଦୋଷ ଦୁର୍ବଳତା ପ୍ରତି ସଚେତନ ହେବା ବେଳକୁ ଡେରି ହୋଇ ଯାଇଛି। ସନ୍ତୋଷ ପାରାଲିସିସ୍ ଭୋଗୁଥିବା ସମୟରେ ତାଙ୍କ ଭିତରର ସତେଜ କଳାକାର ଯେଉଁ ସଂଳାପ ଉଚ୍ଚାରଣ କରିଛି ତାହା ହୀନମନ୍ୟତାରୁ ମୁକ୍ତି ପାଇବାର ପ୍ରୟାସମାତ୍ର।

ଅପର ମନସ୍ତାତ୍ତ୍ୱିକ ବଳୟରେ ବୁଢ଼ା, ପ୍ରକାଶ ଓ ସିଲୁ। ପ୍ରକାଶ ଚାକିରି କରି ମୁସଲମାନ ଝିଅକୁ ବିବାହ କରି ଘରଠାରୁ ଦୂରେଇଯିବାରୁ ବୁଢା ନିଜର ଭବିଷ୍ୟତକୁ ଦୃଷ୍ଟିଦେଇ ସିଲୁକୁ ବେଶୀ ପାଠ ପଢାଇ ନାହାନ୍ତି। ସିଲୁ ବୁଢାଙ୍କୁ ଲୁଚାଇ ଧାନବସ୍ତା ବିକି...କିଣିଛି। ଭାଉଜକୁ ନିଜର ପ୍ରେମିକା କହି ଘରେ ସ୍ଥାନ ଦେଇଛି। ବୁଢାଙ୍କୁ ଡାକ୍ତରଖାନା ନେଇଛି। ବୁଢାଙ୍କ ଠାରୁ ବାପାଙ୍କ ବିଷୟରେ ଶୁଣିଛି। ଶେଷରେ ସାଇନାଥଙ୍କୁ ପ୍ରାର୍ଥନା କରିବାକୁ କହିଛି ସମସ୍ତଙ୍କୁ। ପ୍ରକାଶ ଓ ବେବି ମଧ୍ୟରେ ପ୍ରେମ ସଂପର୍କ ଅଛି। ବେବି ନିଜର ଅଧିକାର ସାବ୍ୟସ୍ତ କରିବାକୁ ଚାହିଁ ପ୍ରକାଶ ଠାରୁ ମାଡ଼ ଖାଇଛି ମାତ୍ର ଯେଉଁ ଶ୍ୱଶୁରଙ୍କୁ ସେ ଅପମାନିତ କରିଥିଲା ତାଙ୍କରି ଯୁକ୍ତିବଳରେ ଶଶୁରଘରେ ସମ୍ମାନର ସହିତ ଗୃହୀତ ହୋଇଛି।

ଯାତ୍ରା ମ୍ୟାନେଜର୍ ପଣ୍ଡାବାବୁ ସନ୍ତୋଷଙ୍କୁ ନାନାପ୍ରକାର ଅପମାନିତ କରିଛନ୍ତି। ମାତ୍ର ପରିଣତିରେ ପଦୁଠାରୁ ଜଣାଯାଇଛି ଯେ ତାଙ୍କର ପୁତ୍ରର ମୃତ୍ୟୁପରେ ସେ ଭାଂଗି

ପଡ଼ିଛନ୍ତି ଓ ସନ୍ତୋଷଙ୍କ ଅସୁସ୍ଥତା ଖବର ପାଇ ତାଙ୍କୁ ଦେଖା କରିବାକୁ ଆସିପାରନ୍ତି। ଏଠାରେ 'ଧର୍ମର ଜୟ ଓ ପାପର କ୍ଷୟ' ଭଳି କାବ୍ୟିକ ନ୍ୟାୟ (Poetic Justice)କଥାର ଯୌକ୍ତିକତା ପ୍ରତିପାଦିତ ହୋଇଛି।

## 'ଶେଷକଥା'ର ସଂଗୀତ:

'ଶେଷକଥା'ରେ ଏକମାତ୍ର ସଂଗୀତ ସଂଯୋଜିତ, ଯାହା ସନ୍ତୋଷଙ୍କ ଜନ୍ମଦିନପାଇଁ ପରିବାର ସଦସ୍ୟମାନେ କୋରସ୍ ଭାବେ ଗାନ କରିଛନ୍ତି।

ଆମ ଘରେ ଉଇଁଛିରେ ପୂର୍ଣ୍ଣିମାଚାନ୍ଦ
ସବୁଠାରୁ ଝରୁଛିରେ ସୁଧା ଆନନ୍ଦ । (ପୃ-୫୩)

୩୩ଏହି ସଂଗୀତଟି ବିଶିଷ୍ଟ ଗୀତିକବି ପ୍ରଫେସର ଶରତ ଚନ୍ଦ୍ର ରଥଙ୍କ ଦ୍ୱାରା ରଚିତ। ପରିବେଶ ଅନୁସାରେ ଏହି ସଂଗୀତରେ ପରିବାରର ପାରସ୍ପରିକ ସ୍ନେହ ସୌହାର୍ଦ୍ଦ୍ୟର ଚିତ୍ର ଦେଖିବାକୁ ମିଳିଛି। ଏହି ସଂଗୀତ ସନ୍ତୋଷଙ୍କ ଆଖିରୁ କୃତଜ୍ଞତାର ଅଶ୍ରୁବିନ୍ଦୁ ଝରାଇ ଦେବାରେ ସଫଳ ହୋଇ ପାରିଛି। ଓଡ଼ିଆ ନାଟକର ସୁବର୍ଣ୍ଣଯୁଗ (କାଳିଚରଣଙ୍କ ଠାରୁ କମଳ ଲୋଚନଙ୍କ ପର୍ଯ୍ୟନ୍ତ)ରେ ପ୍ରତିଷ୍ଠିତ କବିମାନଙ୍କ ଦ୍ୱାରା ସିଚ୍ୟୁଏସନ୍‌କୁ ଚାହିଁ ସଂଗୀତ ରଚିତ ହୋଇଥିଲା। ପ୍ର.ସାହୁ ଏହି ଦାୟିତ୍ୱଟି ନିଷ୍ଠାର ସହିତ ପ୍ର.ରଥଙ୍କୁ ପ୍ରଦାନ କରିଛନ୍ତି ଯାହା 'ଶେଷକଥା'ର ଅନ୍ୟତମ ବୈଶିଷ୍ଟ୍ୟ ପାଲଟି ଯାଇଛି।

ମୁରବୀବିହୀନ ପରିବାର କିଭଳି ବିଶୃଙ୍ଖଳିତ ହୋଇଯାଏ ସନ୍ତୋଷ ଚୌଧୁରୀଙ୍କ ପରିବାର ଏହାର ଏକ ଉଦାହରଣ। ଶେଷକଥାର ପରିଣତିକୁ ଦର୍ଶକଙ୍କ ଉପରେ ଛାଡ଼ି ଦେଇ ନାଟ୍ୟକାର ନାଟକକୁ ଏକ ଅନ୍ତହୀନ ଅନ୍ୱେଷଣରେ ପରିଣତ କରିଛନ୍ତି। ଏତାଦୃଶ ଅନ୍ତିମ ପର୍ଯ୍ୟାୟ ମଧ୍ୟ ନାଟକର ଅନ୍ୟଏକ ସ୍ୱାତନ୍ତ୍ର୍ୟ। ନାଟ୍ୟକାର ନାରାୟଣ ସାହୁ ଜଣେ ସମାଜନିଷ୍ଠ ସ୍ରଷ୍ଟା। ତାଙ୍କର ସମସ୍ତଦୃଷ୍ଟି ପଛରେ ସମାଜକୁ ସୁଧାରିବା ପ୍ରୟାସ କରାଯାଇଛି। ଏ ନାଟକର ସାଫଲ୍ୟ ସଂପର୍କରେ ପୁସ୍ତକ ପ୍ରାନ୍ତ ଭାଗରେ ଏକାଧିକ ଦୈନିକ ଖବର କାଗଜର ବକ୍ତବ୍ୟ ପ୍ରଦତ୍ତ ହୋଇଛି।

ପୁସ୍ତକ ପ୍ରଚ୍ଛଦରେ ରଂଗମଂଚରେ ବିବିଧବର୍ଣ୍ଣର ଉଜ୍ଜ୍ୱଳ ଆଲୋକ ମଧ୍ୟରେ ଓଲଟି ପଡ଼ିଥିବା ହୁଇଲ୍ ଚେୟାର୍ ବଂଚିବାର ଆଗ୍ରହକୁ ପ୍ରତୀକିତ କରିଥାଏ। ପୁତ୍ରର ସାହଚର୍ଯ୍ୟରେ ବୃଦ୍ଧ ଚୌଧୁରୀ ପୁନର୍ବାର ଜୀବନପ୍ରେମୀ ହୋଇଛନ୍ତି ମାତ୍ର ପୁତ୍ର ସନ୍ତୋଷଙ୍କ ପାଇଁ ଦୀର୍ଘଜୀବନ ଅପହଞ୍ଚ ହୋଇଯାଇଛି। ଏହା ନାଟ୍ୟକାରଙ୍କର ଅନ୍ୟତମ ସଫଳ ନାଟକର ମାନ୍ୟତା ଦାବ କରିଥାଏ।

ବି.୩୫
ସହିଦ ନଗର, ଭୁବନେଶ୍ୱର

●●●

# ରାଜନୈତିକ ଚଂଚକତାରେ
# ସାମାଜିକ ବାସ୍ତବତାର ଦୁଃଖ : ମୂକ

### ପ୍ର. ସମର ମୁଦାଲି

ଉତ୍ତର ଅଶି ଓଡ଼ିଆ ନାଟ୍ୟ ସାହିତ୍ୟରେ ଡ. ନାରାୟଣ ସାହୁ ଜଣେ କୃତବିଦ୍ୟ ସ୍ରଷ୍ଟା। ଓଡ଼ିଆ ଓ ନାଟକ ନାଟ୍ୟ ସମାଲୋଚନା କ୍ଷେତ୍ରରେ ଡ.ସାହୁ ଏକ ପରିଚିତ ନାମ। ୧୯୫୫ ମସିହା ଯେତେବେଳେ ବନ୍ୟାରେ ଓଡ଼ିଶା ବାସୀ ବ୍ୟତିବ୍ୟସ୍ତ ସେହିବର୍ଷ ଅକ୍ଟୋବର ମାସ ୧୫ ତାରିଖରେ କେନ୍ଦ୍ରାପଡ଼ା ଜିଲ୍ଲାର ବଗଡ଼ା ଗ୍ରାମପଂଚାୟତର ଅରଡ଼ା ସାହି ଗ୍ରାମର ଏକ ମଧ୍ୟବିତ୍ତ କୃଷକ ପରିବାରରେ ଡ. ନାରାୟଣ ସାହୁଙ୍କ ଜନ୍ମ। ପିତା ହରେକୃଷ୍ଣ ସାହୁ ଓ ମାତା ମାଳତୀ ଦେବୀଙ୍କ ନିମିତ୍ତ ନାରାୟଣ ସାହୁ ଥିଲେ ବହୁ ଅପେକ୍ଷାର ଅନ୍ତିମ ଫଳ କାରଣ ତତ୍ ପୂର୍ବରୁ ପିତା ମାତା ପାଂଚୋଟି ସନ୍ତାନଙ୍କୁ ହରାଇ ମ୍ରିୟମାଣ ହୋଇ ପଡ଼ିଥିଲେ। ପିଲାଟି ଦିନରୁ ସେ ନାଟକ ପ୍ରତି ଆକୃଷ୍ଟ ହୋଇଥିଲେ। କଟକ ହିଁ ତାଙ୍କ ନାଟ୍ୟ ଜୀବନକୁ ପରିପୁଷ୍ଟ କରିଥିଲା। କଟକରେ ରହଣି କାଳରେ ସେ ମନୋରଂଜନ ଦାସ, ଗୋପାଳ ଛୋଟରାୟ, ନରସିଂହ ମହାପାତ୍ରଙ୍କ ସହିତ ମିଶିବାର ସୁଯୋଗ ପାଇଥିଲେ ଏବଂ ନାଟକ ପ୍ରତି ଅଧିକ ଆକର୍ଷିତ ହୋଇଥିଲେ । କ୍ରମଶଃ ସେ ୧୯୮୫ରୁ ଦୂରଦର୍ଶନ ନାଟକ ଏବଂ ୧୯୮୭ରେ ବେତାର ନାଟକମାନ ରଚନା ଆରମ୍ଭ କରିଥିଲେ । ଏଥି ସହିତ ମଂଚ ନାଟକ ଏବଂ ଏକାଂକିକା ରଚନା କ୍ଷେତ୍ରରେ ସେ ଜଣେ ଯଶସ୍ୱୀ ଶିଳ୍ପୀ । ୧୯୯୧ ମସିହାରେ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି । ନାଟକହିଁ ଜୀବନ କଳା । ଜୀବନହିଁ ବଂଚି ରହିବାର ନାଟ୍ୟରୂପ, ଏହି ଦର୍ଶନହିଁ ଡ.ସାହୁଙ୍କ ନାଟ୍ୟ ସୃଜନୀର ବିଶେଷତ୍ୱ ।

ଜଣେ ସମାଜ ସଚେତନ ଶିଳ୍ପୀ ଉଚ୍ଚକୋଟୀର ସର୍ଜନଶୀଳତାର ଦାୟଦ । ଭଲ ନାଟକଟିଏହିଁ ସମାଜପାଇଁ ପରିପୃଷ୍ଟ ବାର୍ତ୍ତା। ମଞ୍ଚର କଳା ମଣିଷ ପର୍ଯ୍ୟନ୍ତ ଯେ କେତେ ପ୍ରଭାବଶାଳୀ ହୋଇପାରେ ତାହାର ବାସ୍ତବରୂପ ନାଟ୍ୟକାର ନାରାୟଣ ସାହୁ ହିଁ ପ୍ରମାଣିତ କରିଛନ୍ତି।

ନାଟ୍ୟକାର ସାହୁଙ୍କ ରଚନା ମଧ୍ୟରେ 'ମୂକ' ଭିନ୍ନ ସ୍ୱାଦର ନାଟକ। 'ମୂକ' ସଫଳ ପ୍ରତୀକଧର୍ମୀ ସୃଜନଶୀଳତାର ଅର୍ଥ ବହନ କରେ । ସାଂପ୍ରତିକ ସମୟଖଣ୍ଡ ସହ ଆଧୁନିକ ମଣିଷର ସଂପର୍କ ଓ ପରିଚୟ ହେଉଛି ମୂକ ପ୍ରାୟ । ସତ୍ୟର କଣ୍ଠରୋଧ କରିବା ପୁଣ୍ୟ ଉପରେ ପାପର ଭାରକୁ ଲଦି ଦେଇ ସ୍ୱାଭିମାନ ଉପରେ ଆତ୍ମବଡ଼ିମାର ଜୟପତକା ଉଡ଼େଇବା ହେଉଛି 'ମୂକ'ର ମୁଖଶାଳା। ସାଂପ୍ରତିକ ସମୟ ଦ୍ୱନ୍ଦ୍ୱ ଅର୍ଥାତ ଗ୍ଳାନିର ସମୟ। ଏ ଭିତରେ ମଣିଷର ବିଶୁଦ୍ଧ ପରିଚୟକୁ ବନ୍ଦନା କଲାବେଳେ ସତ୍ୟର ଜିଭଟାକୁ କାଟି ଦିଆଯାଏ ତେଣୁ ସେ ମୂକ, ଯାହା ଏ ନାଟକରେ ପ୍ରଦର୍ଶିତ।

ଆଜିର ଦ୍ୱିଧାଗ୍ରସ୍ତ ସମାଜରେ ଦୁର୍ନୀତିଗ୍ରସ୍ତ ଶାସକଗୋଷ୍ଠୀ କିପରି ସମାଜର ସରଳ ମଣିଷ ଉପରେ ଅତ୍ୟାଚାର ଚଳାଇଛନ୍ତି ତା'ର ଏକ ବାସ୍ତବ ଆଲେଖ୍ୟ 'ମୂକ' ନାଟକ ମଣିଷ ଆଜି ଅଥର୍ବ ଆଉ ମୂକ । ପ୍ରତିଟି ଯୁଗରେ କଣ୍ଠରୋଧ କରାଯାଇଛି ସତ୍ୟର। ରାଜତନ୍ତ୍ରଠାରୁ ଗଣତନ୍ତ୍ର ପର୍ଯ୍ୟନ୍ତ ପ୍ରତ୍ୟେକଟି ସମୟରେ ସତ୍ୟ ଉପରେ ଅତ୍ୟାଚାର କରାଯାଇଛି। ନାଟ୍ୟକାର ନାରାୟଣ ସାହୁ ସାଂପ୍ରତିକ ସମୟକାଳ ସହ ସାମାଜିକ ବାସ୍ତବତାକୁ ଯୋଡ଼ିବାରେ ଖୁବ୍ ଦକ୍ଷ । ସାମାଜିକ ସଚେତନତା ଆଣିବା ଉଚ୍ଚକୋଟୀର ଲେଖକର ଦକ୍ଷତା । ଏହା ହିଁ ଲେଖକୀୟ ଦାୟବଦ୍ଧତା । 'ମୂକ' ନାଟକରେ ମୂଲ୍ୟବୋଧ କିପରି ଖସିପଡ଼େ ସଭ୍ୟତାର ଦେହରୁ ଏବଂ ଦୁର୍ନୀତି ବଂଚିରହିବାର ଅର୍ଥହୀନ ଚଂଚଳତା ଭିତରେ ସତ୍ୟ, ଧର୍ମ, ନ୍ୟାୟ କିପରି ଧୂଳି ଧୂସରିତ ହୁଏ ତାହା ପ୍ରଦର୍ଶିତ । ନାଟକ 'ମୂକ' ବର୍ତ୍ତମାନ ସମାଜପାଇଁ ଜ୍ୱଳନ୍ତ ଚେତାବନୀ। ରାଜତନ୍ତ୍ରଠାରୁ ଗଣତନ୍ତ୍ର ପର୍ଯ୍ୟନ୍ତ ଆଧୁନିକ ମଣିଷର କୃତ୍ରିମ ସାଜସଜ୍ଜା ଏହି ନାଟକରେ ସ୍ପଷ୍ଟ। ଅଭିଜିତ, ବାଇଡ଼ଙ୍କ ମହିପାଳ, ଏଡ଼ିଟର, ଭୂଷଣ, ସଲିମ, ପୋଲିସ୍ ଇନ୍ସପେକ୍ଟର, ଟ୍ରାଫିକ୍ ପୋଲିସ୍, ମୂକଶିଶୁ, ଅଳକା ପ୍ରଭୃତି ଏହାର ଚରିତ୍ର। ସତ୍ୟକୁ ସାମ୍ନା କରିବାକୁ ଆସି ସାମ୍ବାଦିକ ଅଭିଜିତ୍ ନିଜର ସ୍ୱାଭିମାନକୁ ଅର୍ଥହୀନ କରିନାହିଁ । ବଳିଷ୍ଠ ସକ୍ଷମ ଗଣତନ୍ତ୍ରର ସତର୍କ ପ୍ରହରୀ ହେଉଛି ଗଣମାଧ୍ୟମ । ପ୍ରଶାସନିକ ତନ୍ତ୍ରର ସରକାରୀ କାର୍ଯ୍ୟାଳୟ ସାମାଜିକ ପ୍ରତିଷ୍ଠା ଏସବୁ ଭିତରେ ଅରାଜକତାର ରାଜନୈତିକ ଛାପ ଏଥିରେ ସ୍ପଷ୍ଟ ଉପଲବ୍ଧ ।

ମଣିଷ ପାଇଁ ସଂସାର, ସଂସାର ପାଇଁ ପରିବାର, ପରିବାର ପାଇଁ ଦେଶ, ଗୋଟିଏ ବିକଳାଙ୍ଗ ହେଲେ ଅନ୍ୟଟି ଅର୍ଥହୀନ । ତଥାପି ସତ୍ୟର ଜୟହେବ ଅଭିଜିତ୍‌ର ସଂଳାପ ଭିତରେ ଏହା ସ୍ପଷ୍ଟ ହୋଇଥାଏ । ଯେପରି "ମୋ ଦେଶର ଅଗଣିତ ବନ୍ଧ୍ୟାନାରୀ ଗଣ ! କେତେଦିନ ଯାଏ ଅତ୍ୟାଚାର ସହି ଚାଲିଥିବ। *** ମୋ ପ୍ରଶ୍ନର ଉତ୍ତର ଦିଅ । କାହାପାଇଁ ଗୋଟାଏ ନିରପରାଧୀ ନାରୀ ଆଜି ସହିଦ୍ ହୋଇଛି।"

ଗୋଟିଏ ସାମ୍ବାଦିକ ପରିବାରର ବଂଚିବାର ପ୍ରାଣକୁମ୍ଭ ଭିତରେ ଆହୁତା ସମୟର ଯନ୍ତ୍ରଣା ପୃଷ୍ଠ ଚିତ୍ର ଏଥିରେ ସ୍ପଷ୍ଟ ବାରିହୋଇପଡ଼େ। ଏହି ନାଟକରେ ଗୋଟିଏ କଥା ପ୍ରମାଣିତ ଯେ, ଯେଉଁଠି ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦର ସ୍ୱର ଲୋପପାଏ, ସେଠି କେବଳ ମୂକମାନେ ହିଁ ଜନ୍ମ ନିଅନ୍ତି। ଅଳକା ନାରୀ ଚରିତ୍ର ଭିତରେ ଦେଖା ଯାଇଥିବା ଅସହାୟତା ସଚ୍ଚୋଟ ସାମ୍ବାଦିକ ଅଭିଜିତ୍ ଚରିତ୍ର ଭିତରେ ନାଟ୍ୟକାର ଯେଉଁ ବ୍ୟସ୍ତ ମାନସିକତାକୁ ଦେଖାଇଛନ୍ତି ତାହା ସାଂପ୍ରତିକ ସମୟର ଚଳମାନ ଚିତ୍ର । ସ୍ୱେଚ୍ଛାଚାରୀ ରାଜନୀତିକ ଦଳ ନିଜର ଭୟଙ୍କର ପାପକୁ ଲୁଚାଇବାକୁ ଯାଇ ଅଳକାର ଜିଭ କାଟିଛନ୍ତି । ତା'ର ଜନ୍ମିତ ଶିଶୁ ବି ମୂକ। ମହିପାଳ ସରକାର ନିଜ ସୁରକ୍ଷିତ ଆସନ ଉପରେ ବସି ଅଟ୍ଟହାସ୍ୟ କରୁଛି। ନାଟକରେ ନାଟ୍ୟକାର ନାରାୟଣ ସାହୁ ପାଠକ ତଥା ଦର୍ଶକଙ୍କୁ ଏକ ନିଷ୍ଠୁର ସତ୍ୟର୍ ନିକଟବର୍ତ୍ତୀ କରାଇଛନ୍ତି ତାହା ହେଲା ସତ୍ୟକୁ ସାମ୍ନା ନ କରିବାର ମେରୁଦଣ୍ଡହୀନ ମଣିଷର ପରିଚୟ, ଯାହା ଉପଲବ୍ଧ ହୋଇଥାଏ ସଂଳାପରୁ ଯଥା- "କି ଦୋଷ କରିଥିଲା ଯେ ନିର୍ଦ୍ଦୋଶ ଶିଶୁଟି ସୂର୍ଯ୍ୟାଲୋକ ଦେଖିବା ପୂର୍ବରୁ କାହିଁକି ତା'ର କଣ୍ଠ ସ୍ୱର ନୀରବ ହୋଇଗଲା। କ'ଣ ପାଇଁ ସେ ମୂକ ହୋଇଗଲା ?"

ବାସ୍ତବିକ ଆଜିର ସମାଜରେ ପ୍ରତିବାଦର ସ୍ୱର କିପରି ଅବଲୁପ୍ତ ତାହା ପ୍ରତୀକିତ। ମୂକ ଶିଶୁ ମାଧ୍ୟମରେ ନାଟ୍ୟକାର ଏକ ସୁନ୍ଦର ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି। ସମାଜରେ ନୀତି ଧର୍ମର ପ୍ରତିଷ୍ଠା ପାଇଁ ଚେଷ୍ଟା କରୁଥିବା ସାମ୍ବାଦିକଙ୍କୁ ସମ୍ବାଦପତ୍ରରୁ ବିତାଡ଼ିତ କରାଯାଇଛି। ତାଙ୍କ ପତ୍ନୀଙ୍କ ଜିହ୍ୱା ଛେଦନ କରାଯାଇଛି ଏବଂ ସେ ମୃତ୍ୟୁବରଣ କରିବା ପୂର୍ବରୁ ମୂକ ଶିଶୁଟିଏ ଜନ୍ମନିଏ । ସମାଜରେ ପ୍ରତିବାଦର ସ୍ୱର ଲୋପପାଇଲେ ଏହିଭଳି ମୂକ ଶିଶୁମାନେ ଜନ୍ମଲାଭ କରିବେ ବୋଲି ନାଟ୍ୟକାର ସତର୍କବାଣୀ ଶୁଣାଇଛନ୍ତି। ନାଟକର ରାଜନୈତିକ ଅବକ୍ଷୟର ଚିତ୍ର ସୁସ୍ପଷ୍ଟ । ବାହାରେ ଭଦ୍ର ଜଣାପଡୁଥିବା ଦୁର୍ନୀତିଗ୍ରସ୍ତ ଶାସକଗୋଷ୍ଠୀର ଉପରସ୍ତରରୁ ନିମ୍ନସ୍ତର ପର୍ଯ୍ୟନ୍ତ ନେତାମାନଙ୍କର ପ୍ରକୃତ ସ୍ୱରୂପ ଏଠାରେ ପ୍ରଦର୍ଶିତ । ରାଜନୀତିର ପଶାଖେଳରେ ନିରୀହ ମଣିଷ କିପରି ସର୍ବଦା ବଳିପଡ଼ନ୍ତି ତା'ର ଚିତ୍ର ନିହିତ। ସାଧାରଣ ମଣିଷଟିଏ ରାଜନେତା ମାନଙ୍କ ନିକଟରେ ତୁଚ୍ଛ ମନେ ହୋଇଥାନ୍ତି ଯେପରି-

ଅଳକା- ମୁଁ ଜଣେ ସାମ୍ବାଦିକ, ଏତିକି ମୋର ପରିଚୟ। ଯେଉଁ ଲୋକଟା ମଲା, ସେ ହତ୍ୟାକାଣ୍ଡ ମୁଁ ନିଜେ ଦେଖିଛି। ଟିକିନିଖି ବିବରଣୀ ମୋ ପାଖରେ ମହଜୁଦ୍ ଅଛି। ଆଇନ ଆସାମୀକୁ ଫାଶୀଖୁଣ୍ଟ ପର୍ଯ୍ୟନ୍ତ ନେଇପାରିବ।

ବ୍ରାଇଡ଼ଙ୍କ- ମାଡ଼ାମ୍ କାହିଁକି ସେ ଝାମେଲାରେ ପଶୁଛନ୍ତି ? କାଦୁଅରେ ପଶିବେ କାହିଁ, ଗୋଡ଼ ଧୋଇବେ କାହିଁ ! ରାଜନୀତିରେ ମାରିବା ମରିବା ବି ଗୋଟିଏ ପ୍ରକାର ନୀତି ।

ନିତ୍ୟନୈମିତ୍ୟ ଘଟୁଥିବା ସମାଜର ଏ ଦୂରବସ୍ଥାକୁ ନାଟ୍ୟକାର ଉପସ୍ଥାପନ କରିଛନ୍ତି।

ଉତ୍ତମ ସମାଜ ଭିତରେ ଉତ୍ତମ ମଣିଷର ବ୍ୟକ୍ତିତ୍ୱ ପ୍ରମାଣିତ କିନ୍ତୁ ଗଣତନ୍ତ୍ରର ଉତ୍ତମ ବ୍ୟବସ୍ଥା ଭିତରେ ସଭ୍ୟତାର ଆତ୍ମା ବିଶୁଦ୍ଧ । 'ମୂକ' ନାଟକ ଭିତରେ ଏହାର ବିପରୀତ ଅର୍ଥ ଦେଖାଦିଏ । ଗଣତନ୍ତ୍ରର ସତର୍କ ପ୍ରହରୀ ଗଣମାଧ୍ୟମ, କିନ୍ତୁ ରାଜନୈତିକ କୁହୁକ ସର୍ବଦା ମଣିଷକୁ ସ୍ଥିତିହୀନ ପରିଚୟ ଦେଇ କରିଦେଇଛି ମୂକ । ଏଇ ନାଟକରେ ମୂକ ପାଲଟିଥିବା ମଣିଷର ଏଇ ଅବସ୍ଥା ପ୍ରମାଣ ଦିଏ । ପଦଲାଳସା ନିର୍ବାଚନୀ ପ୍ରଚାର, ମନ୍ତ୍ରୀତ୍ୱର ପ୍ରତିଷ୍ଠା ଏସବୁ ଭିତରେହିଁ ମୂକ ମଣିଷକୁ ପାଠକ ଆବିଷ୍କାର କରେ ।

ନାଟକ 'ମୂକ' ସାଂପ୍ରତିକ ସମାଜ ପାଇଁ ଏକ ଆହ୍ୱାନ। 'ମୂକ' ସତ୍ୟବଚନ ପାଇଁ ମୁଖର ହେଲେ ସତ୍ୟ ମୂଲ୍ୟବୋଧର ପ୍ରତିଷ୍ଠାପାଇଁ ସମୟ ଦୁଇପାଦ ଆଗକୁ ଯିବ । ସମସାମୟିକ ଘଟଣା ଭିତରେ 'ମୂକ' ନାଟକ ଆଜି ମଣିଷର ମେରୁଦଣ୍ଡ ହୀନ ସ୍ଥିତିକୁ ପ୍ରମାଣିତ କରିଛି । ସତ୍ୟ ଉପରେ ଗଣତନ୍ତ୍ରର ଅତ୍ୟାଚାର ସର୍ବସାଧାରଣ ସ୍ଥାନରେ ଘଟୁଥିବା ଅଘଟଣ, ସମ୍ବାଦପତ୍ରର ସମ୍ବାଦିକଙ୍କ ବଳିଦାନ ଆଦି ଦ୍ୱିଧାଗ୍ରସ୍ତ ସମାଜକୁ ପ୍ରତୀକିତ କରିବାପାଇଁ ଯଥେଷ୍ଟ। ସମାଜ ବ୍ୟବସ୍ଥାରେ ରାଜନୀତିର ସ୍ଥାନ କେଉଁଠି ଏଥିରୁ ସ୍ପଷ୍ଟ ଉପଲବ୍ଧି ହୋଇଥାଏ।

ବାସ୍ତବିକ ନାରାୟଣ ସାହୁଙ୍କ ପ୍ରାୟ ପ୍ରତ୍ୟେକଟି ନାଟକରେ ବିପ୍ଳବର ଧ୍ୱନି ଶୁଣିବାକୁ ମିଳିଥାଏ। ବିଶେଷକରି ଦଳିତ, ଅବହେଳିତ, ଶୋଷିତ, ନିଷ୍ପେସିତ ମଣିଷମାନଙ୍କ ପାଇଁ ନାଟ୍ୟକାରଙ୍କ ମନରେ ସମବେଦନା ପ୍ରକାଶ ପାଇଥାଏ । ସେଥିପାଇଁ ସାଧାରଣ ଜନତାର ଦୁର୍ଦ୍ଦଶାର ଦୟନୀୟ ରୂପର ଚିତ୍ରଣ ଭିତରେ ତାଙ୍କ ଲେଖନୀ ଚଳଚଂଚଳ। ଏହି ଦୃଷ୍ଟିରୁ ଦେଖିବାକୁ ଗଲେ 'ମୂକ' ଏକ ସାର୍ଥକ ସୃଷ୍ଟିବୋଲି ସ୍ୱୀକାର କରିବାକୁ ପଡ଼େ।

ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତି ବିହାର, ସମ୍ବଲପୁର

●●●

# 'ମୂଷା'କୁ ଯେତିକି ବୁଝିଛି

ଡ. ବାବାଜୀଚରଣ ପଟ୍ଟନାୟକ

କାହିଁ କେଉଁକାଳରୁ ପ୍ରବାଦଟିଏ ଚଳି ଆସିଛି-'କାବ୍ୟେଷୁ ନାଟକ ରମ୍ୟଂ ତତ୍ର ରମ୍ୟା ଶକୁନ୍ତଳା'। କାଳିଦାସଙ୍କ ରଚିତ "ଅଭିଜ୍ଞାନ ଶାକୁନ୍ତଳମ" କେବଳ ରମଣୀୟ ନାଟକ ନୁହେଁ, ମନୋହର କାବ୍ୟ ମଧ୍ୟ। ଅଭିନୟ ଓ ପଠନ ମାଧ୍ୟମରେ ଦ୍ରଷ୍ଟା-ଶ୍ରୋତା ଏବଂ ପାଠକ ଏଥିରୁ ରସସ୍ୱାଦନ କରିପାରନ୍ତି । ପୁଣି ନାଟ୍ୟଂ ଭିନଂରୁଚେର୍ଜନସ୍ୟ ବହୁଧାପ୍ୟେକଂ ଦୃଶ୍ୟତେ, ଅର୍ଥାତ ନାଟକ ହେଉଛି ଏକମାତ୍ର କଳା ଯାହାଦେଇ ଭିନ୍ନଭିନ୍ନ ରୁଚିର ଲୋକମାନଙ୍କ ମନୋରଞ୍ଜନ ହୋଇପାରେ । ଏଇଥିପାଇଁ ମୁନିମାନେ ନାଟ୍ୟକଳାକୁ ଶାନ୍ତଂ-କ୍ରତଂ-ଚାକ୍ଷୁଷଂ (ମାଳବିକାଗ୍ନିମିତ୍ରମ୍) ଅର୍ଥାତ୍ ଶାନ୍ତିପଦ ଚକ୍ଷୁ-ଯଜ୍ଞ କହିଥାନ୍ତି। ଆଧୁନିକ ବିଶ୍ୱର ଶ୍ରେଷ୍ଠ ନାଟ୍ୟକାର ସେକ୍‌ସପିୟରଙ୍କ ସମ୍ପନ୍ଧରେ ସାମୁଏଲ୍ ଜନସନ ଲେଖିଛନ୍ତି-A play read affects the mind like a play acted. ଅଭିନୟ ଜରିଆରେ ପ୍ରଦର୍ଶିତ ନାଟକ ଭଳି ସେକ୍‌ସପିୟରଙ୍କ ନାଟକ ବହିପଢ଼ାଳି ଏ ଅନୁରୂପ ମାନସିକ ପ୍ରଭାବ ଉପଲବ୍‌ଧି କରିଥାନ୍ତି। ଏ ସବୁ କଥା ଏଇଥିପାଇଁ ଲେଖିବାକୁ ପଡୁଛିଯେ, ପ୍ରଫେସର ନାରାୟଣ ସାହୁଙ୍କ ତିନୋଟି ସେଟ ପରିକଳ୍ପିତ ଛୋଟ ନାଟକ 'ମୂଷା' ପାଂଡୁଲିପି ପଢ଼ି ଅନୁଭବ କରି ହୋଇଛି. ଚରିତ୍ରମାନଙ୍କର ଅଭିନୟ । ବିଶ୍ୱବିଦ୍ୟାଳୟ ସ୍ତରରେ ଲେଖକ ଶ୍ରୀ ସାହୁ ସ୍ନାତକୋତ୍ତର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କର ଶିକ୍ଷାଦାତା, ଗବେଷକ-ଗବେଷିକା ମାନଙ୍କର ପରାମର୍ଶଦାତା ଓ ସର୍ବୋପରି ଶିକ୍ଷା ବିଭାଗୀୟ ପ୍ରଶାସନକୁ ଅଙ୍ଗେ ନିଭେଇଥିବା ଅଥବା ପାଖରୁ ଦେଖିଥିବା ସହୃଦୟ। ଏ ପାଠକ ମଧ୍ୟ ସରକାରୀ ମହାବିଦ୍ୟାଳୟ ସ୍ତରରେ ଅନୁରୂପ ଅଭିଜ୍ଞତାର ଉପଭୋକ୍ତା। ତେଣୁ 'ମୂଷା' ପାଂଡୁଲିପି ପଢିବା କାଳରେ ଚିତ୍ର-ଚରିତ୍ରା ନୁରାବକ୍ର ସ୍ମୃତି ପୃଷ୍ଠା ଆଡ଼େଇ ଅଭିନୟ ରୀତିରେ ଉପଭୋଗ କରି ହୋଇଛି ।

ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷା ବ୍ୟବସ୍ଥାରେ ସଂଘଟିତ, ପୀଡ଼ାପ୍ରଦ ଘଟଣାବଳୀକୁ ନାଟ୍ୟକାର ପ୍ରଫେସର ସାହୁ ଦର୍ଶକ ଓ ପାଠକ ମାନଙ୍କପକ୍ଷେ ଉପଭୋଗ୍ୟ ହେବା ନିମିତ୍ତ ହାସ୍ୟକର ଶୈଳୀ ଉପଯୋଗ କରିବାପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିଛନ୍ତି। ପୁରାଣୀୟ ପରମ୍ପରା ସ୍ମୃତିରେ ଜନସାଧାରଣ ତାଙ୍କ ଉଦ୍ଦେଶ୍ୟ ଘେନା କରିବାପାଇଁ ସେ ନାରଦ ଏବଂ ଗଣେଶଙ୍କୁ ଚରିତ୍ରରୂପେ ସଂଯୋଜନ କରାଇଛନ୍ତି। ହେଲେ;

ବାସ୍ତବ ଘଟଣା ସମ୍ବନ୍ଧରେ ଲେଖକଙ୍କ ଅନୁଭବ ଏତେ ତୀବ୍ର ଓ ମାର୍ମିକ ଯେ, ଅଭିବ୍ୟକ୍ତ ସଂଳାପ ପ୍ରତ୍ୟକ୍ଷ ଓ ବ୍ୟଞ୍ଜନାଧର୍ମୀ ହେବା ଭିନ୍ନ ଅନ୍ୟଥା ହୋଇପାରିନାହିଁ।

– ଶିକ୍ଷା ବିଭାଗଟା ଗୋଟାଏ ହରିଲୁଟ୍ ଡିପାର୍ଟମେଂଟ ହୋଇଗଲାଣି। ପୋଷ୍ଟିଙ୍ଗ, ପ୍ରମୋଶନ, ଟ୍ରାନ୍ସଫର ସବୁ କାମପାଇଁ ଏଠି ଭାଡିଆ ଦବାକୁ ହୁଏ। ମହାବିଦ୍ୟାଳୟମାନଙ୍କ ପାଇଁ ସରକାର ଆଇନ କଲେ, କୌଣସି ଲେକଚରର ଟିଉସନ କରିପାରିବେ ନାହିଁ। ହେଲେ କିଏ ମାନିଲା ? ସବୁ ଚାଲିଛି ଏଠି। ଯେଉଁମାନେ ଆଇନ କରନ୍ତି ପ୍ରଥମେ ତାଙ୍କରି ପିଲାଏ ଟିଉସନ ହୁଅନ୍ତି।

ଛାତ୍ର ଛାତ୍ରୀଙ୍କ ପରୀକ୍ଷା-ଖାତା ମୂଲ୍ୟାୟନ ପାଇଁ ବ୍ୟବସ୍ଥା କରାଯାଇଥିବା ଭାଲୁଏସନ୍ ସେଂଟର ଗୁଡ଼ିକରେ ଜଣେ ଜଣେ ଅଧ୍ୟାପକ ଦୁଇ-ତିନିଜାଗାରେ ଏକାଦିନରେ ଖାତା-ଦେଖୁଥିବା ଦେଖାଯାଉଛି। ଖାତା ଦେଖାଟା ସେମାନଙ୍କପାଇଁ ଗୋଟାଏ ଆର୍ଟ... ପ୍ରକାର ବିଜିନେସ୍। ଅଧିକନ୍ତୁ 'ପଇସା ଦବ ମାର୍କନବ'ର ବେପାରି ଫିସାଦି-କାରସାଦି ଭିତରେ ଶିକ୍ଷାଧାରାର ପବିତ୍ରତା ନଷ୍ଟ ହୋଇଛି। ବିଶ୍ୱବିଦ୍ୟାଳୟର କୁଳପତିଙ୍କ ପ୍ରତି ଛାତ୍ର-ଛାତ୍ରୀଙ୍କର ସମ୍ମାନ ନାହିଁ; ପ୍ରଫେସରମାନେ ପାଠପଢା ଛାଡ଼ି କେଉଁ ପିଲାକୁ ପରୀକ୍ଷାରେ ପ୍ରଥମ କରାଇବେ ସେଥେନି ବ୍ୟସ୍ତ ରହୁଛନ୍ତି । ଏମିତି 'ପ୍ରତିଟି ପାହାଚରେ ଦୁର୍ନୀତି'। ନ'ତାଲାଠାରୁ ଆରମ୍ଭକରି କୁଳାଧିପତିଙ୍କ କାର୍ଯ୍ୟାଳୟରେ ଘଟୁଥିବା ଘଟଣାମାନଙ୍କୁ ନାଟ୍ୟାୟିତ କରିଛନ୍ତି ପ୍ରଫେସର ସାହୁ। ଦୁର୍ନୀତି ସମ୍ବନ୍ଧୀୟ ସମସ୍ତ କାଗଜପତ୍ରକୁ ମୂଷାମାନେ ଖାଇଯିବା ଅପଦୁଆ ଉଠୁଛି । ମୂଷାଯେ ଏହି ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଚରିତ୍ର-ଏହାହିଁ ପ୍ରତିପାଦନ କରାଯାଇଛି ନାଟକରେ। ସାଂପ୍ରତିକ ଶିକ୍ଷାବ୍ୟବସ୍ଥାକୁ ବିଶ୍ୱସ୍ତରୀତିରେ ପ୍ରତିଫଳିତ କରାଇବାର ଯଥାର୍ଥ ଦର୍ପଣ ହୋଇଛି 'ମୂଷା' ନାଟକ।

ଅବଶ୍ୟ, ଓଡ଼ିଶାର ଶିକ୍ଷା ବ୍ୟବସ୍ଥାରେ ପରିଲକ୍ଷିତ ଦୁର୍ଗତିକୁ ଗାଳ୍ପିକ, ପ୍ରାବନ୍ଧିକ ଓ କବିମାନେ କଦବା କେମିତି ଆଂଶିକଭାବେ ଉପସ୍ଥାପନ କରିଥିବା ଦେଖି ହୋଇଛି। ଯେପରି; ଗାଳ୍ପିକ ରବି ପଟ୍ଟନାୟକ ଏକଦା ଲେଖିଥିଲେ-''ସ୍କୁଲ ଜୀବନର ଓଡ଼ିଆ ଶିକ୍ଷକମାନେ ବୋଧହୁଏ ଓଡ଼ିଆ ଭାଷାକୁ ହତ୍ୟା କରିବାର ପ୍ରଥମେ ଷଡ଼ଯନ୍ତକାରୀ ମଣିଷ ତା'ପରେ ତା'ର କବର ଦିଅନ୍ତି ଓଡ଼ିଆ ସାହିତ୍ୟର ଅଧ୍ୟାପକମାନେ। (ସମ୍ବାଦ-୨୯-୦୮-୧୯୮୫) ସାଂପ୍ରତିକ କାଳର ଗୁରୁମାନଙ୍କୁ କବି ବ୍ରଜନାଥ ରଥ 'ଅ-ଗୁରୁ' ବୋଲି ସମ୍ବୋଧନ କରିଛନ୍ତି, ଯେପରି:

ଅ-ଗୁରୁ ଯେତେ ଦେଖ ଗୁରୁ ଯେ
ଜୁହାର ତାଙ୍କୁ ହାତ ଦୂରୁ ଯେ

ଟିଉସନରୁ ଛାଣି, ନିଅନ୍ତି ଟଙ୍କା ଟାଣି
ପାଠ ଦେଖିଲେ ଥରେ ଭୂରୁ ଯେ
ଅ-ଗୁରୁ ଶାଠେ ସେ ଯେ ଗୁରୁ ଯେ ।
(ଝଙ୍କାର-ଅକ୍ଟୋବର-୧୯୯୩)

କବି ଶରତଚନ୍ଦ୍ର ପ୍ରଧାନ ତାଙ୍କ 'ବତ୍ରିଶ ସିଂହାସନ'ରେ ବିଶ୍ୱବିଦ୍ୟାଳୟରେ ଶିକ୍ଷା, ଶିକ୍ଷକ ଓ ଗବେଷକମାନଙ୍କ ପ୍ରତି ବ୍ୟଙ୍ଗାତ୍ମକ କଟାକ୍ଷ ହାଣିଛନ୍ତି ।

କିନ୍ତୁ ନାରାୟଣ ସାହୁଙ୍କ ଏହି କ୍ଷୁଦ୍ର ନାଟକଟି ସାଂପ୍ରତିକ କାଳର ଶିକ୍ଷା ବ୍ୟବସ୍ଥାରେ ପରିଲକ୍ଷିତ ଯାବତୀୟ ବିଶୃଙ୍ଖଳାକୁ ପ୍ରକାଶ କରିପାରିଛି । ଘଟଣାସବୁ ଏତେ ଜଣାଶୁଣା ଓ ବାସ୍ତବ ଯେ, ଯେ କୌଣସି ପାଠକ ଅଥବା ଅଭିନୟ ଦର୍ଶକ / ସଂଳାପ ଶ୍ରୋତାପକ୍ଷେ ନିଜ ଅନୁଭୂତିର ଚିତ୍ରାନୁକୃତ ଚରିତ୍ର ଉପଲବ୍ଧି ଏବଂ ଭାବପ୍ରକାଶକ୍ଷମ ଭାଷାଧ୍ୱନି ଆପଣାର ଲାଗିବା ସ୍ୱାଭାବିକ । ରାଗ, ଅନୁରାଗ ଓ ବିରାଗ- ଗୋଟିଏ ଗୋଟିଏ ସେଟ ଓ ସେଟ୍ ଗୁଡ଼ିକ ଯଥାକ୍ରମେ ପାଂଚ, ଚାରି ଓ ଚାରିଦୃଶ୍ୟ ବିଶିଷ୍ଟ । ମଂଚସଜ୍ଜାରେ ଜଟିଳତା ନାହିଁ । ପୁରାଣର ଚରିତ୍ର ଯଥା; ଗଣେଶ ଓ ନାରଦଙ୍କୁ ବିଷୟାନୁରୂପ ପ୍ରସଙ୍ଗରେ ସୋଢାରକରାଇବା ଦ୍ୱାରା ଘଟଣା ପ୍ରବାହ ପ୍ରତି ପାଠକୀୟ / ଦର୍ଶକୀୟ ଉଦ୍‌ବେଗ ସୃଷ୍ଟି କରାଯାଇ ପାରିଛି । ସାହିତ୍ୟର ଯେକୌଣସି ବିଭାଗର ଅଧ୍ୟୟନ ହେଉଛି ପାଠକର ଶବ୍ଦ ବୁଝାମଣା ନେଇ ବସ୍ତୁ ସମ୍ବନ୍ଧୀୟ ଚିତ୍ର ଉପଲବ୍‌ଧି । କିନ୍ତୁ ନାଟକର ସଂଳାପ ପଠନ ବା ଶ୍ରବଣ ମାତ୍ରକେ ଯେ କେହି ଚଳତ ଶକ୍ତି ସମ୍ପନ୍ନ ଚରିତ୍ରକୁ ଆଖି ଆଗରେ ଭାସିଯିବା ଦେଖି ଶବ୍ଦରୁ ଉପଲବ୍‌ଧି ଚିତ୍ରକୁ ସମଝି ପାରନ୍ତି। ତେଣୁ ନାଟକର ଭାଷା ଚିତ୍ର ଓ ଚରିତ୍ରର –ଏଥିର ସତ୍ୟତା "ମୂଷା" ନାଟକ ପାଠରୁ ଜାଣି ହେଉଛି। ଓଡ଼ିଶାର ଶିକ୍ଷାନୁଷ୍ଠାନମାନଙ୍କରେ ଏହାର ଅଭିନୟ କରାଗଲେ; ସମାଜ ସଂସ୍କାର, ଲୋକ ବ୍ୟବହାର ଶିକ୍ଷା ଯେ ନାଟକ ରଚନାର ଉଦ୍ଦେଶ୍ୟ ତାହା ସହଜେ ବୁଝି ହୁଅନ୍ତା । ପୁସ୍ତକଟିର ପାଠକ ଘେନାଘେନି ଓ ଦର୍ଶକଙ୍କ ମିତ୍ରୋଚିତ ଆଦର ସୁଲଭ ହେବ- ଏହା ମୋର ଦୃଢ଼ ବିଶ୍ୱାସ ।

୪୯, ସେକ୍ଟର-୦୮
ସି.ଡ଼ି.ଏ, କଟକ

●●●

# ବ୍ୟକ୍ତିତନ୍ତ୍ରର ଏକ ବିଡ଼ମ୍ବିତ ଅଧ୍ୟାୟ : ଅପରାହ୍ଣର ଅବଶୋଷ

ପ୍ର. କୃଷ୍ଣଚନ୍ଦ୍ର ପ୍ରଧାନ

ଓଡ଼ିଶାରେ ଯାହା ନବନାଟକ ରୂପେ ପରିଚିତ ତାହା ପାଶ୍ଚାତ୍ୟ ଚିନ୍ତା ଚେତନାର ସ୍ୱର୍ଣ୍ଣପ୍ରସୂ ଫଳ। ସ୍ୱାଭାବିକ ଓ ସାଙ୍କେତିକ ଭାବରେ ଆଧୁନିକ ମଣିଷର ଖଣ୍ଡିତ ଜୀବନ, ଗ୍ଲାନି, ନିଃସଙ୍ଗତା, ଯୌନଭାବାବେଗ ଓ ବିପର୍ଯ୍ୟୟକୁ ପ୍ରକାଶ କରିବା ଏହି ନାଟକର ଉଦ୍ଦେଶ୍ୟ। ଜୀବନର ବାସ୍ତବ ସତ୍ୟ ଉଦ୍‌ଘାଟନ ସହିତ ମଣିଷର ଅନ୍ତଚେତନାରେ ପ୍ରତିନିୟତ ଉତ୍ତୋଳିତ ହେଉଥିବା ଭାବତରଙ୍ଗଗୁଡ଼ିକୁ ନାଟ୍ୟକାର ଏଥିରେ ପ୍ରଦର୍ଶନ କରିବାକୁ ଚେଷ୍ଟା କରିଥାଏ। କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଆଦର୍ଶ ଓ ନିୟମରେ ଆଧୁନିକ ମଣିଷ ଯେ ବନ୍ଦୀ ନୁହେଁ ତାହା ଘୋଷଣା କରେ। ପାପ ପୁଣ୍ୟ ରୂପକ ରଢିବାଦୀ ଚିନ୍ତାଧାରାକୁ ନବନାଟକ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ ମଣିଷର ଅନ୍ତଃ ମନର ଜଟିଳ ରହସ୍ୟକୁ ଉଦ୍‌ଘାଟନ କରିବାରେ ଏହା ସତତ ଯତ୍ନଶୀଳ।

ଉତ୍ତର ଷାଠିଏ ପରେ ଓଡ଼ିଶାରେ ନବନାଟକର ବକ୍ତବ୍ୟ ଓ ଶିଳ୍ପରୀତିରେ କେତେକ ପରିବର୍ତ୍ତନ ଆସିଥିବାର ଲକ୍ଷ୍ୟ କରାଯାଇଥାଏ । ଏ କ୍ଷେତ୍ରରେ ଷାଠିଏ ପୂର୍ବବର୍ତ୍ତୀ ନାଟ୍ୟକାରଗଣ ମଧ୍ୟ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । ଆଧୁନିକ ମଣିଷର ଛଳନା, ମାନସିକ ସଙ୍କଟ ଓ ପୀଡ଼ା ହୋଇଛି ଏହି ସମୟର ନାଟକ ଗୁଡ଼ିକର ପ୍ରମୁଖ ବକ୍ତବ୍ୟ । ବ୍ୟକ୍ତି ଓ ଗୋଷ୍ଠୀ ସଂଘର୍ଷ ମଧ୍ୟରେ ମଣିଷର ଅସହାୟ ସ୍ଥିତି, ସାଂପ୍ରତିକ ମଣିଷର ସ୍ଥିତାବସ୍ଥା, ବିକଳ ବୋଧ, ମୂଲ୍ୟବୋଧରେ ସଙ୍କଟ, ଜୀବନର ଅସହାୟତା ଓ ଶୂନ୍ୟତାବୋଧ, ଟେଲିଗ୍ରାଫିକ୍ ଓ କାବ୍ୟିକ ସଂଳାପ ହୋଇଛି ଏହି ସମୟର ନାଟକର ମୁଖ୍ୟ ଉପଜୀବ୍ୟ । ମନୋରଞ୍ଜନ ଦାସଙ୍କ 'ବନହଂସୀ', ବିଜୟ ମିଶ୍ରଙ୍କ 'ତଟନିରଞ୍ଜନା', ହରିହର ମିଶ୍ରଙ୍କ 'ରାତ୍ରିର ଦୁଇଟି ଡେଣା', ରବୀନ୍ଦ୍ର ଦାସଙ୍କ 'ବିଷର୍ଣ୍ଣ ପୃଥିବୀ', ବିଶ୍ୱଜିତ ଦାସଙ୍କ 'ମୃଗୟା' ଇତ୍ୟାଦିରେ ଏହାର ସ୍ୱର ସ୍ପଷ୍ଟ ।

୧୯୮୦ ପରେ ଓଡ଼ିଆ ନାଟକରେ ପୁଣି ଏକ ନୂତନତାର ଆଭାସ ମିଳେ । ଏହି ସମୟରେ ପରଂପରା ଓ ଐତିହ୍ୟ ହୋଇଉଠିଛି ନାଟ୍ୟକାରମାନଙ୍କ ନିକଟରେ ପ୍ରିୟତମ

ବସ୍ତୁ । ଲୋକ ନାଟକର ଶୈଳୀ ନୂଆ ରୂପରେ ହୋଇଛି ପରୀକ୍ଷା ନିରୀକ୍ଷା । ଜନଶ୍ରୁତି, ଇତିହାସ ଓ ଲୋକ କାହାଣୀ ଗୁଡ଼ିକୁ ଆଧୁନିକ ଜୀବନ ସହିତ ସମ୍ମିଳିତ କରାଯାଇ, ତାର ନବ ମୂଲ୍ୟାୟନ କରାଯାଇଛି । ବ୍ୟକ୍ତିଚେତନା ହୋଇଛି ସାମୂହିକ ଚେତନାରେ ରୂପାନ୍ତରିତ। ମନୋରଞ୍ଜନ ଦାସଙ୍କ 'ନନ୍ଦିକା କେଶରୀ', ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ', କାର୍ତ୍ତିକ ଚନ୍ଦ୍ର ରଥଙ୍କ 'କଳାପାହାଡ଼', ରତ୍ନାକର ଚଇନିଙ୍କ 'ଅଥଚ ଚାଣକ୍ୟ', ହରିହର ମିଶ୍ରଙ୍କ 'ଅଦୃଶ୍ୟ ନଟ', ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ 'ସ୍ୱର୍ଗାରୋହଣ', ସୁବୋଧ ପଟ୍ଟନାୟକଙ୍କ 'ଏଥୁ ଅନ୍ତେ,' ରତି ମିଶ୍ରଙ୍କ 'ଅବତାର', ବିଜୟ ଶତପଥୀଙ୍କର 'କର୍ଣ୍ଣ', ନାରାୟଣ ସାହୁଙ୍କର 'କାହାଣୀ ସବାଶେଷ ଲୋକର', 'ଉପାସନା', ନାରାୟଣ ପତିଙ୍କର 'ମୁକ୍ତିପଥ', ପ୍ରମୋଦ ତ୍ରିପାଠୀଙ୍କ 'ଫେରିଯାଅ ରାମଚନ୍ଦ୍ର', ରଣଜିତ୍ ପଟ୍ଟନାୟକଙ୍କ 'ଇଚ୍ଛା ବନାମ ପଦ୍ମନାଭ' ଇତ୍ୟାଦି ନାଟକ ଗୁଡ଼ିକୁ ଅନୁଧ୍ୟାନ କଲେ ଏହାର ସତ୍ୟତା ଉପଲବ୍ଧି କରିହୁଏ।

ବିଶ୍ୱ ନାଟ୍ୟଜଗତରେ ଯେତେବେଳେ ଯେଉଁ ପରିବର୍ତ୍ତନର ସ୍ୱର ଆସିଛି, ଓଡ଼ିଆ ନାଟ୍ୟକାରଗଣ ତାହା ଆଦରି ନେଇଛନ୍ତି । ବିଭିନ୍ନ ବାଦ, ତତ୍ତ୍ୱ ଓ ଆନ୍ଦୋଳନର ପରୀକ୍ଷା ନିରୀକ୍ଷା ହୋଇଛି ଓଡ଼ିଆ ନାଟକରେ । ସ୍ୱଭାବବାଦ, ବାସ୍ତବବାଦ, ଅଭିବ୍ୟକ୍ତିବାଦ, ସଙ୍କେତବାଦ, ଏପିକ୍ ଥିଏଟର, କାବ୍ୟିକ ନାଟ୍ୟ ଆଦିର ପ୍ରଭାବ ଓ ପ୍ରତିଶ୍ରୁତି ଓଡ଼ିଆ ନାଟକର ଦିଗ୍‌ବଳୟକୁ କରିଛି ରଙ୍ଗାୟିତ ଓ ବିଚିତ୍ର ବର୍ଣ୍ଣା । ଏହି ଦୃଷ୍ଟିରୁ ବିଚାର କଲେ ବିଶ୍ୱର ପରିବର୍ତ୍ତିତ ପରିସ୍ଥିତି ସହିତ ପାଦ ମିଳାଇ ଚାଲିବା କ୍ଷେତ୍ରରେ ଓଡ଼ିଆ ନାଟକ ଆଦୌ ପଛରେ ପଡ଼ିଯାଇନାହିଁ।

୧୯୮୦ ପରବର୍ତ୍ତୀ ଓଡ଼ିଆ ନାଟ୍ୟ ସାହିତ୍ୟ କ୍ଷେତ୍ରରେ ନାଟ୍ୟକାର ସାହୁ ଏକ ପରିଚିତ ନାମ । ବୃତ୍ତିରେ ଅଧ୍ୟାପନା, ମାତ୍ର ନିଶାରେ ନିରଳସ କଳାକାରଟିଏ। ଜୀବନ ଓ ଜଗତ ପ୍ରତି ସତତ ଆସ୍ଥାଶୀଳ ଏହି ନାଟ୍ୟକାରଙ୍କର ନାଟ୍ୟ ଜଗତ ବିଚିତ୍ରବର୍ଣ୍ଣା। ଓଡ଼ିଶାରେ ନବନାଟକ ଆନ୍ଦୋଳନ କ୍ଷେତ୍ରରେ ଯେଉଁ ସୂତ୍ରପାତ ମନୋରଞ୍ଜନ ଦାସ ଆରମ୍ଭ କରିଥିଲେ, ୧୯୮୦ ମସିହା ପରେ ଏହି ନାଟ୍ୟ ଆନ୍ଦୋଳନକୁ ଯେଉଁ ନାଟ୍ୟ ନାଟ୍ୟକାରଗଣ ପରିପୁଷ୍ଟ ଓ ପ୍ରସାରିତ କରିଛନ୍ତି, ସେମାନଙ୍କ ମଧ୍ୟରେ ନାଟ୍ୟକାର ସାହୁ ଅନ୍ୟତମ। ତାଙ୍କ ନାଟକ ଗୁଡ଼ିକ ସମୃଦ୍ଧ ଓ ବୈଚିତ୍ର୍ୟ ମଣ୍ଡିତ ହେଲେ ହେଁ ତାର ମୂଳବୀଜଟି ବିଦ୍ୟମାନ ଏହି ପରିଚିତ ମାଟିରେ। ମଣିଷ ହିଁ ତାଙ୍କ ନାଟକର କେନ୍ଦ୍ରବିନ୍ଦୁ । ସେହି ମଣିଷର ହସ-କାନ୍ଦ, ସୁଖ-ଦୁଃଖ, ଆଶା-ନିରାଶା, ଅହଂକାର, ଆତ୍ମପୀଡ଼ନ, ବ୍ୟକ୍ତିବାଦୀ ଚିନ୍ତାଧାରା, ସ୍ଥିତି ପ୍ରତି ସଂଶୟାତ୍ମକ ଦୃଷ୍ଟି, ଯୁକ୍ତି ସର୍ବସ୍ୱ ଜୀବନ, ବୃଥା ଆସ୍ଫାଳନ, ନିଃସଙ୍ଗତା, ଅପ୍ରାପ୍ତିଜନିତ ଅବସୋସ ଓ ମାନବିକ ସମ୍ବେଦନଶୀଳତା ହୋଇଛି ତାଙ୍କ

ନାଟକର ମୁଖ୍ୟସ୍ୱର । ତାଙ୍କ ସୃଷ୍ଟ ଚରିତ୍ର ଗୁଡ଼ିକ ପ୍ରତିନିୟତ ଆମ ଚତୁର୍ଦ୍ଦିଗରେ ଘୂରିବୁଲୁଥିବା ସାଧାରଣ ମଣିଷ। ତେଣୁ ସେମାନଙ୍କୁ ଖୋଜିବାକୁ ବେଶୀ ଦୂର ଯିବାକୁ ପଡ଼େନି । ସାମସମୟିକ ସାମାଜିକ ଚିନ୍ତନ ସହିତ ବାର୍ତ୍ତମାନିକ ମଣିଷର ଅନ୍ତଃରୂପ ଉଦ୍‌ଘାଟନ କରି ସେ ନିଜପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି।

ଶ୍ରୀ ସାହୁଙ୍କର ନାଟ୍ୟ ଚରିତ୍ରଗଣ ଯେପରି ସାମ-ସମୟିକ ସମାଜର ସ୍ଥିତାବସ୍ଥା ବିରୋଧରେ ବିଦ୍ରୋହର ସ୍ୱର ଉତ୍ତୋଳନ କରନ୍ତି, ସେହିପରି ମାନବିକ ଭାବଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଗୋଟିଏ ସୁସ୍ଥସୁନ୍ଦର ସମାଜଗଠନର ପ୍ରତିଶ୍ରୁତି ଦିଅନ୍ତି। ପୁଣି ବେଳେବେଳେ ଈଶ୍ୱରଙ୍କ ସ୍ଥିତି ପ୍ରତି ସନ୍ଦେହ ପ୍ରକାଶ କରିସ୍ଥିତିବାଦୀ ଦର୍ଶନର ପ୍ରବକ୍ତା ସାଜିବା ବେଳେ, ଅନ୍ୟ କେତେବେଳେ ମାନବର ଅନ୍ତଃରୂପ ଉଦ୍‌ଘାଟନ କରି ବ୍ୟକ୍ତି ମଣିଷର ନିଜସ୍ୱ ପରିଚୟଟି ଦେଇପାରନ୍ତି। ପରଂପରା ପ୍ରତି ମଧ୍ୟ ନାଟ୍ୟକାରଙ୍କର ଗଭୀର ସମ୍ମାନବୋଧ ରହିଛି। ଐତିହ୍ୟ ପ୍ରତି ସଚେତନତା ସହିତ ଇତିହାସର ନବମୂଲ୍ୟାୟନ କରି ତାକୁ ଚଳନ୍ତି ସମାଜର ମହାସ୍ରୋତରେ ସାମିଲ କରିଦେବାର ପ୍ରବଣତା ରହିଛି । ବାସ୍ତବ ଦୃଷ୍ଟିକୋଣରୁ ସେ ଯେପରି ସ୍ୱ-କାଳ ସଚେତନତାର ପ୍ରମାଣ ଦିଅନ୍ତି, ସେହିପରି ମଣିଷ ଅସହାୟତା, ଜୀବନ ଯନ୍ତ୍ରଣା, ବିଡମ୍ବିତ ଜୀବନକୁ ରୂପାୟିତ କରି ସାଂପ୍ରତିକ ସମାଜରେ ମଣିଷର ବଞ୍ଚିବାର ସ୍ଥିତିନେଇ ପ୍ରଶ୍ନ ଉଠାଇ ପାରନ୍ତି। ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ମିଳନଭୂମି ନାଟ୍ୟକାର ନାରାୟଣ ସାହୁଙ୍କ ବିଚିତ୍ର ନାଟ୍ୟଜଗତ।

## 'ଅପରାହ୍ଣର ଅବଶୋଷ' ନାଟକର କଥାବସ୍ତୁ

'ଅପରାହ୍‌ଣର ଅବଶୋଷ' ନାଟକଟି ବିଶିଷ୍ଟ ପ୍ରକାଶନ ସଂସ୍ଥା 'ବିଦ୍ୟାପୁରୀ' କଟକ ଦ୍ୱାରା ୨୦୦୨ ମସିହାରେ ପ୍ରକାଶିତ ହେବା ପୂର୍ବରୁ ଏହି ଶିରୋନାମାରେ ଉକ୍ତ ନାଟକଟି ପ୍ରଥମ ଅଭିନୟ ଦୂରଦର୍ଶନ କେନ୍ଦ୍ର ଭୁବନେଶ୍ୱର ଦ୍ୱାରା ତା.୦୬.୦୧.୨୦୦୦ରେ ଅନୁଷ୍ଠିତ ହୋଇଥିଲା । ଏହାର ଦ୍ୱିତୀୟ ଅଭିନୟ-ସୌଖୀନ ନାଟ୍ୟାନୁଷ୍ଠାନ 'କଳାକଞ୍ଚନା' (ଭୁବନେଶ୍ୱର) ତରଫରୁ ନାଟ୍ୟାନୁଷ୍ଠାନ 'ଶାଶ୍ୱତୀ' ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ୭ମ ନାଟକ ପ୍ରତିଯୋଗିତା ବ୍ରହ୍ମପୁର ଟାଉନ ହଲ୍ ଠାରେ ତା୩୦.୧୨.୨୦୦୦ରେ ଅନୁଷ୍ଠିତ ହୋଇଥିଲା ଓ ସେତେବେଳେ ନାଟକଟିର ନାମ ଥିଲା 'ଅସ୍ତରାଗ'। ସେହିପରି ବିଶ୍ୱନାଟ୍ୟ ଦିବସ ଉପଲକ୍ଷେ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପଠାରେ ତା୨୭.୦୩.୨୦୦୧ରେ ମଧ୍ୟ 'ଅପରାହ୍‌ଣର ଅବଶୋଷ' ନାମରେ ନାଟକଟି ମଞ୍ଚସ୍ଥ ହୋଇ ଦର୍ଶକୀୟ ଆଦୃତି ଲାଭ କରିଛି। ଏହାଛଡ଼ା 'ଅସ୍ତରାଗର ଏଲିଜି' ନାମରେ ମଧ୍ୟ ନାଟକଟି କେତେକ ସ୍ଥାନରେ ଅଭିନୀତ ହୋଇ ପ୍ରଶଂସା ଲାଭ କରିପାରିଛି।

ଏହି ନାଟକଟିରେ ନାଟ୍ୟକାର ରାଜ୍ୟ ଓ ରାଜତ୍ୱ ହରାଇଥିବା ଅଥଚ ସେହି ମାନସିକତାର ବଶବର୍ତ୍ତୀ ହୋଇ ମିଥ୍ୟା ଅଭିମାନରେ ସତତ ସନ୍ତୁଳିତ୍ ହେଉଥିବା ରାଜା ଭାନୁପ୍ରତାପଙ୍କ ବିଡ଼ମ୍ବିତ ଜୀବନର ଏକ ଅଧ୍ୟାୟକୁ ଚମତ୍କାର ରୂପ ପ୍ରଦାନ କରିଛନ୍ତି ।

ଜୀବନର ଅପରାହ୍ଣରେ ଅତୀତର ସ୍ମୃତି-ବିସ୍ମୃତି ଯେଉଁ ଅବସୋସର ଧାରାଟିକୁ ସଜୀବ କରିଦିଏ, ତାହା କେବଳ ବ୍ୟକ୍ତି ଜୀବନ ପାଇଁ ନୁହେଁ, ସାମଗ୍ରିକ ଜୀବନ ପ୍ରତି ଏକ ଆହ୍ୱାନର ରୂପନିଏ। ମଣିଷର ମିଥ୍ୟାଭିମାନ ଓ ସମାଜ ବିରୁଦ୍ଧ କାର୍ଯ୍ୟକଳାପ, ଯେତେବେଳେ ତାକୁ ସମାଜ, ପରିବାର ଓ ଆତ୍ମୀୟମାନଙ୍କ ଠାରୁ ଦୂରେଇ ଦେଇ ଭିନ୍ନ ଗୋଟିଏ ମଣିଷରେ ରୂପାନ୍ତରିତ କରିଦିଏ, ସ୍ଥିତିହୀନ ବର୍ତ୍ତମାନ ଓ ସମ୍ଭାବହୀନ ଭବିଷ୍ୟତ ମଧ୍ୟରେ ସେନିଜକୁ ଆବିଷ୍କାର କରେ ଗୋଟିଏ ଏକାକୀତ୍ୱର ବଳୟରେ । ଜୀବନର ଅପରାହ୍ଣରେ ଅତୀତ ପାଇଁ ଅବସୋସ ଆସିଲା ବେଳକୁ ତାର ପ୍ରିୟତମ ବସ୍ତୁଟି ପହଞ୍ଚି ସାରିଥାଏ କେଉଁ ଏକ ଅପହଞ୍ଚ ରାଇଜରେ । ସତେ ଯେପରି ଅବସୋସ ହିଁ ତାର ଭବିତବ୍ୟ।

'ଅପରାହ୍ଣର ଅବଶୋଷ' ନାଟକର ମୁଖ୍ୟ ଚରିତ୍ର ଭାନୁପ୍ରତାପ, ବ୍ୟକ୍ତିତନ୍ତ୍ରର ସାର୍ଥକ ପ୍ରତିନିଧି। ନିଜସ୍ୱ ଖିଆଲକୁ ନେଇ ବଞ୍ଚିଥିବା ଏହି ମଣିଷଟି ମାନସିକ ସ୍ତରରେ ତଥାପି ରହିଯାଇଛନ୍ତି ସେହି ରାଜରାଜୁଡ଼ା ଯୁଗରେ। ଜୀବନର ବିସ୍ତାରିତ ଦିଗ ତଥା ସମୟର ପରିବର୍ତ୍ତନକୁ ସ୍ୱୀକାର କରିପାରୁନଥିବା ଏହିପରି ବ୍ୟକ୍ତିମାନଙ୍କର ଜୀବନ ସତରେ ବଡ଼ କରୁଣ ଓ ଅସହାୟ। ଗୋଟିଏ ମିଥ୍ୟା ଖିଆଲର ବଶବର୍ତ୍ତୀ ହୋଇ ଜୀବନକୁ ଏହିପରି ବ୍ୟକ୍ତିବିଶେଷ କିପରି ବିଡ଼ମ୍ବିତ କରିପକାନ୍ତି, ତାର ଚମତ୍କାର ଉଦାହରଣ ରାଜା ଭାନୁପ୍ରତାପ। କ୍ଷମତାକୁ ଜାବୁଡ଼ି ଧରିବା ମଣିଷର ଏକ ସ୍ୱାଭାବିକ ପ୍ରବୃତ୍ତି। ଏହିପରି କ୍ଷମତାନ୍ଧ ମଣିଷମାନଙ୍କ ନିକଟରେ ସଂପର୍କର କିଛି ମାନେ ନଥାଏ। ପତ୍ନୀ, ପୁତ୍ର ଓ ସମାଜର କୌଣସି ମୂଲ୍ୟ ନଥାଏ। ଜୀବନର ବାସ୍ତବ ସତ୍ୟକୁ ପ୍ରତି ମୁହୂର୍ତ୍ତରେ ଉପଲବ୍ଧି କରି ମଧ୍ୟ କରିପାରୁନଥିବା ତଥା ଗୋଟିଏ ମଥ୍ୟା ଅଟେ। ପରେ ନିଜର ଅଭିମାନକୁ ଜାହିର କରିବାର ପ୍ରବଣତା ମଣିଷକୁ କିପରି ଅନ୍ଧ କରିଦିଏ, ତାର ସାର୍ଥକ ଉଦାହରଣ 'ଅପରାହ୍ଣ ଅବଶୋଷ' ନାଟକଟି।

ବିଗତ ରାଜତନ୍ତ୍ର। ଗଣତନ୍ତ୍ର ଯୁଗରେ ବ୍ୟକ୍ତି ଖିଆଲର ପରିଧି ଖୁବ୍ ସୀମିତ। ମାତ୍ର ଏହି ସତ୍ୟଟିକୁ ଗ୍ରହଣ କରିବାକୁ ନାରାଜ ରାଜା ନାମଧାରୀ ଭାନୁପ୍ରତାପ। କାରଣ ସେ ରାଜା। ଗଭୀର ବିଶ୍ୱାସ ତାଙ୍କର ନିଜର ଖିଆଲ ଉପରେ । ମଣିଷ ନିଜର ସୀମା ସରହଦ ସଂପର୍କରେ ସଚେତନ ନହୋଇ ପାରିବାଠାରୁ ବଳି ଦୁଃଖ ଆଉ କ'ଣ ଥାଇପାରେ? ଜୀବନ ଏକ କର୍ମମାଇଜ-ଯେ କୌଣସି ବୁଦ୍ଧିମାନ ବ୍ୟକ୍ତି ଏହି ସତ୍ୟଟିକୁ ଗ୍ରହଣ କରିନେବା

ଉଚିତ୍। ଯେଉଁମାନେ ଏହି ବାସ୍ତବ ସତ୍ୟ ପ୍ରତି ପରାଙ୍‌ମୁଖ, ସେହିମାନେ ହିଁ ସମାଜର ସବୁଠାରୁ ବେଶୀ ଭାଗ ଦରିଦ୍ର। ମଣିଷ କେବଳ ଅତୀତକୁ ନେଇ, ସ୍ୱପ୍ନକୁ ନେଇ ବଞ୍ଚେନାହିଁ; ବର୍ତ୍ତମାନକୁ, ବାସ୍ତବତାକୁ ମଧ୍ୟ ସ୍ୱୀକାର କରିବାକୁ ହୁଏ। ବାସ୍ତବତା, ବର୍ତ୍ତମାନହିଁ ଜୀବନ, ହେଉପଛେ ତାହା ଯେତେ ନିଷ୍ଠୁର ବା ଭୟାବହ। ପରିବର୍ତ୍ତିତ ସମୟର ସ୍ପଷ୍ଟ ସଙ୍କେତ ସତ୍ତ୍ୱେ ବି ରାଜା ଭାନୁପ୍ରତାପ ଏହି ସତ୍ୟଟିକୁ ଗ୍ରହଣ କରିବାକୁ ଅନିଚ୍ଛୁକ।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପରେ ମଧ୍ୟ ରାଜା ତାର ଶୂନ୍ୟ ସିଂହାସନକୁ ଗର୍ବର ବିଷୟ ବୋଲି ମନେକରେ । ରାଜତନ୍ତ୍ରର ବିଲୟ ଓ ତା' ସ୍ଥାନରେ ଗଣତନ୍ତ୍ରର ଅଭ୍ୟୁଦୟ । ଅଥଚ ଏବେ ବି ରାଜତନ୍ତ୍ର ଯୁଗୀୟ ଖିଆଲରୁ ମୁକ୍ତ ନୁହନ୍ତି ରାଜା ଭାନୁପ୍ରତାପ। ସାଧାରଣ ନାଗରିକ ବା ପ୍ରଜାସ୍ତରକୁ ଓହ୍ଲାଇ ଆସିବାକୁ ସେ ପ୍ରସ୍ତୁତ ନୁହନ୍ତି । କ୍ଷମତାର ବିଲୟ ପରେ ରାଜା କେବଳ ଯେ ସାଧାରଣ ଜନତା, ଏହି ସାର୍ବଜନୀନ ସତ୍ୟକୁ ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ନୁହନ୍ତି । ୧୯୭୨ ମସିହାରେ ସ୍ୱାଧୀନ ସରକାରଙ୍କ ଦ୍ୱାରା ପ୍ରିଭିପର୍ସ ରଦ୍ଦ ହେବା ପରେ ନାଲି ଚା' ସେବନ କରୁଥିବା ରାଜା, ନିଜ ଅତିଥିଙ୍କୁ ତାହା ଭେଟିଦେବା ସମୟରେ ସ୍ୱାସ୍ଥ୍ୟପ୍ରତି ଏହା ହିତକାରକ ବୋଲି ଡାକ୍ତରଙ୍କ ପରାମର୍ଶଟି ଚେତେଇ ଦେଉଛନ୍ତି। ସିଂହାସନ ଆରୋହଣର ଚାଳିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଶୂନ୍ୟ ରାଜପ୍ରସାଦ ମଧ୍ୟରେ ବନ୍ଧୁ, ଅତିଥିହୀନ ରାଜା ତଥାପି ଚିତ୍କାର କରନ୍ତି, "ମୁଁ ରାଜା - ମୋ ଉତ୍ସବ କେବେ ବନ୍ଦ ହୋଇ ପାରେନା...ମୁଁ ରାଜା - ଦିବାଲୋକରେ ନ ହେଲା ନାହିଁ, ରାତିର ଘନ ଅନ୍ଧକାର ଭିତରେ ମୁଁ ପାଳନ କରୁଛି ମୋ ଅଭିଷେକ ଉତ୍ସବ।"

ଅହଂକାର ଓ ଅଭିମାନକୁ ନେଇ ରାଜତ୍ୱ କରାଯାଇ ପାରେନା । ରାଜତ୍ୱ ପାଇଁ ଆବଶ୍ୟକ ପ୍ରସାରିତ ଦୃଷ୍ଟିଭଙ୍ଗୀ। ଏହି ପୁରୋଦୃଷ୍ଟି ଅଭାବରେ ମଣିଷ ବର୍ତ୍ତମାନରେ ଥାଇ ବି ପରିଚିତ ହୁଏ ଅତୀତ ରୂପେ । ରାଜାଙ୍କର ବୃଥା ଅହମିକା ରାଣୀ ସୁଭଦ୍ରାଙ୍କୁ ପରିତ୍ୟାଗ କରିଛି। ଏକମାତ୍ର ସନ୍ତାନର ପାଠପଢା ଖର୍ଚ୍ଚ ଯୋଗାଇ ନପାରିବାର ଅସମର୍ଥତାକୁ ଅହଙ୍କାରବଶତଃ ପ୍ରକାଶ କରିନପାରି ଅଧିକ ପଢିବାର ଆବଶ୍ୟକତା ନାହିଁ ବୋଲି ପରାମର୍ଶ ଦେଇଛି। କୁମାରର ଏକ ଶିକ୍ଷିତା ସୁଶ୍ରୀ ନର୍ତ୍ତକୀ ସହ ବିବାହ ପ୍ରସ୍ତାବର କ୍ଷୁବ୍ଧ ହୋଇ କହି ପାରିଛି-"କୁମାର, ରାଜାର ପୁଅ ହୋଇ ଜଣେ ସାଧାରଣ ନାଟବାଲୀକୁ ବିବାହ କରିବ, ଏ କଥା ମୁଁ କେବେ ବରଦାସ୍ତ କରିପାରିବି ନାହିଁ ଏବଂ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ସମ୍ଭବ ନୁହେଁ।"

ଜଣେ କ୍ଷମତା ହରାଇଥିବା, ସମୟର ପ୍ରତିକୂଳରେ ଗତିଶୀଳ ମିଥ୍ୟାଭିମାନୀ ଅହଂକାରପୀଡ଼ିତ ରାଜାର ଜୀବନବେଦ 'ଅପରାହ୍ଣର ଅବଶୋଷ' ହୋଇଥିଲେ ହେଁ

ବ୍ୟକ୍ତିତନ୍ତ୍ରର ସେହି ବିଡ଼ମ୍ବିତ ଅଧ୍ୟାୟ ଗୁଡ଼ିକୁ ଏଥିରେ ପ୍ରଦର୍ଶିତ କରାଯିବାର ଚେଷ୍ଟା କରାଯାଇଛି । ସ୍ୱେଚ୍ଛାଚାରୀ ଶାସକ ସଦାବେଳେ ନିଜ ଇଚ୍ଛାର ରାଜା । ତା'ପାଖରେ ନିୟମ, କାନୁନ, ସାମାଜିକ ବିଧିବ୍ୟବସ୍ଥା ମୂଲ୍ୟହୀନ । ଅତୀତରେ ସାଧାରଣ ପ୍ରଜା ସ୍ୱେଚ୍ଛାଚାରୀ ଶାସକର ନିର୍ଯ୍ୟାତନା ଓ ଅତ୍ୟାଚାର ମୁଣ୍ଡପାତି ସହି ନେଉଥିଲା । ବିନା ଅପରାଧରେ ରାଜଦଣ୍ଡ ଭୋଗିଲେ ମଧ୍ୟ ପ୍ରତିବାଦର ସ୍ୱର ନଥିଲା । ସମୟ ପରିବର୍ତ୍ତିତ ହୋଇଛି । ରାଜତନ୍ତ୍ର ଆଉ ନାହିଁ କି ରାଜାଙ୍କ ଖିଆଲ ଅନୁଯାୟୀ ଶାସନ ବ୍ୟବସ୍ଥା ଚଳିବାକୁ ବାଧ୍ୟ ନୁହେଁ । ଗଣତନ୍ତ୍ରରେ ରାଜା ଓ ପ୍ରଜା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଲୋକମାନଙ୍କ ଶାସନରେ ପ୍ରତିଟି ଲୋକର ସମାନ ଅଧିକାର, ସମାନ କ୍ଷମତା ରହିଛି । ବ୍ୟକ୍ତତନ୍ତ୍ର ଭୂତ ତଥାପି ଅବଶିଷ୍ଟ ରହିଯାଇଛି ଭାନୁପ୍ରତାପଙ୍କ ପରି କେତେଜଣ ତଥାକଥିତ ରାଜାଙ୍କ ମନରେ । ରାଜଗାଦି ଚାଲିଯାଇଥିଲେ ହେଁ ଭାନୁପ୍ରତାପ ରାଜକୀୟ ଅହଙ୍କାରରୁ ମୁକ୍ତ ହୋଇପାରି ନାହାନ୍ତି । ପରିବର୍ତ୍ତିତ ପରିସ୍ଥିତି ସହିତ ସାଲିସ୍ କରିବାକୁ ସମର୍ଥ ହୋଇ ନାହାନ୍ତି । ମାତ୍ର ପ୍ରଚଳିତ ଶାସନ ବ୍ୟବସ୍ଥା ତାଙ୍କୁ ଭଗ୍ନ ରାଜପ୍ରାସାଦର ଚାକରିକାନ୍ଥ ଭିତରେ ଆବଦ୍ଧ କରି ଦେଇଛି । ରାଜତନ୍ତ୍ର ଓ ଗଣତନ୍ତ୍ରର ସଂଘର୍ଷରେ ରାଜତନ୍ତ୍ରର ଘଟିଛି ବିଲୟ ଓ ଗଣତନ୍ତ୍ରର ହୋଇଛି ବିଜୟ । ତେଣୁ ସମୟର ସ୍ୱରକୁ ଉପଲବ୍ଧି କରି ପାରିଥିବା କୁମାର ଭାନୁପ୍ରତାପଙ୍କୁ ସେଥିପାଇଁ ସତର୍କ କରାଇ ଦେଇ କହିଛନ୍ତି-"ଆପଣଙ୍କ ଚାହିଁବା ସୀମିତ ହୋଇଯାଇଛି । କାରଣ କ୍ଷମତା, ପ୍ରତିପତ୍ତି, ଅର୍ଥ ସବୁକିଛି ଆପଣଙ୍କଠାରୁ କାଢି ନିଆଯାଇଛି । ନିଜସ୍ୱ ଖୋଳପା ଭିତରେ ବଞ୍ଚିଥିବା ଗୋଟିଏ କ୍ଷୁଦ୍ର ପ୍ରଜାପତି ଆପଣ-"

ବ୍ୟକ୍ତିତନ୍ତ୍ର ବ୍ୟକ୍ତିକୁ କରେ ସ୍ୱୈରାଚାରୀ । ଅତୀତର ରାଜତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ରାଜାର ଖିଆଲ ହିଁ ଥିଲା ଆଇନ, ବିଧି ବ୍ୟବସ୍ଥାର ସର୍ବୋଚ୍ଚ ମାନଦଣ୍ଡ । ଅଳ୍ପ କେତେଜଣ ପରଂପରାକ୍ରମେ ଏହାର ଆନୁଗତ୍ୟ ସ୍ୱୀକାର କଲେ ହେଁ ଅଧିକାଂଶ ଏହି ମନୋବୃତ୍ତିର ବିରୋଧୀ । ରାଜା ଭାନୁପ୍ରତାପ ନିଜ ଆଖି ଆଗରେ ରାଜତନ୍ତ୍ରର ଏହି ରୁଗ୍ଣ ଓ ବିକଳାବସ୍ଥା ଦେଖି ଅସହ୍ୟ ହୋଇ ଉଠିଛନ୍ତି । ଅତୀତର ସେହି ସ୍ୱପ୍ନ ମଧୁର ଦିନଗୁଡ଼ିକ ତାଙ୍କୁ ବାରମ୍ବାର ମନେ ପକାଇ ଦେଇଛି ରାଜାର କ୍ଷମତା ଓ ପ୍ରତିପତ୍ତିକୁ । ତେଣୁ ରାଜାଙ୍କ ଠାରୁ କ୍ଷମତା ଅପହରଣ ଏକ ବିଧିବଦ୍ଧ ଷଡ଼ଯନ୍ତ୍ର ବୋଲି ତାଙ୍କର ମନେ ହୋଇଛି । ଏଥିପାଇଁ ବେଣ୍ଟପୋଖରୀରୁ ମାଛ ଚୋରି କରିଥିବା ଦୁଇଜଣ ବ୍ୟକ୍ତିକୁ ସେ ଏପରି ନିଷ୍ଠୁର ମାଡ଼ ମାରିଥିଲେ ଯେ, ସେହି ଘଟଣାରେ ଜଣଙ୍କର ମୃତ୍ୟୁ ହୋଇଛି । ଗଣତନ୍ତ୍ରରେ ଆଇନ୍‌କୁ ନିଜ ହାତକୁ ନେବା ଏକ ଅପରାଧ-ଏପରି ଚିନ୍ତାଧାରାକୁ ସହଜରେ ସେ ଗ୍ରହଣ କରିପାରିନାହାନ୍ତି । ତେଣୁ ଜିଲ୍ଲାପାଳ ବୁଲୁଙ୍କ ସମସ୍ତ ଚେଷ୍ଟା, ପରିସ୍ଥିତିକୁ ହୃଦୟଙ୍ଗମ କରିବାପାଇଁ ସମସ୍ତ ଅନୁରୋଧ ପଣ୍ଡ ହୋଇଯାଇଛି ଭାନୁପ୍ରତାପଙ୍କ ନିକଟରେ ।

ରାଜା-ପ୍ରଜା ସମାନ-ଏପରି ତତ୍ତ୍ୱ ଗ୍ରହଣ କରିବାକୁ ତାଙ୍କ ବିବେକ ଆଦୌ ସମ୍ମତ ହୋଇନାହିଁ, ଏଇଥିପାଇଁ ସେ କହିଛନ୍ତି- "ନା' ତାହା କେବେ ହୋଇପାରେନା। ରାଜା, ରାଜା ଆଉ ପ୍ରଜା, ପ୍ରଜା।"

ଉକ୍ତ ନାଟକ ମାଧ୍ୟମରେ ନାଟ୍ୟକାର ବ୍ୟକ୍ତିତନ୍ତ୍ର ଯୁଗର ଏକ ଅନ୍ଧାରୀ ଶାସନର ପ୍ରେକ୍ଷାପଟ୍ଟ ଉନ୍ମୋଚନ କରିବାକୁ ଚେଷ୍ଟା କରିଛନ୍ତି । ରଢ଼ିବାଦୀ ଚିନ୍ତାସର୍ବସ୍ୱ, କ୍ଷମତାଲୋଲୁପ ଏହି ଶାସକଗଣଙ୍କ ମାନସିକତା ଓ ମିଥ୍ୟାଭିମାନ କିପରି ନିଜ ଜୀବନକୁ ବିପର୍ଯ୍ୟସ୍ତ ତଥା ନିଃସଙ୍ଗ କରିଦେଇପାରେ, ତାର ବାସ୍ତବ ଚିତ୍ରଟି ଏଥିରେ ଉପସ୍ଥାପିତ।

ମଣିଷ ଯେଁତେବେଳେ ନିଜର ଭାବ, ଚିନ୍ତାଧାରା ଭାଷା ମାଧ୍ୟମରେ ଯଥାଯଥ ପ୍ରକାଶ କରିବାକୁ ଅସମର୍ଥ ହୁଏ, ସେତେବେଳେ ସେ ସାହାଯ୍ୟ ନେଇଥାଏ ପ୍ରତୀକର। ସେଥିପାଇଁ କୁହାଯାଏ 'ମଣିଷ ଏକ ପ୍ରତୀକାତ୍ମକ ଦୁନିଆରେ ବାସକରେ।' ଅଭିବ୍ୟକ୍ତି ଯେତେବେଳେ ଅଭିଧେୟାର୍ଥ ଶବ୍ଦ ପରିଧି ଅତିକ୍ରମ କରି ଗୋଟିଏ ସାଙ୍କେତିକ ଶୈଳୀ ମାଧ୍ୟମରେ ରୂପଲାଭ କରେ, ସେତେବେଳେ ତାହା ପ୍ରତୀକର ରୂପ ଗ୍ରହଣ କରେ। ସଂପ୍ରତି ପ୍ରତୀକକୁ ଅଭିବ୍ୟକ୍ତିର ଏକ ଶକ୍ତିଶାଳୀ ମାଧ୍ୟମ ଭାବେ ଗ୍ରହଣ କରାଯାଉଛି। କୌଣସି ଭାବାତ୍ମକ ବା ଦୃଶ୍ୟାତ୍ମକ ସତ୍ୟର ପରିପ୍ରକାଶ ପ୍ରତୀକ ଦ୍ୱାରା ହେବା ସହଜ ସାଧ୍ୟ ହୋଇଥାଏ । ଏଥିପାଇଁ Eduyn Beven କୁହନ୍ତି A symbol certainly, I think means something prevented to the senses or the imagination usally to the senses which stands for something else.

Encyclopaedia of Britanica ରେ କୁହାଯାଇଛି "Symbol(Sign) the term given to a visible object representing to the mind resemblance of something which is not shown but realized through association with it.

ଆଧୁନିକ ମଣିଷ ଏପରି ଏକ ଦୁନିଆରେ ବାସକରେ, ଯେଉଁଠି ପ୍ରତି ମୁହୂର୍ତ୍ତରେ ତାକୁ କିଛିନା କିଛି ସମାନା କରିବାକୁ ପଡ଼େ । ତାର ବ୍ୟସ୍ତବହୁଳ ଜୀବନରେ ସମୟର ସ୍ୱଳ୍ପତା ପ୍ରତିଟି ଭାବକୁ ସଂପୂର୍ଣ୍ଣ ରୂପେ ପ୍ରକାଶ କରିବାରେ ଅବକାଶ ପାଏ ନାହିଁ । ପୁଣି ତାର ଅନ୍ତଃରାଜ୍ୟରେ ଏପରି କିଛି ଘଟଣା ବା ଭାବର ଆଲୋଡ଼ନ ସୃଷ୍ଟିହୁଏ, ଯାହାକୁ ଶାବ୍ଦିକ ଭାଷାରେ ପ୍ରକାଶ କରିବାକୁ ଅନେକତ୍ର ସେ ନିଜର ଅସମର୍ଥତା ପ୍ରକାଶ କରିଥାଏ। ଏ କ୍ଷେତ୍ରରେ ପ୍ରତୀକ ହିଁ ଯଥାର୍ଥ ଭାବ ଅବବୋଧରେ ସହାୟତା କରିଥାଏ ।

ଊନବିଂଶ ଶତକର ଶେଷଭାଗରେ ପାଶ୍ଚାତ୍ୟ ଦେଶମାନଙ୍କରେ ନାଟକରେ ପ୍ରତୀକର ପରୀକ୍ଷା ନିରୀକ୍ଷା କରାଗଲା । ବିଭିନ୍ନ ସାମାଜିକ୍ ସମସ୍ୟା, ବ୍ୟକ୍ତିର ଅସହାୟତା ଓ ନିଃସଙ୍ଗତାକୁ ପ୍ରତୀକ ମାଧ୍ୟମରେ ପ୍ରକାଶ କରାଯାଇ ଅସମ୍ଭବ ସଫଳତା ମିଳିଲା ।

ପରୋକ୍ଷ କଥ୍ୟର ସଙ୍କେତ ଦ୍ୱାରା ବିଭିନ୍ନ ଚରିତ୍ର ମାଧ୍ୟମରେ ନାଟ୍ୟକାର ପ୍ରତୀକର ପ୍ରୟୋଗ କଲେ। ଓଡ଼ିଆ ସାହିତ୍ୟରେ ୧୯୫୦ ମସିହା ପରବର୍ତ୍ତୀ, ବିଶେଷକରି ଉତ୍ତର ଷାଠିଏ ନାଟକରେ ପ୍ରତୀକର ବହୁଳ ପ୍ରୟୋଗ କରାଯାଇ ପ୍ରତୀକଧର୍ମୀ ନାଟକ ରଚନା କରାଯାଇଛି ଓ ବିଶ୍ୱନାଟ୍ୟ ସାହିତ୍ୟର ପରିବର୍ତ୍ତିତ ଭାବଧାରା ସହିତ ଓଡ଼ିଆ ନାଟକ ପାଦମିଳାଇ ଚାଲିବାକୁ ସମର୍ଥ ହୋଇଛି ।

ନାଟ୍ୟକାର ନାରାୟଣ ସାହୁଙ୍କ ଆଲୋଚ୍ୟ 'ଅପରାହ୍ଣର ଅବଶୋଷ' ଏହି ଦୃଷ୍ଟିରୁ ଏକ ସାର୍ଥକ ପ୍ରତୀକଧର୍ମୀ ନାଟକ । ଏହାର ନାମକରଣଠାରୁ ଆରମ୍ଭ କରି ଚରିତ୍ରମାନଙ୍କର ଚାରିତ୍ରିକ ମହତ୍ତ୍ୱ ପ୍ରଖ୍ୟାପନ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ପ୍ରତୀକର ସାହାଯ୍ୟ ନିଆଯାଇଛି। ପ୍ରଥମେ ଏହାର ନାମକରଣରେ ରହିଥିବା ପ୍ରତୀକଧର୍ମୀତାକୁ ଲକ୍ଷ୍ୟ କରାଯାଉ। ଏଠାରେ ମଣିଷ ଶେଷାବସ୍ଥା ବା ବାର୍ଦ୍ଧକ୍ୟକୁ ଅପରାହ୍ଣ ସହିତ ତର୍କଣା କରାଯାଇଛି । ଏହି ନାଟକରେ ଯଥାର୍ଥରେ ଭାନୁପ୍ରତାପ ଅପରାହ୍ଣ ରୂପେ ପରିକଳ୍ପିତ।

ରାଜା ଭାନୁପ୍ରତାପ ବୟସର ଅପରାହ୍ଣରେ ଅନେକ ଅବସୋସ ବହୁ ଅଧୁରା ସ୍ୱପ୍ନକୁ ନେଇ ଇହଲୀଳା ସମ୍ବରଣ କରିଛନ୍ତି । ବାର୍ଦ୍ଧକ୍ୟାବସ୍ଥାରେ ପତ୍ନୀ ସୁଭଦ୍ରା ଓ ପୁତ୍ର କୁମାର ତାଙ୍କ ନିକଟରୁ ଦୂରେଇ ଯାଇଛନ୍ତି । ୧୯୭୨ ମସିହାରେ ସରକାରଙ୍କ ଦ୍ୱାରା ପ୍ରିଭିପର୍ସ ବନ୍ଦ ହେବାଦ୍ୱାରା ଆର୍ଥିକ ଅନଟନ ମଧ୍ୟରେ ଜୀବନ ଅତିବାହିତ କରିଛନ୍ତି । ରାଜପ୍ରାସାଦରୁ ଗୋଟିଏ ପରେ ଗୋଟିଏ ସଦସ୍ୟ ଚାଲିଯାଇଛନ୍ତି । କେବଳ ବୃଦ୍ଧ ଚାକର ରଙ୍କ ରହିଯାଇଛି ତାଙ୍କର ସେବାପାଇଁ । ଭାନୁପ୍ରତାପଙ୍କ ନିଜ ଆଖିଆଗରେ ତାଙ୍କର ଗୋଟିଏ ଗୋଟିଏ ସ୍ୱପ୍ନ ବିକଳ ଭାବରେ ଝଡ଼ି ପଡୁଥିଲା ତାସଘର ପରି। ରାଜତନ୍ତ୍ରର ଉଚ୍ଛେଦ ଥିଲା ତାଙ୍କ ପାଇଁ ସବୁଠାରୁ ଅଧିକ ବେଦନାୟକ । ତାଙ୍କ ହାତରୁ ସମସ୍ତ କ୍ଷମତା ଅପହରଣ କରି ନିଆଗଲା । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଗଣ ହାତରେ ରହିଲା ଶାସନ କ୍ଷମତା। ରାଜା ଓ ପ୍ରଜା ମଧ୍ୟରେ ରହିଥିବା ବ୍ୟବଧାନର ପ୍ରାଚୀରକୁ ଭାଙ୍ଗିଦିଆଗଲା। ନିଜର ପ୍ରତିଟି କାର୍ଯ୍ୟପାଇଁ ରାଷ୍ଟ୍ର ନିକଟରେ ସମସ୍ତେ ଦାୟୀ ରହିଲେ । ସମସ୍ତଙ୍କ ପାଇଁ ଏକ ପ୍ରକାର ବିଧି ବ୍ୟବସ୍ଥାର ପ୍ରଚଳନ ହେଲା । ଦୀର୍ଘଦିନ ଧରି କ୍ଷମତା ଉପଭୋଗ କରିଆସିଥିବା ରାଜା ଭାନୁପ୍ରତାପଙ୍କ ପରି ବ୍ୟକ୍ତି ବିଶେଷଙ୍କ ପାଇଁ ଏହା ଥିଲା ଅତ୍ୟନ୍ତ ଅସହ୍ୟ। ସାଧାରଣ ପ୍ରଜାସ୍ତରକୁ ଖସିବାର ମାନସିକତା ନଥିବାରୁ ଏମାନେ ହେଲେ ମର୍ମାହତ।

ରାଜା ଭାନୁପ୍ରତାପ ଅନ୍ୟକୁ କେବଳ ଆଦେଶ ଶିଖିଥିଲେ । ଅନ୍ୟ କେହି ତାଙ୍କୁ ଆଦେଶ ଦେବ, ଏହା ଥିଲା ତାଙ୍କ ପାଇଁ ସ୍ୱପ୍ନାତୀତ । ନିଜ ଦେୱାନର ପୁଅ ବୁଲୁ ଜିଲ୍ଲାପାଳ ଭାବରେ ତାଙ୍କର ଅଧିକାର, କ୍ଷମତା ଓ ପରିସର ସଂପର୍କରେ ସଚେତନ

କରାଇଦେବାରୁ ଭାନୁପ୍ରତାପ ହୋଇଛନ୍ତି ପ୍ରତିକ୍ରିୟାଶୀଳ । ବେଣ୍ଟପୋଖରୀ ମାଛ ଚୋରିକରିଥିବା ଦୁଇଜଣ ବ୍ୟକ୍ତିଙ୍କୁ ଭାନୁପ୍ରତାପ ପ୍ରବଳ ମାଡ଼ ମାରିଛନ୍ତି, ତନ୍ମଧ୍ୟରୁ ଜଣଙ୍କର ଦୁଃଖଦାୟକ ମୃତ୍ୟୁ ହୋଇଛି । ଏହି ଘଟଣାଟି ଗୋଟିଏ ଗଣ୍ଡଗୋଳର ରୂପ ଧାରଣ କରିବାରୁ ଜିଲ୍ଲାପାଳ ଭାବରେ ବୁଲୁ ରାଜାଙ୍କୁ ତାହା ବୁଝାଇବାକୁ ଚେଷ୍ଟାକଲେ ହେଁ, ସେ ଆଦୌ ବୁଝିବାକୁ ପ୍ରସ୍ତୁତ ନଥିଲେ । ଗଣତନ୍ତ୍ରରେ ଯେ କୌଣସି ବ୍ୟକ୍ତିର ଆଇନକୁ ହାତକୁ ନେବାର ଅଧିକାର ନାହିଁ, ଏହା ସେ ବୁଝି ନଥିଲେ କିମ୍ବା ବୁଝିବାକୁ ପ୍ରସ୍ତୁତ ମଧ୍ୟ ନଥିଲେ ।

ନିଜ ସନ୍ତାନର ପାଠପଢାଖର୍ଚ୍ଚ ବହନ କରିବାକୁ ଅସମର୍ଥ ଭାନୁପ୍ରତାପ କେବେ ବି ନିଜର ଅହଂ ତ୍ୟାଗ କରିବାର ପକ୍ଷପାତୀ ନଥିଲେ । ଗୋଟିଏ ମିଥ୍ୟା ଅଭିମାନକୁ ପାଥେୟ କରି ସାରାଜୀବନ ଦୁଃଖ ପାଇଲେ । ଏପରିକି ନିଜର ଏକମାତ୍ର ପୁତ୍ର କୁମାର ଜଣେ ସୁଶ୍ରୀ ଶିକ୍ଷିତା ନର୍ତ୍ତକୀକୁ ଭଲ ପାଇବାର ସମ୍ବାଦ ଅବଗତ ହୋଇ କ୍ରୋଧାନ୍ୱିତ ହୋଇଥିଲେ । ରାଜ ପରିବାର ଜଣେ ନାଚବାଲୀ ବୋହୂ ଭାବରେ ଗ୍ରହଣ କରିପାରିବ ନାହିଁ ବୋଲି ରୋକ୍‌ଠୋକ୍ ଶୁଣାଇ ଦେଇଥିଲେ । ନିଜର ଆର୍ଥିକ ଦୁରବସ୍ଥା ସତ୍ତ୍ୱେ ବନ୍ଧୁ ବିକ୍ରମ ନିକଟରେ ନିଜର ମନକଥା ଖୋଲି କହି ପାରିନଥିଲେ । ବରଂ ସ୍ୱାଭିମାନ ରକ୍ଷା· ପାଇଁ ନାଲି ଚା'ର ଉପକାରିତା ସଂପର୍କରେ ବେଶ୍ ସ୍ପଷ୍ଟୀକରଣ ଦେଇଥିଲେ।

ନିଜର ସମସ୍ତ ଅପକର୍ମ ସତ୍ତ୍ୱେ, ପତ୍ନୀ ସୁଭଦ୍ରାଙ୍କୁ ଅପମାନିତ କରିଥିଲେ , ଯେଉଁଥିପାଇଁ ସେ ବାଧ୍ୟ ହୋଇ ରାଜପ୍ରାସାଦ ତ୍ୟାଗ କରିଥିଲେ । ଅଥଚ ତାଙ୍କଦ୍ୱାରା ପଠାଯାଉଥିବା ମାସିକ ଖର୍ଚ୍ଚ ଥିଲା ତାଙ୍କର ଏକମାତ୍ର ସମ୍ବଳ। ଜୀବନର ଅପରାହ୍ଣ ପର୍ଯ୍ୟନ୍ତ ସେହି ଏକ ଅନୁଚିତ ଅଭିମାନକୁ ପାଥେୟ କରି ବଞ୍ଚିବାକୁ ଚେଷ୍ଟାକରି ବାରମ୍ବାର ହାରିଯାଉଥିଲେ ହେଁ, ସେଥିପ୍ରତି ତାଙ୍କର ସାମାନ୍ୟ ମାତ୍ର ଅନୁଶୋଚନା ନଥିଲା। କିନ୍ତୁ ଶେଷରେ ତାଙ୍କୁ ହାରିବାକୁ ହିଁ ପଡ଼ିଲା । ପତ୍ନୀ ସୁଭଦ୍ରାଙ୍କ ତିରୋଧାନ ଥିଲା ତାଙ୍କ ପାଇଁ ଶକ୍ତ ଆଘାତ । ସେହି ଆଘାତରେ ଯନ୍ତ୍ରଣା ପ୍ରକାଶ କରିପାରି ନଥିଲେ, ମନଭିତରର କ୍ଷତ ଗଭୀରରୁ ଗଭୀରତର ହେଉଥିଲା । ଶେଷରେ ସେହି ଆଘାତ ହିଁ ତାଙ୍କ ଜୀବନ ଦୀପକୁ ସୁବଦିନପାଇଁ ନିର୍ବାପିତ କରିଦେଇଥିଲା । ବାର୍ଦ୍ଧକ୍ୟାବସ୍ଥାରେ ବହୁ ଅବସୋସ ନେଇ ପ୍ରାଣ ବିସର୍ଜନ କରିଥିଲେ ରାଜା ଭାନୁପ୍ରତାପ।

ଅନ୍ୟ ଦୃଷ୍ଟିରୁ ବିଚାରକଲେ ରାଜାଭାନୁପ୍ରତାପଙ୍କୁ ଚଳନ୍ତି ସମୟର କ୍ଷମତାନ୍ଧ ଲୋକପ୍ରତିନିଧିମାନଙ୍କର ପ୍ରତୀକ ଭାବରେ ଗ୍ରହଣ କରାଯାଇପାରେ। ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଯେଉଁମାନେ ଥରେ କ୍ଷମତା ସ୍ୱାଦ ଚାଖିଥାନ୍ତି, ତାକୁ ଜାବୋଡ଼ି ଧରିବାକୁ ଅନବରତ ଚେଷ୍ଟା କରିଥାନ୍ତି । ଏଥିପାଇଁ ଯେ କୌଣସି ସ୍ତରକୁ ଯିବାପାଇଁ ତାଙ୍କର

ସାମାନ୍ୟମାତ୍ର ସଙ୍କୋଚ ନଥାଏ। ଗଣସ୍ୱାର୍ଥ ନୁହେଁ, ଜଣ ସ୍ୱାର୍ଥ ହିଁ ତାଙ୍କର ଏକମାତ୍ର ଲକ୍ଷ୍ୟ। ଆବଶ୍ୟକ ହେଲେ ନିଜର କ୍ଷମତା ଓ ସ୍ୱାର୍ଥ ପାଇଁ ନିଜର ପତ୍ନୀ ଏବଂ ସନ୍ତାନମାନଙ୍କୁ ବଳିଦେବାକୁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ବୁଲୁ ପରି କର୍ତ୍ତବ୍ୟରତ ପ୍ରଶାସକଙ୍କୁ ବାରମ୍ବାର ଅପମାନିତ କରନ୍ତି । ପ୍ରଶାସନିକ ବ୍ୟବସ୍ଥାକୁ ନିଜ ହାତମୁଠାରେ ରଖି ଏକଛତ୍ର ଅଧିପତି ହେବାର ଆଶା ପୋଷଣ କରନ୍ତି । ତେଣୁ ଆତ୍ମସ୍ୱାର୍ଥୀ, କ୍ଷମତାନ୍ଧ, ସ୍ୱସୁଖବିଳାସୀଙ୍କ ପ୍ରତୀକରୂପେ ରାଜା ଭାନୁପ୍ରତାପଙ୍କୁ ଗ୍ରହଣ କରାଯାଇପାରେ । ଅନୁରୂପ ଭାବେ ବୁଲୁଙ୍କୁ କର୍ତ୍ତବ୍ୟନିଷ୍ଠ ପ୍ରଶାସନିକ ଅଧିକାରୀଙ୍କ ପ୍ରତୀକ ତଥା ସୁଭଦ୍ରାଙ୍କୁ ଏକ ଚିରନ୍ତନୀ ନାରୀର ପ୍ରତୀକରୂପେ ଗ୍ରହଣ କରାଯାଇପାରେ । ସଂକ୍ଷେପରେ କହିଲେ, ନାମକରଣ, ଘଟଣାବିନ୍ୟାସ, ଚରିତ୍ର ଚିତ୍ରଣ-ବିଭିନ୍ନ ଦୃଷ୍ଟିରୁ ବିଚାରକଲେ 'ଅପରାହ୍ଣର ଅବଶୋଷ' ଯେ ଏକ ସାର୍ଥକ ପ୍ରତୀକଧର୍ମୀ ନାଟକ, ଏଥିରେ ଦ୍ୱିମତ ହେବାର ନାହିଁ ।

## ସାମସମୟିକ ସାମାଜିକ ଓ ପ୍ରଶାସନିକ ବ୍ୟବସ୍ଥାର ଏକ ବ୍ୟଙ୍ଗବିଦ୍ରୂପ ରୂପ

ସ୍ରଷ୍ଟା ସମାଜ ସୃଷ୍ଟ। ସମାଜ ସହିତ ସ୍ରଷ୍ଟା ଜୀବନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିବାରୁ ସାମାଜିକ ଅନୁଭବ ତାଙ୍କ ସୃଷ୍ଟି ସମୂହରେ ପ୍ରତିଫଳିତ ହେବା ସ୍ୱାଭାବିକ । ସ୍ରଷ୍ଟାଟିଏ ଯେଉଁ ସମାଜରେ ବାସକରେ, ତାର ଚତୁଃପାର୍ଶ୍ୱରେ ଯେଉଁସବୁ ଘଟଣା ସଂଘଟିତ ହେଉଥାଏ, ତା'ପ୍ରଭାବରୁ ସେ ନିଜକୁ ମୁକ୍ତ ରଖିପାରେନାହିଁ । ତେଣୁ ସାମସମୟିକ ସମାଜ ଓ ସମାଜିକ ବ୍ୟବସ୍ଥା ସ୍ରଷ୍ଟା ହୃଦୟରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥାଏ, ତାର କଳାତ୍ମକ ପରିପ୍ରକାଶ ଘଟେ ତା'ସୃଷ୍ଟିରେ ।

'ଅପରାହ୍ନର ଅବଶୋଷ' ନାଟକରେ ସାମସମୟିକ ସମାଜର ବହୁଘଟଣା, ଚରିତ୍ରକୁ ପ୍ରତୀକାତ୍ମକ ଭାବରେ ଗ୍ରହଣ କରାଯାଇଛି । ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ଗଣତନ୍ତ୍ରରେ କ୍ଷମତା ହରାଇଥିବା ଜଣେ ରାଜାଙ୍କ ଶେଷ ଜୀବନର ଚିତ୍ର ଏଥିରେ ପ୍ରଦତ୍ତ ହୋଇଥିଲେ ହେଁ, ବାସ୍ତବରେ ସ୍ୱାଧୀନ ଭାରତର ବହୁଘଟଣା ଓ ଚରିତ୍ର ନାଟକ ମଧ୍ୟକୁ ପ୍ରବେଶ କରିଛନ୍ତି ନାଟ୍ୟକାରଙ୍କ ସଚେତନ ପ୍ରୟାସରୁ । ସେହିପରି କେତୋଟି ଚରିତ୍ର ଓ ଘଟଣାର ଅବଲମ୍ବନରେ ଏହି ମତର ସତ୍ୟତା ପ୍ରତିପାଦନ କରାଯାଇପାରେ ।

ପ୍ରଥମେ ରାଜା ଭାନୁପ୍ରତାପଙ୍କ ଚରିତ୍ର ଅନୁଧ୍ୟାନ କରାଯାଉ । ଦୀର୍ଘକାଳ ଧରି କ୍ଷମତା ଉପଭୋଗ କରି ଆସିଥିବା ଏକ ରାଜବଂଶର ଦାୟାଦ ସେ । କ୍ଷମତାର ସ୍ୱାଦ ଥରେ ଯିଏ ଚାଖିଥାଏ, କୌଣସି କ୍ଷେତ୍ରରେ କ୍ଷମତାର ସେହି ବଳୟରୁ ନିଜକୁ ଦୂରେଇ ରଖିନପାରେ । କ୍ଷମତାର ସିଂହାସନ ମଣିଷକୁ ଅନ୍ଧ କରି ଦେଇଥାଏ । ଏଥିପାଇଁ ଆବଶ୍ୟକ

ହେଲେ ଯେ କୌଣସି କାର୍ଯ୍ୟ କରିବାକୁ ସେ ପରାଙ୍ମୁଖ ହୋଇନଥାଏ। ଭାରତୀୟ ଗଣତନ୍ତ୍ରରେ କ୍ଷମତାକୁ ଜାବୁଡ଼ି ଧରିବାର ମୋହ କମ୍ କ୍ଷମତାକାଙ୍ଗାଳଙ୍କର ନାହିଁ। କ୍ଷମତାରେ ରହି ଯେ କୌଣସି ଅନ୍ୟାୟ ଓ ଅନୀତି କାର୍ଯ୍ୟ କରିବାକୁ ଏମାନେ ତିଳେମାତ୍ର ପଶ୍ଚାତ୍‌ପଦ ହୋଇନଥାନ୍ତି । ରାଜା ଭାନୁପ୍ରତାପ ହେଉଛନ୍ତି ଏପରି କ୍ଷମତାଲାଭୀ ବ୍ୟକ୍ତିମାନଙ୍କ ପ୍ରତୀକ। ନ୍ୟାୟର ରକ୍ଷକ ସାଜି ଯେ କୌଣସି ଅନ୍ୟାୟ କାର୍ଯ୍ୟ ବିନା ଦ୍ୱିଧାରେ ଏମାନେ କରିପାରନ୍ତି। ସାଧାରଣ ବ୍ୟକ୍ତିଙ୍କୁ ଶୋଷଣ ଓ ପୀଡ଼ନ ଭାନୁପ୍ରତାପମାନଙ୍କର ଦୈନନ୍ଦିନ କାର୍ଯ୍ୟ। କ୍ଷମତାର ବଳୟରେ ରହି ତାର ଅପପ୍ରୟୋଗ ଦ୍ୱାରା ନିଜର ଜିଦ୍‌କୁ ଅନ୍ୟମାନଙ୍କ ଉପରେ ଜାହିର କରନ୍ତି । ପ୍ରତିବାଦ କଲେ, ଯେ କୌଣସି ଉପାୟରେ ପ୍ରତିବାଦକର ମୁଖ ବନ୍ଦ କରିବାକୁ ବିଭିନ୍ନ କଳ କୌଶଳ ପ୍ରୟୋଗ କରିପାରନ୍ତି । ଆବଶ୍ୟକ ହେଲେ ନିଜ ପତ୍ନୀକୁ ଗୃହତ୍ୟାଗର ଆଦେଶ ଜାରି କରିପାରନ୍ତି। ଅଥଚ ଥରେ କ୍ଷମତା ହାତରୁ ଚାଲିଗଲେ, ବଡ଼ ଦୀନହୀନ ଭାବରେ ଜୀବନଯାପନ କରନ୍ତି । ବିଦେଶୀ ମଦ ଓ ଦାମିକିଆ ସିଗାରେଟ୍ ପରିବର୍ତ୍ତେ ଭାଙ୍ଗ, ନାଲି ଚା ଓ ପିକ, ଏପରିକି ବିଡ଼ିରେ ନିଜର ଖାନ୍‌ଦାନୀ ନିଶାର ଚରିତାର୍ଥ କରିଥାନ୍ତି । କ୍ଷମତାଧାରୀ ଥିବାବେଳେ ଅଭାବ ଓ ପରିସ୍ଥିତି ତାଡ଼ନାରେ ସାମାନ୍ୟ ଅପରାଧ ପାଇଁ ସାଧାରଣ ଜନତାଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରିଥାନ୍ତି।

ଆଜିର ଶାସନକ୍ଷମତାଥିବା ବ୍ୟକ୍ତି ଅନ୍ୟାୟ ଉପାୟରେ ବିପୁଳ ପରିମାଣର ସମ୍ପତ୍ତି ଠୁଳ କରିବାକୁ ସମର୍ଥ ହୋଇଥାନ୍ତି । କିନ୍ତୁ କ୍ଷମତାଚ୍ୟୁତ ହେବାପରେ ସେହି ଅନ୍ୟାୟ ଅର୍ଜିତ ସଂପତ୍ତିକୁ ଶାଗମାଛ ମୂଲ୍ୟରେ ଅନ୍ୟକୁ ବିକ୍ରି କରିଦେଇଥାନ୍ତି । ବାକିରେ ନିଜର ଦୈନନ୍ଦିନ ଖର୍ଚ୍ଚ ତୁଲାଇ ପ୍ରତିବଦଳରେ ନିଜର ସମ୍ପତ୍ତି ଉଇଲ୍ କରିଦେଇଥାନ୍ତି । ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ, ଏହା କ୍ଷମତା ଅଦଳବଦଳର ଏକ ପ୍ରକ୍ରିୟା ମାତ୍ର । ବାସ୍ତବ ଆଦର୍ଶ ଏଥିରେ କିଛି ନଥାଏ । ଗୋଟିଏ ମିଥ୍ୟା ଅଭିମାନ ଓ ଅହଂକୁ ନେଇ ଏମାନେ ଜୀବନର ଅବଶିଷ୍ଟ ଦିନମାନଙ୍କୁ ଅତିବାହିତ କରିଥାନ୍ତି। ସମୟର ପରିବର୍ତ୍ତନ ଏମାନଙ୍କ ଚାରିତ୍ରିକ ପରିବର୍ତ୍ତନରେ ଆଦୌ ସହାୟକ ହୋଇନଥାଏ । ଜାତି, ଧର୍ମ, ବର୍ଣ୍ଣକୁ ନେଇ ଏହିପରି ବ୍ୟକ୍ତି ବିଶେଷ ରାଜନୀତିକ ବ୍ୟବସାୟ କରନ୍ତି । ଭାନୁପ୍ରତାପଙ୍କ ଏକମାତ୍ର ସନ୍ତାନ କୁମାରଙ୍କ ନିର୍ବାଚିତ ନର୍ତ୍ତକୀ କନ୍ୟାକୁ ବୋହୂରୂପେ ଗ୍ରହଣ ନକରିବା ପଛରେ ଏହିପରି ମାନସିକତା ବିଦ୍ୟମାନ।

ଏହା ସତ୍ତ୍ୱେ ସମାଜରେ ଏପରି କିଛି ସଚରିତ୍ର ପ୍ରଶାସକ ଅଛନ୍ତି, ଯେଉଁମାନେ କ୍ଷମତାଧାରୀଙ୍କ ନିକଟରେ ନିଜର ବ୍ୟକ୍ତିତ୍ୱକୁ ବଳି ଦିଅନ୍ତି ନାହିଁ । ଆବଶ୍ୟକ ସ୍ଥଳେ ଏମାନେ ପ୍ରତିବାଦର ସ୍ୱର ଉଠାଇ ସାଧାରଣ ମଣିଷକୁ ନ୍ୟାୟ ଦେବାର ପ୍ରଯତ୍ନ କରିଥାନ୍ତି। ଜିଲ୍ଲାପାଳ ବୁଲୁଙ୍କୁ ଏହିପରି ଆମ ବର୍ତ୍ତମାନ ସମାଜର ଏକ ସଚ୍ଚୋଟ ପ୍ରଶାସନିକ ଅଧିକାରୀଙ୍କ

ପ୍ରତୀକ ଭାବରେ ଗ୍ରହଣ କରିନିଆଯାଇପାରେ । ରାଜବଂଶ ପ୍ରତି ନିଜର ଦେବାନପିତାଙ୍କ ସମସ୍ତ ପ୍ରକାର ସମ୍ମାନ ଥିବା ସତ୍ତ୍ୱେ ଅନ୍ଧ ଭାବରେ ଆଇନକୁ ହାତକୁ ନେଉଥିବା ତଥାକଥିତ ପଦପଦବୀ ଧାରୀ, କ୍ଷମତାଶାଳୀଙ୍କ ବିରୋଧରେ ସେ ସ୍ୱର ଉତ୍ତୋଳନ କରିପାରନ୍ତି ଏବଂ ସେମାନଙ୍କ କ୍ଷମତା ପରିସର ସଂପର୍କରେ ସତର୍କ କରାଇଦିଅନ୍ତି ।

ରାଣୀ ସୁଭଦ୍ର ନାରୀ ହେଲେ ହେଁ ଅବଳା ଦୁର୍ବଳା ନୁହନ୍ତି । ନିଜ ପତିଙ୍କ ଅନ୍ୟାୟ ଓ ଅନୀତି କାର୍ଯ୍ୟ ବିରୋଧରେ ତୀବ୍ର ପ୍ରତିବାଦର ସ୍ୱର ଉଠାଇ ପାରନ୍ତି । ଆବଶ୍ୟକ ହେଲେ ନିଜର ସମ୍ମାନ ଓ ପଦମର୍ଯ୍ୟାଦା ପାଇଁ ସ୍ୱାମୀଙ୍କୁ ପରିତ୍ୟାଗ କରିପାରନ୍ତି । ନାରୀ କେବଳ ସହଧର୍ମିଣୀ ନୁହଁନ୍ତି, ତା'ମଧ୍ୟରେ ଲୁକ୍‌କାୟିତ ରହିଥାଏ ଅଗ୍ନିସ୍ଫୁଲିଙ୍ଗ । ଯୁଗେ ଯୁଗେ ନାରୀ ପ୍ରତି ପୁରୁଷ ଅତ୍ୟାଚାର ଓ ଅନ୍ୟାଚାର କରି ଆସିଛି ତାର ଦୁର୍ବଳତା ଓ ସହନଶୀଳତାପାଇଁ । ଆଧୁନିକ ଯୁଗରେ ନାରୀ ଆଉ ସେହି ପ୍ରାଚୀନ ପରଂପରାର ନିର୍ବାକ ପ୍ରତିଭୂ ନୁହେଁ । ସେ ମଧ୍ୟ ପ୍ରତିବାଦ କରି ଜାଣେ । ଅନ୍ୟାୟ ବିରୋଧରେ ପ୍ରତିକ୍ରିୟାଶୀଳ ହୋଇପାରେ । ନାଟ୍ୟକାର ସୁଭଦ୍ରା-ଚରିତ୍ର ମାଧ୍ୟମରେ ନାରୀ ଜାଗରଣର ସ୍ୱପ୍ନ ଦେଖିଛନ୍ତି । ଆଜି ଯେଉଁ ନାରୀ ସଶକ୍ତିକରଣର ସ୍ଲୋଗାନ ଚାଲିଛି, ସୁଭଦ୍ରା ହେଉଛନ୍ତି ତାର ସାର୍ଥକ ପ୍ରତିନିଧି । ଅହଲ୍ୟା ମଧ୍ୟ ଆଧୁନିକ, ଶିକ୍ଷିତାତରୁଣୀ, ଯିଏ ପାରଂପରିକ ଧାରଣା ଓ ମନୋଭାବ ବିପକ୍ଷରେ ଦୃଢ ଯୁକ୍ତି କରେ । ତେଣୁ ଯେତେବେଳେ ଭାନୁପ୍ରତାପଙ୍କ ବନ୍ଧୁ ବିକ୍ରମ କୁହନ୍ତି "ରାଜା ଅବୁଝା ! କିଏ ତାକୁ ବୁଝାଇବ ! ଯାହା ଥରେ ତା'ମୁଣ୍ଡ ଭିତରେ ବସା ବାନ୍ଧିଛି, ସହଜରେ ତାକୁ ବାହାର କରି ହବନି ।" ଠିକ୍ ସେତିକିବେଳେ ଅହଲ୍ୟା ପ୍ରତିବାଦ କରି କହିଛି-"ସମୟ ଆସିଯାଇଛି । ରାଜା ମାନଙ୍କ ବ୍ରେନ୍‌ର ଅପରେସନ ଦରକାର । ଆଉ ସେ ଅପରେସନ୍ ଆପଣମାନେହିଁ କରିବେ ।" ଏଥିରୁ ଅହଲ୍ୟାର ମାନସିକ ଦୃଢତା ସହଜରେ ଅନୁମେୟ ।

ନାଟ୍ୟକାର ପରିବର୍ତ୍ତିତ ସମୟପ୍ରତି ବେଶ୍ ସଚେତନ । ଏଣୁ ନାଟକର ପ୍ରଥମ ଦୃଶ୍ୟରେ ଶୂନ୍ୟ ମଞ୍ଚରେ ଯେଉଁ ସ୍ୱର ପ୍ରତିଧ୍ୱନିତ ହୋଇ ଉଠିଛି, ତାହା ହିଁ ସ୍ପଷ୍ଟ କରି ଦେଇଥାଏ, ପରିବର୍ତ୍ତିତ ସମୟ ଓ ପରିବେଶକୁ । ହିରୋସିମା ଓ ନାଗାସାକିଠାରୁ ଆରମ୍ଭକରି କାରଗିଲ ପର୍ଯ୍ୟନ୍ତ ବହୁ ଘଟଣାରେ କେତେକ ସ୍ୱାର୍ଥପର ଖିଆଲୀ ମାନବ ସଭ୍ୟତାକୁ ଧ୍ୱଂସ କରିଦେବାର ସ୍ୱପ୍ନ ଦେଖିଛି । ମାତ୍ର ସମୟ ଆଇନାରେ ସେହିମାନଙ୍କର ବିକଳାଙ୍ଗ ସ୍ୱରୂପ ପ୍ରତିଫଳିତ ହୋଇଉଠିଛି । ଧ୍ୱଂସସ୍ତୁପ ମଧ୍ୟରୁ ପୁଣି ଜନ୍ମ ନେଇଛି ମାନବ ସଭ୍ୟତା ନୂଆରୂପ, ନୂଆ ଭାବ । ନାଟ୍ୟକାରଙ୍କ ସୂଚନା ଏ କ୍ଷେତ୍ରରେ ବିଶେଷ ପ୍ରଣିଧାନଯୋଗ୍ୟ ।

"ହଁ, ଝଡ଼ର ଡେଣାରେ ଗ୍ରଗତିକୁ ପିଠି କରି ଯେଉଁମାନେ ମୋ ଗତିକୁ ରୋଧିବାକୁ ଚେଷ୍ଟା କରିଥିଲେ ସେମାନଙ୍କର ଗର୍ବ, ଦମ୍ଭ, ଆସ୍ଫାଳନ ବୁଦ୍‌ବୁଦ୍ ଆକାରରେ

ମିଳାଇଗଲା । ଆଉ ରହିଗଲା ଶେଷହୀନ ହାହାକାର, ଦୀର୍ଘଶ୍ୱାସ । ସେହି ଦୀର୍ଘଶ୍ୱାସର ସର୍ବଶେଷ ପରିଣତି ହେଉଛନ୍ତି ଭାନୁପ୍ରତାପ-ରାଜା ଭାନୁପ୍ରତାପ ।”

ଏହି ନାଟକରେ ଆତ୍ମପ୍ରକାଶ କରିଥିବା ଚରିତ୍ରଗଣ ସାମସମୟିକ ସମାଜରୁ ଜନ୍ମ ଓ ସମାଜର ପ୍ରତିନିଧିତ୍ୱ କରନ୍ତି । ସମାଜର ବିଭିନ୍ନ ସ୍ତରରୁ ଏମାନେ ସଂଗୃହୀତ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟକୁ ସ୍ପଷ୍ଟ କରିବା ଉଦ୍ଦେଶ୍ୟରେ ସେମାନଙ୍କ ଆବିର୍ଭାବ । ବିଶେଷକରି ଅଧିକାର ପାଗଳ ଓ କ୍ଷମତା ରାଜନୀତିର ପଶାପାଲି ଖେଳୁଥିବା ବାର୍ତ୍ତମାନିକ ରାଜନୈତିକ ନେତା ତଥା ପ୍ରଶାସନ ଅଧିକାରୀଙ୍କ ନିମିତ୍ତ ‘ଅପରାହ୍ଣର ଅବଶୋଷ’ ନାଟକଟି ଏକ ଚେତାବନୀ ସଦୃଶ ।

ସାହିତ୍ୟର ଅନ୍ୟାନ୍ୟ ବିଭାବ ପରି ନାଟ୍ୟକାର ନାଟକର ପ୍ରତ୍ୟକ୍ଷ ଭାବରେ ଆତ୍ମପ୍ରକାଶ କରିପାରେନାହିଁ । ମଞ୍ଚର ଅନ୍ତରାଳରେ ରହି ସେ ପ୍ରତ୍ୟକ୍ଷକରେ ନିଜ ସୃଷ୍ଟିର ଗୁଣାତ୍ମକ ମାନ । ମଞ୍ଚ ସମ୍ମୁଖରେ ଥାନ୍ତି ଦର୍ଶକ ଏବଂ ମଞ୍ଚ ଉପରେ ଦଣ୍ଡାୟମାନ ଅଭିନେତା ଓ ଅଭିନେତ୍ରୀ । ମଞ୍ଚ ବ୍ୟତିରେକ ଦର୍ଶକ, ଅଭିନେତା-ଅଭିନେତ୍ରୀ ତଥା ନାଟ୍ୟକାରଙ୍କର କୌଣସି ସ୍ୱତନ୍ତ୍ର ଗୁରୁତ୍ୱ ନଥାଏ । ଉଚ୍ଚକୋଟିର ବିଷୟ ବା ଉନ୍ନତମାନର ବିଷୟବସ୍ତୁକୁ ଆଧାର କରି ନାଟକଟିଏ ରଚିତ ହୋଇଥିଲେ ହେଁ ଯଦି ତାହା ଅଭିନୀତ ହୋଇ ନ ପାରେ, ତେବେ ତାହା ପ୍ରକୃତ ନାଟକ ପଦବାଚ୍ୟ ହୋଇପାରେ ନାହିଁ । ବାସ୍ତବ ଜଗତ ଓ ନାଟ୍ୟ ଜଗତ ମଧ୍ୟରେ କେତେକ ପାର୍ଥକ୍ୟ ରହିଛି, କେତେକ କୁହନ୍ତି ନାଟ୍ୟଜଗତ ହେଉଛି ଏକ ମାୟା ଜଗତ । ଏହି ମାୟା ସୃଷ୍ଟିରେ ମଞ୍ଚ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ମଞ୍ଚ ମାୟାରେ ଦର୍ଶକ ଆତ୍ମବିସ୍ମୃତି ହୁଏ, ଭୁଲିଯାଏ ବାହ୍ୟଜଗତ । ଏହି ଦୃଷ୍ଟିରୁ ପ୍ରତ୍ୟେକ ନାଟକର ମଞ୍ଚୋପଯୋଗିତା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ରୂପେ ପରିଗଣିତ ହୋଇଥାଏ ।

ନାଟ୍ୟକାର ନାରାୟଣ ସାହୁ ମଞ୍ଚ ସହିତ ଅନେକତ୍ର ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ରହିଥିବାରୁ ତାଙ୍କର ନାଟକ ଗୁଡ଼ିକ ମଞ୍ଚ ମୂଲ୍ୟ ହରାଇ ନାହାନ୍ତି । ମଞ୍ଚ ସଂପର୍କରେ ତାଙ୍କର ଜ୍ଞାନ ବାସ୍ତବ ଓ ସମୟୋପଯୋଗୀ । ସୀମିତ ସମ୍ବଳ ମଧ୍ୟରେ ‘ଅପରାହ୍ନର ଅବଶୋଷ’ ନାଟକଟିକୁ ମଞ୍ଚସ୍ଥ କରାଯାଇପାରେ । ମାତ୍ର ଗୋଟିଏ ସେଟ୍‌ରେ ନାଟକଟି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅଭିନୀତ ହୋଇପାରେ । ଗୋଟିଏ ଡ୍ରଇଂରୁମ୍ । ମଝିରେ ପୁରୁଣା ଗୋଲାକୃତି ଟେବୁଲ୍‌ଟିଏ । ତା’ପାଖରେ ଲାଗିଲାଗି ପଡ଼ିଛି ଦୁଇ ତିନୋଟି ଚେୟାର, ଗୋଟିଏ ଆର୍ମଚେୟାର, ପୁରୁଣା ରାଜସିଂହାସନ । ଡ୍ରଇଂ ରୁମ୍‌ର କାନ୍ଥରେ ଝୁଲୁଛି ତରୱାଲ, ବନ୍ଧୁକ, ବାଘଛାଲ, ବାଘମୁଣ୍ଡ । ପୁରୁଣା ଫୁଲଦାନୀ ମଧ୍ୟରେ ବଇଁଶୀଟିଏ । ଏତିକି ମାତ୍ର ମଞ୍ଚୋପକରଣକୁ ନେଇ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନାଟକଟିକୁ ମଞ୍ଚସ୍ଥ କରାଯାଇପାରେ ।

ସେହି ଗୋଟିଏ ସ୍ଥାନକୁ ଆବଶ୍ୟକ ବେଳେ ଦରବାର ହଲ୍ ବା ଡାଇନିଂରୁମ୍‌ରେ ରୂପାନ୍ତରିତ କରାଯାଇପାରେ।

ଉଣେଇଶଟି ଦୃଶ୍ୟ ସମ୍ବଳିତ ଏହି ନାଟକରେ ଚଉଦଟି ଦୃଶ୍ୟ ଅଭିନୀତ ହୋଇଛି ଡ୍ରଇଂ ରୁମ୍‌ରେ। ଗୋଟିଏ ଦୃଶ୍ୟ ଦରବାର ହଲ୍‌ରେ (ଡ୍ରଇଂରୁମ୍ ମଧ୍ୟ ହୋଇପାରେ) ଏବଂ ଚାରୋଟି ଦୃଶ୍ୟ ଡାଇନିଂ ରୁମ୍‌ରେ ଅଭିନୀତ। ସେହି ସମାନ ଉପକରଣ ଦ୍ୱାରା ଡ୍ରଇଂ ରୁମ୍‌କୁ ମଧ୍ୟ ଦରବାର ହଲ୍ ଓ ଡାଇନିଂ ହଲ୍‌ରେ ପରିଣତ କରାଯିବାର କୌଣସି ଅସୁବିଧା ନାହିଁ। ପୁନରାୟ ନାଟକର ଏପରି କୌଣସି ଦୃଶ୍ୟନାହିଁ, ଯାହା ମଞ୍ଚ ଉପରେ ଅଭିନୀତ ହୋଇପାରିବ ନାହିଁ। ସ୍ୱଚ୍ଛନ୍ଦ ଗତିରେ କଥାବସ୍ତୁ ଗଡ଼ିଚାଲିଛି ପାତ୍ରପାତ୍ରୀଙ୍କ ଜରିଆରେ ସୀମିତ ଚରିତ୍ର ନେଇ। ବିଷୟ ବସ୍ତୁରେ ଅପ୍ରାସଙ୍ଗିକତା ନାହିଁ। ବେଶ୍ ବାସ୍ତବ ଓ ଜୀବନ୍ତ ଘଟଣାଟି ସାମସମୟିକ ସମାଜ ବ୍ୟବସ୍ଥା ଉପରେ ଆଧାରିତ। ଯେଉଁ ପୋଲିସ୍ ଫୋର୍ସ ବା ଜନସାଧାରଣଙ୍କ ସ୍ଲୋଗାନ୍ ସଂପର୍କରେ ସୂଚନା ରହିଛି, ତାହା ମଞ୍ଚ ବାହାରର କଥା। ସେହିପରି ସ୍ଲୋଗାନ୍‌ଟିକୁ ମାଇକ୍ ଦ୍ୱାରା ଘୋଷଣା କରାଯାଇପାରିବ।

ଏହି ନାଟକଟି ବିଭିନ୍ନ ସ୍ଥାନରେ ସଫଳ ଭାବରେ ଏକାଧିକଥର ଅଭିନୀତ ହୋଇଥିବାରୁ ଏହାର ମଞ୍ଚମୂଲ୍ୟ ଉପରେ ପ୍ରଶ୍ନବାଚୀ ଉଠିପାରେନା। ପ୍ରତ୍ୟେକ ସ୍ଥାନରେ ନାଟକଟି ଦର୍ଶକମାନଙ୍କର ଶ୍ରଦ୍ଧାଭାଜନ ହୋଇପାରିଛି। ଦର୍ଶକୀୟ ଆଦୃତିରୁ ଏହାର ସଫଳତା ସହଜରେ ଅନୁମାନ କରାଯାଇପାରେ। ଏତଦ୍ ବ୍ୟତୀତ ଧରିତ୍ରୀ, ଓଭୟସବଭ ରଙ୍ଗକ୍ଷ୍ବରଷ୍ମ, ଶତାବ୍ଦୀ, ମାତୃଭାଷା, ପ୍ରଜାତନ୍ତ୍ର ଆଦିର ସମୀକ୍ଷାରୁ ନାଟକଟିର ଲୋକପ୍ରିୟତା ଅନୁମେୟ। ଅବଶ୍ୟ 'ଅପରାହ୍ଣର ଅବଶୋଷ' ଶିରୋନାମାରେ ନାଟକଟି ସବୁଠାରେ ଅଭିନୀତ ହୋଇନାହିଁ। 'ଅସ୍ତରାଗ', 'ଅସ୍ତରାଗର ଏଲିଜି' ନାମରେ ମଧ୍ୟ ନାଟକଟି ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଛି, ତେବେ ସେ ଯାହା ହେଉନା କାହିଁକି, ନାଟକଟିର ଦର୍ଶକୀୟ ଆଦୃତି ତାର ସଫଳ ମଞ୍ଚୋପଯୋଗିତାର ପ୍ରମାଣ ଦେଇଥାଏ।

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ସମ୍ବଲପୁର

●●●

# ଦୂର ଆକାଶର ତାରା-ପାଠକୀୟ ଭାଷ

ଡ. ତୁଳସୀ ଓଝା

ଓଡ଼ିଆ ମଂଚ ଓ ନାଟକ ଜଗତର ଏକ ସୁପରିଚିତ ନାମ ଡ. ନାରାୟଣ ସାହୁ। 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର', ଠାରୁ ଆରମ୍ଭ କରି 'ଅଧାଦେଖା ସ୍ୱପ୍ନ'ର ପରିସର ଡେଇଁ 'ସୁବର୍ଣ୍ଣ ସକାଳ'ରେ ସେ ପହଁଚି ଥିବା ନାଟ୍ୟକାର ଶ୍ରୀ ସାହୁଙ୍କର କୋଡ଼ିଏଟି ପ୍ରାୟ ଭିନ୍ନ ସ୍ୱାଦର ନାଟକ ସେ ଓଡ଼ିଆ ନାଟ୍ୟ ଜଗତକୁ ଦାନ କରିଛନ୍ତି। ପ୍ରତ୍ୟେକଟି ନାଟକର ସ୍ୱର ତାଙ୍କର ଯେପରି ଭିନ୍ନ ସେହିପରି ନବ ଦିଗନ୍ତର ଓ ନବ ପ୍ରୟୋଗର ଉନ୍ମୋଚକ ମଧ୍ୟ। ନାଟକ ଏପରି ଏକ କ୍ଷେତ୍ର ଯେଉଁଠି କିଛି ପୁରୁଣା ହୁଏ ନାହିଁ ଏବଂ ସବୁବେଳେ ନୂଆ ରାସ୍ତା, ନୂଆ ଚେତନା, ନୂଆ ଅବବୋଧ, ନୂଆ ସଂଘର୍ଷର ପୃଷ୍ଠା ଅହରହ ଉନ୍ମୋଚିତ ହେଉଥାଏ। ଏହି ପରିପ୍ରେକ୍ଷୀରେ ନାଟକ କ୍ଷେତ୍ରରେ ଯେଉଁ କେତେ ଜଣ ନାଟ୍ୟକାରଙ୍କର ଭାରି କଣ୍ଠର ଗୁଂଜରଣ ଶୁଣାଯାଏ ସେମାନଙ୍କ ମଧ୍ୟରେ ଶ୍ରୀ ସାହୁ ଅନ୍ୟତମ। ତାଙ୍କର ପ୍ରତ୍ୟେକ ନାଟକର ପୃଷ୍ଠଭୂମି, କଥାବସ୍ତୁ, ଚରିତ୍ର ଚିତ୍ରଣରେ ତଥା ନାଟକୀୟ ପରିବେଷଣରେ ନୂତନତାକୁ ଆସ୍ୱାଦନ କରିହୁଏ । ଏହି ପରିପ୍ରେକ୍ଷୀରେ ସର୍ବଦା କ୍ରୀୟାଶୀଳ ନାଟ୍ୟକାର ଶ୍ରୀ ସାହୁଙ୍କର ଅନ୍ୟ ଏକ କୃତି 'ଦୂର ଆକାଶର ତାରା'। ସମ୍ପୂର୍ଣ୍ଣ ଭାବରେ ସାଂପ୍ରତିକ ଜୀବନର ପ୍ରାତ୍ୟାହିକ କଥା ଉପରେ ଆଧାରିତ ଏକ ନାଟକ। ଜେଜେମାଙ୍କୁ ଛୋଟିଆ ପ୍ରଶ୍ନଟିଏ ପଚାରିଲେ- "ତୁମ ବାପା ମା' କେଉଁଠି ଅଛନ୍ତି ?" ଜେଜେ ମା ହାତ ଦେଖେଇ ଆକାଶର ତାରାଙ୍କୁ ଦେଖାଇ ଦିଏ, ଠିକ୍ ସେମିତି ପିଢ଼ି ପରେ ପିଢ଼ି ନିଜର ପୂର୍ବ ପୁରୁଷଙ୍କୁ ଦୂର ଆକାଶରେ ଆତଯାତ ହେଉଥିବା ତାରାମାନଙ୍କ ଗହଣରୁ ନିଜ ଉତ୍ତର ପୁରୁଷକୁ ଖୋଜିବାକୁ ହୁଏ, ହାରିଯାଏ ସେଠି ଆଦର୍ଶ, ହାରିଯାଏ ଜୀବନର ସତ୍ୟ, ହାରିଯାଏ ଜୀବନର ସବୁ ଅଂକ କଷା। ଏମିତି ଏକ ପ୍ରଶ୍ନୋତ୍ତରି ପ୍ରଶ୍ନକୁ ନେଇ ରଚିତ ନାଟକ 'ଦୂର ଆକାଶର ତାରା।'

ଦୂର ଆକାଶର ତାରାର କାହାଣୀ କୌଣସି କଳ୍ପନା ଜଗତର କଥା ନୁହେଁ। ପ୍ରତିଦିନ ଆମ ଚାରିପାଖରେ ଘଟୁଥିବା ଅନେକ ଘଟଣାର ସମାବେଶ ମାତ୍ର। ଆଦର୍ଶବାଦୀ ଦୁଷ୍ମନ୍ତ ମହାପାତ୍ରଙ୍କର ଆଦର୍ଶବାଦୀ ସନ୍ତାନ ଭାରତ। ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର। ତାର ଗୋଟିଏ ସଂଳାପରୁ ତାକୁ ସହଂରେ ଚିହ୍ନି ହୋଇଯାଏ- "ତୁ କ'ଣ ଚାହୁଁଛୁ, ଗୁଣ୍ଡା ବଦମାସ

ମଦୁଆ ଏମାନେ ସମସ୍ତେ ରାଜନୀତି କରନ୍ତୁ! ଏଇନେ ବିଧାନସଭାରେ ଯାହା ସବୁ ହେଉଛି ସମସ୍ତେ ଦେଖୁଛନ୍ତି...।" ଆଦର୍ଶ ପିତାର ଆଦର୍ଶ ସନ୍ତାନ। ଠିକ୍ ସେମିତି ଆଦର୍ଶବାଦୀ ଶିକ୍ଷକ ଦୁଷ୍ମନ୍ତ ବାବୁ। ଭାଂଗିଯିବେ ପଛେ ନଇଁଯିବେ ନାହିଁ। ରାଜନୈତିକ ଚାପ, ବଂଧୁ ବାନ୍ଧବ, ମାୟା ମମତା କାହା ସହିତ ସେ ସାଲିସ୍ କରିପାରୁ ନାହାନ୍ତି। କିନ୍ତୁ ଜୀବନ ପାଇଁ ଆଦର୍ଶ ସବୁ କିଛି ନୁହେଁ। ଆଦର୍ଶ ଓ ଆଦର୍ଶ ମଧ୍ୟରେ ଦ୍ୱନ୍ଦ୍ୱ ଆରମ୍ଭ ହେଉଛି, ଯେତେବେଳେ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ହେବା ସତ୍ତ୍ୱେ ମଧ୍ୟ ଭାରତକୁ ଚାକିରୀ ଖଣ୍ଡେ ମିଳୁନାହିଁ। ନିଜ ପିତାଙ୍କର ଆଦର୍ଶ ପ୍ରତି ଅତ୍ୟଧିକ ଆନୁଗତ୍ୟ ତାଙ୍କ ଚାରି ପାଖରେ ସୃଷ୍ଟି କରିଛି ଅନେକ ଶତ୍ରୁ ଏବଂ ସେଥିରେ ସବୁଠୁଁ ବେଶୀ କ୍ଷତି ହେଉଛି ତାଙ୍କ ପରିବାରର।ରାଜନୈତିକ ନେତାମାନେ ଯେପରି ସାରା ସଂସାରକୁ ଦାସ କରି ରଖିଛନ୍ତି, ନାଟ୍ୟକାର ତାର ବାସ୍ତବ ଚିତ୍ର ଅଂକନ କରିଛନ୍ତି ମନ୍ତ୍ରୀ ଅରବିନ୍ଦ ଓ ତାଙ୍କ ପୁତ୍ର ଦୁର୍ଯ୍ୟୋଧନ ମଧ୍ୟରେ। ଅରବିନ୍ଦ ଓ ଦୁଷ୍ମନ୍ତ ବାଲ୍ୟ ବଂଧୁ, ଅଥଚ ଅରବିନ୍ଦଙ୍କ ରାଜନୀତି ଓ ଦୁଷ୍ମନ୍ତଙ୍କ ଆଦର୍ଶ ତାଙ୍କ ଭିତରେ ଏକ ବିରାଟ ପାଚେରୀ ଠିଆ କରି ଦେଇଛି। ସେଥିରେ ପେଶି ହେଇଯାଉଛି 'ଭାରତ'। ମଧ୍ୟବିତ୍ତ ଆଦର୍ଶବାଦୀ ପରିବାରର ଜନ୍ମଗ୍ରହଣ କରି ରାଜନୈତିକ ନେତାମାନଙ୍କ ଦ୍ୱାରା ନିଷ୍ପେସିତ ହେଉଥିବା ଅନେକ ଯୁବକଙ୍କର ପ୍ରତିନିଧି ଭାରତ, ଯେଉଁମାନେ ଆଜିର ପୃଥିବୀରେ ବଂଚୁଛନ୍ତି। ଗୋଟିଏ ପାଖରେ ଆଦର୍ଶର ଦ୍ୱାହି ଦେଇ ନିଜର ଏକ ସ୍ୱତନ୍ତ୍ର ପଥିବୀ ଗଢିଥିବା ମଣିଷମାନେ ଭୁଲି ଯାଉଛନ୍ତି, ଆଜିର ପୃଥିବୀର ବିଷସ୍ରୋତରେ ଅସହାୟ ଭାବରେ ଭାସୁଥିବା ବିନ୍ଦୁମାନଙ୍କ କଥା, ଆଉ ଗୋଟିଏ ପାଖରେ ସମାଜରେ ବିଷ ମଂଜି ବୁଣୁଥିବା ସ୍ୱାର୍ଥପର ରାଜନୈତିକ ନେତା, ଯେଉଁମାନେ ବିଷସ୍ରୋତରେ ଅସହାୟ ଭାବରେ ଭାସୁଥିବା ମୁକ୍ତା ବିନ୍ଦୁମାନଙ୍କୁ ସାଉଁଟି ନେଇ ନିଜ ସ୍ୱାର୍ଥରେ ବିନିଯୋଗ କରିବାପାଇଁ ତତ୍ପର।

ଏଇ ନାଟକଟି ଅତ୍ୟନ୍ତ ବାସ୍ତବବାଦୀ। ଯଦିଓ ସଂଳାପ ମଧ୍ୟରେ ଅନେକ ଜାଗାରେ ଶ୍ରୀ ସାହୁଙ୍କର କବି ମନର କୋମଳ ସ୍ପର୍ଶକୁ ଅନୁଭବ କରିହୁଏ, ତଥାପି ତାହା ନାଟକୀୟ ସତ୍ୟ ପ୍ରକାଶ କରିବାରେ କୌଣସି ପ୍ରତିବଂଧକ ସୃଷ୍ଟି କରେନାହିଁ। କଥାବସ୍ତୁ ଏତେ ବେଶୀ ବାସ୍ତବମୁଖୀ ଯେ ନିକଟ ଅତୀତରେ ଘଟିଥିବା କିଛି ଘଟଣାର ସ୍ପଷ୍ଟ ଛାପ ଏଥିରେ ଦେଖିବାକୁ ମିଳେ। ଭାରତ ଚରିତ୍ରର ପ୍ରାରମ୍ଭ ତାର ପୀଡ଼ା ଅବସ୍ଥାଚକ୍ରରେ ଅରବିନ୍ଦଙ୍କ ଆଶ୍ରୟ ଗ୍ରହଣ ପୁନଶ୍ଚ ତାର ଜୀବନକୁ ନିୟନ୍ତ୍ରିତ କରି ରଖିବାର ସାମର୍ଥ୍ୟ ମଧ୍ୟରେ ନାଟ୍ୟକାର କେତୋଟି ଅତି ଉଚ୍ଚକୋଟୀର ସତ୍ୟକୁ ତଥ୍ୟଭିତ୍ତିକ କରି ପ୍ରତିଷ୍ଠିତ କରିଛନ୍ତି। ନାଟ୍ୟକାରଟିଏ ସମାଜର ଜାଗ୍ରତ ପ୍ରହରୀ। ସେ ଧର୍ମ ପାଳନ କରି ନପାରିଥିଲେ ଆଜିଯାଏ

ପୃଥିବୀର କୌଣସି ନାଟ୍ୟକାର ସଫଳ ନାଟ୍ୟକାର ଭାବରେ ପରିଗଣିତ ହୋଇପାରେ ନାହିଁ।

ଅଂଧାରରେ କିଛି ବାଟ ଚାଲିଲେ ଅଂଧାର କ୍ରମେ ଆଲୋକିତ ହୋଇଉଠେ। ହଠାତ୍ ସେଇ ଆଲୋକିତ ଅନ୍ଧାରରେ ଚାଲୁ ଚାଲୁ ତୀବ୍ର ଆଲୋକର ସାମ୍ନାସାମ୍ନି ହେଲେ ଆଖି ଜଳକା ହୋଇଯାଏ। ଠିକ୍ ସେହିପରି ଆଲୋକରେ ବାଟ ଚାଲୁ ଚାଲୁ ଅଂଧାରରେ ପହଂଚିଗଲେ ଝୁଂଟି ପଡ଼ିବାର ଭୟଥାଏ। ଜୀବନ୍‌ର ଅଜସ୍ର ଅନୁଭବ ମଧ୍ୟରେ ଏ ଆଲୋକ ଓ ଅନ୍ଧାର ଅତି ନିବିଡ଼ ଭାବରେ ଜଡ଼ିତ ଥା'ନ୍ତି ।

ଆଦର୍ଶ ଜୀବନର ଆଲୋକ କିନ୍ତୁ ବାସ୍ତବ ଜୀବନ ମଣିଷକୁ ଅନେକ ଅନ୍ଧାର ସହିତ ପରିଚିତ କରାଇ ଦେଇଥାଏ। ଏଇ ଆଲୋକ-ଅନ୍ଧାରର ଲୁଚକାଳି ଖେଳ ଭିତରେ ଦୋହଲୁଥାଏ ଜୀବନ। ସେଇ ଜୀବନକୁ ନେଇ ନାଟ୍ୟକାର ଶ୍ରୀ ସାହୁଙ୍କର ଏଇ ନାଟକଟି। କଥା, ଚରିତ୍ର, ସଂଳାପ, ମଂଚସଜ୍ଜା, ଦୃଶ୍ୟସଜ୍ଜା ତଥା ସଂପୂର୍ଣ୍ଣ ନାଟକୀୟ ସଂଭାରରେ ପରିପୂର୍ଣ୍ଣ ଏହା ଏକ ସଫଳ ନାଟକ। ଏଇ ନାଟକରେ ପ୍ରତ୍ୟେକ ବର୍ଗୀୟ ଚରିତ୍ରମାନେ ନିଜକୁ ଅତି ସହଜରେ ଚିହ୍ନିପାରିବେ। ଦର୍ଶକ ଆସନରୁ ଉଠିଆସି ହୁଏତ ଦୁଷ୍ମନ୍ତ, ହୁଏତ ଅରବିନ୍ଦ, ହୁଏତ ଭାରତ, ହୁଏତ ଦୁର୍ଯ୍ୟୋଧନ, ମୁରାରୀ, ଶକୁନ୍ତଳା, ଦେବିକା ମଧ୍ୟରେ ନିଶ୍ଚୟ ଏକାକାର ହେବେ, ଗ୍ରହଣ କରିନେବେ ଏମାନଙ୍କ ଦ୍ୱିଧା, ଏମାନଙ୍କ ଜୀବନ ଦର୍ଶନ, ଏମାନଙ୍କ ଆତ୍ମପୀଡ଼ନ ଅଥବା ଆତ୍ମଗ୍ଲାନିକୁ।

"ଦୂର ଆକାଶର ତାରା" ନାଟକ ଚମକପ୍ରଦ ହେଉ ବା ନହେଉ ଚିତ୍ତଗ୍ରାହୀ ନିଶ୍ଚୟ ହେବ, ଏହା ମୋର ଆଶା ଓ ବିଶ୍ୱାସ। ନାଟକଟିର ସାମଗ୍ରିକ ସଫଳତା କାମନା କରୁଛି।

ନରେନ୍ଦ୍ର କୋଣ
ପୁରୀ

●●●

# ଅଧାଦେଖା ସ୍ୱପ୍ନ : ସ୍ୱାଧୀନତା ପରବର୍ତ୍ତୀ ମୋହଭଙ୍ଗର ଏକ ନିଛକ ପ୍ରତିରୂପ

ଡ. ସୁରେନ୍ଦ୍ର କୁମାର ମହାରଣା

ଜାତିର ଜନକ ମହାତ୍ମା ଗାନ୍ଧି ସତ୍ୟ-ଅହିଂସା ମନ୍ତ୍ରରେ ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରି ମହାପ୍ରତାପୀ ବ୍ରିଟିଶ୍ ସରକାରଙ୍କ ଠାରୁ ଆମ ଦେଶର ସ୍ୱାଧୀନତା ଛଡ଼ାଇ ଆଣିଲେ। ଦେଶ ସ୍ୱାଧୀନ ହେଲା, ଆମଦେଶ ଆମେ ଶାସନ କଲୁ; କିନ୍ତୁ ଦୁର୍ନୀତି ଭ୍ରଷ୍ଟାଚାର, ସ୍ୱାଧୀନ ଦେଶର ଶାସନକଳକୁ ସଂପୂର୍ଣ୍ଣ କବଳିତ କଲା। ସାମାଜିକ, ରାଜନୀତିକ, ସାଂସ୍କୃତିକ, ଆର୍ଥନୀତିକ ଆଦି କ୍ଷେତ୍ରରେ ଦୁର୍ନୀତିର ଚେର ମାଡ଼ିଗଲା। ଯେଉଁମାନେ ଦୁର୍ନୀତି ବିରୋଧରେ ସ୍ୱର ଉଠାଇଲେ ସେମାନେ ରାଜନୀତିଆ ବଡ଼ପଣ୍ଡାଙ୍କ ଆକ୍ରୋଶର ଶିକାର ହେଲେ । ଏହିପରି ଏକ କଥାବସ୍ତୁରୁ ଆଧାରରେ ନାଟ୍ୟକାର ନାରାୟଣ ସାହୁଙ୍କ ଦୁଇଘଂଟିଆ ନାଟକ 'ଅଧାଦେଖା ସ୍ୱପ୍ନ'ର ପରିକଳ୍ପନା, ଯାହାର ସଂକ୍ଷିପ୍ତ ରୂପରେଖ ହେଉଛିମଣିଭଦ୍ର ଛାତ୍ରାବସ୍ଥାରେ ଗାନ୍ଧି ମହାତ୍ମାଙ୍କ ଆହ୍ୱାନରେ ଶିକ୍ଷାୟତନ ତ୍ୟାଗକରି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦିଅନ୍ତି, ଶେଷରେ ଘର ଛାଡ଼ନ୍ତି। ସେ ଗାନ୍ଧିଜୀଙ୍କ ସହିତ ରହି ଦେଶ ସ୍ୱାଧୀନତା ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରନ୍ତି, ପୋଲିସ୍ ଦ୍ୱାରା ଅତ୍ୟାଚାରିତ ହୁଅନ୍ତି, କାରାବରଣ ବି କରନ୍ତି। ଦେଶ ସ୍ୱାଧୀନ ହୁଏ; ସେ କିନ୍ତୁ ଗାନ୍ଧିଜୀଙ୍କ ଆଶ୍ରମରେ କିଛି ବର୍ଷ ରହି ବୃଦ୍ଧାବସ୍ଥାରେ ଫେରନ୍ତି ଜନ୍ମମାଟିକୁ, ଖୋଜନ୍ତି ତାଙ୍କ ପୈତୃକ ଘରବାରିକୁ, ପାଆନ୍ତି ନାହିଁ। ଶେଷରେ ପହଂଚନ୍ତି ନିଜ ଶଳା ବଟଙ୍କ ଘରେ। ସେତେବେଳେ ବଟ ଯୋଗାଣ ଅଫିସ୍‌ରେ ମୁଖ୍ୟ କିରାଣୀ । ସହରରେ ତାଙ୍କର ଦୁଇ / ତିନୋଟି କୋଠା। ଆର୍ଥିକାବସ୍ଥା ଦୃଷ୍ଟିରୁ ବେଶ୍ ସ୍ୱଚ୍ଛଳ । ମଣିଭଦ୍ର ଏସବୁ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ଖୋଜନ୍ତି ପତ୍ନୀଙ୍କୁ। ତାଙ୍କର ମନେପଡ଼ିଯାଏ ସେ ଆନ୍ଦୋଳନରେ ଯୋଗଦେଇ ଘର ଛାଡ଼ିବା ବେଳେ ପତ୍ନୀ ତାଙ୍କର ଅନ୍ତଃସତ୍ତ୍ୱା ଥିଲେ। ତାଙ୍କର ସନ୍ତାନ କେଉଁଠି ? ସେ ପୁତ୍ର କି କନ୍ୟା ? ଏ ସବୁ ପ୍ରଶ୍ନ ତାଙ୍କ ମନକୁ ଆନ୍ଦୋଳିତ କରେ। ଶାଳକ ବଟଙ୍କ ଠାରୁ ସେ ଜାଣିବାକୁ ପାଆନ୍ତି ଯେ ତାଙ୍କର ପତ୍ନୀ ବହୁପୂର୍ବରୁ ସ୍ୱର୍ଗଗତା। ତାଙ୍କ କନ୍ୟା ମାମୁ (ବଟ)ଙ୍କ ପାଖରେ ରହି

ଲାଳିତା-ପାଳିତା ଏବଂ ସେଠାରେ ଏକ ଘରୋଇ ଉଦ୍ୟୋଗରେ ପ୍ରତିଷ୍ଠିତ ମେଡ଼ିକାଲ କଲେଜରେ ଅଧ୍ୟୟନରତା।

ତାପରେ ତାଙ୍କର ଦେଖାହୁଏ ସହାଧ୍ୟାୟୀ ବନ୍ଧୁ ମହେଶ୍ୱରଙ୍କ ସହିତ। ମହେଶ୍ୱର ସେତେବେଳେ ମନ୍ତ୍ରୀ, ଶାସକକଳର ଏକ ମଜଭୁତ ଖମ୍ବ। ଦୁଇବନ୍ଧୁଙ୍କ ଆଳାପ-ଆଲୋଚନା ପରେ ବନ୍ଧୁ ମହେଶ୍ୱରଙ୍କ ଅନୁରୋଧ ରକ୍ଷାକରି ମେଡ଼ିକାଲ କଲେଜରେ ବାର୍ଷିକ ଉତ୍ସବରେ ସେ ହୁଅନ୍ତି ମୁଖ୍ୟ ଅତିଥି ଓ ପରେ ସେହି କଲେଜର ସେକ୍ରେଟାରୀ । ମେଡ଼ିକାଲ କଲେଜର ପରିଚାଳନା କ୍ଷେତ୍ରରେ ଅସାଧୁତା, ପରୀକ୍ଷାରେ ମାସ୍‌କପି ଦେଖି ସେ ବିଚଳିତ ହୁଅନ୍ତି। ଶେଷରେ ସେ ସେକ୍ରେଟାରୀ ପଦରୁ ଇସ୍ତଫା ଦିଅନ୍ତି ଏବଂ ବିଶ୍ୱବିଦ୍ୟାଳୟକୁ ଏ ବିଷୟରେ ଜଣାଇ ଦିଅନ୍ତି। କଲେଜ କର୍ତ୍ତୃପକ୍ଷ ଓ ପରୀକ୍ଷାରେ ଅସାଧୁ ଉପାୟ ଅବଲମ୍ବନ କରିଥିବା ଛାତ୍ରମାନେ ଏହାଦ୍ୱାରା ପ୍ରତିହିଂସା ପରାୟଣ ହୋଇଉଠନ୍ତି । ପ୍ରତିଶୋଧ ସ୍ୱରୂପ ସଂପୃକ୍ତ ଛାତ୍ରଗଣ ମନ୍ତ୍ରୀପୁତ୍ର ଜିତୁର ନେତୃତ୍ୱରେ ତାଙ୍କ କନ୍ୟା ଦୀପିକାକୁ ସର୍ବସମକ୍ଷରେ ଜନଗହଳି ରାସ୍ତାରେ ଉଲଗ୍ନ କରନ୍ତି। ସେ ଥାନାକୁ ଯାଆନ୍ତି; କିନ୍ତୁ ନ୍ୟାୟ ପାଆନ୍ତି ନାହିଁ । କିଛି ସଚେତନ ନାଗରିକଙ୍କ ସହାୟତାରେ ସେ ଆନ୍ଦୋଳନ କରନ୍ତି। ଆନ୍ଦୋଳନ ବ୍ୟାପକ ହୁଏ ଫଳରେ ଏ ଘଟଣାଟି ବିଚାରାଳୟକୁ ଯାଏ । ସେଠାରେ ଅର୍ଥବଳରେ ମନ୍ତ୍ରୀ ମହେଶ୍ୱର ମିଥ୍ୟାସାକ୍ଷୀ ଯୋଗାଡ଼କରି ଆଇନକୁ କରାୟତ୍ତ କରିନିଅନ୍ତି, ତାଙ୍କ ଅପରାଧୀ ପୁତ୍ର ଜିତୁ (ଜିତେନ୍ଦ୍ରିୟ ମହାପାତ୍ର) ନିର୍ଦ୍ଦୋଷ ସାବ୍ୟସ୍ତ ହୁଏ । ଲଜ୍ଜାରେ ମ୍ରିୟମାଣା ଦୀପିକା ନ୍ୟାୟ ନପାଇ ଶେଷରେ ଆତ୍ମହତ୍ୟା କରେ।

ଅଠରଟି କ୍ଷୁଦ୍ର ଦୃଶ୍ୟର ସମାହାର ଏଇ ନାଟକକୁ ସଫଳତା ଦେବାରେ ନାଟ୍ୟକାର ସମସ୍ତ ଦିଗପ୍ରତି ବେଶ୍ ସଚେତନ । ନାଟକର ଆରମ୍ଭ ଘନ ଅନ୍ଧକାରର ଆସ୍ତରଣ ଭିତରେ ଏକ ପ୍ରେମୀଯୁଗଳଙ୍କ ମିଳନରୁ ଏବଂ ଭିତରୁ ଭାସି ଆସୁଥିବା ଘୋଷଣାରୁ, ଯେଉଁଥିରେ ସେମାନଙ୍କ ଅଭୁଲା ଅତୀତର କାହାଣୀ ଶୁଣାଇବାକୁ ପ୍ରତିଶ୍ରୁତି ଭରିରହିଛି । ସେହି ପ୍ରତିଶ୍ରୁତିର ଫଳଶ୍ରୁତି ହେଉଛି ଏଇ ନାଟକ- 'ଅଧାଦେଖା ସ୍ୱପ୍ନ' । ସ୍ୱପ୍ନ ଦେଖିଥିଲେ ଆଦର୍ଶରେ ମୂଲ୍ୟବୋଧରେ ବିଶ୍ୱାସୀ ଏଇ ପ୍ରେମୀ ଯୁଗଳ - ଦୀପିକା ଓ ବିପ୍ଳବ । ସେମାନଙ୍କ ସ୍ୱପ୍ନଥିଲା ଏକ ଦୁର୍ନୀତିମୁକ୍ତ ଓ ଶୋଷଣମୁକ୍ତ ସମାଜ । ଏଥିପାଇଁ ସେମାନେ ସଂଗ୍ରାମ ଜାରିରଖିବାର ସଂକଳ୍ପ ନେଇଥିଲେ । କିନ୍ତୁ କଳୁଷିତ ରାଜନୀତିକ ଚକ୍ରାନ୍ତ ସେମାନଙ୍କୁ ଆଗେଇବାକୁ ଦେଲାନି । ଶେଷରେ ସେମାନେ ହାରିଗଲେ; ସେମାନଙ୍କ ସ୍ୱପ୍ନ ପୂର୍ଣ୍ଣତା ଲାଭ କରିପାରିଲା ନାହିଁ, ରହିଗଲା 'ଅଧାଦେଖା ସ୍ୱପ୍ନ' ହୋଇ।

କଥାବସ୍ତୁର ସଫଳ ରୂପାୟନ ଓ ଗତିଶୀଳତା ପାଇଁ ନାଟ୍ୟକାର ମଣିଭଦ୍ର, ବଟ, ମହେଶ୍ୱର, ରବି, ଜିତୁ, ଜୁଲି, ଦୀପିକା, ବିପ୍ଳବ ଭଳି ମୁଖ୍ୟ ଚରିତ୍ର ସହିତ ଯୋଡ଼ି

ଦେଇଛନ୍ତି ଦଣ୍ଡପାଣି, ଓକିଲ,ନମସ୍କାର, ନାସ୍‌ପାତି ଭଳି ଆଉ କେତୋଟି ଗୌଣ ଚରିତ୍ର । ସେମାନଙ୍କ ମଧ୍ୟରୁ କେତେକଙ୍କ ସାମାନ୍ୟ ପରିଚୟ ପୂର୍ବରୁ ପ୍ରଦ। ତଥାପି ନାଟ୍ୟକାରଙ୍କ ନାଟ୍ୟୋପଯୋଗୀ ଚରିତ୍ର ସୃଷ୍ଟିର ବିବିଧତା ଦର୍ଶାଇବାକୁ ସକଳ ଚରିତ୍ରର ପରିଚୟାତ୍ମକ ସୂଚନା ଏଠାରେ ଦିଆଯାଇପାରେ।

ମଣିଭଦ୍ର ଜଣେ ସ୍ୱାଧୀନତା ସଂଗ୍ରାମୀ, ସ୍ୱାଧୀନତା ପରେ ଗାନ୍ଧିଜୀଙ୍କ ଆଶ୍ରମରେ ଢେର କିଛିଦିନ କଟାଇ ଜନ୍ମସ୍ଥାନକୁ ଫେରିଛନ୍ତି। ସେ ବଟର ଭିଣୋଇ ଓ ଦୀପିକାର ପିତା। ବଟ ଯୋଗାଣ ଅଫିସିର ମୁଖ୍ୟ କିରାଣି ଓ ନିଜ ଉପାର୍ଜନ ତୁଳନାରେ ଅଧିକ ଧନୀ। ମହେଶ୍ୱର ସକ୍ରିୟ ରାଜନୀତିରେ ଥିବା ଜଣେ ମନ୍ତ୍ରୀ, ମଣିଭଦ୍ରଙ୍କ ସହପାଠୀ ବନ୍ଧୁ ଓ ଜିତୁର ପିତା। ରବି ରାଜନୀତିକ କର୍ମୀ, ମହେଶ୍ୱରଙ୍କ ବନ୍ଧୁ ଓ ରାଜନୀତିକ ପରାମର୍ଶଦାତା। ସେ କୁଚକ୍ରୀ ଓ ଯେ କୌଣସି ନାରକୀୟ କାର୍ଯ୍ୟ ନେଇଆଣି ଥୋଇବାରେ ସିଦ୍ଧହସ୍ତ । ଜିତୁ ମନ୍ତ୍ରୀ ମହେଶ୍ୱରଙ୍କ ପୁତ୍ର, ଦୁଶ୍ଚରିତ୍ର ଓ ମେଡ଼ିକାଲ କଲେଜ ଛାତ୍ର ସଂସଦର ନେତା। ବିପ୍ଳବ ଆଦର୍ଶବାଦୀ ଯୁବକ, ମେଡ଼ିକାଲ କଲେଜର ଛାତ୍ର । ଜୁଲି ଜିତୁର ପ୍ରଣୟିନୀର । ଦୀପିକା ମେଡ଼ିକାଲ କଲେଜର ଛାତ୍ରୀ ଓ ଆଦର୍ଶବାଦୀରେ ବିଶ୍ୱାସୀ। ଦଣ୍ଡପାଣି ସ୍ଥାନୀୟ ଥାନାର ଲାଂଚଖୋର ଇନ୍‌ସପେକ୍ଟର ଓ ମନ୍ତ୍ରୀ ମହେଶ୍ୱରଙ୍କ ହାତବାରିସି। ନାସ୍‌ପାତି ସେହି ଥାନାର କନେଷ୍ଟବଲ। ଓକିଲ ଚରିତ୍ରଟି ବୁଦ୍ଧି ବଳରେ କଳାକୁ ଧଳା କରିବାରେ ଓସ୍ତାଦ୍। ନମସ୍କାର ଅଭିନେତା ଓ ପଇସାପାଇଁ ଅଭିନୟ ଦ୍ୱାରା ମିଥ୍ୟା ସାକ୍ଷ୍ୟ ଦେଇ ଦୋଷୀକୁ ଦୋଷମୁକ୍ତ ପ୍ରମାଣିତ କରିବା କଳାରେ ନିପୁଣ।

ନାଟକରେ ଦୁଇ ପ୍ରେମୀ ଯୁଗଳଙ୍କ କାହାଣୀ ରହିଛି । ମନ୍ତ୍ରୀପୁତ୍ର ଜିତୁ ଓ ତା'ର ସହପାଠିନୀ ଜୁଲି ଭିତରେ ପ୍ରେମ ସଂପର୍କ ଗଢ଼ି ଉଠିଛି। ଜୁଲି ଭଳି ଯାଇଛି ଜିତୁର ପ୍ରତିପତ୍ତି, ଅର୍ଥ, ସାମାଜିକ ସ୍ଥିତି ଆଦିରେ, ଯଦିଓ ସେ ଜିତୁକୁ ଏକ ଉଚ୍ଛୃଙ୍ଖଳ ଯୁବକ ଭାବରେ ଜାଣିଛି। ଶେଷରେ ସେ ସନ୍ତାନ ସମ୍ଭବା ହୋଇଛି ଏବଂ ଜିତୁର ଚାପସତ୍ତ୍ୱେ ସନ୍ତାନ-ନଷ୍ଟ କରିବାକୁ ଚାହିନାହିଁ। ଫଳରେ ତା'ର ମୁହଁକୁ ସବୁଦିନ ପାଇଁ ବନ୍ଦ କରି ଦିଆଯାଇଛି।

ବିପ୍ଳବ ଓ ଦୀପିକା ମଧ୍ୟରେ ବି ପ୍ରେମ ସଂପର୍କ ରହିଛି; କିନ୍ତୁ ତାହା ଏକାନ୍ତ ପବିତ୍ର। ସେଥିରେ ଆବିଳତା ଲେଶମାତ୍ର ସ୍ପର୍ଶ ନାହିଁ। ଜିତୁ ଓ ତା'ର ସମର୍ଥକମାନଙ୍କ ଦ୍ୱାରା ଦୀପିକାକୁ ରାସ୍ତାର ସମସ୍ତଙ୍କ ସାମନାରେ ଉଲଗ୍ନ କରାଯାଇଛି । ସମସ୍ତେ ଦେଖିଛନ୍ତି, କିନ୍ତୁ ପ୍ରତିବାଦ ନାହିଁ। କୌଣସି ସମ୍ବାଦପତ୍ର ଏ ଖବର ଛାପି ନାହାନ୍ତି । ପୋଲିସ୍ ରିପୋର୍ଟ ବଦଳାଇ ଦେଇଛି। କିନ୍ତୁ ବିପ୍ଳବ ଭାଙ୍ଗି ପଡ଼ିନାହିଁ । ସେ ଏ ସମାଜକୁ ବଦଳାଇ ଦେବାକୁ ସଂକଳ୍ପବଦ୍ଧ ହୋଇଛି, ଏଥିପାଇଁ ଦୀପିକାର ସହାୟତା ଲୋଡ଼ିଛି । ଦୁହେଁ ଅଙ୍ଗୀକାରବଦ୍ଧ

ହୁଅନ୍ତି। ସେମାନେ କୋର୍ଟର ଆଶ୍ରୟ ନିଅନ୍ତି, କିନ୍ତୁ ନ୍ୟାୟ ପାଆନ୍ତି ନାହିଁ । ସେମାନଙ୍କ ସ୍ୱପ୍ନ ମରିଯାଏ, ନିର୍ଯ୍ୟାତିତା ଦୀପିକା ଶେଷରେ ଆତ୍ମହତ୍ୟା କରେ । ବିପ୍ଳବ ତା'ର ମୃତ ଦେହ ଛୁଇଁ ଶପଥ ନିଏ ଅତ୍ୟାଚାରୀଙ୍କ ବିରୋଧରେ ଲଢିବାପାଇଁ, କଳୁଷିତ ସାମାଜିକ ବାତାବରଣକୁ ପରିଶୁଦ୍ଧ କରିବାପାଇଁ।

ନାଟକକୁ ମନୋରଂଜନଧର୍ମୀ କରିବା ଉଦ୍ଦେଶ୍ୟରେ ମେଡ଼ିକାଲ କଲେଜରେ ବାର୍ଷିକୋତ୍ସବରେ ଆଧୁନିକ ନୃତ୍ୟ (ରେକର୍ଡ଼ ଡାନ୍‌ସ) ଖଂଜି ଦିଆଯାଇଛି । କନେଷ୍ଟବଲ ନାସପାତି ସଂଳାପରେ ଭରିରହିଛି ହାସ୍ୟରସ ଓ ତା'ର ନାମଟି ମଧ୍ୟ ହାସ୍ୟ-ଉଦ୍ରେଗକାରୀ। ହାସ୍ୟରସ ଯୋଗାଇଛି । ଅନ୍ୟତମ ଚରିତ୍ର ନମସ୍କାର । ସେ ଅଭିନେତା ଓ ମିଥ୍ୟା ସାକ୍ଷ୍ୟ ଦେଇ ଜୀବିକା ଅର୍ଜନ କରେ । ତା'ର ଆଚରଣ ଓ ଉଚ୍ଚାରଣ ହାସ୍ୟଧର୍ମୀ ।

ନାଟ୍ୟକାର ବହୁ ନାଟକର ସ୍ରଷ୍ଟା; ଅନ୍ୟ ଭାଷାରେ ଜଣେ ପୋଖତ ନାଟ୍ୟକାର। ତାଙ୍କର ପରିବେଷଣଗତ ଦକ୍ଷତା ଓ ସଂଳାପ-ସଂଯୋଜନାରେ ପଟୁତା ବାରିହୋଇଯାଏ। ତାଙ୍କ ଶ୍ଳେଷାତ୍ମକ ସଂଳାପର ଉଦାହରଣଟିଏ ୨ୟ ଦୃଶ୍ୟରୁ। ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ସଂସାରତ୍ୟାଗୀ ହୋଇଥିବା ମଣିଭଦ୍ର ଶେଷରେ ଫେରିଛନ୍ତି । ନିଜର ଭିଟାମାଟି ନପାଇ ପହଁଚିଛନ୍ତି ନିଜ ଶାଳକ ବଟଘରେ । ସେ ନିଜ ପରିଚୟ ଦେବାପୂର୍ବରୁ ବଟ ତାଙ୍କୁ ଚିହ୍ନିପାରିଛନ୍ତି ଏବଂ ବ୍ୟଙ୍ଗାତ୍ମକ ଭଙ୍ଗୀରେ କହିଛନ୍ତି,

ବଟ- ମା, ଦୀପୁ... ଆରେ ଦମୟନ୍ତୀ। ଦଉଡ଼ି ଆସ। ଦେଖ ଆମର ଆଜି ମହାଭାଗ୍ୟ। ଆମ ଘରକୁ ଗାନ୍ଧିମହାରାଜ ବିଜେ କରିଛନ୍ତି। ଆରେ ଆସ ପାଦଧୂଳି ନିଅ।

ମଣିଭଦ୍ର- ତମେ ତା'ହେଲେ ଚିହ୍ନି ପାରିଲ !

ବଟ- ଆପଣଙ୍କ ଭଳି ମହାତ୍ମାଙ୍କୁ କିଏ ଭୁଲି ପାରିବ ? ବାବାଜୀ ମହାରାଜଙ୍କ ହଠାତ୍ ଏ ସଂସାର କଥା କେମିତି ମନେପଡ଼ିଲା ? (ପୃ:୮୩)

ଅନ୍ୟକେତେକ ସ୍ଥାନରେ ମଧ୍ୟ ଏହିପରି ଶ୍ଳେଷାତ୍ମକ ସଂଳାପର ସମାବେଶ ନାଟକକୁ ଉପଭୋଗ୍ୟ କରାଇଛି।

ଆଲୋଚ୍ୟ ନାଟକର ଆରମ୍ଭ ଯେପରି ନାଟକୀୟ ଶେଷ ମଧ୍ୟ ସେହିପରି ନାଟକୀୟ। କିନ୍ତୁ ଅଠରଟି ଦୃଶ୍ୟରେ ସମାପ୍ତ ଏହି ନାଟକକୁ ଏତେଦୂର ନଲମ୍ୱାଇ ଯଦି ୧୬ଶ ଦୃଶ୍ୟରେ ସମାପ୍ତ କରାଯାଇଥା'ନ୍ତା, ଯେଉଁଠାରେ ଦୀପିକାର ମୃତଦେହ ଛୁଇଁ ବିପ୍ଳବ ଶପଥ ନେଇଛି ଆଉ କହିଛି-"ଦୀପିକା, ମୁଁ ତୋର ମୃତ ଦେହ ଛୁଇଁ ଶପଥ କରି କହୁଛି, ଯେଉଁମାନଙ୍କ ପାଇଁ ତୋର ଏଇ ଦୁର୍ଦ୍ଦଶା, ମୁଁ ସେମାନଙ୍କୁ କେବେ ବି ଛାଡ଼ିବିନି । ସେମାନେ ଯେତେ ପ୍ରତିପତ୍ତିଶାଳୀ ହୁଅନ୍ତୁ ନା କାହିଁକି ମୁଁ ସେମାନଙ୍କୁ କଦାପି କ୍ଷମା କରିବିନି... (ମଞ୍ଚ ଅନ୍ଧକାର ହୋଇଛି ଧୀରେ ଧୀରେ । ବିପ୍ଳବର ଉତ୍ତୋଳିତ ହସ୍ତ ସେମିତି

ରହିଯାଇଛି ଏକ ନୂଆ ବିପ୍ଳବର ସଙ୍କେତ ବହନ କରି...।) (ପୃ:୧୫୪) ତେବେ ନାଟକଟି ବିୟୋଗାନ୍ତ ହୋଇଥା'ନ୍ତା ଓ ସମାପ୍ତିରେ ନାଟକୀୟତା କ୍ଷୁଣ୍ଣ ହୋଇ ନ'ଥାନ୍ତା ।

ନାଟକଟିରେ ଆଉ ଦୁଇଟି ଦୃଶ୍ୟ ଯୋଗକରି ଏହାକୁ ସମାପ୍ତ କରାଯିବା ଦ୍ୱାରା ମଧ୍ୟ ଏହାର ନାଟକୀୟତା ବାଧାପ୍ରାପ୍ତ ହୋଇନାହିଁ, ଯେତେବେଳେ ସ୍ୱାଧୀନତା-ସଂଗ୍ରାମୀ ମଣିଭଦ୍ରଙ୍କର ଦେଶବାସୀଙ୍କ ପ୍ରତି ସଚେତନ ହେବାର ବାଣୀ ଛୁଟି ଆସିଛି ଓ ସେ ଅଟକି ଯାଇଛନ୍ତି ଉଦ୍‌ବୋଧନ ଭଙ୍ଗୀରେ, ଯେମିତି ଭଗବାନ ଶ୍ରୀକୃଷ୍ଣ ପଞ୍ଚଜନ୍ୟ ଶଙ୍ଖନାଦ କରୁଛନ୍ତି ଏବଂ ଅନ୍ତରାଳରୁ ଭାସି ଆସୁଛି- "ଯଦା ଯଦାହି ଧର୍ମସ୍ୟ...।"

ଏଥିରେ ସ୍ୱାଧୀନତା ପରବର୍ତ୍ତୀକାଳର ନିଖୁଣ ସାମାଜିକ ଓ ରାଜନୀତିକ ଚିତ୍ର ପ୍ରତିଫଳିତ । ଏହା ନାଟ୍ୟକାରଙ୍କ ଆଖିଦେଖା ଘଟଣା ବି ହୋଇପାରେ । ମଝିରେ ମଝିରେ ଏଥିରେ ଯେଉଁ ଆହ୍ୱାନ ସ୍ୱର ଶୁଭେ, ତାହା ପାଠକର ଚେତନାକୁ ଆନ୍ଦୋଳିତ କରିବାରେ ବେଶ୍ ସହାୟକ । ଏଥିରୁ ନାଟକର ଆଭିମୁଖ୍ୟ ଏକାନ୍ତ ସ୍ୱଷ୍ଟ ।

ନାଟକଟି ଯୁଗଧର୍ମୀ ଓ ଚେତନାଧର୍ମୀ । ମନେହୁଏ ଏ ପ୍ରକାର ନାଟକର ସଫଳତା ପାଇଁ ଆବଶ୍ୟକ ବସ୍ତୁପରିକଳ୍ପନା, ଚରିତ୍ର-ଅବତାରଣା, ସଂଳାପ-ସଂଯୋଜନା, ନାଟକୀୟ ଉପସ୍ଥାପନା ଇତ୍ୟାଦି ନାଟ୍ୟକଳାରେ ଏହାକୁ ମଣ୍ଡିତ କରିବା ଦିଗରେ ନାଟ୍ୟକାର ଖୁବ୍ ଯତ୍ନବାନ । ଏଣୁ ଏହା ବେଶ୍ ଉପଭୋଗ୍ୟ । ଏହାର କିଛି ଦୁର୍ବଳ ଦିଗ ବି ରହିଛି; ତାହା ବାଛିବାକୁ ପାଠକ / ଦର୍ଶକଙ୍କୁ ଛାଡ଼ି ଦିଆଯାଉ । ସେମାନଙ୍କୁ ମସ୍ତିଷ୍କ ଚାଳନା ପାଇଁ ସୁଯୋଗ ଦିଆଯାଉ ।

ଏନ୍-୫/୩୭୪
ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର-୧୫

●●●

# ସୁବର୍ଣ୍ଣକାଳର ଅନୁଚିନ୍ତା

ଅଧ୍ୟାପକ ବିଧୁଭୂଷଣ ପଣ୍ଡା

ସ୍ୱାଧୀନତା ପରବର୍ତ୍ତୀ କାଳରେ ସମାଜ, ସଂସ୍କୃତି, ସାହିତ୍ୟ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ସୃଷ୍ଟି ହେଲା । ଏହି ପରିବର୍ତ୍ତନ ପାଇଁ ସ୍ୱାଧୀନତା ପୂର୍ବର ବିଭିନ୍ନ ଘଟଣା, ଚିନ୍ତନ, ଆନ୍ଦୋଳନ ଦାୟୀ । ସମାଜର ବିଭିନ୍ନ କ୍ଷେତ୍ରରେ ଏହି ପରିବର୍ତ୍ତନର ପ୍ରଭାବ ପରିଲକ୍ଷିତ ହେଲା । ସାହିତ୍ୟରେ ମଧ୍ୟ ଏହାର ଅପ୍ରତିହତ ପ୍ରଭାବ ପରିଲକ୍ଷିତ ହେଲା ଏବଂ ସବୁ ବିଭାଗ ଭଳି ନାଟକରେ ମଧ୍ୟ ଏଭଳି ପ୍ରଭାବର ସ୍ୱର ସ୍ପଷ୍ଟ ହେଲା, ଯାହାର ଫଳଶ୍ରୁତି ସ୍ୱରୂପ ଓଡ଼ିଆ ନାଟକ କ୍ଷେତ୍ରରେ ନବନାଟ୍ୟ ଆନ୍ଦୋଳନ ମୁଣ୍ଡ ଟେକିଲା । ନବନାଟ୍ୟ ଆନ୍ଦୋଳନର ଜନକ ଥିଲେ ମନୋରଂଜନ ଦାସ । ଏହି ସମୟରେ ନାଟକ ସାଧାରଣ ସ୍ତରରୁ ଅସାଧାରଣ ସ୍ତରକୁ ଉନ୍ନୀତ ହେଲା ଓ ନାଟକର ବିଭିନ୍ନ ପରୀକ୍ଷାନିରୀକ୍ଷା ହେବା ଫଳରେ ନାଟକ ଗୁଡ଼ିକ ବୌଦ୍ଧିକ ହେଲା । ସ୍ୱାଧୀନତା ପରବର୍ତ୍ତୀ ସମୟର ନାଟକ ଗୁଡ଼ିକ ତୁଳନାରେ ଏ ସମୟର ନାଟକ ଭିନ୍ନ ଭାବରେ ଆତ୍ମପ୍ରକାଶ କଲା । ମାତ୍ର ବିଡ଼ମ୍ବନାର ବିଷୟ ଏହି ଯେ, ଏହି ସମୟର ବହୁ ବୌଦ୍ଧିକ, ଉଦ୍ଭଟ ଓ ପରୀକ୍ଷାଧର୍ମୀ ନାଟକ ଦର୍ଶକମାନଙ୍କୁ ବାନ୍ଧି ରଖିବାରେ ସକ୍ଷମ ହେଲାନାହିଁ । ତେଣୁ ପ୍ରାୟତଃ ସତୁରୀ ଦଶକ ପରବର୍ତ୍ତୀ ସମୟରୁ ନାଟକ ପୁଣି ପରିବର୍ତ୍ତନର ଏକ ନୂତନ ଧାରାରେ ଧାବମାନ ହେଲା ।

ମଣିଷ ଜୀବନର ସାମଗ୍ରିକ ସୁଖପାଇଁ ତା'ର କର୍ମ ଓ ଚିନ୍ତନରେ ବ୍ୟାପକ ପରିବର୍ତ୍ତନ ଭଳି ନାଟକ ଭିତରେ ଦର୍ଶକ ମାନଙ୍କୁ ବାନ୍ଧି ରଖିବାର ପ୍ରଚେଷ୍ଟା ମଧ୍ୟରେ ପରିବର୍ତ୍ତନ ନିତାନ୍ତ ସ୍ୱାଭାବିକ । ଜୀବନର ବିଭିନ୍ନ ପ୍ରୟୋଜନରୁ ମଣିଷର ଚିନ୍ତନରେ ପରିବର୍ତ୍ତନ ହୋଇଥାଏ । ବିଭିନ୍ନ ପରିବେଶରେ ବିଭିନ୍ନ ପରିସ୍ଥିତି ସହ ଜଡ଼ିତ ହୋଇ ପଡ଼ିବା ଫଳରେ ମଣିଷର ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହେବା ସହ ମାନବିକ ମୂଲ୍ୟବୋଧ ଗୁଡ଼ିକର ତାର୍କିକ ଆଲୋଚନା ପରିବର୍ତ୍ତନକୁ ଏକ ନୂତନ ଦିଶା ପ୍ରଦାନ କରିଛି । ଫଳତଃ ସାହିତ୍ୟର ବିଭିନ୍ନ ବିଭବର ପରିବର୍ତ୍ତନ ସହ ତାଳ ମିଳାଇ ଓଡ଼ିଆ ନାଟ୍ୟ ସାହିତ୍ୟ ଆଧୁନିକ ପର୍ଯ୍ୟାୟରୁ ଉତ୍ତରଆଧୁନିକ ପର୍ଯ୍ୟାୟକୁ ଗତି କରିଛି । ଆଧୁନିକ କାଳର ପରବର୍ତ୍ତୀ କାଳରେ ଏହି କଳାତ୍ମକ ପ୍ରତିକ୍ରିୟାରେ ଅନୁପ୍ରବେଶ ଫଳରେ ଆଧୁନିକ କାଳରେ ବୌଦ୍ଧିକ, ସାଂସ୍କୃତିକ

ଓ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେଲା। ସଂପ୍ରତି ଜଗତୀକରଣ ପରିପ୍ରେକ୍ଷୀରେ ଉତ୍ତର ଆଧୁନିକତା ଏକ ଯୌଥ ଚେତନାର ନିଗୃହୀତ କ୍ଷେତ୍ର । ସର୍ବଭାରତୀୟ ସ୍ତରରେ ଏହି ଦଳନର ଅନୁପ୍ରବେଶ ଫଳରେ ସାହିତ୍ୟିକମାନେ ଏକ ନୂତନ ଭାବବୋଧର ଉଚ୍ଚାଟିତ ହେଲେ ସୃଷ୍ଟି କରି ଚାଲିଲେ ନୂତନ ସ୍ୱାଦର ସାହିତ୍ୟ।

ଓଡ଼ିଆ ନାଟକ କ୍ଷେତ୍ରରେ ଏହି ପରିବର୍ତ୍ତନର ଆଦ୍ୟ ସ୍ୱାକ୍ଷର ବହନ କରି ଜନ୍ମ ନେଇଛି ମନୋରଂଜନ ଦାସଙ୍କର 'ଶବ୍ଦଲିପି', 'କାଠଘୋଡ଼ା', କାର୍ତ୍ତିକ ରଥଙ୍କର 'ବହ୍ନିମାନ', ବିଜୟ ଶତପଥୀଙ୍କର 'ଏଇ ଯେ ସୂର୍ଯ୍ୟ ଉଏଁ', 'କଂସର ଆତ୍ମା', ରମେଶ ପାଣିଗ୍ରାହୀଙ୍କ 'ମହାନାଟକ', ପ୍ରମୋଦ ତ୍ରିପାଠୀଙ୍କ 'ଶୁଣ ପରୀକ୍ଷ ଦଣ୍ଡଦାରୀ', ନାରାୟଣ ସାହୁଙ୍କ 'ଓ ସବାଶେଷ ଲୋକ', 'ଆଶ୍ରା ଖୋଜୁଥିବା ଈଶ୍ୱର' ପ୍ରଭୃତି ନାଟକ।

ନାଟ୍ୟକାର ନାରାୟଣ ସାହୁ ଆଧୁନିକତା ନାମରେ ଚାଲିଥିବା ବୌଦ୍ଧିକ ଛଳନାକୁ ପରିହାର କରି ସମକାଳୀନ ସମାଜର ବିଭିନ୍ନ ଘଟଣାବଳୀକୁ ସଂଗ୍ରହ କରି ତାର ସୁନ୍ଦର ନାଟ୍ୟରୂପ ପ୍ରଦାନ କରି ଦର୍ଶକଙ୍କୁ ସ୍ତବ୍ଧ କରିଛନ୍ତି । 'ସୁବର୍ଣ୍ଣ ସକାଳ' ନାଟକଟି ଓଡ଼ିଆ ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ 'ପ୍ରାୟଶ୍ଚିତ ଓ ଅନ୍ୟାନ୍ୟ ନାଟକ' ପୁସ୍ତକସ୍ଥ ତୃତୀୟ ନାଟକ। ୧୯୯୦ ମସିହାରେ ରଚିତ ଏହି ନାଟକଟି କଟକ କଳା ବିକାଶ କେନ୍ଦ୍ରରେ ନଟରାଜ କଳାପରିଷଦ ଦ୍ୱାରା ମଂଚସ୍ଥ ହୋଇଯାଇଛି । ପରବର୍ତ୍ତୀ ସମୟରେ ଏହି ନାଟକ ଜନକଲ୍ୟାଣ କ୍ଲବ ନାଟକ ପ୍ରତିଯୋଗିତା, ବନାନୀ ସାଂସ୍କୃତିକ ସଂସଦ, ଉଦଳା ଷ୍ଟେଟବ୍ୟାଙ୍କ ରିକ୍ରେସନ କ୍ଲବ୍, ଭୁବନେଶ୍ୱର ଆନୁକୂଲ୍ୟରେ ମଂଚସ୍ଥ ହେବା ସହ ଆକାଶବାଣୀ, କଟକ ଦ୍ୱାରା ମଧ୍ୟ ପ୍ରସାରିତ ହୋଇଛି । ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ଆୟୋଜିତ ବହୁଭାଷୀ ନାଟକ ପ୍ରତିଯୋଗିତାରେ ପୁରସ୍କୃତ ହେବା ଏହାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛି ।

କାଳେକାଳେ ମଣିଷର ସୁବର୍ଣ୍ଣ ପ୍ରତି ମୋହ ତା'ର ଜୀବନର ଗତିପଥ ପରିବର୍ତ୍ତନ କରିଛି କିମ୍ବା ଆକସ୍ମିକ ବିପଦ ସୃଷ୍ଟି କରିଛି । ଲୋକ କାହାଣୀରୁ ପୁରାଣ କାହାଣୀ ପର୍ଯ୍ୟନ୍ତ ସବୁଠି ସୁବର୍ଣ୍ଣର ମାୟାରେ ଜର୍ଜରିତ ଚରିତ୍ର। ସୁବର୍ଣ୍ଣ କଙ୍କଣ ଲୋଭରେ ବ୍ରାହ୍ମଣର ମୃତ୍ୟୁ ଓ ସୁବର୍ଣ୍ଣ ହରିଣର ମୋହରେ ସୀତା ଅପହରଣ ଭଳି ଘଟଣା ସାହିତ୍ୟର ଏକ ଉପଜୀବ୍ୟ ବିଷୟ ହୋଇଥିବା ବେଳେ 'ସୁବର୍ଣ୍ଣ ସକାଳ'ର ମୋହରେ ମୋହିତ ନାଟ୍ୟକାରଙ୍କର ଏଥିରେ ଏକ ଚମତ୍କାର ବାସ୍ତବ ଦୃଷ୍ଟିଭଙ୍ଗୀ ପ୍ରକାଶିତ। ଛତିଶଗୋଟି ଚରିତ୍ରକୁ ନେଇ ଏଗାରଟି ଦୃଶ୍ୟର ସମାହାରରେ 'ସୁବର୍ଣ୍ଣ ସକାଳ'ର ଆଙ୍ଗିକ ପରିକଳ୍ପନା। ଆଲୋଚନା ପରିପ୍ରେକ୍ଷୀରେ ନାଟ୍ୟକାର ପ୍ରସନ୍ନ ମିଶ୍ରଙ୍କ 'ସୁବର୍ଣ୍ଣ ବସୁଧା' ନାଟକର କାହାଣୀ ମନକୁ ଆସେ। ନାଟକଟିରେ ଅତିକଳ୍ପନା (ଫାଣ୍ଟାସି)ର ପ୍ରୟୋଗ କରି ନାଟ୍ୟକାର ଏକ ଭିନ୍ନ

ପୃଥିବୀ ତିଆରି କରିଛନ୍ତି, ଯେଉଁଠି କେବଳ ମଣିଷ ଇଚ୍ଛାରେ ହିଁ ସବୁକିଛି ନିୟନ୍ତ୍ରିତ । ମାତ୍ର ନାଟ୍ୟକାର ସାହୁ ସୁବର୍ଣ୍ଣ ସକାଳ ପାଇଁ ପ୍ରତୀକ୍ଷାରତ। ତାଙ୍କ ପ୍ରତୀକ୍ଷାର ଶେଷ ହେବ କି ନାହିଁ, ତାହା ସମୟ ହିଁ କହିବ। ଉଭୟଙ୍କ କ୍ଷେତ୍ରରେ କିନ୍ତୁ 'ସୁବର୍ଣ୍ଣ' ଶବ୍ଦର ପରିଭାଷା ସମାନ। ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି ମଧ୍ୟ ତାଙ୍କର 'କାଳାନ୍ତର' ଉପନ୍ୟାସରେ ଏଇଭଳି ସୁବର୍ଣ୍ଣ ସକାଳ ପାଇଁ ବିଭୋରିତ ଭାବରେ ପ୍ରତୀକ୍ଷାରତ ଥିଲେ । ଏହି ସୁବର୍ଣ୍ଣରେ ଖାଦ ନାହିଁ। ନିରୁତା ସୁବର୍ଣ୍ଣର ହଳଦୀ ରଂଗରେ ଝକମକ କରୁଥିବା ପୃଥିବୀ ଯେଉଁଠି ସାମାଜିକ ବିସଙ୍ଗତି ନଥିବ, କଳୁଷ ନ ଥିବ, ଅହଂ ନଥିବ କି ଦହନ ନଥିବ।

ଗଳ୍ପାଂଶକୁ ବା ଗଳ୍ପକୁ ଫେଣ୍ଟି ଘୂରାଫେରା କଲେ ପ୍ଲଟ ହୁଏ। ଗଳ୍ପ ଗୁଡ଼ିକରେ ସିଧାସଳଖ କଥା କୁହାଯାଇଥାଏ ମାତ୍ର ନାଟକର ପ୍ଲଟ ହିଁ ବୈଚିତ୍ର୍ୟମୟ, ନାଟକରେ ପ୍ଲଟ ହିଁ ମୁଖ୍ୟ। ପ୍ଲଟର ଶୃଙ୍ଖଳା, ସଂହତି, ଗାଠନିକ ଚାତୁରୀ ଉପରେ ନାଟକର ସମସ୍ତ ଭାବ ନିର୍ଭର କରିଥାଏ। ଠିକ୍ ଭାବରେ ପ୍ଲଟରେ କଳାକୌଶଳ ଫୁଟେଇ ନପାରିଲେ ରସ ଦାନା ବାନ୍ଧେନାହିଁ କି ଉଦ୍ଦେଶ୍ୟ ଚରିତାର୍ଥ ହୁଏନାହିଁ । ତେଣୁ ପ୍ଲଟଟିଏ ଗଢିବା ଓ ସମସ୍ତ ଚରିତ୍ରକୁ ତା'ଭିତରେ ଖଂଜି ଦେଇ ଦର୍ଶକ ସମ୍ମୁଖରେ ଉପସ୍ଥାପିତ କରିବା ଏକ ମୁଖ୍ୟ କାର୍ଯ୍ୟ। ପ୍ଲଟକୁ ଠିକ୍ ଭାବରେ ଆକଳନ କରାଯାଇ ପାରିଲେ ଅନ୍ୟ ସବୁ ବିଭାଗ ଜମିଯାଏ। ପୁନଶ୍ଚ ଏହି ପ୍ଲଟର ଗଢ଼ଣରେ ଉତ୍କଣ୍ଠା ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ। ପ୍ଲଟର କଳା ପାଟବ ହିଁ ନାୟକର ଆତ୍ମିକ ରୂପକୁ ଚମତ୍କାର ଭାବରେ ଗଢିଦିଏ। 'ସୁବର୍ଣ୍ଣ ସକାଳ'ର ନାଟକ ଗଳ୍ପାଂଶ ବା ପ୍ଲଟ ଅନତିଦୀର୍ଘ। ଦୀପାବଳୀର ପବିତ୍ର ବଡ଼ବଡୁଆ ଡାକରେ ଆକର୍ଷିତ ହୋଇ ଦୁଇ ଐତିହାସିକ ଚରିତ୍ର ରାଜା ମର୍କତ କେଶର ଓ ବାଇମୁଣ୍ଡି କଟକ ସହର ଭିତରୁକ ପ୍ରବେଶ କରିଛନ୍ତି। ସେମାନେ ଅଶରୀରୀ ଥିବାରୁ କେହି ସେମାନଙ୍କୁ ଦେଖିପାରିନାହାନ୍ତି। ଅଦୃଶ୍ୟ ଭାବରେ ସେମାନେ କଟକର ରୂପକୁ ପର୍ଯ୍ୟବେକ୍ଷଣ କରିଛନ୍ତି । ହଜାରେ ବରଷର କଟକ ସହରରେ ଅମାବାସ୍ୟା ଅନ୍ଧକାର ଛାଇ ଯାଇଛି। 'କଟକ ନଗର ଧବଳ ଟଗର' ଆପ୍ତ ବାକ୍ୟଟି ମିଥ୍ୟା ପ୍ରମାଣିତ ହୋଇଛି। କଟକର ଦୟନୀୟ ଅବସ୍ଥା ଦେଖି ଉଭୟ ବାଇମୁଣ୍ଡି ଓ ମର୍କତ କେଶରୀ କ୍ଷୁବ୍‌ଧ ଓ ଦୁଃଖିତ। ଏଇଭଳି ଏକ ଗଳ୍ପାଂଶକୁ ନେଇ ନାଟକଟି ଚମତ୍କାର ଭାବରେ ଉପସ୍ଥାପିତ ଏହା ଏକ ଆଞ୍ଚଳିକ ସମସ୍ୟା ହୋଇଥିଲେ ହେଁ, ଏହାକୁ ସମଗ୍ର ଭାରତ ବର୍ଷର ସମସ୍ୟା ଭାବରେ ଗ୍ରହଣ କରାଯାଇପାରେ।

ନାଟକର ପ୍ରତ୍ୟେକ ଦୃଶ୍ୟରେ ରହିଛି ସମସ୍ୟାର ଉପସ୍ଥାପନ। ଯୁବଗୋଷ୍ଠୀର ଅଧଃପତନ, ପୋଲିସ୍‌ମାନଙ୍କ ଦୌରାତ୍ମ୍ୟ ଓ ଲାଂଚଖୋର ମନୋବୃତ୍ତି, ରାଜନୀତିକ ଦୁର୍ନୀତି ଓ ଭ୍ରଷ୍ଟାଚାର, ଚାନ୍ଦା ଆଦାୟ ଜନିତ ସମସ୍ୟା, ପାନୀୟ ଜଳ ସମସ୍ୟା, ଆଦି ବହୁ

ସମସ୍ୟାକୁ ନେଇ ନାଟକ ପରିକଳ୍ପିତ । ଏହା ମର୍କତ କେଶରୀ କିମ୍ବା ବାଇମୁଣ୍ଡିଙ୍କ ସ୍ୱପ୍ନ ନଥିଲା । ସେମାନଙ୍କର ସ୍ୱପ୍ନର ସହର ସାଂପ୍ରତିକ କଟକ ସହର ନୁହେଁ । ସେମାନଙ୍କ କଟକ ଥିଲା ସୁବର୍ଣ୍ଣ କଟକ ସହର । ଆଖିକୁ ହଳଦିଆ ଓ ଉଜ୍ଜ୍ୱଳ ଦେଖାଯାଉଥିବା ସବୁବସ୍ତୁ ସୁନା ନୁହେଁ। ସଂପ୍ରତି କଟକ ନଗର ଧବଳ ଟଗର କୁହାଯିବାରେ କିଛି ଅର୍ଥ ନାହିଁ । ସ୍ୱର୍ଣ୍ଣର ଛଦ୍ମ ଆବରଣ ତଳେ ମୂଳ କଟକ ସହରର ଅସ୍ତିତ୍ୱ ଓ ସ୍ୱପ୍ନ ବିଡ଼ମ୍ବିତ । ମାତ୍ର ଦୁଃଖର ବିଷୟ ଏହି ଯେ, ନାଟକର କୌଣସି ଚରିତ୍ର (ରାଜା ଓ ବାଇମୁଣ୍ଡିକୁ ବାଦ ଦେଇ) ମଧ୍ୟରେ କଟକ ନଗରର ଏ ଅବସ୍ଥା ପାଇଁ କ୍ଷୋଭ ନାହିଁ କି ଦୁଃଖ ନାହିଁ। ସବୁକିଛି ସେମାନଙ୍କର ଅଭ୍ୟାସରେ ପରିଣତ ହୋଇଛି । ଅଭ୍ୟାସର ଶେଷ ଯେ ଭୟଙ୍କର ପରିଣତି ସୃଷ୍ଟି କରିବ ଏହା ନିଃସନ୍ଦେହ। ବାଇମୁଣ୍ଡି ତେଣୁ କହେ–'ମଣିମା ଦୁଧ ଉତୁରିଲେ ଚୁଲିକୁ ଯାଏ। ମଣିଷ ଉତୁରିଲେ ଗାତକୁ ଯାଏ ସେଇଆ ହେବ'। (ପୃ:୨୩)। କଟକର ବିପର୍ଯ୍ୟୟ ପାଇଁ ବାଇମୁଣ୍ଡି ମନରେ ସୃଷ୍ଟି ହୋଇଛି ଦୁଃଖ ଓ କ୍ଷୋଭ । ଯେଉଁ କଟକବାସୀଙ୍କୁ ବନ୍ୟାରୁ ରକ୍ଷା କରିବା ପାଇଁ ସେ କାଠଯୋଡ଼ିର ପଥରବନ୍ଧ ତିଆରି ପାଇଁ ମହାରାଜାଙ୍କୁ ଅନୁରୋଧ କରିଥିଲା କଟକର ସାଂପ୍ରତିକ ଜୀବନକୁ ବିଶ୍ଳେଷଣ କରିବା ପରେ ସେଇ ପଥର ବନ୍ଧ ଭାଙ୍ଗି ଦେବାକୁ ସେ ରାଜାଙ୍କୁ ଅନୁରୋଧ କରିଛି ଏବଂ ଶେଷରେ ନାଟ୍ୟକାର ସାହୁ ବାଇମୁଣ୍ଡି ମୁଖରେ ଯେଉଁ ସଂଳାପ ପ୍ରଦାନ କରିଛନ୍ତି ତାହାହିଁ କେବଳ କଟକ ନୁହେଁ ସାଂପ୍ରତିକ ସମାଜ ପାଇଁ ଆଶାର ମନ୍ତ୍ର। ବାଇମୁଣ୍ଡି କହେ- "ଆମ କର୍ତ୍ତବ୍ୟ ଶେଷ ହୋଇଛି। ଏ ନଗରୀକୁ ରକ୍ଷା କରିବାର ଦାୟିତ୍ୱ ସେମାନଙ୍କର। ଆଶା କରିବା ଛଡ଼ା ଆମର ଅନ୍ୟଗତି ନାହିଁ । ଆଗାମୀ ଅମାବାସ୍ୟାରେ ଆସିବା । ଅମାବାସ୍ୟା ପରେ ନିଶ୍ଚୟ ଜହ୍ନରାତି ଆସିବ, ତେଣୁ ଆଉ ଏକ ସୁବର୍ଣ୍ଣ ସକାଳକୁ ପ୍ରତୀକ୍ଷା କରିବାରେ କ୍ଷତି କ'ଣ ? ଆସ...ଫେରିଯିବା। ନିକଟ ଭବିଷ୍ୟତରେ ପୁଣି ଏକ ଦୀପାବଳି ଆସିବ, ସେହିଦିନ ପ୍ରତୀକ୍ଷାରେ ଆମେ ବିଦାୟ ନେବା...। (ପୃ:୨୩୪) ଏହି ସଂଳାପର ଉଚ୍ଚାରଣ ଭିତରେ ନାଟ୍ୟକାର ବିବେକାନୁମୋଦିତ କାର୍ଯ୍ୟକୁ ଶ୍ରେଷ୍ଠ ଭାବରେ ଗ୍ରହଣ କରିଛନ୍ତି । କଟକବାସୀଙ୍କର ପରିବର୍ତ୍ତନ ନିମନ୍ତେ ବିବେକର ଉତ୍ତରଣ ଆବଶ୍ୟକ। ବିବେକର ଉତ୍ତରଣ ଭିତରେ ଏମିତି ଏକ ସୁବର୍ଣ୍ଣ ସକାଳର ପ୍ରତୀକ୍ଷାରେ ଛଟପଟ ହେଉଛନ୍ତି ଭବିଷ୍ୟ ମାଳିକାର ପ୍ରଖ୍ୟାତ କବି ଅଚ୍ୟୁତାନନ୍ଦ, ହାଡ଼ି ଦାସ ପ୍ରଭୃତି। ସେମାନଙ୍କର ଦିବ୍ୟଦୃଷ୍ଟି ଫଳରେ ଆମ ସମାଜର ସାଂପ୍ରତିକ ଘଟଣାର ବିଡ଼ମ୍ବିତ ଚିତ୍ରକୁ ଅନୁଭବ କରିପାରୁଥିଲେ। ସେଥିପାଇଁ ସେମାନେ ମଣିଷ ସମାଜକୁ ପ୍ରବୋଧନା ଦେଇଛନ୍ତି। ବିବେକାନୁମୋଦିତ ପନ୍ଥାରେ ନିଜର ମାର୍ଗଦର୍ଶକ ଭାବରେ ନିଜକୁ ଗଢିବାପାଇଁ ପ୍ରେରଣା ଦେଇଛନ୍ତି। ସେଇ କବିଗଣ ମଧ୍ୟ ସୁବର୍ଣ୍ଣ ସକାଳର ପ୍ରତୀକ୍ଷା କରିଛନ୍ତି।

ବିଶ୍ୱଯୁଦ୍ଧୋତ୍ତର ପୃଥିବୀରେ ଏକ ବ୍ୟାପକ ପରିବର୍ତ୍ତନ ସଂଘଟିତ ହୋଇଛି । ଏହି ପରିବର୍ତ୍ତନର ପ୍ରଭାବରେ ଏକ ଅବକ୍ଷୟ ହ୍ରାସ କରିଛି ସମଗ୍ର ପୃଥିବୀକୁ । ମଣିଷ ମଣିଷ ଭିତରେ ସଂଶୟବୋଧ, ବିଭୀଷିକାର ବାତାବରଣ ଧ୍ୱଂସମୁଖୀ ଦୁଷ୍ଟ ଶକ୍ତି ମାନଙ୍କର ସୈତାନୀ ଦୃଷ୍ଟି, ମାନବିକତାର ଅପମୃତ୍ୟୁ, ସମାଜରେ ପ୍ରତିଷ୍ଠିତ ତଥା ପ୍ରମୁଖ ବ୍ୟକ୍ତି ମାନଙ୍କର ଶୋଷଣ, ଅତ୍ୟାଚାର ସମାଜ ଜୀବନକୁ ବିପର୍ଯ୍ୟସ୍ତ କରିବା ସହ ସମସ୍ତ ମୂଲ୍ୟବୋଧ ଭୂଷୁଡ଼ି ପଡ଼ିଛି । କ୍ଷମତାନ୍ଧ ବ୍ୟକ୍ତିମାନଙ୍କର ଦୁର୍ନୀତି, ଭ୍ରଷ୍ଟାଚାର, ତଥାକଥିତ ସମାଜର ବଡ଼ପଣ୍ଡାମାନଙ୍କର ସାମାଜିକ ବ୍ୟଭିଚାର ଦ୍ୱାରା ସମଗ୍ର ସମାଜ ତଟସ୍ଥ । ଏଭଳି ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ବିପର୍ଯ୍ୟୟ କାଳରେ ସାହିତ୍ୟିକଟିଏ ନୀରବ ନୁହେଁ । ଏହିଭଳି ସଂକଟଗ୍ରସ୍ତ ସମୟରେ ସାହିତ୍ୟିକ ତା'ର ଚିନ୍ତାଧାରାକୁ କରେ ଜଟିଳ, ବୌଦ୍ଧିକ । ତା'ର ବିଶ୍ଲେଷଣ ବ୍ୟାପକ ରୂପ ପରିଗ୍ରହଣ କରିଥାଏ । ତାହା ହିଁ ଘଟିଛି ନାଟ୍ୟକାର ନାରାୟଣ ସାହୁଙ୍କ କ୍ଷେତ୍ରରେ । ସେ ନିଜ ମୁକ୍ତ ଚିନ୍ତନ ଓ ବିଚାରଧାରାର ପ୍ରୟୋଗ କରି ସାଂପ୍ରତିକ ନିଛକ ବାସ୍ତବ ଘଟଣାର ରୂପାୟନ କରିଛନ୍ତି । ଆଂଚଳିକ ସମସ୍ୟା ଭାବରେ ଏହି ନାଟକର ସମସ୍ୟାଟିକୁ ଉପସ୍ଥାପିତ କରି ଥିଲେହେଁ ଭାରତର ଯେ କୌଣସି ସହରର ପୂର୍ବ ଐତିହ୍ୟ, ସଂସ୍କୃତି ଓ ସାମାଜିକ ଦିଗଟିକୁ ନେଇ ସାଂପ୍ରତିକ ସମୟର ଘଟଣାର ତୁଳନାତ୍ମକ ବିଶ୍ଲେଷଣର ଚିତ୍ର ଏଥିରୁ ମିଳିଥାଏ । ତେଣୁ ଏହା କେବଳ କଟକର ସମସ୍ୟା ନୁହେଁ, ପରନ୍ତୁ ଭାରତବର୍ଷର ପ୍ରତ୍ୟେକ ସହରର ସମସ୍ୟା । ନାଟ୍ୟକାର ନିଜର ମୌଳିକ ଚିନ୍ତାଧାରା ପ୍ରୟୋଗରେ, ନିଆରା ଉପସ୍ଥାପନା ଶୈଳୀରେ ସମସ୍ୟାଟିକୁ ଗମ୍ଭୀରତାର ସହ ବିଚାର କରିବାକୁ ଦର୍ଶକ ମାନଙ୍କୁ, ପାଠକ ମାନଙ୍କୁ ବାଧ୍ୟ କରିଛନ୍ତି । ଯେଉଁ ଆଦର୍ଶର ବାର୍ତ୍ତା ପ୍ରଚାର କରିବା ପାଇଁ ନାଟ୍ୟକାର ସାହୁ ସଂକଳ୍ପବଦ୍ଧ ସେଥିପାଇଁ ଯେଉଁ ସାମାଜିକ ପ୍ରତିବଦ୍ଧତା ଆବଶ୍ୟକ ତାହା ହିଁ ଭରପୁର ରହିଛି, ଡ.ସାହୁଙ୍କ ନିକଟରେ । ଏ ପରିପ୍ରେକ୍ଷୀରେ 'Theory of drama' ପୁସ୍ତକରେ ଏ.ନିକେଲ୍‌ଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ । ତାଙ୍କ ଭାଷାରେ:- "Drama is the art of expressing ideas about life in such a manner as to render that expression capable of interpretation by actors and likely to interest an audience assembled to hear the words and witness the action" ଅର୍ଥାତ ଜୀବନର ଆଦର୍ଶ ସମୂହକୁ ଅଭିନୟ ଯୋଗ୍ୟ-ଦର୍ଶକ ମଣ୍ଡଳୀର ଚିତ୍ତାନୁରଂଜନ କ୍ଷମ ଭାଷାରେ ପ୍ରକାଶ କରିବାର ନାମ ହେଲା ନାଟକ । ସମାଜ ଓ ଦେଶ ପାଇଁ ଏହା ଠାରୁ ପ୍ରଭାବଶାଳୀ ଓ ବଳିଷ୍ଠ ମାଧ୍ୟମ ଜଗତରେ ଆଉ କିଛି ନାହିଁ । ଏହା ହିଁ 'ସୁବର୍ଣ୍ଣ ସକାଳ' ନାଟକ ନିମନ୍ତେ ସର୍ବତୋ ଭାବେ ପ୍ରଯୁଜ୍ୟ ।

ଏକ ସଫଳ ନାଟକ ନିମନ୍ତେ ଚରିତ୍ରର ସଫଳ ଉପସ୍ଥାପନା ଓ ଉପଯୁକ୍ତ ସଂଳାପର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ନାଟକର କଥାବସ୍ତୁ ବଳିଷ୍ଠ ହେଲେ ତା ଭିତରେ ଅଭିନୟ ପ୍ରଦର୍ଶନ କରୁଥିବା ଚରିତ୍ର ଗୁଡ଼ିକ ସ୍ୱୟଂସଂପୂର୍ଣ୍ଣ ହୋଇ ଉଠନ୍ତି । ଚରିତ୍ର ମାନେ ହେଲେ ନାଟ୍ୟକାରଙ୍କର ପୁତ୍ର-ପୁତ୍ରୀ । ମଂଚରେ ସେମାନଙ୍କ ପିଣ୍ଡରେ ପ୍ରାଣ ସଂଚାର ପୂର୍ବକ ନିର୍ଦ୍ଦେଶକଙ୍କ ଉଦ୍ୟମରେ ସେମାନେ ସମାଜ-ଦର୍ଶକ ନିକଟରେ ନିଜକୁ ଜଣେ ହୋଇ ରହିବାକୁ ସକ୍ଷମ ହୁଅନ୍ତି । 'ସୁବର୍ଣ୍ଣ ସକାଳ'ର ଚରିତ୍ର ଗୁଡ଼ିକ ଭିତରେ କେବଳ ରାଜା ଓ ବାଇମୁଣ୍ଡି ଚରିତ୍ରକୁ ବାଦ ଦେଲେ ଆଉ କୌଣସି ଚରିତ୍ର ଏଥିରେ ସ୍ଥିର ନୁହେଁ । ଅନ୍ୟ ସମସ୍ତ ଭୂମିକାରେ ଜଣେ ଅଭିନେତା ବହୁ ଭୂମିକାରେ ଅଭିନୟ କରିବାର ସୁଯୋଗ ରହିଛି । ନାଟକରେ ଉପସ୍ଥାପିତ ଚରିତ୍ର ଗୁଡ଼ିକ ସମାଜର ବିଭିନ୍ନ କର୍ମରୁ ସଂଗୃହୀତ । ଦୋକାନୀ, ଟ୍ରାଫିକ୍ ପୋଲିସ୍, ନେତା, ଖୋସାମତିଆ, ସାମ୍ବାଦିକ, ରହିମ, ଭିକାରୀ, ଲତା, ରଙ୍ଗ, ମନ, ଡାକ୍ତର, ସନିଆ, ରାଜୁ, କୁଷ୍ଠରୋଗ, ଶ୍ରୀକାନ୍ତ, ବିପ୍ଳବୀ, ସ୍ୱରୂପ, ବିବେକାନନ୍ଦ, ସଂଗ୍ରାମ, ପ୍ରଳୟ, ସୁଭାଷ, ପିଅନ, ବଡ଼ବାବୁ, ଯୁବକ, ପୋଲିସ୍ ଇନିସ୍‌ପେକ୍ଟର, କନେଷ୍ଟବଳ, ଜଷ୍ଟିସ୍, ପ୍ରଫେସର, ମୁଖ୍ୟ ଅତିଥି, ସମ୍ମାନୀତ ଅତିଥି, ବେହେରା ଭରତ ଭଳି ଚରିତ୍ର ଗୁଡ଼ିକ ସମାଜର ପ୍ରତିବର୍ଷର ପ୍ରତିନିଧି ସ୍ଥାନୀୟ ଚରିତ୍ର । ଏହି ଚରିତ୍ର ଗୁଡ଼ିକର ଉପସ୍ଥାପନାରେ ନାଟ୍ୟକାର ସାହୁ ସାମାନ୍ୟ ନାଟକୀୟତାର ସ୍ପର୍ଶ ଦେଇଥିବା ବେଳେ ଅତି ନାଟକୀୟତା (ମେଲୋଡ୍ରାମା)କୁ ପରିହାର କରିଛନ୍ତି । ଏଥିରେ ଚରିତ୍ରମାନଙ୍କର ଧୀମା ନାଟକୀୟ ଉପସ୍ଥାପନା ମଧ୍ୟ ନାହିଁ । ଚରିତ୍ର ଗୁଡ଼ିକର ନାମୋଲ୍ଲେଖ ନ କରି ନାଟ୍ୟକାର ସାହୁ ଦର୍ଶକ ମାନଙ୍କୁ ସମଗ୍ର ପରିବେଶର ଏକ ସ୍ଥୁଳ ଚିତ୍ର ପ୍ରଦାନ କରିବାରେ ସକ୍ଷମ ହୋଇଛନ୍ତି । ଚରିତ୍ର ଗୁଡ଼ିକ ବେଶ ପ୍ରଭାବଶାଳୀ ଓ ଜୀବନ୍ତ । କଟକର ବସ୍ତି, ସହରର ଯେ କୌଣସି ସ୍ଥାନ, ପଥପ୍ରାନ୍ତ ସଭା, ବିଜିନେସ୍ ସେଣ୍ଟର୍, ମ୍ୟୁନିସ୍‌ପାଲିଟି ଅଫିସ୍, ହାଇକୋର୍ଟ ଛକ, ଶହୀଦ ଭବନ, ମେଡ଼ିକାଲ ଓ୍ୱାର୍ଡ଼, କାଠଯୋଡ଼ି ପଥରବନ୍ଧ, ବଡ଼ ଡାକ୍ତରଖାନା ୱାର୍ଡ଼, ଜିଲ୍ଲାପାଳଙ୍କ ଅଫିସ୍ ଆଗ ଭଳି ଲୋକେସନ୍‌ର ଦୃଶ୍ୟ ଗୁଡ଼ିକୁ ସଂଯୋଜିତ କରିଥିବା ନାଟ୍ୟକାର ସାହୁ ଦୃଶ୍ୟାନୁଯାୟୀ ଚରିତ୍ର ଗୁଡ଼ିକୁ ସନ୍ନିବେଶିତ କରିଛନ୍ତି । ପ୍ରତ୍ୟେକ ଲୋକେସନ୍‌ରେ ଚରିତ୍ର ଭିନ୍ନ, ସମସ୍ୟା ଭିନ୍ନ, ଉପସ୍ଥାପନା ଭିନ୍ନ । କେବଳ ସ୍ଥିର ରାଜା ଓ ବାଇମୁଣ୍ଡି ଚରିତ୍ର ଯିଏ ଅଦୃଶ୍ୟ ଭାବରେ ସମସ୍ତ ଘଟଣାର ପର୍ଯ୍ୟବେକ୍ଷକ ସାଜିଛନ୍ତି । ଏ ଦୁଇ ଚରିତ୍ର ମଧ୍ୟ ଏକ ମହତ ସ୍ଥାନୀୟ । ଆମର ଉନ୍ନତ ସାଂସ୍କୃତିକ ଐତିହ୍ୟର ଯୋଗ୍ୟ ଦାୟାଦ । ରାଜା ଚରିତ୍ର ଭିତରେ ରାଜାର ଅହମିକା ନାହିଁ । ବରଂଚ ଅଛି ପ୍ରଜାନୁରଂଜନର ଏକ ତରଳ ମମତ୍ୱବୋଧ । ଯେଉଁଥିପାଇଁ କଟକ ନଗରୀର ବିପର୍ଯ୍ୟସ୍ତତାକୁ ଦେଖି ସେ ଅନ୍ତରରେ ଆଘାତ ପାଇଛନ୍ତି । ବାଇମୁଣ୍ଡିକୁ

ଦେଶପ୍ରାଣତାର ଚରମ ଶୀର୍ଷକୁ ଉନ୍ନୀତ କରିଛନ୍ତି ନାଟ୍ୟକାର। ରାଜାଙ୍କ ପ୍ରତି ଭକ୍ତି, ଆନୁଗତ୍ୟ ସାଙ୍ଗକୁ ମାଟି ମା' ପାଇଁ ମମତା ବାଇମୁଣ୍ଡି ଚରିତ୍ରର ବିଶେଷତ୍ୱ। ଅଥଚ ନାଟକରେ ପ୍ରତୀକିତ ଅନ୍ୟାନ୍ୟ ଚରିତ୍ରଗଣ ବାଇମୁଣ୍ଡି ଓ ରାଜାଙ୍କ ଦାନ ବିଷୟ ସଂପୂର୍ଣ୍ଣ ଭାବରେ ବିସ୍ମୃତ। ଏହି ବିସ୍ମୃତି ମଧ୍ୟରେ ଅଧଃପତନର ଚିତ୍ର ସ୍ପଷ୍ଟ ବାରିହୋଇପଡ଼େ। ପ୍ରତ୍ୟେକ ଚରିତ୍ରକୁ ସାମାଜିକ ଘଟଣା ମାଧ୍ୟମରେ ଉପସ୍ଥାପିତ କରି ସମାଜର ପତନୋନ୍ମୁଖୀ ଚିତ୍ରକୁ ତୋଳିଧରିବାରେ ସେ ଏକ ଫଟୋଗ୍ରାଫିକ୍ ଶୈଳୀର ଆଶ୍ରୟ ନେଇଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ। ଏହାହିଁ ନାଟ୍ୟକାରଙ୍କର ସ୍ୱାତନ୍ତ୍ୟ ।

ସମସ୍ତ ଘଟଣାର ଜୀବନ୍ତ ଉପସ୍ଥାପନା ନାଟକକୁ ସିଦ୍ଧି ପ୍ରଦାନ କରିଛି। ନାଟକଟି କୌଣସି ନିର୍ଦ୍ଦିଷ୍ଟ ସେଟ୍‌ରେ ଅଭିନୀତ ନହେବା ଏହାର ସ'ଳତାର ଆଉ ଏକ ଦିଗନ୍ତ। ନାଟକକୁ ସଫଳ କରିବାପାଇଁ, ଦର୍ଶକ ମାନଙ୍କ ନିକଟରେ ନାଟକୀୟ ଅବବୋଧକୁ ଗଭୀର ତଥା ସ୍ପଷ୍ଟ କରିବାପାଇଁ ସମୟ ସମୟରେ ପାରଂପରିକ ଶୈଳୀ ବିଚ୍ୟୁତ ହେବାକୁ ପଡ଼ିଥାଏ। ଏଭଳି କ୍ଷେତ୍ରରେ ନାଟ୍ୟକାରଙ୍କର ଉଦ୍ୟମ ପ୍ରଶଂସନୀୟ ଓ ଅଭିନନ୍ଦନୀୟ।

ନାଟ୍ୟକାର ଡ.ନାରାୟଣ ସାହୁ ତାଙ୍କର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ 'ଈଶ୍ୱର' ଓ 'ସମୟ' ଚରିତ୍ରକୁ ମାନବୀୟ ଚରିତ୍ରରେ ରୂପାନ୍ତରିତ କରି ତାଙ୍କରି ସଂଳାପ ମାଧ୍ୟମରେ ଈଶ୍ୱରଙ୍କ ଦୁଃଖକୁ ପ୍ରକାଶ କରିଛନ୍ତି। ଏହି ଚରିତ୍ର ଦୁଇଟିର ସୃଷ୍ଟିକୁ ଅତି କାଳ୍ପନିକ ଚରିତ୍ର (ଫାଣ୍ଟାସି କ୍ୟାରେକ୍ଟର) ଭାବରେ ଅଭିହିତ କରାଯାଏ। ମାତ୍ର ଉପସ୍ଥାପନାଗତ ବାସ୍ତବତାକୁ ଆହୁରି ନିବିଡ଼ କରିବା ପାଇଁ ଏଭଳି ପଦ୍ଧତିର ଆଶ୍ରୟ ନିଆଯାଇପାରେ। ସମଭାବରେ 'ସୁବର୍ଣ୍ଣ ସକାଳ' ନାଟକରେ ପ୍ରତୀକିତ ରାଜା ଓ ବାଇମୁଣ୍ଡି ଭଳି ଚରିତ୍ର ଅତି କାଳ୍ପନିକ ହେଲେ ମଧ୍ୟ ବାସ୍ତବତାଧର୍ମୀତାରୁ ଦୂରେଇଯାଇ ନାହାନ୍ତି । ବରଂଚ ଏମାନଙ୍କର ସଂଳାପ ପୁଣି ଦର୍ଶକ ହଜାରବର୍ଷ ତଳର ସ୍ମୃତିକୁ ମନେପକାଇ ଏମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇପଡ଼େ। ଏମାନଙ୍କ ଦୁଃଖ ସହିତ ଏକାତ୍ମ ହୋଇପଡ଼େ। 'ସୁବର୍ଣ୍ଣ ସକାଳ' ଏକ ଭିନ୍ନ ପ୍ରତ୍ୟୟ ତା ଭିତରେ ସୃଷ୍ଟି ହୁଏ । ଏହାଦ୍ୱାରା ଏକ ସଚେତନ ବାତାବରଣ ସୃଷ୍ଟି ହେବାର ସୁଯୋଗ ସୃଷ୍ଟି ହେବାର ସମ୍ଭାବନା ସ୍ପଷ୍ଟ ହୁଏ।

ସାଂପ୍ରତିକ ଯୁଗର ନାଟକ ଗୁଡ଼ିକର ନାଟକୀୟ ଚରିତ୍ର ଗୁଡ଼ିକର ଉପସ୍ଥାପନରେ ନାଟ୍ୟକାର ମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିମନ୍ତେ ଏହାର ସଫଳ ମଂଚାୟନ ସମ୍ଭବ ହୋଇଛି। ସଫଳ ମଂଚାୟନ ନିମନ୍ତେ ଚରିତ୍ର ଗୁଡ଼ିକର ଉପଯୁକ୍ତ ଉପସ୍ଥାପନା ସହ ସେମାନଙ୍କ କଥାବାର୍ତ୍ତା ମାଧ୍ୟମରେ ହେବା ନିତାନ୍ତ ବିଧେୟ। ସେଥିପାଇଁ ନାଟ୍ୟ ସମାଲୋଚକ ମାନେ କହିଛନ୍ତି :-"Dramatic dialogues must be direct and to the point absolutely of the person speaking and the speeches as short

as possible.'' ପାତ୍ରୋମୁଖୀ ସଂଳାପର ଉପଯୁକ୍ତ ଅବତାରଣାହିଁ ନାଟକକୁ ସ'ଳ କରେ। ସଂଳାପର ଭାଷା ସରଳ, ସଂକ୍ଷିପ୍ତ, ତୀକ୍ଷ୍ଣ ଏବଂ ପ୍ରଭାବଶାଳୀ ହେବା ଆବଶ୍ୟକ। ଯଦି ସଂଳାପ ବର୍ଣ୍ଣନାତ୍ମକ, ବିଶ୍ଳେଷଣାତ୍ମକ ହୁଏ ତେବେ ନାଟକଟି ସଫଳ ଭାବରେ ଦର୍ଶକ ନିକଟରେ ପହଞ୍ଚିପାରେ ନାହିଁ। ଏ କ୍ଷେତ୍ରରେ ଡ.ନାରାୟଣ ସାହୁ ବେଶ ସଚେତନ ଥିଲା ପରି ମନେ ହୁଏ। ଜଣେ ସଫଳ ଉତ୍ତର ଆଧୁନିକ ନାଟ୍ୟକାର ଭାବରେ ପ୍ରାଚୀନ ରୀତି ଅନୁଯାୟୀ ସଂଳାପର ପ୍ରୟୋଗରେ ଦର୍ଶକକୁ ଭାରି କରିବା ପରିବର୍ତ୍ତେ ସେ ଛୋଟ, ସୂଚନାଧର୍ମୀ ସଂଳାପ ମାଧ୍ୟମରେ ଚରିତ୍ର ମାନଙ୍କର ମନସ୍ତାତ୍ତ୍ୱିକ ବର୍ଣ୍ଣନା କରି ଦର୍ଶକ ମାନଙ୍କ ନିକଟରେ ସହଜ ହେବାର ଚେଷ୍ଟା କରିଛନ୍ତି ଏବଂ ସଫଳ ହୋଇଛନ୍ତି। ଚରିତ୍ର ଓ ସଂଳାପ ଉପସ୍ଥାପନ କ୍ଷେତ୍ରରେ ପ୍ରସିଦ୍ଧ ଇଂରେଜ୍ ନାଟ୍ୟକାର ଜର୍ଜ ବର୍ଣ୍ଣାଡ଼ଶ ଯେଉଁ ରୀତି ଅନୁସରଣ କରି ସମାଜକୁ ସଚେତନ କରିବାର ପ୍ରୟାସ କରିଥିଲେ, ନାଟ୍ୟକାର ନାରାୟଣ ସାହୁ ମଧ୍ୟ ସମ ଭାବରେ ନିଜର ଉପଯୁକ୍ତ ସଂଳାପ-ବିନ୍ୟାସ ଦ୍ୱାରା ନିଜର ସମାଜ ସଚେତନ ଦୃଷ୍ଟିଭଙ୍ଗୀଟିକୁ ସ୍ୱଷ୍ଟ କରିଛନ୍ତି। ପ୍ରକୃତପକ୍ଷେ ସଂଳାପହିଁ ସମଗ୍ର ନାଟକର ଦ୍ୱନ୍ଦ୍ୱ, ଗତି, ଉତ୍କଣ୍ଠାକୁ ସଠିକ ମାର୍ଗରେ ପରିଚାଳିତ କରି ନାଟକକୁ ଚରମସୀମାକୁ ଉନ୍ନିତ କରାଇଥାଏ। ନାଟ୍ୟକାର ଡ.ସାହୁଙ୍କର ବିଷୟ ପ୍ରାସଙ୍ଗିକ ସଂଳାପ ଖୁବ୍ ମାର୍ଜିତ, ସଂଯତ ଓ ସଂକ୍ଷିପ୍ତ । ଫଳତଃ ନାଟକୀୟ ସଫଳତା ପାଇଁ ଏହା ପଥ ଉନ୍ମୁକ୍ତ କରିଛି।

ନାଟକରେ ପ୍ରୟୋଗ ହୋଇଥିବା ସଂଳାପରୁହିଁ ଆମେ ସାଂସ୍କୃତିକ ଅବକ୍ଷୟ ତଥା ସାମାଜିକ ବାସ୍ତବତାର ଚିତ୍ରକୁ ଅନୁଭବ କରୁ । ଅତି ଜୀବନ୍ତ ଭାବରେ କେତେକ ଉଦାହରଣ ଏଠାରେ ଲକ୍ଷଣୀୟ।

ବାଇମୁଣ୍ଡି- ମଣିମା, ଏଇଟା କି ପ୍ରକାର ନାଚ ? ଏସବୁ ତ ଆମ ବେଳେ ନଥିଲା ।

ରାଜା- ସମୟ ବଦଳିଛି । ମଣିଷମାନେ ବଦଳିବା ସ୍ୱାଭାବିକ ।

ବାଇମୁଣ୍ଡି- ମଣିମା ଏଗୁଡ଼ାକ କି ଉଦଣ୍ଡ ନାଚ ? ମୁଁ ଏଥିରେ କିଛି ବୁଝିପାରୁନି

ରାଜା- ଦୂରରୁ ରହି କେବଳ ନିରୀକ୍ଷଣ କରିବା ଛଡ଼ା ଅନ୍ୟ ଗତି ଆମର ନାହିଁ ।

ବାଇମୁଣ୍ଡି- ସେମାନେ ନବୀନ ଯୁଗର ଦାୟାଦ । ଆମ କଥା କେବେବି ଶୁଣିବେନି

(ଦ୍ୱିତୀୟ ଦୃଶ୍ୟ)

× × ×

ରହିମ୍- ବମ୍ବେ ବୋମା ବିସ୍ଫୋରଣରେ ପାଂଚଶହ ମୃତ ଏବଂ ଦୁଇ ଶହ ଆହତ।

ଜନ୍- ଆଉ କିଛି ନୂଆ ଖବର ?

ରହିମ୍- ବାରିପଦା ଅଗ୍ନିକାଣ୍ଡରେ ଦୁଇଶହରୁ ଅଧିକ ଭକ୍ତଙ୍କ ମୃତ୍ୟୁବରଣ । ଆଃ ଏତେ ଗୁଡ଼ାଏ ଲୋକ ମରିଗଲେ ।

ଜନ୍- ହାୱାଲାରେ କାହା ନାଁ ବାହାରିଛି ନା ନାହିଁ?

ରହିମ୍- ହଁ ପୂର୍ବତନ କେନ୍ଦ୍ରମନ୍ତ୍ରୀ ହାୱାଲା ମାମଲାରେ ଗିରଫ । ମନ୍ତ୍ରୀ ପଡ଼ିବନି ଆଉ କିଏ ପଡ଼ିବ? (ପଂଚମ ଦୃଶ୍ୟ)

ପାଠକେ ନିଶ୍ଚୟ ଏହି ସଂଳାପର ପୂର୍ବ ଆଲୋଚନାର ଗୁରୁତ୍ୱ ଅନୁଭବ କରୁଥିବେ। ଏହି ତୀର୍ଯ୍ୟକ ତଥା ବାସ୍ତବଧର୍ମୀ ସଂଳାପ ନାଟ୍ୟକାରଙ୍କର ମୁକ୍ତ ତଥା ଦୃଢ ମାନସିକତାର ସଫଳ ପରିପ୍ରକାଶ। ସଂକ୍ଷିପ୍ତ ତଥା ତୀର୍ଯ୍ୟକ ସଂଳାପ ଗୁଡ଼ିକୁ ଦର୍ଶକ କଟକରେ ବିଭିନ୍ନ ସାମାଜିକ ସମସ୍ୟା ସଂପର୍କରେ ପରିଚିତ ହୁଏ।

ବହୁ ପୁରା କାଳରୁ କଟକ ଆମ ସାମାଜିକ, ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର ସାଜିଛି। ସମୟାନ୍ତରରେ ତାର ଏଇ ବିଖଣ୍ଡିତ ଚିତ୍ର ଦର୍ଶକକୁ ବେଶ ମର୍ମାହତ କରେ। ଉପସ୍ଥାପିତ ଘଟଣାଗୁଡ଼ିକ ଭିତରେ ବଟି ଆଦାୟକୁ କେନ୍ଦ୍ରକରି ଉପୁଜିଥିବା ସମସ୍ୟା, ରାଜନୈତିକ ଦୁର୍ନୀତି ଓ ତଜ୍ଜନିତ ସମସ୍ୟା, ଦୁର୍ନୀତି, ମ୍ୟାଲେରିଆ ନିରାକରଣ କାର୍ଯ୍ୟକ୍ରମର ବ୍ୟର୍ଥତା ଗୁଣ୍ଡାଗିରି ଭଳି ବହୁ ଘଟଣା ଓ ସମସ୍ୟାରେ ବିଜଡ଼ିତ ହୋଇ ସୁବର୍ଣ୍ଣନଗର କଟକ ତା'ର ହଜାର ବର୍ଷ ପୂର୍ତ୍ତି ଉତ୍ସବ ପାଳନ କରିବାକୁ ଯାଉଛି। ମାତ୍ର ନାଟ୍ୟକାର ଡ.ସାହୁ ମହାକାଳ ଫଳ ଭଳି କଟକର ବାହ୍ୟକଥନ ଭିତରେ ରହିଥିବା ମହାକାଳ ଫଳ କଥାହିଁ କହିଛନ୍ତି। ସମାଜକୁ ସୁସ୍ଥ ସୁନ୍ଦର ଦୁର୍ନୀତିମୁକ୍ତ କରି ଗଢିବାରେ ଡ. ସାହୁଙ୍କ ଜୀବନାଦର୍ଶର ଏକ ମୂଳ ଲକ୍ଷ୍ୟ ଯାହା ତାଙ୍କ ନାଟକ ଗୁଡ଼ିକରେ ପ୍ରତିଫଳିତ। 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱର ଅବହେଳିତ ଅସହାୟ ଓ ମଣିଷ ମାନଙ୍କ ପାଇଁ ସାଧାରଣ ପାଲଟି ଯାଇଛନ୍ତି। ତାଙ୍କର ନାଁ ନେଇ ସମାଜରେ ଘଟୁଥିବା ଅସଂଗତି ଦୂରୀକରଣ ହିଁ ନାଟ୍ୟକାରଙ୍କର ଲକ୍ଷ୍ୟ। 'ଓ ସବାଶେଷ ଲୋକ' ନାଟକରେ ମଧ୍ୟ ସମାନ ପ୍ରଚେଷ୍ଟା। ଏଥିରେ ହିଁ ଦଳିତ ନିଷ୍ପେସିତ ସାଧାରଣ ଜନତାଙ୍କ ନିମନ୍ତେ, ନିଜର ଦୃଢ ଯୁକ୍ତି ଉପସ୍ଥାପନ କରିଛନ୍ତି ନାଟ୍ୟକାର।

ସାଂପ୍ରତିକ ଜନଜୀବନ ବ୍ୟସ୍ତ, ବିବ୍ରତ ଓ ଯନ୍ତ୍ରଣା ଜର୍ଜର ନାଟ୍ୟକାର ନାରାୟଣ ସାହୁ ଏହି ଯନ୍ତ୍ରଣା ଜର୍ଜର ଜୀବନ ଭିତରୁ ସାଧାରଣ ଜନତାର ମୁକ୍ତି ପ୍ରୟାସୀ। ବୌଦ୍ଧିକତାର ବନ୍ଧନ ଭିତରୁ ମୁକ୍ତ ହୋଇ ସାଧାରଣ ଦର୍ଶକ ମାନଙ୍କୁ ମାଟିର ଚେତନା ନେଇ ଫେରି ଆସିଥିବ। ହାତ ଗଣତି ଉତ୍ତର ଆଧୁନିକ କାଳର ନାଟ୍ୟକାର ମାନଙ୍କ ଭିତରେ ନାଟ୍ୟକାର

ଡ. ସାହୁ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ଓ ପରିଚୟ ସୃଷ୍ଟି କରିଛନ୍ତି ନିଜର ନାଟକ ମାଧ୍ୟମରେ। 'ସୁବର୍ଣ୍ଣ ସକାଳ' ନାଟକ ସୁବର୍ଣ୍ଣ ମୋହରେ ବିପଦକୁ ବରଣ କରି ମୋହିତ ହୋଇନି କଇଁଚ ସୁବର୍ଣ୍ଣର ଉଜ୍ଜ୍ୱଳତାରେ ଝଟ୍‌କେଇଦେବା ପାଇଁ ସେ ଏକ ମଧୁର ସକାଳର ପରିକଳ୍ପନାରେ ଆଶାବାଦୀ। ପୂର୍ଣ୍ଣତାର ମନ୍ତ୍ରରେ ଅଭିମନ୍ତ୍ରି 'ସୁବର୍ଣ୍ଣ ସକାଳ'ର ଚରିତ୍ର ମାନେ କେବଳ କଟକ ନଗର ଅଧିବାସୀ ନୁହଁନ୍ତି ପ୍ରତ୍ୟେକ ସହରର ଦର୍ଶକକୁ ଆତ୍ମ ବିଶ୍ଲେଷଣ କରିବାକୁ ବାଧ୍ୟ କରନ୍ତି। ସମାଜର ପ୍ରତ୍ୟେକ ବର୍ଗରେ ସୃଷ୍ଟି ହୋଇଥିବା ଅନିଶ୍ଚିତତା ଓ ଅଶାନ୍ତିର ବାତାବରଣକୁ ବଦଳେଇଦେବାପାଇଁ ନାଟ୍ୟକାରଙ୍କର ଏହି ମହତ ପ୍ରଚେଷ୍ଟା ତରୁଣ ପିଢିର ନାଟ୍ୟକାର ମାନଙ୍କ ପାଇଁ ଏକ ବିପୁଳ ସନ୍ଦେଶ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ। ଯେଉଁ ସନ୍ଦେଶ ବାଣ୍ଟିବ ସମାଜର ପ୍ରତ୍ୟେକ ବର୍ଗର ବ୍ୟକ୍ତି ଆତ୍ମ ସଚେତନ ହେବେ, ଫଳରେ କେବଳ କଟକ ନଗର ନୁହେଁ ସମଗ୍ର ପୃଥିବୀର ବୀଭତ୍ସତା ଦୂର କରି ପୃଥିବୀବାସୀ ସୁବର୍ଣ୍ଣ ସକାଳକୁ ଉପଭୋଗ କରିବେ।

ବାବା ଭୈରବାନନ୍ଦ ମହାବିଦ୍ୟାଳୟ
ଚଣ୍ଡିଖୋଲ

●●●

# ସାମାଜିକ ସମସ୍ୟାମୂଳକ ନାଟକ 'କ୍ରାନ୍ତି' : ଏକ ଆଲୋଚନା

ଡ. ଶରତ କୁମାର ଜେନା

ସାହିତ୍ୟ ହେଉଛି ସମୟ ଓ ସମାଜ ମଧ୍ୟରେ ସେତୁ ସ୍ୱରୂପ । ସମୟର ପ୍ରଭାବରେ ସମାଜରେ ଦେଖାଦିଏ ପରିବର୍ତ୍ତନ । ବହୁ ସାମ୍ରାଜ୍ୟର ଉତ୍‌ଥାନ -ପତନ, ବହୁ ଦାର୍ଶନିକ, ସାଂସ୍କୃତିକ-ରାଜନୈତିକ ଚିନ୍ତାଧାରାର ପ୍ରଭାବ ସାମାଜିକ ଜୀବନ ତଥା ମଣିଷର ବ୍ୟକ୍ତିଗତ ଚିନ୍ତାଧାରାରେ ସୃଷ୍ଟି କରେ ଆଲୋଡ଼ନ । ଏହି ସମସ୍ତ ପରିବର୍ତ୍ତନ ଓ ଆଲୋଡ଼ନର କ୍ରିୟା, ପ୍ରତିକ୍ରିୟା ସାହିତ୍ୟ ମାଧ୍ୟମରେ ହୁଏ ପ୍ରତିଫଳିତ । ଏ ପରିପ୍ରେକ୍ଷୀରେ ଦେଖିବାକୁ ଗଲେ ଗତ ତିନିଦଶନ୍ଧି ଭିତରେ ଓଡ଼ିଶାର ସାମାଜିକ ଓ ରାଜନୈତିକ ଜୀବନରେ ଯେଉଁ ସମସ୍ୟାମାନ ଦେଖାଦେଇଛି, ସେସବୁ ସମସ୍ୟାକୁ ଉପସ୍ଥାପିତ କରିବାକୁ ଭୁଲିନାହାନ୍ତି ଆମ ସାହିତ୍ୟିକମାନେ। ତେବେ ସାହିତ୍ୟର ଅନ୍ୟାନ୍ୟ ବିଭବ ଅପେକ୍ଷା ନାଟକରେ ସାଧାରଣ ଲୋକମାନଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ରହୁଥିବାରୁ ସାମାଜିକ ସମସ୍ୟାଗୁଡ଼ିକୁ ଖୁବ୍ ସୁନ୍ଦର ଭାବରେ ଉପସ୍ଥାପିତ କରାଯାଇଥାଏ । ସେଭଳି ଏକ ସମସ୍ୟାର ବାସ୍ତବ ରୂପାୟନ ହିଁ ନାଟ୍ୟକାର ଡ. ନାରାୟଣ ସାହୁଙ୍କ ରଚିତ ନାଟକ 'କ୍ରାନ୍ତି' ।

ଓଡ଼ିଶାର କୋରାପୁଟ, ରାୟଗଡ଼ା, ମାଲକାନଗିରି, ଲକ୍ଷ୍ମୀପୁର, ମୋଟୁ ଆଦି ଅଞ୍ଚଳରେ ଗତ ତିନିଦଶନ୍ଧି ଧରି ନକ୍ସଲବାଦୀ ସମସ୍ୟା ଦେଖାଦେଇଛି । ନକ୍ସଲବାଦୀଙ୍କ ଗୁଳିରେ ପ୍ରାଣ ହରାଇଛନ୍ତି ଅନେକ ନେତା, ପୋଲିସ ଅଫିସର, ସରକାରୀ କର୍ମଚାରୀ ଏବଂ ସାଧାରଣ ନେତା । ସରକାରଙ୍କ ନକ୍ସଲ ଦମନମୂଳକ ନୀତି ସତ୍ତ୍ୱେ ବଢ଼ି ବଢ଼ି ଚାଲିଛି ସେମାନଙ୍କର କାର୍ଯ୍ୟକଳାପ । ତେବେ ଏହାର ପ୍ରକୃତ କାରଣ କ'ଣ ତାହା କେହି ଅନ୍ୱେଷଣ କରନ୍ତି ନାହିଁ, ଅଥଚ 'କ୍ରାନ୍ତି' ନାଟକ ମାଧ୍ୟମରେ ଡକ୍ଟର ସାହୁ ଖୋଜିଛନ୍ତି ଏହାର କାରଣ ଓ ନିରାକରଣ । ଲକ୍ଷ୍ୟ କଲେ ଦେଖିବା, ସରକାରଙ୍କ ବିଭିନ୍ନ ଯୋଜନା ସେ ଅଞ୍ଚଳର ସାଧାରଣ ଆଦିବାସୀମାନଙ୍କ ନିକଟରେ ପହଞ୍ଚି ପାରୁନାହିଁ । ସବୁ ହେଉଛି ବାଟମାରଣା । କଳାବଜାରୀ, ମୁନାଫାଖୋର, ଟାଉଟର, ରାଜନେତା ଓ ସରକାରୀ କର୍ମଚାରୀମାନେ ଠକୁଛନ୍ତି ସେ ଅଞ୍ଚଳର ନିରୀହ ଆଦିବାସୀମାନଙ୍କୁ । ବାଧକ ସାଜୁଛନ୍ତି ସେମାନଙ୍କ ସାମାଜିକ ଜୀବନର ବିକାଶରେ।

ଏଥିପାଇଁ ହିଁ ସେମାନେ ନକ୍ସଲପନ୍ଥୀ ସାଜି ନିଜ ଅଞ୍ଚଳର ଉନ୍ନତି ପାଇଁ, ଜଙ୍ଗଲି ମେହେନତି ମଣିଷର ଅଧିକାର ପାଇଁ ଦାବୀ କରନ୍ତି, ହାତରେ ବନ୍ଧୁକ ଧରନ୍ତି । ଅନ୍ୟାୟୀ ଅତ୍ୟାଚାରୀମାନଙ୍କୁ ମାରନ୍ତି । ଏହିଭଳି ଏକ ବାସ୍ତବବାଦୀ ସାମାଜିକ ସମସ୍ୟା ସଂପର୍କରେ ଓଡ଼ିଆ ନାଟକରେ ଉଲ୍ଲେଖ ରହିଥିଲେ ମଧ୍ୟ ପ୍ରଥମ ଥର ପାଇଁ ନାଟ୍ୟକାର ନାରାୟଣ ସାହୁ ଏଭଳି ସମସ୍ୟାର ଉତ୍ସ ଖୋଜିବା ସହ ସମାଧାନର ରାସ୍ତା ଦେଖାଇଛନ୍ତି ନାଟକ 'କ୍ରାନ୍ତି'ରେ ।

ପାରଂପରିକତା ଓ ପରୀକ୍ଷାଧର୍ମୀତାର ମଧୁର ସମନ୍ୱୟରେ ସାଂପ୍ରତିକ ସମୟରେ ନାଟକ ରଚନା କରୁଥିବା ନାଟ୍ୟକାର ଡ. ନାରାୟଣ ସାହୁଙ୍କ 'କ୍ରାନ୍ତି' ନାଟକଟି ସାମାଜିକ ବାସ୍ତବତାର ତଥା ସାଂପ୍ରତିକ ସମସ୍ୟାର ଏକ ସଫଳ ସ୍ୱାକ୍ଷର । ପନ୍ଦରଟି ଦୃଶ୍ୟରେ ବିଭକ୍ତ ଏହି ନାଟକର କଥାବସ୍ତୁ ଜଙ୍ଗଲରେ ବାସ କରୁଥିବା ଅବହେଳିତ ମଣିଷର ବିଦ୍ରୋହୀ ମାନସିକତା ଉପରେ ପର୍ଯ୍ୟବେସିତ । ନାଟକର ନାୟକ ଜଗତ ପ୍ରକାଶ ଜଣେ ଶିକ୍ଷିତ ବିପ୍ଳବୀ । ସମାଜର ବଡ଼ପଣ୍ଡା ଓ ରାଜନେତାମାନେ, ଯେଉଁମାନେ ଜଙ୍ଗଲର ସରଳ ନିରୀହ ଆଦିବାସୀମାନଙ୍କୁ ଶୋଷଣ କରନ୍ତି, ଅନ୍ୟାୟ ଅତ୍ୟାଚାର କରନ୍ତି, ସେମାନଙ୍କ ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛି । ଆଦିବାସୀମାନଙ୍କୁ ସଂଗଠିତ କରି ଶୋଷକମାନଙ୍କୁ ହତ୍ୟା କରିବା ସହ ପୋଲିସ ଓ ସରକାରୀ କର୍ମଚାରୀମାନଙ୍କୁ ଚେତାବନୀ ଶୁଣାଇଛି । ସମାଜରେ ପ୍ରଚଳିତ ବିଶୃଙ୍ଖଳିତ ଆଇନ ବ୍ୟବସ୍ଥା ସଂପର୍କରେ ସେ କହିଛି- "ଦେଶକୁ ପ୍ରଗତି ପଥରେ ଆଗେଇ ନେବାକୁ ହେଲେ ପ୍ରଥମେ ଆଇନକୁ ସଜାଡ଼ିବାକୁ ପଡ଼ିବ । ଆଉ ତା'ପରେ ଯାଇ ଶାସନ ସଂସ୍କାର ସମ୍ଭବ । ଏ କାମ ଯଦି ସରକାର, ଶାସନକଳ ନ କରେ, ତେବେ ହଜାର ହଜାର ଖଟିଖିଆ ମେହେନତି ଜନତା ହିଁ ତା'ର ଉତ୍ତର ଦେବେ ।"(ପୃ-୧୮) ସେଥିପାଇଁ ଆଇନକୁ ନିଜ ହାତକୁ ନେଇ ସେ ଶୋଷଣମାନଙ୍କୁ ହତ୍ୟା କରିଛି । ସାହୁକାର, କଣ୍ଟ୍ରାକ୍ଟର, ସରକାରୀ ତସ୍କରମାନଙ୍କୁ ଉଚିତ ଜବାବ ଦେବା ପାଇଁ ନକ୍ସଲବାଦୀ ସାଜିଛି । ଆଦିବାସୀମାନଙ୍କୁ ପ୍ରେରଣା ଦେବା ନିମନ୍ତେ ପିଡ଼ିଏଫ୍ ସଂଗଠନ ଗଢ଼ିଛି । ହତ୍ୟା ଅପରାଧରେ ଜଡ଼ିତ ଜଗତ ପ୍ରକାଶକୁ ଧରିବା ପାଇଁ ପୋଲିସ୍ ପକ୍ଷରୁ ପାଞ୍ଚଲକ୍ଷ ଟଙ୍କାର ପୁରସ୍କାର ରାଶି ଘୋଷଣା କରାଯାଇଛି । ପୁରସ୍କାର ଲୋଭରେ ଜଣେ ଆଦିବାସୀ ଜଗତ ପ୍ରକାଶକୁ ପୋଲିସ୍ ହାତରେ ଧରାଇ ଦେଇଛି । ଜଗତ ପ୍ରକାଶ ଜେଲ୍ ଯାଇଛି । ଜେଲ୍‌ରେ ବି ଜେଲରଙ୍କ ଅମାନୁଷିକ ଆଚରଣ ବିରୁଦ୍ଧରେ ବିଦ୍ରୋହ କରିଛି । ଶେଷରେ ତାର ବିଚାର ହୋଇ ଫାଶୀ ଦଣ୍ଡାଦେଶ ମିଳିଛି । ଫାଶୀ ଦଣ୍ଡାଦେଶକୁ ସେ ଭୟ କରିନାହିଁ ; ବରଂ ଗର୍ବ ଅନୁଭବ କରିଛି । ଲୋକମାନଙ୍କୁ ହତ୍ୟା କରି ତିଳେମାତ୍ର ଅନୁଶୋଚନା କରିନାହିଁ । ତା'ମତରେ- "ପଶୁମାନଙ୍କ ଭିତରେ ବାଘ ହେଉଛି ଭୟଙ୍କର । ବାଘକୁ କାବୁ କରିବା ପାଇଁ ଜଙ୍ଗଲରେ କିଛି କାନୁନ୍ ରହିଛି । କିନ୍ତୁ ଏ ସମାଜରେ ଏମିତି କିଛି ମଣିଷ ଅଛନ୍ତି, ଯେଉଁମାନେ ବାଘଠାରୁ ବି ଭୟଙ୍କର । ସେମାନଙ୍କର ବିନାଶ ନ ହେଲା

ପର୍ଯ୍ୟନ୍ତ ଏ ସମାଜରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ । ମାନବଜାତିର ମଙ୍ଗଳ ପାଇଁ ଯଦିଓ ଏ ଜାନୁଆର୍ ଗୁଡ଼ାକୁ ଶିକାର କରାଯାଏ, ତେବେ କ୍ଷତି କ'ଣ ?"(ପୃ ୧୯)

ନିଜ ଅଞ୍ଚଳର ଦଳିତ, ନିଷ୍ପେଷିତ, ଜଙ୍ଗଲି ଆଦିବାସୀଙ୍କ ପାଇଁ, ମଣିଷର ଅଧିକାର ପାଇଁ ଲଢ଼େଇ କରି ଫାଶୀଖୁଣ୍ଟରେ ଝୁଲିବାକୁ ସେ ଗୌରବାନ୍ୱିତ ମନେକରିଛି । ତା'ମତରେ- "ଗୋଟିଏ ବିପ୍ଳବୀର ମୃତ୍ୟୁରେ ବିପ୍ଳବ କେବେ ଦବିଯାଏ ନାହିଁ । ବିପ୍ଳବ ଏମିତି ଏକ ଆକର୍ଷଣ ଅଗ୍ନିଶିଖା, ଯାହା ମୌସୁମୀର ଅପେକ୍ଷା ରଖେ । ହେଲେ ମଣିଷର ନୁହେଁ ।"(ପୃ- ୭୫) ବିପ୍ଳବୀ ଜଗତପ୍ରକାଶ ବିପ୍ଳବ ଉପରେ ବିଶ୍ୱାସ ରଖି ପୋଲିସ୍‌ର ନିର୍ମମ ପ୍ରହାରକୁ ଖାତିର କରିନାହିଁ । ଫାଶୀରୁ ରକ୍ଷା ପାଇବା ପାଇଁ କ୍ଷମା ମାଗିନାହିଁ । ସେଥିପାଇଁ ତାର ଅନମନୀୟ ବଜ୍ର ବ୍ୟକ୍ତିତ୍ୱ ଆଗରେ ସମସ୍ତେ ତରଳି ଯାଆନ୍ତି, ଅନୁତପ୍ତ କରନ୍ତି । ଏପରିକି ତାକୁ ଆରେଷ୍ଟ କରିଥିବା ପୋଲିସ୍ ଇନ୍‌ସ୍ପେକ୍ଟର ଓ ତା' ଉପରେ ଅତ୍ୟାଚାର କରୁଥିବା ଜେଲର ସମସ୍ତେ ତା'ର ବ୍ୟକ୍ତିତ୍ୱ ଆଗରେ ବଦଳି ଯାଇଛନ୍ତି । ତାକୁ ଫାଶୀ ଦଣ୍ଡାଦେଶରୁ ମୁକ୍ତି ଦେବା ପାଇଁ ପ୍ରୟାସ କରିଛନ୍ତି ।

ନାଟ୍ୟକାର ଜଗତପ୍ରକାଶ ଚରିତ୍ର ଭିତରେ ମାନବିକତା, ସାହସ, ସେବା, ସତ୍ୟନିଷ୍ଠତା, ଦେଶାତ୍ମବୋଧତା, ଆଧ୍ୟାତ୍ମିକତା ଆଦି ମହନୀୟ ଗୁଣ ଭରିଦେଇଛନ୍ତି, ଯାହା ଆଜିର ଦିଗହରା ସମାଜ ପାଇଁ ଆବଶ୍ୟକତା । ଜେଲ ଭିତରେ ରହି ସେ ପ୍ରତିଦିନ ଯୋଗାସନ ପ୍ରାଣାୟାମ କରେ । ଭଗବତ୍ ଗୀତା ପାଠକରେ ଓ ତାର ମହାତ୍ମ୍ୟ ଜେଲ୍‌ର ଅନ୍ତେବାସୀମାନଙ୍କୁ ଶୁଣାଏ । ଜଣେ ଭଲ ମଣିଷର ଯେତେସବୁ ଗୁଣାବଳୀ ତା'ଆଗରେ ନିହିତ । ପ୍ରାଚୀନ ପରଂପରା, ସଂସ୍କୃତି, ପୁରାଣ ଶାସ୍ତ୍ର ଆଦିକୁ ଭଲ ପାଇବା ସହ ଦେଶ ଓ ମଣିଷର ବିକାଶ ପାଇଁ ସେ ସର୍ବଦା ତତ୍ପର । ତା'ପାଇଁ ବଦଳି ଯାଏ ଜେଲ୍‌ର ପରିବେଶ । ତା'ର ମହନୀୟ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ ହେଉଛି ଫାଶୀଖୁଣ୍ଟରେ ଚଢ଼ିବା ପୂର୍ବରୁ ନିଜ ଆଖି ଦୁଇଟିକୁ କ୍ରାନ୍ତିକୁ ଦାନ କରିବା । ଦୁର୍ଘଟଣାରେ ଅନ୍ଧ ହୋଇଯାଇଥିବା କ୍ରାନ୍ତି ଜଗତ ପ୍ରକାଶର ଆଖିରେ ଦୁନିଆକୁ ଦେଖିଛି । ତା'ର ଏଭଳି ମହାନ ଗୁଣ ଆଗରେ ଶୋଷଣକାରୀଙ୍କୁ ହତ୍ୟା କରିଥିବା ଦୋଷ ଫିକା ପଡ଼ିଯାଏ । ତାର ଅନ୍ୟ ଏକ ଗୁଣ ହେଉଛି ଯେ ସେ ଆଦିବାସୀ ଯୁବତୀ ତୁଳସୀକୁ ପତ୍ନୀ ଭାବରେ ସ୍ୱୀକାର କରିଛି । ନାଟକର ଶେଷରେ ଯେତେବେଳେ ଜଗତ ପ୍ରକାଶ ଫାଶୀଖୁଣ୍ଟରେ ଝୁଲୁଛି ସେତେବେଳେ ତୁଳସୀର ଛୁଆ ଜନ୍ମ ହୋଇଛି । ଅଗଷ୍ଟ ପନ୍ଦର ତାରିଖ ସକାଳେ ସେତ ଯେପରି ସ୍ୱାଧୀ ତାର ନୂଆ ସୂର୍ଯ୍ୟାଲୋକ ଦୁନିଆର ଯେତେସବୁ ଅନ୍ୟାୟ ଅତ୍ୟାଚାରର ପରାଧୀନତାକୁ, ଅନ୍ଧାରକୁ ହଟେଇ ଆଶାର ଆଲୁଅ ଢ଼ାଳିଦେଇଛି ।

ଜଗତପ୍ରକାଶର ବାପା ସନାତନ ଚରିତ୍ରରେ ଥିବା ସ୍ୱାଭିମାନ ଓ ଆତ୍ମଗୌରବ କୌଣସି ଦେଶପ୍ରେମୀ ଚରିତ୍ରଠାରୁ କମ୍ ନୁହେଁ । ନିଜର ପୁଅକୁ ଫାଶୀ ପାଇବାକୁ ସେ ଗର୍ବ ଅନୁଭବ କରିଛି । ପୁଅର ନିର୍ଭୀକପଣରେ ବାପା କହିଛ, "I am proud of my son"

କେତେଜଣଙ୍କୁ ଏ ସୌଭାଗ୍ୟ ମିଳେ । ତୋ ବୋଉଟା ଭାଙ୍ଗିପଡ଼ିଛି । ମୁଁ ତାକୁ ବୁଝେଇ ଦେଇଛି । ମୋ ପୁଅ ବାଘ ଶିକାର କରିଛି । ମଣିଷ ଖିଆ ବାଘ । ପଶୁହତ୍ୟା ଅଭିଯୋଗରେ ଯଦି ତାକୁ ଫାଶୀ ମିଳେ କ୍ଷତି କ'ଣ ?' ଏଠାରେ ଗୋଟେ ଜାତିପାଇଁ ଓ ସମାଜ ପାଇଁ ପୁଅର ବଳିଦାନ ଦେବାକୁ ବି ପଛଘୁଞ୍ଚା ଦେଇନାହିଁ ବାପା । ଏହାବ୍ୟତୀତ ମାଆ ଚରିତ୍ର ସବୁବେଳେ ମମତାର ବନ୍ଧନ ଭିତରେ ଆଉଟୁ ପାଉଟୁ ହୋଇଛି । ତୁଳସୀକୁ ଘରକୁ ଆଣି ବୋହୂର ମାନ୍ୟତା ଦେଇଛି । ନାଟକର ପ୍ରତ୍ୟେକ ଚରିତ୍ର ଶେଷଆଡ଼କୁ ମାନବିକତାର, ବିକାଶର ଓ ଆଶାର ପଥିକ ସାଜିଛନ୍ତି । ଏକ ଶୋଷଣମୁକ୍ତ, ସ୍ୱାଧୀନ ଓ ସୁଖଶାନ୍ତିମୟ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି ।

ନାଟକର ସଂଳାପ ବେଶ୍ ଉଚ୍ଚକୋଟୀର । ବଳିଷ୍ଠ ପାତ୍ରୋମୁଖୀ ସଂଳାପ ମାଧ୍ୟମରେ ନାଟ୍ୟକାର ନିଜର ଅନୁପମ କଳାକୁଶଳତାର ପ୍ରମାଣ ଦେଇଛନ୍ତି । ଆଦିବାସୀ 'ମାଣ୍ଡିଆ' ଚରିତ୍ର କୋରାପୁଟ ଅଞ୍ଚଳର ଦେଶୀୟା ଭାଷାରେ କଥା କହିଛି । ଯଥା- "ଜଗତ୍ ସିନା ଜେଲ୍ ଗାଲାର ଆଚେ । ମୁଇ ତ ଆଚି । ମୁଇ ଇତି ରହିଲା ଯାକେ ତମର ଦୁଇ ଲୋକର ବାଇଟା ଅଭାବ ନ ହେକେ ଦେ ।" ଗୋଟେ ଆଞ୍ଚଳିକ ପୃଷ୍ଠଭୂମି ଉପରେ ରଚିତ ନାଟକରେ ଆଞ୍ଚଳିକ ଭାଷାର ପ୍ରୟୋଗ ନାଟକକୁ ଆହୁରି ବଳିଷ୍ଠ କରେ ।

ଯଥାର୍ଥରେ ଦେଖିଲେ ମନେହୁଏ, ନାଟ୍ୟକାର କୋରାପୁଟ ଅଞ୍ଚଳର ବାସ୍ତବ ସ୍ଥିତି ଓ ସମସ୍ୟା ସଂପର୍କରେ ସଚେତନ ହୋଇ ନାଟକଟି ରଚନା କରିଛନ୍ତି । ଜଙ୍ଗଲ ଅଞ୍ଚଳରେ କଳକାରଖାନା କରିବା ନାଆଁରେ ଜଙ୍ଗଲ ଧ୍ୱଂସ କରିବା ଓ ନିରୀହ ଆଦିବାସୀମାନଙ୍କୁ ଶୋଷଣ କରିବା ସହ ସେମାନଙ୍କ ଧର୍ମ ଓ ସଂସ୍କୃତିକୁ ନଷ୍ଟ କରିବାରେ ନାଟ୍ୟକାର ମ୍ରିୟମାଣ । ପ୍ରାକୃତିକ ସମ୍ପଦ ଓ ସଂସ୍କୃତି ନଷ୍ଟ ହେଲେ ଗୋଟେ ଜାତିର ଅସ୍ତିତ୍ୱ ନଷ୍ଟ ହୋଇଯାଏ । ତେଣୁ ଏହାର ସୁରକ୍ଷା ପାଇଁ ନାଟକରେ ଏକ ସଚେତନ ପ୍ରୟାସ ରହିଛି । ବିଶେଷ କରି ନାଟକରେ ନକ୍ସଲ ସମସ୍ୟାର ମୂଳ ଉତ୍ସ ଓ କାରଣକୁ ଦର୍ଶାଇବା ସହ ତା'ର ନିରାକରଣର ରାସ୍ତା ବି ଦେଖାଇଛନ୍ତି। ଗାନ୍ଧୀ ଦର୍ଶନଠାରୁ ଭଗବତ୍ ଦର୍ଶନ ପର୍ଯ୍ୟନ୍ତ ଜଣେ ମଣିଷର ଆଧ୍ୟାତ୍ମିକ ବିକାଶ ଓ ସାମାଜିକ ବିକାଶର କଥା କହିଛନ୍ତି । ଜାଗରଣ ମାଧ୍ୟମରେ ହୃଦୟ ପରିବର୍ତ୍ତନର କଥା କହିଛନ୍ତି । ସେବା, ସଂସ୍କାର, ସହଯୋଗିତା ତଥା ପ୍ରାଚୀନ ଓ ଆଧୁନିକ ସମନ୍ୱୟରେ ଏକ ସମସ୍ୟାଧର୍ମୀ ବିଷୟକୁ ଅତି ସଚେତନତାର ସହ ପରିବେଷଣ କରିଛନ୍ତି । ହୃଦୟ ପରିବର୍ତ୍ତନ ମାଧ୍ୟମରେ ନାଟ୍ୟକାର ଏକ ଶୋଷଣମୁକ୍ତ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି । 'କ୍ରାନ୍ତି' ନାଟ୍ୟକାରଙ୍କର ଶକ୍ତିଶାଳୀ ସୃଜନଶୀଳ ପ୍ରତିଭାର ପରିଚୟ ବହନ କରେ ।

ଆସିଷ୍ଟାଣ୍ଟ ପ୍ରଫେସର, ଓଡ଼ିଆ ବିଭାଗ
ବିଶ୍ୱଭାରତୀ, ଶାନ୍ତିନିକେତନ

●●●

# ଏକାକୀତ୍ୱର କରୁଣ ଦୀର୍ଘଶ୍ୱାସ : ଅପରାହ୍ନର ଅବଶୋଷ

ସୁବ୍ରତ କୁମାର ଦାସ

କଳା ପରିବର୍ତ୍ତନଶୀଳ, ସମୟ ଓ ଯୁଗରୁଚି ଅନୁସାରେ ଏହା ବଦଳିଥାଏ । ବହୁବିଧ କଳାର ଚାରୁ ଚିତ୍ରଶାଳା ନାଟକ ଏଥିରୁ ବାଦ ପଡ଼ିନାହିଁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଶ୍ୱ ସାହିତ୍ୟରେ ନୂମୂଳ ପରିବର୍ତ୍ତନ ସଂଘଟିତ ହୋଇଛି । ବିଜ୍ଞାନର ଜୟଯାତ୍ରା, ମାର୍କସ ଓ ଫ୍ରଏଡୀୟତତ୍ତ୍ୱ, ମାନବିକ ମୂଲ୍ୟବୋଧର ସଂକଟ, ଶୀତଳ ଯୁଦ୍ଧ, ତଦ୍‌ଜନିତ ପ୍ରତିକ୍ରିୟା, ଦ୍ୱିଧା, ଦ୍ୱନ୍ଦ୍ୱ, ସଂଶୟ, ଅସହାୟତା, ନିଃସଂଗତା ସାରସ୍ୱତ ଜଗତକୁ ଆକ୍ରାନ୍ତ କରିଛି। ୧୯୫୦ ମସିହା ବେଳକୁ ୟୁରୋପୀୟ ନାଟ୍ୟ ଜଗତରେ ଆରମ୍ଭ ହୋଇଛି ଉଦ୍ଭଟ ନାଟ୍ୟ ପରଂପରା । ସ୍ୱାଧୀନତାର ପୃଷ୍ଠଭୂମିରେ ଭାରତୀୟ ନାଟ୍ୟ ପରଂପରା ମଧ୍ୟ ହଠାତ ବଦଳି ନାହିଁ ।

୧୯୫୦ ମସିହାରୁ ମନୋରଂଜନ ଦାସଙ୍କ ନେତୃତ୍ୱରେ ଓଡ଼ିଆ ସାହିତ୍ୟରେ ଆରମ୍ଭ ହେଲା ନାଟକର ଆଧୁନିକ ପର୍ବ । ପାରଂପରିକ ପ୍ରବୃତ୍ତି ଓ ବ୍ୟବସାୟିକ ରଂଗମଂଚରୁ ସେ ନାଟକକୁ ମୁକ୍ତକରି ସୌଖୀନ ନାଟ୍ୟ ସଂସ୍ଥା ମାଧ୍ୟମରେ ପ୍ରୟୋଗବାଦୀ ଯୁଗର ମୂଳଭିତ୍ତି ସ୍ଥାପନ କଲେ, ମାତ୍ର ବ୍ୟାପକ ଭାବେ ୧୯୬୦ ମସିହା ପର୍ଯ୍ୟନ୍ତ ତାଙ୍କ ଧାରା ପାରପଂରିକ ନାଟ୍ୟଧାରାକୁ ପ୍ରଭାବିତ କରିପାରିନାହିଁ । ମାତ୍ର ଉତ୍ତର ଷାଠିଏରୁ ଆରମ୍ଭ ହୋଇଛି ଆତ୍ମିକ ଓ ଆଗିଂକ ଉଭୟ ଦୃଷ୍ଟିକୋଣରୁ ନବନାଟ୍ୟ ଆନ୍ଦୋଳନର ତୂର୍ଯ୍ୟନାଦ । ଏହି ସମୟରେ ସଂପୂର୍ଣ୍ଣ ନହେଲେ ମଧ୍ୟ କେତେକାଂଶରେ ଉଦ୍ଭଟ ନାଟ୍ୟ ପରଂପରା ଓଡ଼ିଆ ନାଟ୍ୟ ଦିଗନ୍ତକୁ ଆଚ୍ଛନ୍ନ କରିଛି । ମନୋରଂଜନ ଦାସଙ୍କ 'ଆଗାମୀ', 'ଅବରୋଧ', 'ବନହଂସୀ', 'ଅରଣ୍ୟ ଫସଲ', 'ଅମୃତସ୍ୟ ପୁତ୍ର', 'କାଠଘୋଡ଼ା', 'ଶବ୍ଦଲିପି' ବିଜୟ ମିଶ୍ରଙ୍କ 'ଚନ୍ଦ୍ରଚୋରି', 'ଯାଦୁକର', 'ଶବବାହକମାନେ', 'ତଟ ନୀରଂଜନା', 'ଜଣେ ରାଜା ଥିଲେ' ବିଶ୍ୱଜିତ ଦାସଙ୍କ 'ମୃଗୟା', 'ଶୁଣ ସୁଜନେ', 'ସମ୍ରାଟ',ରମେଶ ପାଣିଗ୍ରାହୀଙ୍କ 'ମୁଁ ଆମ୍ଭେ ଆମ୍ଭେମାନେ', 'ଧୃତରାଷ୍ଟ୍ରର ଆଖି' କାର୍ତ୍ତିକ ରଥଙ୍କ 'କ୍ରୀତଦାସ',

'ସ୍ୱର୍ଗଦ୍ୱାର', 'ରକ୍ତର ଫୁଲ' ରତ୍ନାକର ଚଇନିଙ୍କ 'ପୁନଶ୍ଚ ପୃଥିବୀ', 'ଅଥଚ ଚାଣକ୍ୟ' ଦୀନବନ୍ଧୁ ଦାଶଙ୍କ 'ଅନ୍ୟଜଣେ ରାବଣ', ରତି ମିଶ୍ରଙ୍କ 'ଅରୁଣ ରଙ୍ଗର ପକ୍ଷୀ' ପ୍ରଭୃତି ନାଟକ ଅଂଗ ଓ ଆତ୍ମା ଉଭୟ କ୍ଷେତ୍ରରେ ପାରଂପରିକ ନାଟକଠାରୁ ଭିନ୍ନତା ଦେଖିବାକୁ ମିଳେ ।

ଉତ୍ତର ଅଶୀ ସାମାଜିକ ଜୀବନରେ ବ୍ୟାପକ ପରିବର୍ତ୍ତନ ଆସିଛି । ସମଗ୍ର ବିଶ୍ୱ ଗୋଟିଏ ଜାଲରେ ଛନ୍ଦି ହୋଇ ବିଶ୍ୱଗ୍ରାମରେ ପରିଣତ ହୋଇଛି, ଜଗତିକରଣର ଦୋହା, ନବସାମ୍ରାଜ୍ୟବାଦର ପ୍ରତ୍ୟାର୍ବତ୍ତନ, ସୋଭିଏତ ସଂଘର ପତନ, ଧର୍ମୀୟ ସଂର୍ଘଷ, ମୌଳବାଦୀ ଚିନ୍ତାଧାରା, ଈଶ୍ୱର ମୃତ ଘୋଷଣା ପରେ ବି ଈଶ୍ୱରଙ୍କୁ ନେଇ ଟଣା ଟଓରା, ସଂତ୍ରସ ବାଦ, ଅର୍ଥର ମୃତ୍ୟୁ, ଇତିହାସର ଅନ୍ତ ଘୋଷଣା ପ୍ରତିଯୋଗିତା ମୂଳକ ମାନସିକତାର ଆନୁଭୂମିକ ରେଖାରେ ଠ଼ିଆ ହୋଇଥିବା ମଣିଷଟିକୁ ଏକ ବିଘଟନ ଆଡ଼କୁ ମୁହାଁଇ ନେଇଛି । ଷାଠିଏ ଦଶକରେ ଆମେ ଭୋଗିନଥିବା ଅନେକ ଉପାଦାନକୁ ଅନେକ ବାଦର ବଳୟ ମଧ୍ୟକୁ ଠେଲି ଦିଆଯାଇଥିବା ବେଳେ ଆମେ ପ୍ରତ୍ୟକ୍ଷ କରୁଛୁ ବିଶ୍ୱମାନସିକତାକୁ ଏଇବେଳେ ସଚେତନ ହୋଇଛି ସ୍ରଷ୍ଟା ଖୋଜିଛି ବ୍ରହ୍ମାଣ୍ଡୀୟ ଉପଲବ୍ଧିର ବିସ୍ତାର ମଧ୍ୟରେ ନିଜ ମୌଳିକତାକୁ ଚିହ୍ନିଚି ନିଜ ମାଟିକୁ । ଏଣୁ ଆମ ସୃଷ୍ଟି ପରିସର ଆମକୁ ଅପରିଚିତ ନାହିଁ । ପାଠକଟି କହୁଛି –'ଆରେ ଇଏ ମୋ କଥା, ମୋ ସମୟର କଥା, ମୋ ମାଟିର କଥା । ଏଇଠି ଡ. ନାରାୟଣ ସାହୁଙ୍କର ସାର୍ଥକତା

ନାଟ୍ୟକାର ନାରାୟଣ ସାହୁ ଉତ୍ତର ଅଶୀର ଜଣେ ବଳିଷ୍ଠ ନାଟ୍ୟ ପ୍ରତିଭା । ପ୍ରୟୋଗବାଦର ଚୌହଦିରୁ ଯାତ୍ରା ଆରମ୍ଭ କରି ଫିଟି ପଡ଼ିଛନ୍ତି ସେ । ସୃଷ୍ଟି କରିଛନ୍ତି ନିଜସ୍ୱ ଶୈଳୀ, ଆଂଶିକ ଉଭଟ ଓ ପ୍ରୟୋଗବାଦର ପରୀକ୍ଷାଗାରରୁ ସେ ନାଟକକୁ ମୁକ୍ତ କରି ନାଟ୍ୟ ରସିକମାନଙ୍କ ନିକଟରେ କେବଳ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିନାହାନ୍ତି ବରଂ ର୍ଦଶକଙ୍କ ନାଟକ ନିକଟକୁ ଫେରାଇ ଆଣିବାର ସକ୍ଷମ ହୋଇଛନ୍ତି । ମଣିଷ ସୁଖ-ଦୁଃଖ, ହସ କାନ୍ଦ, ଆଶା-ନିରାଶା, ଅପ୍ରାପ୍ତି ଅବଶୋଷ, ସ୍ଥିତି-ସଂର୍ଘଷ, ଅର୍ଥହୀନ ଅହଂକାର, ଧର୍ମ ନାମରେ ବିଭେଦ, ଅବସୋସ ଓ ମାନବିକ ସମ୍ବେଦନଶୀଳତାକୁ ନେଇ ସେ ନାଟକ ରଚନା କରିଛନ୍ତି । ଲୋକ ନାଟକ ପରଂପରା ଓ ଏପିକ୍‌ଶୈଳୀର ସମ୍ମିଶ୍ରଣ କରି ଅନେକ ନାଟକରେ ଯେଉଁ ପରୀକ୍ଷା କରିଛନ୍ତି ତାହା ଅନେକତ୍ର ସଫଳ । ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର (୧୯୮୮), ସୁବର୍ଣ୍ଣ ସକାଳ (୧୯୯୨), ଉପାସନା (୧୯୯୦), ମୂକ (୧୯୯୬), ପୁନଶ୍ଚ ସଂଗ୍ରାମ (୧୯୯୭), ଅଧା ଦେଖା ସ୍ୱପ୍ନ (୧୯୯୮), ପ୍ରାୟଶ୍ଚିତ

(୨୦୦୧) ପ୍ରଶ୍ନ, ଚିଠି ସୌଦାଗର, ରିକ୍‌ସାବାଲା ପ୍ରଭୃତି ମଂଚ ନାଟକ ବହୁ ବେତାର ଓ ଦୂରଦର୍ଶନ ନାଟକ ଓ ଶିଶୁ ନାଟକର ସ୍ରଷ୍ଟା ଶ୍ରୀ ସାହୁ । 'ଅସ୍ତରାଗର ଏଲିଜି ନାମରେ ଅଭିନୀତ ଅପରାହ୍ଣର ଅବଶୋଷ (୨୦୦୧) ଡ. ସାହୁଙ୍କର ଏକ ଚମତ୍କାର ନାଟକ । ବ୍ୟକ୍ତିତନ୍ତ୍ରର ଏକ ବିଡ଼ମ୍ବିତ ଅଧ୍ୟାୟରୁ ନାଟକର କାହାଣୀ ଗତିଶୀଳ ।

ଯେଉଁ ଶିଳ୍ପରୀତିକୁ ନେଇ ନାଟକ ସମୃଦ୍ଧ ଓ ସଫଳ ହୁଏ ତାହାର ପ୍ରଥମ ଉପାଦାନ କଥାବସ୍ତୁ । କଥାବସ୍ତୁର ସହ ଚରିତ୍ର, ସଂଳାପ, ଦ୍ୱନ୍ଦ୍ୱ ଉତ୍କଣ୍ଠା ଓ ନାଟ୍ୟଶ୍ଳେଷ ଜଡ଼ିତ ହୋଇ ନାଟକଟିକୁ ପ୍ରାଣବନ୍ତ କରିଥା'ନ୍ତି । ଡ. ସାହୁଙ୍କ ନାଟକର କଥାବସ୍ତୁ ଶାଖା ହୁଏ ତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତନର ଧାରାକୁ ଗ୍ରହଣ କରି ଗତିଶୀଳ ହୁଅନ୍ତି ମାତ୍ର ସାର ନିର୍ଯ୍ୟାସରେ ଥାଏ ଏଇ ମାଟିର ମହକ ।

ଦେଶ ସ୍ୱାଧୀନ ହେବା ପରେ ଗଣତନ୍ତ୍ର ଆସିଛି । ରାଜତନ୍ତ୍ରର ପରିସମାପ୍ତି ଘଟିଛି । ଅଖଣ୍ଡ କ୍ଷମତା ଭୋଗ କରୁଥିବା ରାଜାମାନେ କ୍ଷମତାର ବିଲୟ ପରେ ରାଜା ସାହେବର ଖୋଳପା ମଧ୍ୟରେ ଅସରନ୍ତି ମର୍ମଦାହକୁ ବରଣ କରି ନେଇଛନ୍ତି । ଅନେକତ୍ର ନିଜର ସ୍ୱଭାବକୁ ବଦଳାଇ ପାରିନାହାଁନ୍ତି । ପରିବର୍ତ୍ତିତ ପରିସ୍ଥିତି ସହ ନିଜକୁ ମିଶାଇ ପାରି ନାହାଁନ୍ତି । ୧୯୭୨ ମସିହାରେ ପ୍ରିଭି-ପର୍ସ ସ୍ୱାଧୀନ ସରକାରଙ୍କ ଦ୍ୱାରା ରଦ୍ଦ ହେବାପରେ ଆର୍ଥିକ ଅନଟନ ମଧ୍ୟକୁ ଡେଲି ହୋଇ ଯାଇଛନ୍ତି । ଏଇ ପୃଷ୍ଠପଟ୍ଟ ଉପରେ ଠିଆ ହୋଇଛନ୍ତି ଏକ ଗଡ଼ଜାତ ରାଜା ଭାନୁପ୍ରତାପ ।

ରାଜା ଭାନୁପ୍ରତାପ ।ରାଜତନ୍ତ୍ରରୁ ଗଣତନ୍ତ୍ରର ରୂପାନ୍ତର ମଧ୍ୟରେ ଏକ ଲମ୍ବା ହାଇଫେନ୍। ଅହମିକାର ଖୋଳପା ମଧ୍ୟରେ ପରିବର୍ତ୍ତନକୁ ଗ୍ରହଣ କରିପାରୁନଥିବା ଏକ ପ୍ରଶ୍ନବାଚୀ । ନିଷ୍ଠୁର ସତ୍ୟ ପ୍ରତି ଉଦାସୀନ, ପିଢ଼ିଗତ ବ୍ୟବଧାନର ମାନସିକତାକୁ ସ୍ୱୀକାର କରୁନଥିବା ଏକ ମ୍ଲାନ ଗୋଧୂଳିର ପାଦଟୀକା ।

ବେଶ ପ୍ରତିକୀତ ପ୍ରଥମ ଦୃଶ୍ୟ । ଧ୍ୱସ୍ତ ରାଜବାଟୀର ଦରବାର ହଲ୍, ଯାହା ପରବର୍ତ୍ତୀ ସମୟରେ ଡ୍ରଇଂରୁମ୍‌ରେ ରୂପାନ୍ତରିତ ହୋଇଛି । ସବୁକିଛି ପୁରୁଣା, କଳଙ୍କି ଲଗା, ସବୁଠି ଧୂଳି ଓ ମଇଳାର ଆସ୍ତରଣ, ଗୋଟିଏ ପୁରୁଣା ରାଉଣ୍ଡ ଟେବୁଲ, ଦୁଇ ତିନୋଟି ଚେୟାର, ଗୋଟିଏ ପୁରୁଣା ସିଂହାସନ, କାନ୍ଥରେ ତଲୱାର, ବନ୍ଧୁକ, ବାଘଛାଲ, ବାଘମୁଣ୍ଡ, ଟେବୁଲ ଉପରେ ଫୁଲଦାନୀ ତା'ମଧ୍ୟରେ ଏକ ବଂଶୀ । ମ୍ଲାନ ଆଲୋକ ମଧ୍ୟରେ ଭାସି ଆସିଛି ସମୟର ସ୍ୱର । ସେଇ ସ୍ୱର ପରେପରେ ପ୍ରବେଶ କରନ୍ତି ରାଜା ଭାନୁ ପ୍ରତାପ । ପ୍ରିୟ ସିଂହାସନକୁ ଆଉଁଶି ଉପବେଶନ କରୁକରୁ ସିଂହାସନ ମନା କରୁଛି ।

"ନା' ଭାନୁ ପ୍ରତାପ! ନା...ସେ ଅଧିକାର ତମେ ହରାଇ ବସିଛ । ରାଜତନ୍ତ୍ରର ଉଚ୍ଛେଦ ସହିତ ସିଂହାସନ ମଧ୍ୟ ସମାଧି ନେଇଛି । ଗଣତନ୍ତ୍ର ତମଠୁଁ ସେ ଅଧିକାର ଛଡ଼ାଇ ନେଇଛି । ତମର ସେ ପ୍ରିୟ ସିଂହାସନ ଉପରେ ଆସ୍ତରଣ କ'ଣ ପାଇଁ ବୃଥା ଚେଷ୍ଟା କରୁଛ ?"

ଏହା ପରେ ବନ୍ଧୁକ, ଚାବୁକର ସ୍ୱର ରାଜାଙ୍କୁ ମର୍ମାହତ କରିଛଇ ସେ ଦୀର୍ଘଶ୍ୱାସ ଛାଡ଼ି ଚେୟାର ଉପରେ ବସିଛନ୍ତି, ଭାସି ଆସିଛି ସ୍ୱର

"ଏବେ ବି ସମୟ ଅଛି ଭାନୁ ପ୍ରତାପ! ଜାଗତିକ ମହା ସ୍ରୋତରେ ମିଶିଯାଅ । ସେମାନେ ତୁମକୁ ସ୍ନେହରେ ଆଦରି ନେବେ । ପଛ କଥା ଭୁଲିଯାଇ କ୍ଷମା ଦେବେ ।"

ରାଜା ଚିତ୍କାର କରି ଉଠିଛନ୍ତି 'ନା'। ଏଇଠୁ ସ୍ପଷ୍ଟ ହୋଇଛି ମୁଖ୍ୟ ଚରିତ୍ରର ଆଭିମୁଖ୍ୟ, କାହାଣୀ ହୋଇଛି ଗତିଶୀଳ ।

ଦ୍ୱିତୀୟ ଦୃଶ୍ୟରେ ରାଜାଙ୍କ ବିଶ୍ୱସ୍ତ ଚାକର ବୁଢ଼ା ରଂକ ମନୋଜକୁ କହିଛି- "ସେ ପରା ମଣିମା, ରାଜା । ରାଜା ମାନେ କ'ଣ କେବେ ନଇଁବାକୁ ପସନ୍ଦ କରନ୍ତ" ? ସେ ନଇଁ ନାହାନ୍ତି । ବଂଚିବା ପାଇଁ ସର୍ବନିମ୍ନ ଆବଶ୍ୟକତାର ପୂରଣ ପାଇଁ ନିଜର ସ୍ଥାବର ସମ୍ପତ୍ତି ହସ୍ତାନ୍ତର କରିବାକୁ ପଡ଼ିଛି । ତାଂକ ଆଣ୍ଠ ଭାଂଗିନାହିଁ । ବିଲାତି ଛାଡ଼ି ଭାଂଗ ଖାଇଛନ୍ତି । ସିଗାରେଟ୍ ନ ପାଇ ରଂକର ବିଡ଼ି ଲୁଚାଇ ଟାଣିଛନ୍ତି । କ୍ଷୀର ଚା ପ୍ରତି ବଦଳରେ ନାଲି ଚା ପିଇଛନ୍ତି ମାତ୍ର ବର୍ତ୍ତମାନ ସହ ସାଲିସ୍ କରିପାରି ନାହାଁନ୍ତି । ପୁଅ କୁମାର ତାଂକୁ ସଚେତନ କରିବାକୁ ଚାହିଁଛନ୍ତି । ବର୍ତ୍ତମାନକୁ ବୁଝିବାକୁ କହିଛନ୍ତି । ଦେୱାନଂକ କଲେକ୍ଟର ପୁଅ ବୁଲୁ—ଏ ଗଣତନ୍ତ୍ର ଯୁଗରେ ତାଂକୁ କ୍ଷମତା ହାତକୁ ନ ନେବାକୁ ପରାମର୍ଶ ଦିଅନ୍ତି । ମାତ୍ର ସେ ଗ୍ରହଣ କରି ପାରିନାହାଁନ୍ତି ସେ ରାଜା, ରାଜା ହୋଇ ରହିବେ । ତ୍ରୟୋଦଶ ଦୃଶ୍ୟରେ ବୁଲୁ ଓରଫ୍ କଲେକ୍ଟର ନିରଞ୍ଜନ ମହାପାତ୍ରଙ୍କୁ କହିଛନ୍ତି—'ନା'-! ଏ ସମସ୍ତେ ନାଗରିକ ହୋଇ ପାରନ୍ତି, ହେଲେ ରାଜାକୁ ଛାଡ଼ି ସେ ରାଜା ଥିଲା, ରାଜା ଅଛି ଏବଂ ରାଜା ରହିବ ।

ଅହଂକାର ଓ ଅଭିମାନକୁ ନେଇ କେବେ ରାଜତ୍ୱ କରାଯାଏନା । ଏଥିପାଇଁ ସମୟ ସହ ପାଦ ମିଳାଇବାକୁ ହୁଏ । ଦୂରଦୃଷ୍ଟି ନେଇ ଚାଲିବାକୁ ହୁଏ। ମଥା ନଇଁ ଢେଉକୁ ଚାଲି ଯିବାକୁ ହୁଏ । ଏହି ଦୂର ଦୃଷ୍ଟିର ଅଭାବରୁ ମଣିଷ ବର୍ତ୍ତମାନରେ ବିଚରଣ କରୁଥିଲେ ମଧ୍ୟ ଅତୀତର ପରିଚୟ ନେଇ ବଂଚିବାକୁ ହୁଏ । ତାହା ହିଁ ଘଟିଛି ରାଜା ଭାନୁପ୍ରତାପଙ୍କ କ୍ଷେତ୍ରରେ । ବୃଥା ଅହମିକାର ଆସ୍ଫାଳନରେ ସେ ରାଣୀ ସୁଭଦ୍ରାଙ୍କୁ ପରିତ୍ୟାଗ

କରିଛନ୍ତି । ଏକମାତ୍ର ସନ୍ତାନ କୁମାରର ପାଠପଢାକୁ ଖର୍ଚ୍ଚ ଯୋଗାଇ ନପାରି ନିଜର ଅସମର୍ଥାକୁ ଅହଂକାରର ଆଟୋପ ମଧ୍ୟରେ ଲୁଚାଇ ଅଧିକ ପଢିବାର ଆବଶ୍ୟକତା ନାହିଁ ବୋଲି ପରାମର୍ଶ ଦେଇଛନ୍ତି । ରାଜାଙ୍କ ଅହଂକାର ଉପରେ ଆଘାତ ଆଣନ୍ତି କୁମାର । ବଜ୍ରାହତ ରାଜା ଭାନୁପ୍ରତାପ ଆଦର୍ଶ ପିତା ସ୍ତରକୁ ଓହ୍ଲାଇ ଆସିପାରନ୍ତି ନାହିଁ। ପିଢିଗତ ବ୍ୟବଧାନର ଗୋଟିଏ ମୁଣ୍ଡରେ ଠିଆ ହୋଇ ଆଧୁନିକ ନୃତ୍ୟଶିକ୍ଷା କରୁଥିବା ଶିକ୍ଷିତ ନର୍ତ୍ତକୀ ?(ଅହଲ୍ୟା)ର କୁମାରଙ୍କ ସହ ବିବାହ ପ୍ରସ୍ତାବକୁ ଗ୍ରହଣ କରିପାରନ୍ତିନ । ବଂଧୁ ବିକ୍ରମଙ୍କୁ (ଏକାଦଶ ଦୃଶ୍ୟରେ) କହିଛନ୍ତି; "ଗୋଟାଏ ନାଚବାଲୀକୁ କହୁଛି ବାହାହେବ। ରାଜପୁତ୍ର ହୋଇ ବିବାହ କରିବ ଗୋଟିଏ ଇତର ସାଧାରଣ ନର୍ତ୍ତକୀକୁ! ଅସମ୍ଭବ! ଅନ୍ତତଃ ଏ ବଂଶରେ ମୁଁ ବଂଚିଥିବା ପର୍ଯ୍ୟନ୍ତ ଏହା ସମ୍ଭବ ନୁହେଁ।"

ନିଜ ଅହମିକା ଓ ଅଭିମାନକୁ ନେଇ ବଂଚିଥିବା ରାଜା ଭାନୁପ୍ରତାପଙ୍କ ଠାରୁ ପତ୍ନୀ ସୁଭଦ୍ରା ଦୂରେଇ ଯାଇଛନ୍ତି । ଏକଦା ରାଜାଙ୍କ କୋଟ ଆଣୁ ଆଣୁ ପକେଟରୁ ଏକ ଚିଠି ପଡ଼ିଯାଇଛି । ସେ ଚିଠି ରାଜାଙ୍କ ରକ୍ଷିତା ଗଙ୍ଗାର ଥିଲା। ପୁତ୍ର 'ଭୀଷ୍ମ'ର ପାଠପଢା ସମ୍ପର୍କିତ ଚିଠି ରାଣୀଙ୍କୁ କ୍ଷୁବ୍‌ଧ କରିଛି ନାରୀ ପୁରୁଷର କ୍ରୀଡ଼ନକ ନୁହେଁ । ସେ କେବଳ ପତ୍ନୀ ନୁହେଁ । ସେ ମାତା, ସେ ପ୍ରେମମୟୀ, ସେ କରୁଣାମୟୀ। ତା ପ୍ରେମରେ ସେ କାହାରିକୁ ସହଭାଗୀ କରିବାକୁ ଚାହେଁ ନାହିଁ। ସେ ଭର୍ତ୍ସନା କରିଛନ୍ତି ଭାନୁ ପ୍ରତାପଙ୍କୁ ଏକାଦଶ ଦୃଶ୍ୟରେ ।

"ସୁଭଦ୍ରା ପୋଷା ଶାରୀ ନୁହଁ, ଚୁପ୍‌ଚାପ ତୁମ କଥା ମାନି ନେବ! କ'ଣ ଭାବିଛ ନିଜକୁ +++ ଗୋଟାଏ କଳଙ୍କିତ ରାଜବଂଶଠାରୁ ବରଂ ନର୍କ ଯନ୍ତ୍ରଣା ଭଲ।"

ଥରେ ସଂସାର ଭାଙ୍ଗିଗଲେ ସହଜରେ ଯୋଡ଼ି ହୁଏନି। ଋଂକର ଉକ୍ତି ସତ୍ୟରେ ପରିଣତ ହୋଇଛି । ସଂସାର ଉଜୁଡ଼ି ଯାଇଛି । ରାଜାର ଅହଂକାର ତଳେ ଚୁପି ରହିଥିବା ମଣିଷଟିକୁ ଆବିଷ୍କାର କରିଛି କୁମାରଙ୍କ ବାକ୍‌ଦତ୍ତା ଅହଲ୍ୟା। ଅତିଥି ଭାବେ ଆସିଥିବା ଅହଲ୍ୟାର ସ୍ପର୍ଶରେ ରାଜପ୍ରସାଦର କଳେବର ଫେରି ଆସିଛି । ତାର ମାୟା ମମତାରେ ବାଂଧି ହୋଇ ଯାଇଛନ୍ତି ରାଜା ସାହେବ ଅହଲ୍ୟାର ଅନ୍ତରଙ୍ଗତା ପଛରୁ ଯେଉଁବାସ୍ନା ବିଛୁଡ଼ି ପଡୁଥିଲା ତାହା ଥିଲା ରାଣୀ ମାଙ୍କର। ଅହଲ୍ୟା ମଧ୍ୟରେ ରାଣୀ ମାଙ୍କୁ ଖୋଜୁଥିବା ମନକୁ ଠାବ କରିଛି ସେ । କହିଛି; ନା ମଣିମା, ଆପଣଙ୍କ ଘୃଣା ପଛପଟେ ଗୋଟେ ଅସମାନ୍ୟ ହୃଦୟର ପ୍ରେମ ଲୁଚି ରହିଛି, ସୁତରାଂ ସଂଧାନ ପାଇଛି।"

ଜୀବନର ସାହାରାରେ ଏକାଏକା ଚାଲିବାକୁ ଏକ ନିଆରା ଆନନ୍ଦ କହୁଥିବା ମଣିଷଟି କେତେ ନିଛାଟିଆ । କେତେ ଆର୍ତ୍ତ, ଶୋଷିଲା ବୁଝି ହେଇ ଯାଏ ।

ନାଟକର ଅନ୍ତିମ ପରିଣତି ଖୁବ୍ କରୁଣ । ରାଜା ଦେଓ୍ୱାନଙ୍କ ଠାରୁ ଶୁଣିଛନ୍ତି କୁମାର ନାଚବାଲୀ ଅହଲ୍ୟାକୁ ବିବାହ କରିଛନ୍ତି। କିନ୍ତୁ ଏହାକୁ ସେ ସ୍ୱୀକାର କରି ନାହାଁନ୍ତି। ଏକାକୀତ୍ୱ ବଳୟ ମଧ୍ୟରେ ଜୀବନର ଅପରାହ୍ଣରେ ଅତୀତ ପାଇଁ ଅବଶୋଷ ଆସିବା ସମୟରେ-ପ୍ରତ୍ୟେକ ମାସରେ ତାଙ୍କ ଚଳିବା ପାଇଁ ପିତ୍ରାଳୟରୁ ଟଙ୍କା ପଠାଉଥିବା ପ୍ରିୟତମା ପତ୍ନୀଙ୍କୁ ହରାଇଛନ୍ତି । ଟଙ୍କା ଆସିବା ବନ୍ଦ ହୋଇଛି । ରଙ୍ଗଙ୍କୁ ପଚାରିବାରୁ ସେ କାନ୍ଦିଛି। ଦେଓ୍ୱାନ ପଠାଇଥିବା ଭାକୁଡ଼ ମାଛ ଖାଇବାକୁ ଜିଦ୍ କରି ରଙ୍ଗଠୁ ଶୁଣିଛନ୍ତି; ମଣିମା ରାଣୀ ମା' ଆମ ସମସ୍ତଙ୍କୁ ଛାଡ଼ି ଆର ପାରିକୁ ଚାଲି ଯାଇଛନ୍ତି । ଆଜି ତାଙ୍କର ଦଶାହ । ଆଜିକୁ ତାଙ୍କର ମରିବାର ଦଶଦିନ ହୋଇଗଲା ।

ଏ ଆଘାତ ସହିପାରି ନାହାନ୍ତି ଭାନୁପ୍ରତାପ। ରାଣୀଙ୍କ ମୃତ୍ୟୁପରେ ଯେଉଁ ରାଜା କେତେ ପ୍ରଜାଙ୍କୁ ଶାସନ କରୁଥିଲେ ସେ ଆଲୁଅକୁ ଡରିଛନ୍ତି ପଲଙ୍କ ତଳେ ଜାକି ଜୁକି ହୋଇ ଶୋଇଛନ୍ତି। ସେ ପକ୍ଷାଘାତରେ ଶିକାର ହୋଇଛନ୍ତି । ଇଚ୍ଛା ହେଲେ ଖାଇଛନ୍ତି ନହେଲେ ନାଇଁ। କାହାରି କଥା ଶୁଣି ନାହାନ୍ତି ।

ନାଟକର ଆରମ୍ଭ ଦୃଶ୍ୟକୁ ମନେ ପକାନ୍ତୁ । ଯେଉଁ ସିଂହାସନ ନିକଟରୁ ଆରୋହଣ ନ କରିବା ପାଇଁ ସ୍ୱର ଭାସି ଆସିଥିଲା,ସେହି ସିଂହାସନ ଭିତରୁ ପକ୍ଷାଘାତ ଗ୍ରସ୍ତ ରାଜାଙ୍କ ଆଉଁଶାରୁ ଭାସି ଆସିଛି କରୁଣ ରାଗିଣୀ । ବନ୍ଧୁକ, ଚାବୁକ, ତରବରୀକୁ ସ୍ନେହ, ଆବେଗରେ ଛୁଇଁଛନ୍ତି। ବଂଶୀକୁ ଚୁମ୍ବନ ଦେବାକୁ ଚେଷ୍ଟା କରିଛନ୍ତି, ବଂଶୀରୁ ଭାସି ଆସିଛି କରୁଣ ବିଳାପ । ରାଣୀଙ୍କ ଫଟୋଚିତ୍ରକୁ ଚାହିଁ ତାଙ୍କ ଆଖିରୁ ନିଗିଡ଼ି ଆସିଛି ଧାରଧାର ଲୁହ । ଏଠି ଅହଂକାର ନାହିଁ, ଅଭିଯୋଗ ନାହିଁ, ଅଛଇ ଏକ ନିବିଡ଼ ଭଲ ପାଇବାର ବେଦନାବୋଧ!! ନିଜ ସିଂହାସନ ଉପରେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି ରାଜା ଭାନୁପ୍ରତାପ ।

ରାଜକୀୟ ଆଡ଼ମ୍ବରରେ ଶେଷଯାତ୍ରା ଆରମ୍ଭ ହୋଇଛି । ନିଜର ପ୍ରିୟ ରାଜାଙ୍କୁ ବିଦାୟ ଦେବାକୁ ସୃଷ୍ଟି ହୋଇଛି ଜନସମୁଦ୍ର । ରାଜା ଭାନୁ ପ୍ରତାପଙ୍କ ମୃତ୍ୟୁ ଖବର ପାଇଁ କୁମାରଙ୍କ ସହ ଅହଲ୍ୟା ଆସିଛି ଉଆସକୁ । ପରଂପରା ପ୍ରତି ମୋହ ଓ ରାଜାଙ୍କ ପ୍ରତି ନିଛକ ମମତ୍ୱବୋଧ ଚିତ୍ର ଫୁଟି ଉଠିଛି । ଏଠାରେ ନାଟ୍ୟକାର ନୂତନତ୍ୱର ଆବାହନ କରିବାକୁ ଯାଇ ପରଂପରାକୁ ଫିଙ୍ଗି ଦେଇ ନାହାଁନ୍ତି । ରାଜାଙ୍କ ବନ୍ଧୁ ବିକ୍ରମ କହିଛି— "ଶେଷରେ ତୁ ଜିତିଗଲୁ ଭାନୁ...ରାଜା ଥିଲୁ, ରାଜା ହୋଇ ରହିଗଲୁ । ଆମେ ସମସ୍ତେ ହାରିଗଲୁ, ଶେଷ ଥର ପାଇଁ ମୁଁ ତୋତେ ସାଲ୍ୟୁଟ୍ କରୁଛି। "Salute my dear friend, I Salute my dear King."

୩୦.୦୩.୨୦୦୨ରେ ଇଣ୍ଡିଆନ୍ ଏକ୍ସପ୍ରେସ୍ ଲେଖିଥିଲା-"Finally the death of Bhanu Pratap stands as a symbol of the death of monarchy. The Old order changed giving place to new."

ଡ. ନାରାୟଣ ସାହୁ ସାମସମୟିକ ନାଟ୍ୟଜଗତରେ ଜଣେ ଅନନ୍ୟ ସ୍ରଷ୍ଟା । ତାଙ୍କ ନାଟକଗୁଡ଼ିକରେ ପରୀକ୍ଷା ନିରୀକ୍ଷା ଅଛି; ବୈଚିତ୍ର୍ୟ ରହିଛି ମାତ୍ର ଦୁର୍ବୋଧ୍ୟ ଅସ୍ପଷ୍ଟ ଭୂମିକା ନାହିଁ । ଉକ୍ତ ନାଟକରେ ସମୟର ଆହ୍ୱାନକୁ ଅସ୍ୱୀକାର କରି କଳ୍ପଲୋକରେ ବଂଚୁଥିବା ଏକ ଅହଂକାର ପୀଡ଼ିତ ରାଜାର କାହାଣୀ ବର୍ଣ୍ଣିତ । ପ୍ରଥମ ଦୃଶ୍ୟରେ ନିହିତ ଥିବା ସମୟର ସ୍ୱରକୁ ଉପସଂହାରରେ କୁହାଯାଇପାରେ । "ହଁ, ଝଡ଼ର ଡେଣାରେ ପ୍ରଗତିକୁ ପଠି କରି ଯେଉଁମାନେ ମୋ ଗତିକୁ ରୋଧିବାକୁ ଚେଷ୍ଟା କଲେ, ସେମାନଙ୍କ ଗର୍ବ, ଦମ୍ଭ, ଆସ୍ଫାଳନ ବୁଦ୍‌ବୁଦ୍ ଆକାରରେ ମିଳାଇ ଗଲା । ଆଉ ରହିଗଲା ଶେଷହୀନ ହାହାକାର, ଦୀର୍ଘଶ୍ୱାସ !... !"

ସମୟର ଚଳନ୍ତି ପ୍ରବାହରେ ନିଜକୁ ଯୋଗ୍ୟ କରିନେବାର ଆହ୍ୱାନ ହିଁ ଏହାର ମର୍ମବାଣୀ ବୋଲି ସ୍ୱୀକାର କରାଯାଇପାରେ ।

ବରୁଣେଶ୍ୱର ମହାବିଦ୍ୟାଳୟ
ଯାଜପୁର

●●●

# ନାଟକ 'ପ୍ରାୟଶ୍ଚିତ'- ଏକ ଆଲୋଚନା

ଡ. କୃଷ୍ଣଚନ୍ଦ୍ର ଦାଶ

ସାଂପ୍ରତିକ ଓଡ଼ିଆ ନାଟ୍ୟ ସାହିତ୍ୟରେ ପ୍ରଫେସର୍ ଡ.ନାରାୟଣ ସାହୁ ଜଣେ ବହୁଚର୍ଚ୍ଚିତ ସୁନାମଧନ୍ୟ ନାଟ୍ୟକାର। ବିଂଶ ଶତାବ୍ଦୀର ଉତ୍ତର ଅଶୀକାଳରୁ ଅଦ୍ୟାବଧି ଅର୍ଦ୍ଧଶତାଧିକ ନାଟକ ଓ କ୍ଷୁଦ୍ରନାଟକର ସ୍ରଷ୍ଟା ସେ। ଦୂରଦର୍ଶନ ଓ ଆକାଶବାଣୀରେ ପ୍ରସାରିତ ହୋଇଛି ତାଙ୍କର ଏକାଧିକ ନାଟକ । ତାଙ୍କର ନାଟକ ମଧ୍ୟ ଚଳଚ୍ଚିତ୍ର ରୂପ ନେଇଛି। ତାଙ୍କ ନାଟକଗୁଡ଼ିକର କାହାଣୀରେ ରହିଛି ବିବିଧତା ଓ ବୈଚିତ୍ର୍ୟ। ପୁରାଣ, ଇତିହାସ, କିମ୍ବଦନ୍ତୀ, ଲୋକକଥା, ସାମନ୍ତୀୟ ଗାଥା ଓ ସର୍ବୋପରି ସାମ୍ପ୍ରତିକ ସମାଜର ବିଭିନ୍ନ ସ୍ୱର ଓ ସମସ୍ୟା ତାଙ୍କ ନାଟକର କାହାଣୀରେ ଅଙ୍ଗୀଭୂତ। ତାଙ୍କ ନାଟକରେ କେଉଁଠି ରହିଛି ସ୍ୱର୍ଦ୍ଧିତବୈପ୍ଳବିକ ସ୍ୱର ତ କେଉଁଠି ରହିଛି ହାସ୍ୟ, ବ୍ୟଙ୍ଗ ଓ ବିଦ୍ରୂପର ଛଟା। ସେ କେବଳ ନାଟ୍ୟକାର ନୁହନ୍ତି ଅଧିକନ୍ତୁ ଓଡ଼ିଆ ସାହିତ୍ୟର ଜଣେ ମୌଳିକ ସମାଲୋଚକ। ବିଶେଷତଃ ନାଟ୍ୟ ସମାଲୋଚନା ସାହିତ୍ୟକୁ ତାଙ୍କର ଉଲ୍ଲେଖନୀୟ ଅବଦାନ ସ୍ୱୀକାର୍ଯ୍ୟ। ଏହା ସହିତ ଜଣେ ଜୀବନୀ ଲେଖକ ଓ ଶିଶୁ ସାହିତ୍ୟିକ ଭାବରେ ତାଙ୍କର ପ୍ରତିଭା ଦେଦୀପ୍ୟମାନ । ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ସହ ଅନ୍ୟାନ୍ୟ ବହୁ ପୁରସ୍କାର ଓ ସମ୍ମାନରେ ସେ ସମ୍ବର୍ଦ୍ଧିତ।

ଡ.ସାହୁଙ୍କର ଅନ୍ୟତମ ଶ୍ରେଷ୍ଠ ନାଟକ ହେଉଛି 'ପ୍ରାୟଶ୍ଚିତ' (୨୦୦୧) । ଜଣେ ନୀତିଭ୍ରଷ୍ଟ ଅଥଚ ପ୍ରଭାବଶାଳୀ ରାଜନେତାଙ୍କ ଦମନପ୍ରବଣତା ସହ ସତ୍ୟନ୍ୟାୟ, ଆଦର୍ଶର ପୂଜାରୀ ଜନୈକ ଯୁବକଙ୍କର ସଂଘର୍ଷ ଏ ନାଟକର ମୁଖ୍ୟ ବିଷୟବସ୍ତୁ।ଏହି ଆଲୋଚନାରେ ନାଟକଟିର କଥାବସ୍ତୁ, ଚରିତ୍ର, ଭାଷା, ସଂଳାପ, ମଞ୍ଚୀୟକ୍ଷମତା ଆଦି ସଂପର୍କରେ ସଂକ୍ଷେପରେ ଆଲୋଚନାର ଉଦ୍ୟମ କରାଯାଇଛି।

'ପ୍ରାୟଶ୍ଚିତ' ନାଟକର ବିଷୟବସ୍ତୁ ସଂକ୍ଷେପରେ ଏହିପରି । ଅଧ୍ୟାପକ ରଣଜିତ୍ ପଟ୍ଟନାୟକ କୃଷ୍ଣା ନାମ୍ନୀ ତରୁଣୀକୁ ଗୁଣ୍ଡାଙ୍କ ଅତ୍ୟାଚାର ଓ ଦୌରାତ୍ମ୍ୟରୁ ରକ୍ଷା କରିବାକୁ ଯାଇ କ୍ଷତାକ୍ତ ହୋଇଛନ୍ତି। କୃଷ୍ଣା ମଧ୍ୟ ଅନୁରୂପ ଭାବରେ କ୍ଷତାକ୍ତ ହୋଇ ହସ୍‌ପିଟାଲ୍‌ରେ ଚିକିତ୍ସାପରେ ରଣଜିତ୍‌ଙ୍କ ଘରେ ଆଶ୍ରୟ ନେଇଛି। ଘଟଣାଟି ପୋଲିସ୍ କେସ୍‌ର ରୂପନେବା ପରେ ଉଭୟ ରଣଜିତ୍ ଓ କୃଷ୍ଣାଙ୍କ ଜୀବନ ଦୁର୍ବିସହ ହୋଇପଡ଼ିଛି କାରଣ, ଏ ଅତ୍ୟାଚାର

ଘଟାଇଥିବା ଦୁଇ ଅସାମାଜିକ ଗୁଣ୍ଡା ଶ୍ରେଣୀୟ ଯୁବକ ହେଲେ ଦୁଇ ବିଶିଷ୍ଟ ରାଜନେତାଙ୍କ ଏକ ଏକ ପୁତ୍ର। ତନ୍ମଧ୍ୟରୁ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ସାଂସଦ ସାବତଙ୍କ ପୁଅ, ଯାହାର ନାମ ପପୁ। ସେମାନେ ଆରେଷ୍ଟ ହେବାପରେ ରଣଜିତ ଓ କୃଷ୍ଣାଙ୍କୁ ଅନେକ ପ୍ରକାର ପ୍ରତ୍ୟକ୍ଷ ଓ ପରୋକ୍ଷ ଧମକ ଦିଆଯାଇଛି। କେତେବେଳେ ଟେଲିଫୋନ୍ ମାଧ୍ୟମରେ ତ କେତେବେଳେ ଘର ଭିତରେ ପଶି ଅଭଦ୍ରୋଚିତ ଆଶାଳୀନ ବ୍ୟବହାର ମାଧ୍ୟମରେ ଜୀବନରେ ମାରି ଦେବାକୁ ଧମକ ଦେଇ କେସ୍ ଉଠାଇ ନେବାକୁ ଚାପ ପ୍ରୟୋଗ କରାଯାଇଛି। ରଣଜିତ୍ ସହରର ଜନଗହଳିପୂର୍ଣ୍ଣ ସୁନ୍ଦର ଏକ ଛକ ଜାଗାରେ ଘରଟିଏ କିଣି ସଦ୍ୟ ଗୃ୍ୟହପ୍ରବେଶ କରିଛନ୍ତି। ନବନିର୍ବାଚିତ ମୁଖ୍ୟମନ୍ତ୍ରୀଙ୍କ ସମ୍ବର୍ଦ୍ଧନା ସକାଶେ , ଘର ବ୍ୟବହୃତ ହେବ କହି ଘର ଛାଡ଼ି ଦେବାକୁ ପାର୍ଟି ଗୁଣ୍ଡାମାନେ ବାରମ୍ବାର ଆସି ଅକଥନୀୟ ଜୁଲମ କରୁଛନ୍ତି। କୃଷ୍ଣାଙ୍କ ପିତା ବିଜୟ ଏ ଦୁଃସମ୍ବାଦ ପାଇ ମଫସଲରୁ ଧାଇଁ ଆସିଛନ୍ତି ରଣଜିତ୍ ଓ କୃଷ୍ଣାଙ୍କ ପାଖକୁ କିନ୍ତୁ ଝିଅ କୃଷ୍ଣାକୁ ସାଙ୍ଗରେ ନେଇଯିବା ପରିବର୍ତ୍ତେ ଆଉ ପନ୍ଦରଦିନ ସେଠାରେ ଥାଉ ବୋଲି ରଣଜିତ୍‌ଙ୍କୁ ଅନୁରୋଧ କରିଛନ୍ତି। କାରଣ ମଫସଲରେ କୃଷ୍ଣାର ଉପସ୍ଥିତି ଯୋଗୁ ଆଉ ପନ୍ଦର ଦିନ ପରେ ହେବାକୁ ଥିବା କୃଷ୍ଣାର ଭାଇର ବିଭାଘରରେ ଓ କୃଷ୍ଣା ସହିତ ପ୍ରମୋଦର ସ୍ଥିରିକୃତ ବିବାହ ପ୍ରସ୍ତାବରେ କୌଣସି ବିଘ୍ନ ଘଟିପାରେ। ଏକ ପକ୍ଷରେ ରଣଜିତ୍ ଅବିବାହିତ, ଅନ୍ୟପକ୍ଷରେ ଗୁଣ୍ଡାଙ୍କ ଦୌରାତ୍ମ୍ୟରେ ପୀଡ଼ିତା କୃଷ୍ଣା ଗୋଟିଏ ଘରେ ଅବସ୍ଥାନ କରୁଥିବାରୁ ଚକ୍ଷୁଶୂଳ ପରିସ୍ଥିତି, ପୁନଶ୍ଚ ରଣଜିତ୍‌ଙ୍କ ଘରେ ବୋମା ଆତଙ୍କ-ଏସବୁ ଅବାଞ୍ଛିତ ଅଘଟଣର ଶିକାର ହୋଇ ରଣଜିତ୍ ଭାରାକ୍ରାନ୍ତ ହୋଇପଡ଼ିଛନ୍ତି କିନ୍ତୁ ସେ ନିର୍ଭୟ ଓ ଅଟଳ ରହନ୍ତି । ଅନ୍ୟାୟ ନିକଟରେ ମଥାନତ କରନ୍ତି ନାହିଁ ।

ମୁଖ୍ୟ ଆରୋପୀ ପପୁ, ଯାହାଙ୍କର ପିତା ଜଣେ ଦୁର୍ଦ୍ଧାନ୍ତ ରାଜନେତା, ସେ ନିଜର ସ୍ୱାର୍ଥ ହାସଲ କରିବାକୁ ଯେ କୌଣସି ସ୍ତରକୁ ଯାଇପାରନ୍ତି। ସେ ଜାଣନ୍ତି ସଦ୍ୟ ନିର୍ବାଚିତ ତାଙ୍କର ଦଳର ଦୁଇ ତୁଙ୍ଗ ନେତା ମଧ୍ୟରୁ ଯେ କେହି ହାଇକମାଣ୍ଡଙ୍କ ନିର୍ଦ୍ଦେଶରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରନ୍ତି। କିନ୍ତୁ ତାଙ୍କର ଭିତର ଉଦ୍ଦେଶ୍ୟ ସେ ଏମ୍.ପି ଭାବରେ ନୁହେଁ, ବରଂ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟର ସର୍ବମୟ କର୍ତ୍ତା ହେବାକୁ ବା ଯିଏ ମୁଖ୍ୟମନ୍ତ୍ରୀ ହେବେ ତାଙ୍କୁ ବଶବର୍ତ୍ତୀ କରିବାକୁ । ଅନ୍ୟ କେହି ମୁଖ୍ୟମନ୍ତ୍ରୀ ହେଲେ ହୁଏତ ତାଙ୍କର ପୁଅ ପପୁକୁ ଜେଲ୍‌ରୁ ମୁକ୍ତ କରିବା ସମ୍ଭବ ହୋଇନପାରେ । ଏଥିପାଇଁ ସେ ରଚନା କରିଛନ୍ତି ଷଡ଼ଯନ୍ତ୍ର। ପ୍ରଥମେ ସେ କୃଷ୍ଣାର ପିତା ବିଜୟଙ୍କର ପେନ୍‌ସନ୍ ଗ୍ରାଚୁଇଟ୍ ପ୍ରକାରନ୍ତେ ବନ୍ଦ କରି ଦେଇ ତାଙ୍କ ମନରେ ଭୟ ସୃଷ୍ଟି କରିଛନ୍ତି। ଦ୍ୱିତୀୟରେ ତାଙ୍କୁ ଆଗାମୀ ମ୍ୟୁନିସ୍‌ପାଲିଟି ଇଲେକ୍‌ସନ୍‌ରେ ଜିତାଇ ଚେୟାରମ୍ୟାନ୍ କରିଦେବାର ପ୍ରଲୋଭନ

ଦେଖାଇଛନ୍ତି । ତୃତୀୟରେ ତାଙ୍କର ଭାବୀ ଜାମାତା ପ୍ରମୋଦକୁ ଦିଲ୍ଲୀରେ ଚାକିରି କରାଇଦେବାକୁ ନିର୍ଭରଯୋଗ୍ୟ ପ୍ରତିଶ୍ରୁତି ଦେଇଛନ୍ତି । ସାବତଙ୍କ ଦ୍ୱାରା ରଚିତ ଅନ୍ୟତମ ଜଘନ୍ୟ ଷଡ଼ଯନ୍ତ୍ରଟି ହେଉଛି ମୁଖ୍ୟମନ୍ତ୍ରୀ ଭାବେ ଘୋଷିତ ହେମେନ୍ଦ୍ରଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେବା ଆଳରେ ନିହିତ କରାଇବା ଓ ଏହି ଜଘନ୍ୟ କାର୍ଯ୍ୟଟିକୁ ସେ ଗୁଣ୍ଡା ଓ ବୋମା ଦ୍ୱାରା ମଧ୍ୟ ସାକାର କରାଇଛନ୍ତି ।

ଚାକିରି, ବଡ଼ଲୋକ ତଥା ନେତା ହେବାର ପ୍ରଲୋଭନରେ ବଶବର୍ତ୍ତୀ ହୋଇ କୃଷ୍ଣାର ପିତା ବିଜୟ ଓ ଭାବୀ ସ୍ୱାମୀ ପ୍ରମୋଦ କୋର୍ଟରେ କୃଷ୍ଣାଙ୍କୁ ନିଜର ବୟାନ ବଦଳାଇବାକୁ ପରାମର୍ଶ ଦେଇଛନ୍ତି । ଏମାନଙ୍କର ଏ ପ୍ରକାର ସ୍ୱାର୍ଥାନ୍ୱେଷୀ କୁପରାମର୍ଶରେ କୃଷ୍ଣା ଆଶ୍ଚର୍ଯ୍ୟଚକିତ ହୋଇ ତା'ର ଦୃଢ ପ୍ରତିବାଦ ଜଣାଇଛି । ପିତା କୃଷ୍ଣାକୁ ବୁଝାଇଛନ୍ତି- ଅନ୍ୟ ଗତି ନାହି ମା ସଂସାର ଭିତରେ ତ ଆମକୁ ଚଳିବାକୁ ହେବ । ସେମାନଙ୍କ ସହ ବାଦ କରି ଆମେ କ'ଣ ଉଧେଇ ପାରିବା ?***** ତୁ ତ ଏ ଯାଏ ଏ ଦୁନିଆ ଭିତରକୁ ପଶିନୁ । ଆଉ ବଂଚିବା ପାଇଁ ଯଦି ଦେହର ରଙ୍ଗ, ମୁହଁର ଭାଷାଟାକୁ ବଦଳେଇ ଦିଆଯାଏ, ତେବେ ଭୁଲ ରହିଲା କୋଉଠି ?" ଅନୁରୂପ ଭାବରେ ପ୍ରମୋଦ ମଧ୍ୟ ପ୍ରେମ ସମ୍ପର୍କର ଦ୍ୱାହି ଦେଇ କୃଷ୍ଣା ଉପରେ ମାନସିକ ଚାପ ପ୍ରୟୋଗ କରିବାକୁ ଛାଡ଼ି ନାହିଁ- "ଧରି ନିଅ ତମ ଜୀବନରେ କିଛି ଘଟଣା ଘଟିନାହିଁ । **ତମେ ସେମାନଙ୍କୁ ଚିହ୍ନି ନାହଁ କିମ୍ବା କୌଣସି ଦୁର୍ଘଟଣା ଘଟିନାହିଁ ବୋଲି କହିବ । **ସତ୍ୟ, ଧର୍ମ, ନ୍ୟାୟ, ଆଦର୍ଶ-ଏ ସବୁରେ ପେଟ ପୂରେନା ***ଜୀବନର ଚରମ ସତ୍ୟ ହେଉଛି ବଞ୍ଚିବା । ଆଉ ବଞ୍ଚିବା ପାଇଁ ଯେ କୌଣସି ରାସ୍ତା ଆପଣେଇ ନେଲେ କିଛି କ୍ଷତି ନାହିଁ, ପାପ ନାହିଁ ।** ଆମ ସମ୍ପର୍କର ଡୋରି ତମ ହାତରେ । ତମେ ଚାହିଁଲେ ସେ ସମ୍ପର୍କ ଆହୁରି ନିବିଡ଼ ହେବ । ନଚେତ୍ ସକାଳ ସୂର୍ଯ୍ୟାଲୋକ ଭଳି ତାହା ନିମିଷକରେ ମିଳେଇଯିବ ।" କୃଷ୍ଣା ତଥାପି ନାସ୍ତିବାଣୀ ଶୁଣିବାରୁ ପ୍ରମୋଦ ଶେଷରେ ଚେତାଇ ଦେଇଛି- "ଠିକ୍ ଅଛି ଏଇଟା ଯଦି ତମର ଶେଷ ନିଷ୍ପତ୍ତି, ତେବେ ତମେ ନିଜ ବାଟ ଦେଖ । ମୁଁ ମୋ ରାସ୍ତାରେ ଯାଉଛି ।"

କୃଷ୍ଣା ମାନସିକ ଯନ୍ତଣାରେ କ୍ଷତ ବିକ୍ଷତ ହୋଇଛି । ତା'ଜୀବନର ଗୋଟିଏ ଦୁର୍ଘଟଣା ପାଇଁ ଅନେକ ଅଘଟଣ ଘଟିଯାଉଛି । ଯେଉଁ ଯୁବକ ଜଣକ କ୍ଷତାହତ କରି ତାକୁ ଏତେ ବଡ଼ ବିପତ୍ତିରୁ ଉଦ୍ଧାର କଲେ, ତାଙ୍କ ପ୍ରତି ଆହୁରି ବିପଦ ମାଡ଼ି ଆସିଛି । ତଥାପି ସେ ଭାଙ୍ଗି ପଡ଼ିନାହାନ୍ତି କି ଧମକ ନିକଟରେ ମଥାନତ କରି ନାହାନ୍ତି । ବରଂ ଅନ୍ୟାୟର ପ୍ରତିରୋଧ କରିବା ପାଇଁ ସେ ବଦ୍ଧ ପରିକର । ଏପରି କ୍ଷେତ୍ରରେ କୃଷ୍ଣା ଯଦି ଚାପ ଆଗରେ ମୁଣ୍ଡ ନୁଆଁଇ କେଶ୍ ଉଠାଇ ନିଏ ତେବେ ରଣଜିତ୍‌ଙ୍କ ଉତ୍ସର୍ଗପଣର ମୂଲ୍ୟ ରହିଲା କେଉଁଠି ? ବିଶ୍ୱାସରେ ସେ କିପରି ବିଷ ଭରିଦେବ ? ଯେଉଁ ଡାଳରେ ସେ ନିଜେ ବସିଛି ତାକୁ

ସେ ନିଜେ ଭାଙ୍ଗିବ କିପରି ? ତା'ପରେ ଏହିସବୁ ଘଟଣାରୁ ରଣଜିତଙ୍କ ସହ ଅର୍ଚ୍ଚନାର ବିବାହ ଭାଙ୍ଗିଯାଇଛି ଓ ଅର୍ଚ୍ଚନା ଅନ୍ୟତ୍ର ବିବାହ କରିଛନ୍ତି। ରଣଜିତ୍‌ଙ୍କ ଜୀବନ ପାଇଁ ଏ ଆଉ ଏକ ଧକ୍‌କା। ହଁ, ଏହା ସତ୍ୟ ଯେ, ଦେଇଥିବା ବୟାନକୁ କୃଷ୍ଣା ବିଚାରାଳୟରେ ଅସ୍ୱୀକାର କଲେ ଅପରାଧୀ ଅନାୟାସରେ ମୁକୁଳି ଯିବେ, ନେତାଙ୍କର ତଥାକଥିତ ସ୍ୱଚ୍ଛ ଭାବମୂର୍ତ୍ତି ଅତୁଟ ରହିବ, ତା ପିତାଙ୍କର ପେନ୍‌ସନ୍, ଗ୍ରାଚୁଇଟ୍ ମିଳିଯିବ। ନେତା ବଡ଼ ଲୋକ ହେବାର ସ୍ୱପ୍ନ ସାର୍ଥକ ହେବ, ପ୍ରଯୋଜକଙ୍କର ଚାକୀରି ହୋଇଯିବ ଓ ତାଙ୍କ ସହ ତା'ର ବିବାହ ହୋଇଯିବ, ସର୍ବୋପରି ରଣଜିତ୍‌ଙ୍କ ଦୁର୍ବିସହ ଜୀବନ ସ୍ୱଚ୍ଛନ୍ଦ ହୋଇଯିବ କିନ୍ତୁ ଏତେବସୁ ଆପାତଃ ଭଲରେ ଭେଳିକି ସତ୍ୟ, ନ୍ୟାୟ ଓ ଆଦର୍ଶ ନିକଟରେ କେତେ ନ୍ୟୂନ ସତେ।

ଶେଷରେ କେତେକ ଅଭାବନୀୟ ଘଟଣାରେ ନାଟକର ପରିଣତି ଘଟିଛି । କୃଷ୍ଣାର ମସ୍ତିଷ୍କ ବିକୃତି ଅଛି ବୋଲି କୋର୍ଟରେ ସତ୍ୟପାଠ ଦାଖଲ କରାଯାଇଛି। ପ୍ରମାଣିତ ହୋଇଯାଇଛି କୃଷ୍ଣାର ବିବୃତ୍ତି ସତ ନୁହେଁ । ସବୁ ଅସମ୍ଭବ ସମ୍ଭବ ହୋଇଯାଇଛି। ଏମ୍.ପି ସାବତଙ୍କ ପୁଅ ପପୁ ଓ ଅନ୍ୟଜଣକ ନିର୍ଦ୍ଦୋଷରେ ଖଲାସ ହୋଇଛନ୍ତି। ପିତା ବିଜୟ ଏମ୍.ପିଙ୍କ ଖାସ୍ ରାଜନୈତିକ ସହଯୋଗୀ ପାଲଟି ଯାଇଛନ୍ତି । ପ୍ରମୋଦର ଚାକୀରି ହୋଇଯାଇଛି । ସମସ୍ତେ ନିଜର ସ୍ୱାର୍ଥ ହାସଲ କରି ନେଇଛନ୍ତି। ଶେଷରେ କିନ୍ତୁ ସାବତଙ୍କ ଆଶା ଦୁରାଶାରେ ପରିଣତ ହୋଇଛି। ପାର୍ଲିଆମେଣ୍ଟ ଭାଙ୍ଗିଯିବାରୁ ସେ ଏମ୍.ପି ପଦ ହରାଇଛନ୍ତି । ପ୍ରମୋଦ ପ୍ରତାରକ ସାଜି କୃଷ୍ଣା ସହ ତା'ର ବିବାହକୁ ପ୍ରତ୍ୟାଖ୍ୟାନ କରିଛି । ନାଟ୍ୟକାରଙ୍କ ଭାଷାରେ:- "କାମ ସରିଲା ପରେ କିଏ କାହାକୁ ପଚାରେ !"କିନ୍ତୁ ନିଃସ୍ୱାର୍ଥପର ଭାବରେ ଯେଉଁ ଅଧ୍ୟାପକ ଜଣକ ନିଜ ଜୀବନକୁ ବାଜି ଲଗାଇଲେ, ସେହି ରଣଜିତଙ୍କୁହିଁ ସବୁଠୁ ବେଶୀ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଛି। ଭାରସାମ୍ୟ ହରାଇ ମାନସିକ ରୋଗୀ ପାଲଟି ଯାଇଛନ୍ତି ସେ। କୃଷ୍ଣା ଶେଷରେ ଅନୁତାପ ଅନଳରେ ଦଗ୍‌ଧିଭୂତା ହୋଇ ପ୍ରାୟଶ୍ଚିତ୍ତ କରିବାକୁ ଧାଇଁ ଆସିଛି । ରଣଜିତଙ୍କୁ ବିବାହ କରି ଅର୍ଦ୍ଧାଙ୍ଗିନୀ ଭାବରେ ଆଜୀବନ ତାଙ୍କରି ସେବାରେ ନିଜ ଜୀବନକୁ ଅର୍ପଣ କରିଦେଇଛି। ନାଟକର ନାମ ଏଠି ସାର୍ଥକ ହୋଇଛି।

ବିଶ୍ଳେଷଣ କଲେ ଦେଖାଯିବ ଯେ ନାଟ୍ୟବସ୍ତୁର ଦୁଇଟି ମୁଖ୍ୟ ସ୍ରୋତ ରହିଛି । ଗୋଟିଏ ହେଉଛି ରଣଜିତ୍ ଓ କୃଷ୍ଣା ସମ୍ପର୍କିତ କାହାଣୀ। ଅନ୍ୟଟି ହେଉଛି ଏମ୍.ପି. ସାବତଙ୍କ ରାଜନୈତିକ ପ୍ରଭାବ ଓ ପ୍ରତିହଂସାର କଥା। ପ୍ରତମଟି ଆଧାଂକାରିକ ଓ ଦ୍ୱିତୀୟଟି ପ୍ରାସଙ୍ଗିକ କଥାବସ୍ତୁ। ଅନ୍ୟ କୌଣସି କଥାବସ୍ତୁ ହେଉଛି କୃଷ୍ଣାର ପ୍ରେମିକ ପ୍ରମୋଦ ଓ କୃଷ୍ଣାର ପିତା ବିଜୟ କୈନ୍ଦ୍ରିକ ପ୍ରସଙ୍ଗ । ମୁଖ୍ୟ କଥାବସ୍ତୁ ସହ କୌଣସି କଥାବସ୍ତୁର ଉପଯୁକ୍ତ ସନ୍ତୁଳନ

ହେଉଛି ଗୋଟିଏ ସୁସ୍ଥ ନାଟକର ଲକ୍ଷଣ। ଆଲୋଚ୍ୟ ନାଟକରେ ସବୁ ଗୌଣ କଥାବସ୍ତୁ ସହ ମୁଖ୍ୟ କଥାବସ୍ତୁର ନିବିଡ଼ ଯୋଗସୂତ୍ର ରହିଛି ଏବଂ ଏଗୁଡ଼ିକ ମୁଖ୍ୟ କଥାବସ୍ତୁକୁ ଅଧିକ ପରିପୁଷ୍ଟ କରିବାରେ ସମର୍ଥ ହୋଇଛନ୍ତି। କିନ୍ତୁ ଏମ୍.ପି. ସାବତଙ୍କ ବ୍ୟକ୍ତିଗତ ରାଜନୈତିକ ଅସୂୟା, ଶତୃତା, ନିଜର ମୁଖ୍ୟମନ୍ତ୍ରୀ ହେବାର ଅଭିଳାଷ, ନବଘୋଷିତ ମୁଖ୍ୟମନ୍ତ୍ରୀଙ୍କୁ ନିହିତ କରାଇବା ଆଦି ପ୍ରସଙ୍ଗ ମୁଖ୍ୟ କଥାବସ୍ତୁ ସହ ବିଶେଷ ସମ୍ପର୍କ ରଖୁଥିବା ମନେହୁଏ ନାହିଁ । ତେବେ ନାଟକର ଖଳ ନାୟକକୁ ବଳିଷ୍ଠ କରିବାକୁ ଓ ସାମ୍ପ୍ରତିକ ଭ୍ରଷ୍ଟ ଓ ସ୍ୱାର୍ଥସର୍ବସ୍ୱ ରାଜନେତାଙ୍କ ସ୍ୱରୂପ ଉଦ୍‌ଘାଟନ କରିବାକୁ ହୁଏତ ଏଭଳି ପ୍ରସଙ୍ଗର ଅବତାରଣା ଆବଶ୍ୟକ ହୋଇପଡ଼ିଛି । ନାଟକଟିରେ କିନ୍ତୁ ସୂଚ୍ୟ କଥାବସ୍ତୁ ଅପେକ୍ଷାକୃତ ଅଧିକ ପରିମାଣରେ ସଂଯୋଜିତ । କୃଷ୍ଣାଙ୍କ ପ୍ରତି ଗୁଣ୍ଡାଙ୍କ ଅସଦାଚରଣ- ଯେଉଁ ଘଟଣାକୁ କେନ୍ଦ୍ରକରି ସମଗ୍ର ନାଟ୍ୟବସ୍ତୁ ଗଢ଼ି ଉଠିଛି ତାହାକୁ ନାଟକରେ ସୂଚ୍ୟବସ୍ତୁ ଭାବରେ ଉପସ୍ଥାପନା କରାଯାଇଛି। ନାଟକର ପ୍ରମୁଖ ଘଟଣାମାନ ଦୃଶ୍ୟବସ୍ତୁ ହେବା ଆବଶ୍ୟକ।

ଏ ନାଟକର କଥାବସ୍ତୁର ମୁଖ୍ୟ ଆକର୍ଷଣ ହେଉଛି ଏହାର ଘଟଣା ବହୁଳତା। ନାଟ୍ୟଧର୍ମଟି ନାଟକର ପୂର୍ଣ୍ଣ ଭାବରେ ଅନୁସୃତ। ଘଟଣାବହୁଳ ସଂଘାତ-ସଂଘର୍ଷମୟ ନାଟ୍ୟବସ୍ତୁ ଦର୍ଶକଙ୍କୁ ପ୍ରେକ୍ଷାଗୃହରେ ଧରି ରଖେ । ଏ ନାଟକର ପ୍ରାୟ ପ୍ରତ୍ୟେକ ଦୃଶ୍ୟରେ କିଛିକିଛି ନୂଆ ଘଟଣା ବା ସଂଘର୍ଷ ଘଟିଛି ଯାହା ପରସ୍ପର ସହ ମିଶି ଏକ ଶୃଙ୍ଖଳିତ ଜାଲର କାୟା ଧାରଣ କରିଛି।

ସାମ୍ପ୍ରତିକ ସମାଜରେ ଘଟୁଥିବା କେତେକ ଅବାଂଛିତ ଘଟଣା ନାଟ୍ୟ କାହାଣୀରେ ପ୍ରତଫଳିତ। ନାରୀର ସ୍ଥିତିକୁ ସୁଦୃଢ଼ କରିବା ପାଇଁ ସବୁ ଦିଗରୁ ଉଦ୍ୟମ କରାଯାଉଥିବା ବେଳେ ଆଜି ମଧ୍ୟ ସମାଜରେ ନାରୀର ସ୍ଥିତି ବିପନ୍ନ ହୋଇପଡୁଛି। ନାରୀକୈନ୍ଦ୍ରିକ ଅସଦାଚରଣ, ବ୍ୟଭିଚାର ବୃଦ୍ଧି ପାଉଛି। କେହି ଏହାର ପ୍ରତିବାଦ କଲେ ତାକୁ ମୂଲ୍ୟ ଦେବାକୁ ପଡୁଛି। କେହି କେହି ଚାପ ଆଗରେ ମୁଣ୍ଡ ନୁଆଁଇ ଦେଉଛନ୍ତି। "ଅନୀତି ବିରୁଦ୍ଧରେ ସାଧାରଣ ଜନତାର ପ୍ରତିବାଦ ପାଣି ଫୋଟକା ପରି" ମିଳେଇ ଯାଉଛି। ମନରେ ସ୍ୱତଃ ସଂଶୟ ଓ ପ୍ରଶ୍ନ ଉଠୁଛି- "ସତରେ ସମାଜରେ ଭଲ ଲୋକଙ୍କର କ'ଣ ସ୍ଥାନ ନାହିଁ ?"

ନାଟ୍ୟ କାହାଣୀରେ ପ୍ରତଫଳିତ ଅନ୍ୟ ଏକ ବିଶିଷ୍ଟ ଦିଗ ହେଉଛି-ସାଂପ୍ରତିକ ରାଜନୈତିକ ଦୁଃସ୍ଥିତି ଓ ରାଜନେତାଙ୍କ ଭ୍ରଷ୍ଟ ଓ ସ୍ୱାର୍ଥସର୍ବସ୍ୱ ମନୋବୃତ୍ତି । ଆଜିର ରାଜନେତା ବିଚାର କରେ ରାଜନୀତି ହେଉଛି ତା'ର ବିଜିନେସ୍। ବିନା ପ୍ରଫିଟ୍‌ରେ ସେ ବିଜିନେସ୍ କରେନି।" ରାଜନୀତିରେ ଥାଳ କେବେ ପୂର୍ଣ୍ଣ ହୁଏନି। ଯେତେ ଆସିଲେ ବି ଅଘଟା। ବିଶ୍ୱଗର୍ଭ, ଯାହା ଆସିବ ଭର୍ତ୍ତି ହୋଇଯିବ" । ନିର୍ବାଚନ ବେଳେ ସେ ବିରୋଧୀକୁ

ଅନାୟାସରେ ହତ୍ୟା କରିପାରେ। ନିଜର ସନ୍ତାନ ପାଠ ପ୍ରତି ଅନାଗ୍ରହ ଦେଖାଇଲେ, ବିଳମ୍ବିତ ରାତ୍ରିରେ ମଦ୍ୟପାନ କରି ଘରକୁ ଫେରିଲେ ତାକୁ ସେ ଆଜିକାଲିର ଫେସନ୍ ବୋଲି ମନେ କରେ, ଅପରାଧ କଲେ ଘଣ୍ଟ ଘୋଡ଼ାଏ। ପୋଲିସ୍, ଗଣମାଧ୍ୟମ ଏପରିକି ବିଚାରାଳୟକୁ ମଧ୍ୟ ନିଜ ନିୟନ୍ତ୍ରଣକୁ ନେଇଯାଏ। ଭଡ଼ାଟିଆ ଗୁଣ୍ଡାଙ୍କୁ ନିଯୋଜିତ କରି ଧମକ ଚମକ ଦିଏ, ଜୁଲମ କରେ। ଆବଶ୍ୟକ ପଡ଼ିଲେ ଥୋପର ପ୍ରଲୋଭନ ଦେଖାଇ ସବୁକିଛି ଅକ୍ତିଆର କରିପାରେ। ରାଜନୀତି ଓ ସେବା ନାମରେ ଦୁର୍ନୀତି ଓ ନୀଚ ସ୍ୱାର୍ଥପ୍ରବରତାକୁ ଆପଣାର କରେ। ନାଟକଟିରେ ସାମ୍ପ୍ରତିକ କାଳରେ ବିକୃତ ଯୁବମାନସ ରୂପାୟିତ। ଯୁବପ୍ରାଣର ଅଦମ୍ୟ ଉତ୍ସାହ ଓ ଉଦାମତା ଗଠନମୂଳକ କାର୍ଯ୍ୟକରେ ନିଯୋଜିତ ନ ହୋଇ ବ୍ୟଭିଚାର ଓ ଭ୍ରଷ୍ଟାଚାରରେ ଲିପ୍ତ ରହୁଛି। ଏହାକୁ ପ୍ରୋତ୍ସାହନ ଦେଉଛନ୍ତି ରାଜନୈତିକ ନେତାଗଣ। ସ୍ୱାର୍ଥହାସଲପାଇଁ ସେମାନେ ଯୁବଶକ୍ତିର ଅପବ୍ୟବହାର କରୁଛନ୍ତି। ଯାହା ଫଳରେ ଆଜିର ଯୁବକ ସାଜୁଛନ୍ତି ଗୁଣ୍ଡା, ବଦ୍‌ମାସ୍, ବଳାତ୍କାରୀ ତଥା ହତ୍ୟାକାରୀ । ସେମାନେ ସମାଜର ବଡ଼ପଣ୍ଡା ତଥା ମନ୍ତ୍ରୀ ନେତାଙ୍କ ଛତ୍ର ଛାୟା ତଳେ ରହି ନିଜକୁ ଏକଛତ୍ରବାଦୀ ମନେ କରୁଛନ୍ତି ଓ ଯେ କୌଣସି ଅସାମାଜିକ କୁକର୍ମ କରିବାକୁ ପଶ୍ଚାତ୍‌ପଦ ହେଉ ନାହାନ୍ତି। ନାଟକଟିରେ ଏହିଭଳି ବିଧ୍ୱସ୍ତ, ବିକୃତ ତଥା ଦିଗହରା ଯୁବମାନସିକତାର ରୂପ ବିମ୍ବିତ ହୋଇଛି।

ସମାଜରେ ଆଉ କିଛି ଶ୍ରେଣୀର ଲୋକ ଅଛନ୍ତି ଯେଉଁମାନେ କିଛି ସ୍ୱାର୍ଥ ହାସଲ ବିନିମୟରେ ପତି ପତ୍ନୀଙ୍କ ବିରୁଦ୍ଧରେ ପ୍ରତିବାଦ କରିବା ପରିବର୍ତ୍ତେ ତାଙ୍କ ସହିତ ସାଲିସ୍ କରୁଛନ୍ତି। କୃଷ୍ଣାର ପ୍ରେମିକ ପ୍ରମୋଦ ଓ ପିତା ବିଜୟ କ୍ଷେତ୍ରରେ ସେୟା ହୋଇଛି। ଉଭୟ ନିଜର ଶ୍ରେୟ ସାଧନ ପାଇଁ କୃଷ୍ଣାକୁ କେସ୍ ଉଠାଇ ନେବାକୁ ବାଧ୍ୟ କରିଛନ୍ତି। ସ୍ୱାର୍ଥ ନିକଟରେ ମାନବୀୟ ମୂଲ୍ୟବୋଧ, ଏପରିକି ରକ୍ତ ସମ୍ପର୍କ ମଧ୍ୟ ତୁଚ୍ଛ ଓ ନଗଣ୍ୟ ହୋଇଯାଇଛି। ପ୍ରଥମେ ନିଜ କଥା ଭାବ । ପରେ ଅନ୍ୟ କଥା, ଦେଶ କଥା ଭାବିବ "ଅମଣିଷ ମନଃସ୍ଥିତି ଆଜି ଏହି ସ୍ତରରେ ପହଞ୍ଚିଲାଣି । ସତ୍ୟ, ଧର୍ମ, ନ୍ୟାୟ, ଆଦର୍ଶ ଆଜି ସ୍ୱପ୍ନ । ନାଟ୍ୟ କାହାଣୀରେ ନାଟ୍ୟକାର ଏସବୁ ଦୃଢ଼ତାର ଓ ସାହସର ସହ ପ୍ରତଫଳିତ କରି ସ୍ଖଳନୋନ୍ମୁଖୀ ଜନମାନସକୁ ସଚେତନ କରିବାକୁ ଉଦ୍ୟମ କରିଛନ୍ତି।

ନାଟକରେ ରହିଛି ନଅଟି ପୁରୁଷ ଚରିତ୍ର ଓ ଦୁଇଟି ନାରୀ ଚରିତ୍ର। ଅଧ୍ୟାପକ ରଣଜିତ୍, କୃଷ୍ଣା ଓ ଏମ୍.ପି ସାବତ ହେଲେ ନାଟକର ମୁଖ୍ୟ ଚରିତ୍ର। ତାଙ୍କର (ପୋଲିସ୍ ଇନ୍‌ସପେକ୍ଟର୍) ବ୍ରଜ (ରଣଜିତ୍‌ଙ୍କ ଚାକର), ସୁବୋଧ (ସାମ୍ବାଦିକ), ପ୍ରସନ୍ନ ଓ ଆନନ୍ଦ (ଗୁଣ୍ଡା), ପ୍ରମୋଦ (କୃଷ୍ଣାର ପ୍ରେମିକ), ବିଜୟ (କୃଷ୍ଣାର ପିତା), ସନ୍ଧ୍ୟା (ସାବତଙ୍କ ପତ୍ନୀ) ହେଲେ ଗୌଣ ଚରିତ୍ର। ଆଚରଣ ଦୃଷ୍ଟିରୁ ନାଟକର ସରଳ ଚରିତ୍ର (ଫ୍ଲାଟ୍ / ପଜେଟିଭ୍)ହେଲେ ରଣଜିତ୍, ବ୍ରଜ, ସନ୍ଧ୍ୟା, କୃଷ୍ଣା । ସାବତ, ପ୍ରସନ୍ନ, ଆନନ୍ଦ ହେଲେ

ଜଟିଳ / କୁଟିଳ (ରାଉଣ୍ଡ / ନେଗେଟିଭ୍) ଚରିତ୍ର। ଶଙ୍କର, ସୁବୋଧ, ପ୍ରମୋଦ, ବିଜୟ- ଏମାନେ ହେଲେ ପରିସ୍ଥିତି ଜନ୍ୟ ଚରିତ୍ର । ନାଟକଟିରେ ଚରିତ୍ର ଓ ବିନ୍ୟାସ ବେଶ୍‌ମପାଚୁପାନାଟକର ସଫଳତା କିନ୍ତୁ ନିର୍ଭର କରେ ଚରିତ୍ର ଚିତ୍ରଣର କଳା-କୁଶଳତା ଓ ଶୈଳୀ ଉପରେ।

ନାୟକର ନାୟକ ରଣଜିତ୍ । ସେ ସମସ୍ତ ନାୟକୋଚିତ ଗଚଣାବଳୀରେ ବିଭୂଷିତ । ସେ ଉଚ୍ଚଶିକ୍ଷିତ, ଶିକ୍ଷତ, ନୀତିବାନ ଧୈର୍ଯ୍ୟପରାୟଣ, ଦୃଢ ପ୍ରତିଜ୍ଞ ଓ ସତ୍‌ସାହସୀ। ତାଙ୍କର ସଂଳାପ, ଆଚରଣ ଓ କାର୍ଯ୍ୟକଳାପରୁ ପ୍ରତି ପଦକ୍ଷେପର ଉପରୋକ୍ତ ଗୁଣର ପରିଚୟ ମିଳେ। ନାଟକର ନାୟିକା କୃଷ୍ଣା। ତା'ଠାରେ ମଧ୍ୟ ନାୟିକା ସୁଲଭ ଗୁଣର ଅଭାବ ନାହିଁ । ସେ ଶିକ୍ଷିତା, ଧୈର୍ଯ୍ୟଶୀଳା, ଦୃଢମନା, ସାହସିନୀ ଓ ନ୍ୟାୟପରାୟଣା। କ୍ଷଣକାଳ ପାଇଁ ପରିସ୍ଥିତି ବଶତଃ ସେ କିଂ କର୍ତ୍ତବ୍ୟ ବିମୂଢ଼ା ହୋଇଯାଇଛି, କେସ୍ ଉଠି ଯାଇଛି। କିନ୍ତୁ ଶେଷରେ ସେ ପ୍ରାୟଶ୍ଚିତ୍ତ ପାଇଁ ଆଗେଇ ଆସିଛି। ନାଟକର ଅନ୍ୟତମ ମୁଖ୍ୟ ଚରିତ୍ର ଖଳନାୟକ ସାବତ। ଆଧିପତ୍ୟ ଓ କ୍ଷମତାଲିପ୍‌ସା, ହତ୍ୟା ପାଇଁ ଷଡ଼ଯନ୍ତ୍ର, ଅର୍ଥଲୋଭ, ମୁରବୀପଣରେ ଦାୟିତ୍ୱହୀନତା, ନୀତିହୀନତା ଆଦି ଯାବତୀୟ ଅବିଗଣକୁ ରାଜନୀତିର ଆଧାର ବୋଲି ମନେ କରୁଥିବା ଏହି ଚରିତ୍ରଟି ଅତ୍ୟନ୍ତ ଜୀବନ୍ତ ହୋଇପାରିଛି। ଗୌଣ ଖଳ ଚରିତ୍ର ଭାବରେ ଗୁଣ୍ଡାଦ୍ୱୟର ଚିତ୍ରଣ ସ୍ୱାଭାବିକ ହୋଇପାରିଛି। ଯେଉଁ ଚରିତ୍ର ମାନେ ମୂଳତଃ ସରଳ, କିନ୍ତୁ ପରିସ୍ଥିତି ବଶରୁ ନିଜ ସ୍ୱାର୍ଥ ସକାଶେ ସାମୟିକ କାଳ ପାଇଁ ସୁବିଧାବାଦୀ ହୋଇଯାଆନ୍ତି ସେମାନଙ୍କୁ ବାସ୍ତବରେ ନା ସରଳ ନା ଜଟିଳ ପର୍ଯ୍ୟାୟଭୁକ୍ତ କରାଯିବ। ସେମାନଙ୍କୁ ପରିସ୍ଥିତିଜନୀ ଚରିତ୍ର କହିବା ଯଥାର୍ଥ ହେବ। ଏ ଧରଣର ଚରିତ୍ର ହେଲେ ଶଙ୍କର, ସୁବୋଧ, ଓ ବିଜୟ । ପୋଲିସ୍ ଇନ୍‌ସପେକ୍ଟର ଶଙ୍କର ରଣଜିତ୍‌ଙ୍କ ପାଖରେ ନୀତିନିପୁଣ ଅଥଚ ସାବତଙ୍କ ପାଖରେ ବଶମ୍ୱଦ। ସାମାଜିକ ସୁବୋଧ କୃଷ୍ଣାଙ୍କ ନିକଟରେ ସହାନୁଭୂତିଶୀଳ ଓ ପ୍ରତିକ୍ରିୟାଶୀଳ ଅପର ପକ୍ଷରେ ସାବତଙ୍କ ନିକଟରେ ଅନୁଗତ। ପ୍ରମୋଦ ଏକ ପକ୍ଷରେ କୃଷ୍ଣାଙ୍କ ସହ ଜୀବନ ଗଢ଼ିବାର ପ୍ରସ୍ତାବ ରଖୁଛି, ପରପକ୍ଷରେ କୃଷ୍ଣାଙ୍କ ପ୍ରତି ଅତ୍ୟାଚାର କରିଥିବା ପ୍ରତିପକ୍ଷ ପ୍ରଲୋଭନରେ ବଶବର୍ତ୍ତୀ ହୋଇ କୃଷ୍ଣାର ପ୍ରେମକୁ ପ୍ରତ୍ୟାଖ୍ୟାନ କରି ଅନ୍ୟତ୍ର ବିବାହ କରୁଛି। ପୀଡ଼ିତାର ପିତା ବିଜୟ ବଡ଼ ଦୋଦୁଲ୍ୟମାନ ଅବସ୍ଥା ନେଇ ଗତି କରିଛନ୍ତି। ଏକ ପକ୍ଷରେ ପିତା ହିସାବରେ ସେ ଚାହିଁଛନ୍ତି ଆପୋଷ ସମାଧାନ ଝିଅର ସୁଖଦ ଭବିଷ୍ୟତ। ଦୁର୍ଦ୍ଦାନ୍ତ ଲୋକଙ୍କ ସହ ଲଢ଼େଇ କଲେ ଆହୁରି କ୍ଷତାକ୍ତ ହେବାକୁ ପଡ଼ିବ। ଦୁର୍ନାମ ହେବ । ପେନ୍‌ସନ୍ ଗ୍ରାଚୁଇଟ୍ ନପାଇଁ ବୃଦ୍ଧର ଜୀବନ ହନ୍ତସନ୍ତ ହେବ । ଆହୁରି କେତେ କ'ଣ କ୍ଷତି ହୋଇପାରେ। ତା'ର କଳନା କରିହେବ ନାହିଁ। ଅପର ପକ୍ଷରେ ଟଇକେ ମୁଣ୍ଡ ନୁଆଁଇଲେ ଝିଅର ବିବାହ ହୋଇଯିବ, ଜ୍ୱାଇଁର ଚାକିରୀ ହୋଇଯିବ, ନିଜେ ଜଣେ ରାଜନେତା ଓ ବଡ଼ଲୋକ

ହେବାର ସୌଭାଗ୍ୟ ମିଳିବ। ଶେଷରେ ସେ ଦ୍ୱିତୀୟ ପନ୍ଥାଟିକୁ ଗ୍ରହଣ କରିନେବାକୁ ବାଧ୍ୟ ହୋଇଛନ୍ତି। ଗୌଣ ଓ ସରଳ ଚରିତ୍ର ମଧ୍ୟରେ ଚାକର ବ୍ରଜ ସବୁଠୁ ବେଶୀ ପ୍ରଭାବଶାଳୀ ହୋଇପାରିଛି। ସେ ତା' ଦୁନିଆରେ ସବୁବେଳେ ମସଗୁଲ୍ ଥାଏ। ସମସ୍ତଙ୍କ ସୁଖ ଦୁଃଖରେ ସମଭାଗୀ ସେ ଉଦାର ଓ ଅନୁଗତ ଚରିତ୍ରଟିଏ। ଗୌଣ ଚରିତ୍ର ଭାବରେ ସାବତଙ୍କ ସ୍ତ୍ରୀ ସନ୍ଧ୍ୟାର ମଧ୍ୟ ଅନୁରୂପ ଉପଯୋଗ ହୋଇପାରିଛି। ତେବେ ସ୍ଥୁଳତଃ ସବୁ ଗୌଣ ଚରିତ୍ରକୁ ଆବଶ୍ୟକତା ଦୃଷ୍ଟିରୁ ଏବଂ ପ୍ରାରମ୍ଭ-ବିକାଶ-ପରିଣତି ଦୃଷ୍ଟିରୁ ନାଟ୍ୟିକ ନ୍ୟାୟ ପ୍ରଦାନ କରାଯାଇଥିବା ମନେହୁଏ।

ସଂଳାପର ଅନ୍ୟତମ ବିଶିଷ୍ଟ ଧର୍ମ ହେଉଛି ଏହାର ପ୍ରସଙ୍ଗୌଚିତ୍ୟ ଓ ପାତ୍ରୌଚିତ୍ୟ। ଚରିତ୍ରର ଯୋଗ୍ୟତା ଓ ଆଚରଣ ଅନୁଯାୟୀ ଯଦି ଉପଯୁକ୍ତ ସଂଳାପ ପ୍ରୟୋଗ କରାନଯାଇଛି ତେବେ ସଂଳାପର ମୂଲ୍ୟ ହ୍ରାସ ପାଇବା ସଙ୍ଗେ ସଙ୍ଗେ ଚରିତ୍ର ଚିତ୍ରଣର ନ୍ୟୂନତା ପ୍ରମାଣିତ ହୁଏ। ଆଲୋଚ୍ୟ ନାଟକର ପାତ୍ରମୁଖୀ ଓ ପ୍ରସଙ୍ଗୋଚିତ ସଂଳାପ ଓ ଭାଷାର ପ୍ରୟୋଗ କରାଯାଇଛି।

ଗୋଟିଏ ନାଟକ ପାଠ୍ୟନାଟକ ଭାବରେ ଆଦୃତି ଲାଭ କରିପାରେ; କିନ୍ତୁ ମଞ୍ଚରେ ଅଭିନୀତ ହୋଇ ଦର୍ଶକୀୟ ଅଭିଳାଷ ପୂରଣ କରିପାରିଲେ ନାଟକ ପୂର୍ଣ୍ଣ ସଫଳ ହେଲା ବୋଲି କୁହାଯିବ। ପ୍ରକୃତରେ ନାଟକ ପାଇଁ କଷଟି ପଥର ହେଉଛି ମଞ୍ଚ। 'ପ୍ରାୟଶ୍ଚିତ୍ତ' ନାଟକରେ କାହାଣୀର ଗତିବିଧି, ବିଷୟବସ୍ତୁରେ ପ୍ରତଫଳିତ ସାଂପ୍ରତିକ ସମାଜର ନିଛକ ପ୍ରତିଛବି, ସଂଘାତ ଓ ସଂଘର୍ଷମୟ ଘଟଣାଚୟର କ୍ଷିପ୍ର ପ୍ରବାହ । ଚରିତ୍ର ଚୟନ ଓ ଚିତ୍ରଣ, ପାତ୍ରୋପଯୋଗୀ ଓ ପ୍ରସଙ୍ଗୋଚିତ ସଂଳାପ ଓ ଭାଷା, ସୀମିତ ଦୃଶ୍ୟପଟ ଓ ସନ୍ତୁଳିତ ଦୃଶ୍ୟ ସଂଯୋଜନା, ନାଟ୍ୟୋତ୍କଣ୍ଠା ଓ ସର୍ବୋପରି ନାଟକର ପରିମିତ ଅବଧି ପାଇଁ ମଞ୍ଚରେ ଏହା ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବ-ଏଥିରେ ସନ୍ଦେହ ନାହିଁ। ପୁନଶ୍ଚ ନାଟକଟି ଅନୁଗୁଳର 'ନାଟ୍ୟମ୍' ସଂସ୍ଥାଦ୍ୱାରା ଆୟୋଜିତ ଏକ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ତା୨୧.୧୨.୨୦୦୧ରିଖରେ ମଞ୍ଚସ୍ଥ ହୋଇ, ପରେ ପରେ ବିଭିନ୍ନ ସ୍ଥାନରେ ଏକାଧିକ ବାର ଅଭିନୀତ ହୋଇ ଜନପ୍ରିୟତା ହାସଲ କରିଛି। ଏହା ନାଟକଟିର ମଞ୍ଚସଫଳତାର ସବୁଠାରୁ ବଡ଼ ପ୍ରମାଣ। ଅଧିକ କହିବା ବାହୁଲ୍ୟ ହେବ।

ଉଭୟ ନାଟ୍ୟ କାହାଣୀ ଓ ନାଟକୀୟ ଶିଳ୍ପକଳା ଦୃଷ୍ଟିରୁ 'ପ୍ରାୟଶ୍ଚିତ୍ତ'ଯେ ଏକ ଅନନ୍ୟ ନାଟକ-ଏଥିରେ ଦ୍ୱିମତ ନାହିଁ।

ଭି.ଆଇ.ଏମ୍-୪
ନୀଳାଦ୍ରି ବିହାର, ଅଟୋଷ୍ଟାଣ୍ଡ ପାଖ
ଶୈଳଶ୍ରୀ ବିହାର, ଭୁବନେଶ୍ୱର

●●●

# ନିଜ ସାମ୍ରାଜ୍ୟରୁ ନିର୍ବାସିତ ଆହତ ଠାକୁର : ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର

ଡ. ଆଲୋକ ବରାଳ

ନାଟ୍ୟକାର ନାରାୟଣ ସାହୁ (୧୯୫୪-), ଓଡ଼ିଆ ନାଟକ କ୍ଷେତ୍ରରେ ଗତ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟଧରି ଅଦ୍ୟାବଧି ଉଲ୍ଲେଖଯୋଗ୍ୟ ଅବଦାନ ଦେଇ ଆସୁଛନ୍ତି ଅନେକ ନୂତନ ଚମକ ସହିତ। ଗତ ଶତାବ୍ଦୀର ଅଷ୍ଟମ ଦଶକ ଅର୍ଥାତ୍ ପ୍ରାୟ ୧୯୭୯-୧୯୮୦ ମସିହା ବେଳକୁ କଟକରେ ଅବସ୍ଥାନ କରୁଥିବା ବେଳେ ବକ୍ସିବଜାର ଝୁନ୍‌ଝୁନ୍‌ୱାଲା ଭବନ ଭିତରେ ଖୋଲା ପଡ଼ିଆରେ ନାଟକ ଅଭିନୟ ନିମନ୍ତେ ଲେଖିବସନ୍ତି 'ତାମସୀ ତୃଷ୍ଣା' ଓ 'ସଂଘର୍ଷ' ଭଳି ନାଟକ। ସମ୍ଭବତଃ ଏହି ପର୍ଯ୍ୟାୟରୁହିଁ ନାଟ୍ୟକାର ସଚେତନ ଭାବରେ ଯୋଡ଼ି ହୋଇଯାଆନ୍ତି ନାଟକ ସହ। 'ତାମସୀ ତୃଷ୍ଣା' ନାଟକଟି ଥିଲା ଏକ ସତ୍ୟ ଘଟନାର ଆଧାରରେ ରଚିତ। ଲେଖକ ନାଟକର ସୂତ୍ର ପାଇଥିଲେ ବଲାଙ୍ଗୀରର ଜନୈକ ସମ୍ବାଦିକଙ୍କର ବର୍ବରୋଚିତ ହତ୍ୟାର ଉହାଡ଼ରେ ଥିବା କାହାଣୀରୁ। ନାଟ୍ୟକାରଙ୍କର ନାଟ୍ୟଯାତ୍ର ସଂପ୍ରତି ଏକ ପ୍ରଲମ୍ବିତ ସମୟ ଡେଇଁ ସନ୍ତକ ସ୍ୱରୂପ ଛାଡ଼ିଚାଲିଚି ଅନେକ ନାଟକ। ସବୁବେଳେ ନୂଆ ନୂଆ 'ଥିମ୍' ନେବାରେ ବିଶ୍ୱସ୍ତ ନାଟ୍ୟକାର ନାଟ୍ୟକଳାରେ ମଧ୍ୟ ଦେଖାଇଛନ୍ତି ବେଶ୍ ନୂତନ ଚମକ। ସପ୍ରସଙ୍ଗ କେତେକ ଉଲ୍ଲେଖଯୋଗ୍ୟ ନାଟକର ଏଠାରେ ଅବତାରଣା କରାଯାଇପାରେ। ଯଥା:- 'ଅନ୍ଧକାରର ପୂରବୀ' 'ଏକ ମୃତବ୍ୟକ୍ତିର ସପକ୍ଷରେ', 'ଅମ୍ବାପଲ୍ଲୀ ସହ ଦିନେ', 'ନିଷିଦ୍ଧ ସଂଳାପ', 'ଏକାନ୍ତ ଅନୁଭବ', 'ଚେତନା. 'ପ୍ରଶ୍ନ', 'ସୌଦାଗର', 'ରିକ୍ସାବାଲା', 'ଛୋଟକଥା', 'ସେମାନଙ୍କ ଖେଳ', 'ଶିଥିଳ ଦୁକୁଳ', 'ମାଙ୍କଡ଼ ହାତରେ ଶାଳଗ୍ରାମ', ନଦୀର ନାମ ତୃଷ୍ଣା', 'ସତ୍ୟ କଥା', 'କାହାଣୀ ସବାଶେଷ ଲୋକର', 'ନଅଶହ କୋଡ଼ିଏ', 'ମହାପୁରୁଷ', 'କୁମ୍ଭକର୍ଣ୍ଣ', 'ଶେଷ ପାହାଚ', 'ରାଧା', 'ଅପରାହ୍ଣର ଅବଶୋଷ', 'ଅଧାଦେଖା ସ୍ୱପ୍ନ', 'ପୁନଶ୍ଚ ସଂଗ୍ରାମ', 'ମୂକ', 'ସୁବର୍ଣ୍ଣ ସକାଳ', 'ପ୍ରାୟଶ୍ଚିତ୍ତ' ଇତ୍ୟାଦି ବହୁ ନାଟକ। ଯେଉଁଥିରେ ରହିଚି ବହୁ ଛୋଟ ନାଟକ ଓ ବେତାର ନାଟକ ମଧ୍ୟ।

ଆଲୋଚ୍ୟ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' (୧୯୮୮) ନାଟ୍ୟକାର ନାରାୟଣ ସାହୁଙ୍କର ନାଟ୍ୟ ଚେତନାର ଏକ ଉତ୍ତରିତ ଶିଳ୍ପ-ସନ୍ତକ। ନାଟକଟି ୧୯୯୧ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୁଏ। କିନ୍ତୁ ତା'ପୂର୍ବରୁ ଅନେକ ଚର୍ଚ୍ଚା ଓ ଆଲୋଚନା-ପ୍ରତିଆଲୋଚନା ଦେଇ ବୁଦ୍ଧିଜୀବୀ ନାଟ୍ୟ ଚିନ୍ତକ ମାନଙ୍କର ଦୃଷ୍ଟି ଆକର୍ଷଣ କରେ।

ଭାରତୀୟ ଗଣ ଇତିହାସର ଦୁଇଟି ଚର୍ଚ୍ଚିତ ପୃଷ୍ଠଭୂମିକୁ ନାଟକର ମୂଳପିଣ୍ଡଭାବେ ଗ୍ରହଣ କରି ବିପର୍ଯ୍ୟସ୍ତ ସାମାଜିକ-ଧାର୍ମିକ ମୂଲ୍ୟବୋଧର କଥାକୁ ନାଟ୍ୟକାର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ବେଶ୍ ସଚେତନତା ସହ ପରଶିଛନ୍ତି।

୧୯୮୪ ଡିସେମ୍ବର ଦୁଇ ତାରିଖରେ ଭୋପାଳର ୟୁନିଅନ୍ କାରାବାଇଡ୍ ପ୍ଲାଣ୍ଟ୍‌ରେ ଅସଚେତନତା ଜନିତ 'ମିଥାଇଲ୍ ଆଇସୋସିଆନେଟ୍' (ଏମ୍.ଆଇ.ସି) ଗ୍ୟାସ୍ ପଙ୍ଗୁ କରି ଦେଇଥିଲା ସମଗ୍ର ଭୋପାଳକୁ। ମୃତାହତଙ୍କୁ ଛାଡ଼ିଦେଲେ ଯେଉଁମାନେ ବଞ୍ଚିରହିଲେ ପଙ୍ଗୁ ହୋଇ ଗଲେ କିମ୍ବା ତା'ର ପ୍ରଭାବରୁ ଅବ୍ୟାବଧି ମଣିଷ ନିଷ୍କୃତି ଲାଭ କରିପାରି ନାହିଁ। ସେଇ ପୃଷ୍ଠଭୂମି ହିଁ ଦେଉଚି 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକର ଅନ୍ୟତମ ପ୍ରମୁଖ ଭାବବସ୍ତୁ (ଥିମ୍)। ସେହିଭଳି ବାବ୍‌ରୀ ମସଜିଦ୍ କେନ୍ଦ୍ରକରି ଯେଉଁ ଘଟିଥିଲା ବୀଭତ୍ସ ସାଂପ୍ରଦାୟିକ ଦଙ୍ଗା। ସେଇ ଇତିହାସର ପ୍ରାକ୍‌ଧର୍ମ ଯେଉଁଠି ହିନ୍ଦୁ-ମୁସଲ୍‌ମାନ୍-ଖ୍ରୀଷ୍ଟିଆନ୍-ଶିଖ୍ ଧର୍ମ ନେଇ ପରସ୍ପରର ଅବୁଝାମଣାର ଧାର୍ମିକ ଷଡ଼ଯନ୍ତ୍ର ଏବଂ ସୁବିଧାବାଦୀ କିୟତ୍ ସ୍ୱାର୍ଥାନ୍ଧ ମଣିଷଙ୍କର ଚରମ ବର୍ବରତା ମଞ୍ଜି ପୋତିଥିଲା । ସାଂପ୍ରଦାୟିକ ବିସଙ୍ଗତି ଓ ସନ୍ତ୍ରାସ; ସେଇ ପ୍ରାକ୍ ପୃଷ୍ଠଭୂମିକୁ ନାଟ୍ୟକାର ଆଧାର କରି ଲେଖିଛନ୍ତି 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକ।

ନାଟକରେ ଈଶ୍ୱର ଆଶ୍ରାହୀନ; ଈଶ୍ୱର ପରାସ୍ତ; ଈଶ୍ୱର ଅସ୍ତିତ୍ୱହୀନ। ନିଜ ସୃଷ୍ଟି ପ୍ରତ୍ୟାଖ୍ୟାନ କରିଚି ଈଶ୍ୱରଙ୍କର ଐଶୀ ଶକ୍ତି ଓ ଅସ୍ତିତ୍ୱକୁ। ପଦାଘାତ କରିଚି ଈଶ୍ୱରୀୟ ଶକ୍ତିକୁ। ସମକାଳୀନ ମଣିଷର ସ୍ୱାର୍ଥାନ୍ଧ, ମୂଲ୍ୟବୋଧହୀନ ବିପର୍ଯ୍ୟସ୍ତ ସମାଜିକତା ଓ ସାଂସ୍କୃତିକ ଅବବୋଧ କିଭଳି ରସାତଳଗାମୀ; ତା'ର ଚରମ ପ୍ରତିଫଳନକୁ ଦେଖାଯାଇପାରେ ଏ ନାଟକରେ। ଧର୍ମ ନାଁରେ ରାଜନୀତି, ଈଶ୍ୱରଙ୍କ 'ସ୍ଥିତି' ଓ 'ନିବାସ' ନେଇ ଧର୍ମୀୟ ଗୁରୁ ଓ ନେତାଙ୍କର ଚରମ ଭ୍ରଷ୍ଟତା ଓ ଉଗ୍ରତାର ଭଲୁଣ୍ଠିତ ମାନବିକତା, ଭାଇଚାରା ଓ ସମ୍ବେଦନାକୁ ଅବଲୋକନ କରିହେବ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ।

## ସମୟର ଆଇନାରେ ପଥଭ୍ରଷ୍ଟ ଈଶ୍ୱରଙ୍କ ନିଷ୍କୃତି :

'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ 'ସମୟ'ର ପ୍ରଶ୍ନବାଣରେ ଜର୍ଜରିତ ଈଶ୍ୱରଙ୍କ ଅସ୍ତିତ୍ୱ ଅନେକ ଭଙ୍ଗୁର ପୁଣି ବିପର୍ଯ୍ୟସ୍ତ ! ସାଂପ୍ରଦାୟିକ ସଂଘର୍ଷ ଓ ବିରୋଧାଭାସ ଭିତରେ ଈଶ୍ୱର ବି କ୍ଷତାକ୍ତ; କ୍ଲାନ୍ତ ପୁଣି ଅବସନ୍ନ । ମଣିଷର ସ୍ୱାର୍ଥାନ୍ଧ ଷଡ଼ଯନ୍ତ୍ରରେ ଚୂର୍ଣ୍ଣିଭୂତ ଈଶ୍ୱର ଖୋଜି ବୁଲୁଛନ୍ତି ନିଜ ପାଇଁ ଆଶ୍ରା ! ହେଲେ କେଉଁଠି ସେ ଆଶ୍ରା ! ଧ୍ୱସ୍ତ ଅସ୍ତିତ୍ୱକୁ ସାଉଁଟି ହେଉଥିବା ଈଶ୍ୱରଙ୍କ ପାଖରେ 'ସମୟ'ର ଉପଗତ ହେବା ଏବଂ ସମୟର ସୁଖରେ ଘଟିଚାଲିଥିବା ଘଟନାର ଉପସ୍ଥାପନା; ନାଟକ ମହତ୍ତ୍ୱପୂର୍ଣ୍ଣ ଏକ ଦିଗ। ନାଟକରେ ସମୟ ହିଁ ଈଶ୍ୱରଙ୍କୁ ଦେଇପାରେ କାନ୍ଧରେ ଭରା: "ମୁଁ ଜାଣିଥିଲି ତୁମ ଦୁର୍ଦ୍ଦିନରେ କେହିହେଲେ ଜଣେ ପାଖକୁ ଆସିବେ ନାହିଁ। ଆସିବ କେବେ କି ଜଣେ । ସେ ହେଉଛି ସମୟ। ଏଥର ଉଠ...ମୋ କାନ୍ଧରେ ଭରାଦେଇ ଉଠ।" ସମୟର ସୁଖରେ ଈଶ୍ୱର ପରାଜିତଃ କାରଣ ଯେଉଁ ଈଶ୍ୱର ସମଗ୍ର ବ୍ରହ୍ମାଣ୍ଡର ସୃଜକ। ତା'ର ପୁଣି ଘଟିପାରେ ଏଭଳି ଅବସ୍ଥା ! ଏଇ ଅବସ୍ଥା ପାଇଁ 'ସମୟ' ଦାୟୀ କରିଛି 'ଈଶ୍ୱରଙ୍କୁ : "**କେବଳ ତମରି ପାଇଁ ଏଇ ପବିତ୍ର ଅଯୋଧ୍ୟା ଭୂଇଁରେ ଅଳ୍ପ ସମୟ ପୂର୍ବରୁ ଯେଉଁ ରକ୍ତାକ୍ତ ସଂଘର୍ଷ ଘଟିଥିଲା; ସେଥିପାଇଁ ଦାୟୀ କିଏ ? ଜବାବ ଦିଅ ଈଶ୍ୱର । ସେଥିପାଇଁ ଦାୟୀ ତୁମେ ନୁହଁ?" ଈଶ୍ୱର କିନ୍ତୁ ସଂଘର୍ଷ ଚାହିଁ ନଥିଲେ; ଚାହିଁଥିଲେ ସର୍ବଧର୍ମର ସମନ୍ୱୟ। ଚାହିଁ ନଥିଲେ ଧର୍ମ ନାମରେ ତାଙ୍କୁ ବିଲୋପ କରିବା ପାଇଁ। ଚାହିଁ ନଥିଲେ ସାଂପ୍ରଦାୟିକ ରକ୍ତପାତର ବୀଭତ୍ସ କୁରୁକ୍ଷେତ୍ର ! ଗୀତା, ବାଇବେଲ୍, କୋରାନ୍ ଗ୍ରନ୍ଥ ସାହିବ୍‌ର ବାଣୀସବୁ ବୃଥା ହେବା, ସୃଷ୍ଟିର ଏକମାତ୍ର ଧର୍ମ ମାନବ ଧର୍ମ ବିଧ୍ୱସ୍ତ ହେବା; ରାମ ମନ୍ଦିର ଓ ବାବ୍‌ରୀ ମସଜିଦ୍‌ରେ ଈଶ୍ୱର ବିଭେଦ ହେବା ଭିତରେ ଈଶ୍ୱର ଯେ କ୍ଲାନ୍ତ ଓ ବିଷର୍ଣ୍ଣ। ସ୍ୱାର୍ଥାନ୍ଧ ମଣିଷ ଧର୍ମ ନାଁରେ ଯେ ରକ୍ତମୁଖା ଓ ଶତଧା ବିଭକ୍ତ ତାହା ହିଁ ଥିଲା ଚରମ କରାଳତା: "ସ୍ୱାର୍ଥରେ ଅନ୍ଧ ମଣିଷ ମତେ ଖୋଜୁଥିଲା ମନ୍ଦିର ଆଉ ମସଜିଦ୍ ଭିତରେ। ହେଲେ ମୋ ସ୍ଥାନ ଉପାସନା ମନ୍ଦିର ନୁହେଁ, ବ୍ୟକ୍ତିର ହୃଦୟ କନ୍ଦରରେ। ନିହିତ ସ୍ୱାର୍ଥ ଯୋଗୁ ମଣିଷକୁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର ସବୁ ଅଲଗା ଅଲଗା ଦେଖାଯାଉଥିଲା।"

'ସମୟ' ଈଶ୍ୱରଙ୍କୁ ସୂଚାଇ ଦେଇଚି ଯେ ପୃଥିବୀରୁ ଶେଷ ହୋଇ ଯାଇଚି ଈଶ୍ୱରଙ୍କ ଆବଶ୍ୟକତା । ଏଣିକି ସମାଜ ପରିଚାଳିତ ହେବ ଈଶ୍ୱରହୀନ ହୋଇ । କାରଣ ଈଶ୍ୱର ପ୍ରତାରିତ କରିଛନ୍ତି ମଣିଷ ମାନଙ୍କୁ। ପିଆଇଛନ୍ତି ଧର୍ମର ମଦ। ମଣିଷ ଜାତିକୁ କରିଛନ୍ତି ଦୁର୍ବଳ ଓ ନପୁଂସକ। ସୃଷ୍ଟି କରିଛନ୍ତି ଜାତି ଜାତି ମଧ୍ୟରେ ସଂଘର୍ଷ। ଧର୍ମ ଧର୍ମ ମଧ୍ୟରେ ବିଦ୍ୱେଷ। ଈଶ୍ୱର ସାଜିଛନ୍ତି ସୁବିଧାବାଦୀ। ସେ ପ୍ରୋତ୍ସାହିତ କରି ଆସିଛନ୍ତି ସଂକୀର୍ଣ୍ଣ ଜାତି

ପ୍ରଥାକୁ କାଳେ କାଳେ। ତାଙ୍କରି ପାଇଁ କଳାପାହାଡ଼ ଶ୍ରୀମନ୍ଦିରରେ ଭିଆଇଥିଲା ଧ୍ୱଂସର ଲୀଳା। ତାଙ୍କରି ପାଇଁ ବାବ୍‌ରି ମସଜିଦ୍‌ରେ ବଢ଼ିଥିଲା ହିନ୍ଦୁ ମାନଙ୍କର ଦୌରାତ୍ମ୍ୟ, ଦିଲ୍ଲୀର ଗୁରୁଦ୍ୱାରରେ ଛୁଟିଥିଲା ରକ୍ତାକ୍ତ ନଦୀଧାର। ବିଳାସପୁରର ପଣ୍ଡତରାଇରେ ସବର୍ଣ୍ଣ ଓ ହରିଜନଙ୍କ ମଧ୍ୟରେ ଘଟିଥିଲା ବିଭତ୍ସ ନାରକୀୟ କାଣ୍ଡ। ଏସବୁ ପାଇଁ ହିଁ ତୁମ ଉପରୁ ମଣିଷର ତୁଟି ସାରିଛି ଆସ୍ଥା । ତୁମେ ଅତ୍ୟନ୍ତ ଦୁର୍ବଳ । ମଣିଷର ଚରମ ବିଶ୍ୱାସରେ ତୁମେ ଭରିଦେଇଚ ବିଷ। ତୁମେ ସାଜିଚ ପୁଞ୍ଜିବାଦର ସମର୍ଥକ। ଦଳିତ ଓ ପତିତର ସହୋଦର ବୋଲି କହି; ତୁମେ ସାଜିଚ ପ୍ରବଞ୍ଚକ। ତୁମେ ହିଁ ଦଳିତ ଜାତିର ପ୍ରତିନିଧି ବିଶ୍ୱାବସୁର ବିଶ୍ୱାସକୁ କରିଥିଲ ହତ୍ୟା। କାରଣ ସେ ତୁମକୁ ଦେଇ ପାରିନଥିଲା ତୁଳିତଳ୍ପିତ ଶଯ୍ୟା, ଭୁରିଭୋଜନ ଆଉ ବିବିଧ ପର୍ବର ଉପଚାର । ଶାନ୍ତିର ପ୍ରତିଷ୍ଠା ନାଁରେ ତୁମେ ସାଜିଚ ହତ୍ୟାକାରୀ। ତୁମ ପାଇଁ ମାର୍ଟିନ୍ ଲୁଥରଙ୍କୁ ହେବାକୁ ପଡ଼ିଲା ସହିଦ୍ ସକ୍ରେଟିସ୍‌ଙ୍କୁ ପାନ କରିବାକୁ ପଡ଼ିଲା ବିଷ। ମହାତ୍ମା ଗାନ୍ଧୀଙ୍କୁ ଟଳି ପଡ଼ିବାକୁ ହେଲା ପ୍ରାର୍ଥନା ସଭାରେ । ଏହିଭଳି ଅନେକ ଉଦାହରଣ। ଏଥିପାଇଁ ହିଁ ମଣିଷ ଜୀବନରେ ତୁମର ଆଉ ପ୍ରୟୋଜନ ନାହିଁ ଈଶ୍ୱର। ମଣିଷ ଆଜି ଆତ୍ମ ସଚେତନ ହେବାକୁ ବସୁଚି। ଯେଉଁଦିନ ସେ ସଂପୂର୍ଣ୍ଣ ସଚେତନ ହୋଇଯିବ; ସେଇଦିନ ସମଗ୍ର ବିଶ୍ୱରୁ ବିସ୍ମୃତି ଲଭିବ ତୁମର ନାମ।

'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ 'ସମୟ' ଓ 'ଈଶ୍ୱର'ଙ୍କର ଏହି ବାର୍ତ୍ତାଳାପରେ ସମୟ ଦୋଷ ଦେଇଚି ଈଶ୍ୱରଙ୍କୁ ଏବଂ ଈଶ୍ୱର ନିଜର ଅପାରଗତା ଓ ଅସାମର୍ଥ୍ୟତାକୁ ଦେଖାଇବା ସହିତ ମଣିଷ ଭିତରେ କ୍ରମଶ ସାନ୍ଦ୍ର ହୋଇ ଉଠୁଥିବା ସ୍ୱାର୍ଥପରତା ଓ ଅହଂକାରକୁ ଦେଇଛନ୍ତି ଦୋଷ । ଏପରିକି କ୍ରମଶ। ଭାଙ୍ଗିପଡୁଥିବା ଈଶ୍ୱର ସମୟକୁ ହିଁ ଅନୁରୋଧ କରିଛନ୍ତି ବ୍ୟକ୍ତିର ବିଶ୍ୱାସକୁ ଭାଙ୍ଗିବାକୁ ଦିଅନା। ମୁଁ ସୃଷ୍ଟି, ସ୍ଥିତି ଓ ବିଲୟ ହେଲେ ହେଁ ମଣିଷ ହିଁ କାଳକାଳ ଧରି ମୋତେ ବୁଝିବାର ଅବହେଳା କରି ଆସିଚି। ମଣିଷ ଗ୍ରହଣ କରି ନାହିଁ ମୋର ବିଚାରକୁ। ମୋ ପାଇଁ ଅଯୋଧ୍ୟା ଜ୍ୱଳମାନ. ପଞ୍ଜାବ ରକ୍ତମୁଖା; କାଶ୍ମୀର ଲହୁଲୁହାଣ ବୋଲି ମୋତେ ଦୋଷ ଦେଇ ମୋର ଈଶ୍ୱରୀୟ ସତ୍ତାକୁ ଆତ୍ମଗୋପନ କରିଥିବା କଥା ତୁମେ କହିଲାବେଳେ ଭୁଲି ଯାଉଛ ଯେ ମୁଁ ବ୍ରହ୍ମରୂପୀ। ହେ ସମୟ ତଥାପି ତୁମେ ସହାୟ ହୁଅ ଏ ଜାତି ପାଇଁ । ସେ ଅବଶ୍ୟ ବଞ୍ଚିବ: "...ବ୍ୟକ୍ତିର ବିଶ୍ୱାସକୁ ନେଇ...ଭକ୍ତିକୁ ନେଇ...ସତ୍ୟକୁ ନେଇ...ଶାନ୍ତିକୁ ନେଇ..."

ସମୟ ପ୍ରତି ଈଶ୍ୱରଙ୍କ ଏ ପ୍ରତିଶ୍ରୁତି ଭିତରେ ଅବଶ୍ୟ ସମ୍ଭାବନାର କିୟତ୍ କଣିକା ରହିଥାଇପାରେ; କିନ୍ତୁ ଐଶ୍ୱରୀୟ ସତ୍ତା ସେତେବେଳେ ନିଜ ଭିତରେ ଅତ୍ୟନ୍ତ ଭଙ୍ଗୁର ଓ ବିଘ୍ନିତ ସତେକି ଏ ଜାତି ସମଗ୍ର ପୃଥିବୀ ପୃଷ୍ଠରୁ ହରାଇବ ତାର ବିଶ୍ୱାସର ବଳକା ଐଶ୍ୱରୀୟ ସତ୍ତା। ଈଶ୍ୱରହୀନ ହେବ ଆଗତ ସମୟ।

**ହିନ୍ଦୁ ଖଟି ଓ ବଳାତ୍କାରୀ ସେବକ:**

'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ୧୯୮୪ ମସିହାରେ ଘଟିଥିବା ଭୋପାଳ ଗ୍ୟାସ୍ ଟ୍ରାଜେଡ଼ି ଅନ୍ୟ ଏକ ପୃଷ୍ଠଭୂମି। ତା'ରି ମାଧ୍ୟମରେ ନାଟ୍ୟକାର ଅତ୍ୟନ୍ତ ସୂକ୍ଷ୍ମତାର ସହିତ ନାଟକର ମୂଳ ସମ୍ବେଦନାକୁ ଧରି ରଖିଛନ୍ତି। ଭୋପାଳ ୟୁନିଅନ୍ କାରବାଇଡ୍ କାରଖାନାରେ ଘଟିଥିବା ମାରାତ୍ମକ ଦୁର୍ଘଟନା କିଭଳି ଦୋହଲାଇ ଦେଇଚି ମଣିଷର ଅସ୍ତିତ୍ୱ; ଆଉ ତା'ର ମାରାତ୍ମକ ପ୍ରଭାବ କେମିତି ପଙ୍ଗୁ କରିଦେଇଚି ମଣିଷକୁ; ସେଇ ଛବି ନାଟକରେ ବେଶ୍ ସ୍ପଷ୍ଟ। ମେରୀ ଓ ଯୋସେଫ୍ ଚରିତ୍ର ମାଧ୍ୟମରେ ନାଟ୍ୟକାର ସେ କଥାକୁ ପରଶିବା ସହିତ ନାଟକର ମୂଳ ଥିମ୍ ସହିତ ଯୋଡ଼ି ଧରିଛନ୍ତି ନାଟ୍ୟକଳା ଚତୁରୀରେ। ୟୁନିଅନ୍ କାରବାଇଡ୍ ଯୋଶେଫ୍ ଠାରୁ ଛଡ଼େଇ ନେଇଚି ଗୋଟିଏ ଆଖି ଏବଂ ମେରୀ ଠାରୁ ମାତୃତ୍ୱ। କଲୋନୀ ଛାଡ଼ି ଚାଲି ଯାଉଥିଲେ ଲୋକେ। ରହମତ୍ ମିଆଁ ଝିଅକୁ ଧରି ବାହୁଡ଼ି ଗଲା ତା'ର ଗାଆଁକୁ। ଗୁରୁବଚନ୍ ସିଂହ ବି ପିଲାଛୁଆ ଧରି ଫେରିଗଲା ତା'ର ଗାଆଁ ମାଟିକୁ। ଏହିଭଳି ସମସ୍ତେ ଚାଲି ଯାଉଥିଲେ। ଯେଉଁମାନେ ମରିଗଲେ ସେମାନେ ତରିଗଲେ ବିପଦରୁ। ମାତ୍ର ଯେଉଁ ଅଭିଶପ୍ତ ମଣିଷମାନେ ବଞ୍ଚିଗଲେ; ସେମାନଙ୍କ ଭିତରୁ ଦୁଇଲକ୍ଷରୁ ଉର୍ଦ୍ଧ୍ୱଲୋକେ ପାଲଟିଗଲେ ଶାରୀରିକ ବିକଳାଙ୍ଗ । କାହାର ଆଖି, କାହାର ଜରାୟୁ ଓ କାହାର କିଡ୍‌ନୀ ବା ଲିଭର୍ ହୋଇଚି ଅକାମୀ। ମରଣ ସହିତ ବଳକା ଜୀବନରେ ସଂଗ୍ରାମ। ଯଦି ଭଗବାନ ଯୀଶୁ ନିଜେ ପୃଥିବୀ ପୃଷ୍ଠକୁ ଓହ୍ଲାଇ ଆସନ୍ତି; ତେବେ ବି ଭୋପାଳ ଗ୍ୟାସ୍ ଦୁର୍ଘଟନାରେ କ୍ଷତିଗ୍ରସ୍ତ ଲୋକଙ୍କର ଦୁର୍ଦ୍ଦଶାକୁ ଦୂରକରି ପାରିବେ ନାହିଁ।

ମେରୀ ହରାଇଚି ତା'ର କନ୍ୟା ଲୋରାକୁ ଏପରିକି ଭବିଷ୍ୟତର ମାତୃତ୍ୱକୁ । କାରଣ ତା'ର ନଷ୍ଟ ଜରାୟୁ ସୃଷ୍ଟି କରିପାରିବନି ନବଜାତକ। ଏ କଥାକୁ ଯୋଶେଫ୍ ଲୁଚାଇ ରଖିଲେ ହେଁ ସତ୍ୟ ସତରେ କେତେ ଭୟଙ୍କର। ମେରୀ ଓ ଯୋଶେଫ୍ ଚରିତ୍ର ନାଟକରେ ଏକ ଏକ ପ୍ରତୀକ ମାତ୍ର।

ନାଟକର ଷଷ୍ଠଦୃଶ୍ୟ ହିଁ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକର ଟର୍ଣ୍ଣିଂପଏଣ୍ଟ ବା ଚରମ ପରିଣତିର ପର୍ଯ୍ୟାୟ। ଏ ଦୃଶ୍ୟରେ ଜୀବନର କରାଳତା ଆଗରେ ପ୍ରକୃତିର ନିଷ୍ଠୁର ନିୟତି ଆଗରେ ହାର୍ ମାନିଥିବା ଯେଶେଫ୍ ଓ ମୀରା ଈଶ୍ୱରଙ୍କ ଦର୍ଶନ ଆଶାରେ ଯାଇ ପହଞ୍ଚିଛନ୍ତି ହିନ୍ଦୁର ମହାନ୍ ଦେବାଳୟ ସାମ୍ନାକୁ। ଯେଉଁଠି ମନ୍ଦିର ମହାସେବ
ସେମାନେ ଯେ ଈଶ୍ୱର ଦର୍ଶନ କରିପାରିବେ ନାହିଁ ବୋଲି କହିବା ସହିତ ଏ
ଭିତରକୁ କେବଳ ହିନ୍ଦୁମାନେ ଯାଇପାରିବେ ବୋଲି ଦୃଢ ବିରୋଦ କରିଚି। ଯୋ

ସେଠାରେ ପ୍ରଶ୍ନ କରିଚି ତେବେ କାହିଁକି ଏ ମିଥ୍ୟା ପ୍ରଚାର ଯେ: ଈଶ୍ୱର ସର୍ବଧର୍ମ ସମନ୍ୱୟର ଦେବତା; ଧର୍ମ ନାଁରେ କାହିଁକି ଏ ପ୍ରହେଳିକା? କାହିଁକି ପ୍ରଚାର କରୁଚ ଯେ ଈଶ୍ୱର ଜଗତର ଠାକୁର!: "ନା...ସବୁଗୁଡ଼ାକ ଛଳନା । ଏଇଟା ମନ୍ଦିର ନୁହେଁ, ହିନ୍ଦୁମାନଙ୍କର ଗୋଟିଏ ଖଟି। ଶୁଣିଥିଲି ଈଶ୍ୱର ହେଉଛନ୍ତି ସର୍ବଧର୍ମ ସମନ୍ୱୟର ଦେବତା । ହେଲେ ଆଜି ଦେଖୁଛି.. ଈଶ୍ୱର ହେଉଛନ୍ତି ଏହି ସେବକ-ପୂଜକମାନଙ୍କର ଏକଚାଟିଆ ଦେବତା। କି ଅନ୍ୟାୟ!"

ମହାସେବକ ଯୋଶେଫ୍‌କୁ ମ୍ଳେଛ, ମୂର୍ଖ, ପାପୀ, ବିଧର୍ମୀ କହିବା ସହ ତା'ର ଏ ଧୃଷ୍ଟତା ପାଇଁ ମୂଲ୍ୟ ଅବଶ୍ୟ ଦେବାକୁ ପଡ଼ିବ ବୋଲି କହିଛି । ନାଟକର ଏ ଦୃଶ୍ୟରେ ଯୋଶେଫ୍‌ର ମନରେ ବିଦ୍ରୋହ ଭାବ ଜନ୍ମିବା ସହିତ ପ୍ରତିବାଦର ସ୍ୱର ତୀବ୍ର ହୋଇଉଠିଛି। "କେତେଦିନ ଧର୍ମକୁ ଅଣ୍ଟି ଭିତରେ ପୂରାଇ ନିଜର ପ୍ରଭୁତ୍ୱ ଜାହିର କରିଚାଲିବ ? କେବଳ ଏଇଥି ପାଇଁ ସେଦିନ କଳାପାହାଡ଼ ହିନ୍ଦୁ ମନ୍ଦିର ଆକ୍ରମଣ କରିଥିଲା । ହେ ଈଶ୍ୱର! କେତେଦିନ ତମେ ଏମିତି ଯେ ପୁରୋହିତ, ପୂଜକ, ସେବକମାନଙ୍କ ହାତରେ କ୍ରୀଡ଼ନକ ସାଜି ଖେଳୁଥିବେ।

ମହାସେବକ ଚରିତ୍ରର ଭ୍ରଷ୍ଟତା ଓ ନୀଚତାର ଅନ୍ୟ ଏକ ପରିଦୃଷ୍ଟ। ଯେଉଁଠି ଯୋଶେଫ୍ ପ୍ରତି ମ୍ଳେଚ୍ଛ ଏବଂ ହିନ୍ଦୁବିରୋଧୀ ଏକ ବିଧର୍ମୀ କହିଚି ସେଇଠି ଅପରପକ୍ଷରେ ମେରୀ ପ୍ରତି ରଖିଚି ଲୁକ୍‌କାୟିତ ଯୌନାଶକ୍ତି । ସେଥିପାଇଁ ସେ ଭିଆଇଚି ଷଡ଼ଯନ୍ତ୍ର: "କେବଳ ତୋରି ପାଇଁ, ଏ ମ୍ଳେଚ୍ଛକୁ ମୁଁ ଛାଡ଼ି ଦେଉଛି । ତାହୁଁ ସେତ ତୁ ଏକା ଈଶ୍ୱରଭ୍‌କୁ ଦର୍ଶନ କରିପାରୁ । ହେଲେ ସିଧା ଦରଜା ଦେଇନୁହେଁ । ପଛପଟ କବାଟ ଦେଇ ତୋତେ ଯିବାକୁ ହେବ"। ଯୋଶେଫ୍, ମେରୀ ଭଗ୍ନ ମନକୁ ଶାନ୍ତ ହେବାପାଇଁ ହୁଏତ ତା'ର ଯିବାରେ କରିନଥିଲଣ ବିରୋଧ ଏବଂ ଫେରିବା ପଥକୁ କରିଥିଲା ଅପେକ୍ଷା । କିନ୍ତୁ ମେରୀ ଆଉ ଫେରି ନଥିଲା । ମନ୍ଦିର ମହାସେବକ ମେରୀକୁ ଧର୍ଷଣ କଲାପରେ ଗଳାଚିପି କରିଥିଲା ହତ୍ୟା । ବାଲୁକା ଶଯ୍ୟାରେ ପଡ଼ିରହିଥିଲା ଶବ।

## ଦେବଦାସୀ ଓ ରାତିପହଡ଼ର ରସିକ ନାଗର:

ମନ୍ଦିର ମହାସେବକ କେବଳ ମେରୀର ନଥିଲା ବଳାତ୍କାରକାରୀ । ସେ ଥିଲା ମଧ୍ୟ ମାନସିକ ବିକାରଗ୍ରସ୍ତ ଜଣେ ଯୌନାସକ୍ତ ଓ ଭଣ୍ଡ ବ୍ରହ୍ମଚାରୀ। ଯିଏ ଦେବଦାସୀ ଲୀଳାମୟୀ ସହ ରଖିଥିଲା ଅବୈଧ ସଂପର୍କ। ଗୋଟିଏ ପଟେ ମନ୍ଦିରର ଦେବଦାସୀ; ଯିଏ ଈଶ୍ୱରଙ୍କ ପ୍ରତି ସମର୍ପିତ; ତା ଭିତରେ ମଧ୍ୟ ଦେଖାଦେଇଚି ଅଧୋଗତି। ଲୀଳାମୟୀ ଭଳି ଦେବଦାସୀମାନଙ୍କୁ ଭ୍ରଷ୍ଟ ରାସ୍ତାକୁ ଟାଣି ନେଇଛନ୍ତି ମହାସେବକମାନଙ୍କ ଭଳି ଧର୍ମ ରକ୍ଷକ

ଦେଶରେ ପରିଚିତ ଧର୍ମଭକ୍ଷକମାନେ: "ଈଶ୍ୱରଙ୍କ ସେବାପୂଜାରେ ମନର ଭୋକ ମରେନି ଲୀଳା। ସମୟ ସହିତ କ୍ଷୁଧା ବି ବଢ଼ିଯାଏ । ବୟସ ବଢ଼ିବା ସଙ୍ଗେସଙ୍ଗେ ଦେହ ଆଉ ମନର ଭୋକ ବି ପ୍ରବଳ ହୋଇଉଠେ। **ଥଣ୍ଡାପାଣିରେ ବୁକୁର ଶୋଷ ମରେ ହେଲେ ମନର ଶୋଷ ନୁହେଁ।" ମନ୍ଦିରର ଦେବଦାସୀ ଲୀଳାମୟୀ ମନ୍ଦିରର ମହାସେବକ ପାଖରେ ନିଜକୁ ସମର୍ପିଥିଲେ ହେଁ ନିଜ ଭାଗ୍ୟର ବିପର୍ଯ୍ୟୟରୁ ମୁକ୍ତ ନୁହେଁ। କାହିଁକି ନା ଲୀଳାମୟୀ ଜାଣେ ଯେ ଦେବଦାସୀମାନଙ୍କର ଭାଗ୍ୟ ଚିରଦିନ ପଥର ତଳେ ପିଷ୍ଟ। ଏକ ଅପୂର୍ଣ୍ଣ ଜୀବନ। ଏପରିକି ଦେବଦାସୀମାନେ ନାରୀ ନୁହନ୍ତି, ସେମାନେ ନାରୀ ଜଗତର ଏକ ମୂର୍ତ୍ତୀମତୀ ଅଭିଶାପ। ତେଣୁ ଲୀଳାମୟୀ କେବଳ ବାସନାର ଅଗ୍ନିରେ ତିଳତିଳ ଜାଳି ହେବା ଅପେକ୍ଷା ଚାହିଁଚି ପୁନର୍ଜନ୍ମ ଏବଂ ମହା ସେବକଙ୍କୁ କହିଚି : "ଈଶ୍ୱରଙ୍କ ଦରବାରରେ ଜନତାଙ୍କୁ ସାକ୍ଷୀ ରଖି ମତେ ବିବାହ କରିପାରିବ" କିନ୍ତୁ ମହାସେବକ ଈଶ୍ୱର ନିବାସର ମିଥ୍ୟା ମର୍ଯ୍ୟାଦାର ଦୁହି ଓ ପ୍ରତିଷ୍ଠାର ମିଥ୍ୟା ଆଢୁଆଳକୁ ଧିକ୍‌କାର କରି କହିଥିବା କଥାଟି ବେଶ୍ ଗୁରୁତ୍ୱପୂର୍ଣ୍ଣ: "ରାତିର ଅନ୍ଧାରରେ ଲୁଚିଛପି ଈଶ୍ୱରଙ୍କ ଦେବଦାସୀ ସହିତ ମିଳିତ ହେବାଟା କେଉଁ ବିଧାନରେ ଲେଖାଅଛି ? ତୁମେ ପ୍ରବଞ୍ଚକ... ସ୍ୱାର୍ଥପର...** ଆଜିଠୁଁ ମହାସେବକ ପାଇଁ ଏ ଦରଜା ବନ୍ଦ୍।"

"ଆଶ୍ରା ଖୋଜିବୁଲୁଥିବା ଈଶ୍ୱର" ନାଟକର ବିଘ୍ନିତ ଧାର୍ମିକ-ଅଧାର୍ମିକ ବିଶ୍ୱାସବୋଧର ଆଢୁଆଳରେ ଧର୍ମପଣ୍ଡା ଓ ଧର୍ମ ରକ୍ଷକ ମାନଙ୍କର ମାନସିକ ବିଚଳନ ଭଙ୍ଗୁର ନୈତିକତା ଓ ମୂଲ୍ୟବୋଧ ସହ ଭ୍ରଷ୍ଟ-କଳଙ୍କିତ ବ୍ୟକ୍ତିତ୍ୱର ଏହା ଏକଏକ ପ୍ରତୀକ ମାତ୍ର। ଏଠି ନା ଦେବଦାସୀ ଲୀଳାମୟୀ ଶୁଦ୍ଧ ନା ମନ୍ଦିର ମହାସେବକ ଶୁଦ୍ଧ, ନା ବି ପ୍ରଚଳିତ ବିଶ୍ୱାସବୋଧ । ସବୁ ଏକ ଏକ ସ୍ଖଳନର ପଥ : "କେତେଦିନ ଧର୍ମର ପ୍ରହେଳିକା ଭିତରେ ନୀତିକୁ ଜାବୁଡ଼ି ଧରି ବଞ୍ଚିବ ? ଦେହର ଭୋକ ପାଇଁ କେଉଁ ଶାସ୍ତ୍ର ସମାଧାନର ସୂତ୍ର ବାହାର କରିବ ? ** ପାପ-ପୁଣ୍ୟବୋଧ, ମଣିଷ ହାତ ତିଆରି ଗୋଟାଏ ଗୋଟାଏ ଅନ୍ଧବିଶ୍ୱାସ।" ଏଭଳି ବକ୍ତବ୍ୟ ଭିତରେ ମହାସେବକର ଘୃଣ୍ୟ ଯୌନେଚ୍ଛା ହିଁ ହୋଇଚି ପ୍ରକଟିତ। ସେହିଭଳି ଯେଉଁ ଦେବଦାସୀ ନିଜକୁ ଈଶ୍ୱରଙ୍କ ସେବାଦାସୀ ଏବଂ ପୂର୍ଣ୍ଣ କାୟୋମନୋବାକ୍ୟରେ ଈଶ୍ୱର ପ୍ରତି ସମର୍ପିତ ବୋଲି ଗର୍ବିତା। ତାକୁ ଯେ ଈଶ୍ୱର କେବଳ ତିଳତିଳ ଦଗ୍ଧ କରିଚାଲିଛନ୍ତି; ସେ କେବେ ବୁଝିନାହାନ୍ତି ନାରୀ ହୃଦୟର ବେଦନା ଓ ମନର କଥା । ସଂଳାପରେ ମହାସେବକର ସ୍ୱାର୍ଥାନ୍ଧ କାମବାସନାର ତୀବ୍ରତା ହିଁ ପରିଲକ୍ଷିତ। ଏହା ହିଁ କାରଣ ହୋଇପାରେ ସେଇ ଉଗ୍ର ଯୌନାକାଂକ୍ଷାର ଶିକାର ସାଜିଥିବା ମେରୀ ଓ ଅନ୍ୟମାନଙ୍କର ।

## ଲୁଣ୍ଠିତ ଉତରୀୟ-ବଂଶୀ ଓ ଧର୍ଷକ ଈଶ୍ୱର:

'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱର ଅନୁରୋଧ କରିଛନ୍ତି ଯେ ରାଜାଙ୍କୁ ଯେ ସୁଦୂର ଭୋପାଳରୁ ତାଙ୍କ ଦର୍ଶନ ନିମିତ୍ତ ଆସିଥିବା ଦମ୍ପତିଙ୍କର ମହାସେବକ ଦ୍ୱାରା ସର୍ବନାଶ ହେଇଚି ଏବଂ ଏବେ କର୍ତ୍ତବ୍ୟ ହେଉଚି ବାଲୁକା ଶଯ୍ୟାରେ ପଡ଼ି ରହିଥିବା ଶବକୁ ସେ ଯୋଶେଫ୍ ପାଖରେ ପହଞ୍ଚାଇ ଦିଅନ୍ତୁ। ଏପରିକି ରାଜାଙ୍କୁ ଈଶ୍ୱର କହିଛନ୍ତି ତୁମେ ମୋର ଚଳନ୍ତି ପ୍ରତିମା । ମୋର ଏ ଭକ୍ତକୁ ଏ ଦୁର୍ଦ୍ଦିନରେ ସହାୟ ହୁଅ ଏବଂ ଶାସ୍ତି ଦିଅ ମହାସେବକକୁ। ରାଜା କିନ୍ତୁ ବ୍ୟକ୍ତ କରିଛନ୍ତି ନିଜର ଅସହାୟତା: "ପ୍ରଭୁ, ଆପଣ କ'ଣ ମୋ ଅବସ୍ଥା ବିଷୟରେ ଜାଣି ନାହାନ୍ତି ? ଏଠି ଲୁପ୍ତ ରାଜତନ୍ତ୍ରର ମୁଁ କେବଳ ଜଣେ ସୁପ୍ତ ପ୍ରତିନିଧି ମାତ୍ର । ପରମ୍ପରାର ଅନୁରୋଧରେ ମୁଁ କେବଳ ରାଜାମାତ୍ର । *** ସରକାରୀ ଦାନ ଉପରେ ବଂଚୁଥଇବା ଜଣେ ସାଧାରଣ ମଣିଷ ମାତ୍ର***। କେତେଟା ଟଙ୍କାର ପେନ୍‌ସନ୍ ମଧ୍ୟରେ ରାଜା ନାମକ ମଣିଷଟା ଆଜି କେବଳ ଅଭିନୟ କରିଚାଲିଛି। କହନ୍ତୁ ପ୍ରଭୁ, ସବୁତକ ସ୍ୱାଧୀନତା ହରଣ କରିନେବା ପରେ ମୋ ପାଖରେ ଆଉ କ'ଣ ଅଛି ଆପଣଙ୍କୁ ଦେବାପାଇଁ *** । ଗଣତନ୍ତ୍ର ମୋ ପ୍ରତି ଅସମ୍ମାନ କରିଛି***ମନ୍ଦିର... ମୂର୍ତ୍ତୀକୁ ନେଇ ମୁଁ କେତେକାଳ ବଞ୍ଚିବି ?***ରାଜତନ୍ତ୍ର ଚାଲିଗଲା, ହେଲେ ରାଜା ନାମଧାରୀ ବ୍ୟକ୍ତିଟା ବଞ୍ଚି ରହିଲା, ବିଧ୍ୱସ୍ତ ରାଜତନ୍ତ୍ରର ଗରଳ ପାନ କରିବା ପାଇଁ।"

ଅସମର୍ଥ ଈଶ୍ୱର ଆଗରେ ଅସମର୍ଥ ଚଳନ୍ତି ପ୍ରତିମା ରାଜା। ନାଟକର ବିଶ୍ୱନିୟନ୍ତାଙ୍କର ଅପାରଗତା; ଭଙ୍ଗୁର ଅସ୍ତିତ୍ୱ ଯେଉଁଠି ହାହାକାର କରୁଚି ସେଠାରେ ଈଶ୍ୱର ପ୍ରତିନିଧି ରାଜାର ଅବା କି କର୍ତ୍ତୃତ୍ୱ! ସେଥିପାଇଁ ତ ମହାସେବକ ବି ତଚ୍ଛଲ୍ୟ କରିପାରେ ଈଶ୍ୱରଙ୍କ ଅସ୍ତିତ୍ୱକୁ । ଈଶ୍ୱରଙ୍କ ଅନ୍ନରେ ପ୍ରତିପାଳିତ ଓ ପ୍ରତିଷ୍ଠିତ ମନ୍ଦିର ମହାସେବକ ଦେଖାଇପାରେ ନାଲି ଆଖି। ଈଶ୍ୱର ଯେତେବେଳେ ମେରୀର ହତ୍ୟା ଏବଂ ଦେବଦାସୀ ସହିତ ଥିବା ଅବୈଧ ସଂପର୍କ ଯେ ମହାସେବକର ସ୍ତୈଣତ୍ୱକୁ ପ୍ରତିପାଦିତ କରେ ବୋଲି ଅବ୍‌ସୋସ୍ କରିଛନ୍ତି; ସେଠାରେ କିନ୍ତୁ ମହାସେବକର ଔଦ୍ଧତ୍ୟ ବେଶ୍ ଉଗ୍ର ।ଏପରିକି ମହାସେବକ ତା'ର ବ୍ୟକ୍ତିଗତ ଜୀବନରେ ଈଶ୍ୱର ହସ୍ତକ୍ଷେପ କଲେ ସବୁକିଛି ନଷ୍ଟ କରିଦେବା ଭଳି ବକ୍ତବ୍ୟରେ ଭରି ରହିଚି ରୁକ୍ଷତା ଓ ଦୁଃସାହସ।

ଈଶ୍ୱରଙ୍କର କୈଫିୟତ ମାଗିବା ବେଳେ ମହାସେବକଙ୍କର ସୀମାଲଂଘନ କରି ସର୍ବଧର୍ମ ସମନ୍ୱୟର ଆଦର୍ଶକୁ ଅଳନ୍ଧୁଲଗା ମୂଲ୍ୟହୀନ ପାଠ ବୋଲି କହିବା ଏବଂ ଦେବଦାସୀ ସହ ସଂପର୍କ ସ୍ଥାପନ ଏବଂ ମେରୀର ସବ;ନାଶ କଲାବେଳେ; ତୁମେ ଯଦି ସର୍ବଶକ୍ତିମାନ ଓ ଐଶୀଶକ୍ତି ଯୁକ୍ତ ତେବେ ବାଧା ନେଲ ନାହିଁ କାହିଁକି ବୋଲି କହିବା ଭିତରେ ଭରି ରହିଚି ପ୍ରଚଣ୍ଡ ଅହଂକାର ଓ ଧୃଷ୍ଟତା।

ନାଟକର ଏ ପର୍ଯ୍ୟାୟରେ ଈଶ୍ୱର ପ୍ରତାରିତ, ପ୍ରତ୍ୟାଖ୍ୟାତ, ଭୂଲୁଣ୍ଠିତ, ପରାସ୍ତ ଓ ବିପର୍ଯ୍ୟସ୍ତ। କାରଣ ଈଶ୍ୱର ମହାସେବକ ଜଣେ ଯେତେବେଳେ ଈଶ୍ୱରଙ୍କୁ ମୂଲ୍ୟହୀନ କହିପାରେ ବା ଆହ୍ୱାନ କରିପାରେ ତା'ର ଶକ୍ତିକୁ। ଈଶ୍ୱରଙ୍କର ଆଦର୍ଶ ଓ ମୂଲ୍ୟବୋଧର ଆଶୀର୍ବଚନକୁ ଯିଏ କହିପାରେ ଆଦର୍ଶ: "ଆଉ ସେ ଫମ୍ପା ଆଦର୍ଶ କଥା ମତେ ଆଉ ଶୁଣାଅନି । ତମେ ଅତୀତରେ କେବେ ଅବତାରୀ ଥିଲ, ସେ କଥା ତମେ ଜାଣ । ହେଲେ ଏ ଆଧୁନିକ ଯୁଗରେ ତମର ସେ ଅବତାର ଆଉ କୌଣସି କାମ କରିବ ନାହିଁ। ଆଜିର ମଣିଷ ପାଇଁ ତମେ ହିଁ ପ୍ରଥମ ମୂଲ୍ୟହୀନ ପଦାର୍ଥ।***ଦେବଦାସୀ ଲୀଳାମୟୀ ସହିତ ଚରମ ଅନ୍ୟାୟ କରିଛ ଈଶ୍ୱର। ତା'ର କ'ଣ ଜୀବନ ନାହିଁ ? ତା'ର କ'ଣ ହୃଦୟ ନାହିଁ? କେତେଦିନ ଗୋଟାଏ ରକ୍ତମାଂସର ଶରୀର ସହିତ ତମେ ଫମ୍ପା ଅଭିସାର ରଚନା କରି ଚାଲିଥାନ୍ତ। ତମେ ନିଜେ ବି ଶିଳାଖଣ୍ଡ। ତମେ କିପରି ବୁଝିବ ମଣିଷ ମନର ଗହନ ବ୍ୟଥା।"

ଈଶ୍ୱର, ମହାସେବକକୁ କୃତ ବ୍ୟଭିଚାର ପାଇଁ ନିନ୍ଦା କଲାବେଳେ ମହାସେବକ ଓଲଟି ଈଶ୍ୱରଙ୍କୁ ଦୋଷୀ ସାବ୍ୟସ୍ତ କରିବା ସହିତ ଧାର୍ମିକ ଷଡ଼ଯନ୍ତ୍ରର ଜାଲରେ ବାନ୍ଧି ଧରିଛି। ଜନତା ଯେ ଈଶ୍ୱର ଅପେକ୍ଷା ଈଶ୍ୱର ସେବକମାନଙ୍କୁ ଈଶ୍ୱରଙ୍କ ପ୍ରତିନିଧି ମାନନ୍ତି ଏବଂ ସେଇମାନେ ହିଁ ଚଳନ୍ତି ପ୍ରତିମା-ତା'ରି ଆଧାରରେ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ କରିଛି ଅର୍ଦ୍ଧହାସ: "ହୁଁ, ଜନତା। ମୋ ଆଙ୍ଗୁଳି ଆଗରେ ଯେଉଁମାନେ ଉଠ୍‌ବସ ହୁଅନ୍ତି, ସେଇମାନଙ୍କ କଥା ମତେ ଶୁଣାଉଚ ? ହେଲେ ମନେଥିବ ଈଶ୍ୱର, ମୁଁ ଚାହିଁଲେ ସବୁଦିନ ପାଇଁ ଈଶ୍ୱର ନିବାସ ତମଲାଗି ନିଷିଦ୍ଧ ହୋଇଯିବ।"

ଈଶ୍ୱରଙ୍କ ନିବାସ ଈଶ୍ୱରଙ୍କ ପାଇଁ ନିଷିଦ୍ଧ କରିଦେବା ଭଳି ଆସ୍ପର୍ଦ୍ଧା କରୁଥିବା ମହାସେବକ କିନ୍ତୁ ଅନୁତପ୍ତ ନଥିଲେ ନିଜ କୃତକର୍ମ ପାଇ। ଏପରିକି ସେ ଯେ ଈଶ୍ୱରଙ୍କ ପ୍ରତିନିଧ ଏବଂ ତା'ର ପ୍ରତ୍ୟେକଟି ଆକାଂକ୍ଷା ହିଁ ଈଶ୍ୱର ଅଲିଖିତ ସମ୍ବିଧାନ । ଏପରିକି ସେ ଆସନ୍ତା କାଲି ହିଁ ସର୍ବସମ୍ମୁଖରେ ଘୋଷଣା କରିବେ ଯେ ଈଶ୍ୱରନିବାସରେ ଶେଷ ହୋଇଯାଇଚି ଈଶ୍ୱରଙ୍କ ଆବଶ୍ୟକତା । ତେଣୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ପଡ଼ିବ।

ସତରେ କେତେ ଅସ୍ତିହୀନ ଐଶ୍ୱରୀୟ ବ୍ୟକ୍ତିତ୍ୱ। ଯେଉଁ ଈଶ୍ୱରଙ୍କୁ ନିମିତ୍ତ ମାତ୍ର ସେବକ ଜଣେ ନିଷିଦ୍ଧ କରାଇଦେଇପାରେ ଦେବାଳୟ ଏବଂ ସର୍ବସମ୍ମୁଖରେ ଘୋଷଣା କରିବାର ଦୁଃସାହସ କରିପାରେ ନୂତନ ଈଶ୍ୱରର ସନ୍ଧାନପାଇଁ ଏପରିକି ଈଶ୍ୱର ଯେତେବେଳେ ଆଉଥରେ ଅବତାର ଗ୍ରହଣ କରିବାର ଇଚ୍ଛା ପ୍ରକଟ କଲାବେଳେ ମହାସେବକ ସଂପୂର୍ଣ୍ଣ ବିଧ୍ୱସ୍ତ କରିଦେବାର ଆସ୍ଫାଳନ ବେଶ୍ ତୀବ୍ର। "ତା ପୂର୍ବରୁ ଈଶ୍ୱର

ନିବାସକୁ ମୁଁ ଭାଙ୍ଗି ବିଧ୍ୱସ୍ତ କରିଦେବାର ଆସ୍ଫାଳନ ବେଶ୍ ତୀବ୍ର : "ତା'ପୂର୍ବରୁ ଈଶ୍ୱର ନିବାସକୁ ମୁଁ ଭାଙ୍ଗି ଛାରଖାର କରିଦେବି। ଧରାପୃଷ୍ଠରୁ ତମର ସତ୍ତା ଟିକକ ବି ଲୋପ କରିଦେବି । ମଣିଷ ମାନଙ୍କୁ ଜଣାଇଦେବି, ତମେ ଏକ ଯନ୍ତ୍ର-ଈଶ୍ୱର ପାଲଟି ଯାଇଛ। ତମର ସଂସ୍କାର ଆବଶ୍ୟକ...ଦରକାର ନବକଳେବର..." ।

'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକର ଦଶମ ଦୃଶ୍ୟରେ ଈଶ୍ୱର ବି ମଣିଷର ଯନ୍ତ୍ରର ଶିକାର ହେବା ପାରଂପରିକ ଧାର୍ମିକ ମୂଲ୍ୟବୋଧ ଉପରେ ଏକ କୁଠାରଘାତ ସଦୃଶ। ମହାସେବକ, ମେରୀର ଅପହରଣ; ଧର୍ଷଣ ଓ ହତ୍ୟାର ଅଭିଯୋଗ ଲଗାଇ ଦେଇଚିସ୍ୱୟଂ ଈଶ୍ୱରଙ୍କ ଉପରେ। ରାଜା, ପ୍ରଶାସକ, ମହାପୂଜକ ସମସ୍ତଙ୍କ ଆଖିରେ ଧୂଳିଦେଇ ମହାସେବକ ଘନୀଭୂତ କରାଇଚି ଚରଣ ଷଡ଼ଯନ୍ତ୍ର। ଈଶ୍ୱରଙ୍କ ମୂର୍ତ୍ତି କଳା ପଡ଼ିଯିବାର ହେଉ ବା ଦେଉଳର ମୁଖଶାଳା ଉପରେ ଶାଗୁଣା ବସିବା ହେଉ ବା ଈଶ୍ୱରଙ୍କ ବଂଶୀ, ଉତ୍ତରୀୟ ହରଣ୍‌ଚାଲ୍ ହେବା ବେଶ୍ ରହସ୍ୟମୟ। ରାଜା-ପ୍ରଶାସକ-ମହାପୂଜକ ସମସ୍ତେ ଅସମର୍ଥ ନିଜ ନିଜ ନିଜ ସ୍ଥିତିକୁ ନେଇ। ଈଶ୍ୱରୀୟ ସତ୍ତାର ପଡ଼ିବା ଘଟନାକୁ ମହାସେବକ ଦେଇଚି ଭିନ୍ନ ରୂପ। ଈଶ୍ୱରଙ୍କ ଉତ୍ତରୀୟ ଓ ବଇଁଶୀ ମେରୀର ଶବ ପାଖକୁ କେମିତି ଗଲା ? ଏ ପ୍ରଶ୍ନକୁ ମହାସେବକ ବାରମ୍ବାର ପୁନରାବୃତ୍ତି କରାଇ ଦୋଷ ଲଦି ଦେବାକୁ ଚାହିଁଚି ନିର୍ବାକ ଈଶ୍ୱରଙ୍କୁ: "ଲୋକମାନଙ୍କର ବିଶ୍ୱାସ, ଏସବୁ ଈଶ୍ୱରଙ୍କ କାମ। ଅନେକ ଦିନରୁ ମନ୍ଦିରରେ ରାଧା ମୂର୍ତ୍ତିଟିଏ ସ୍ଥାପନ କରିବା ପାଇଁ ଈଶ୍ୱର ସ୍ୱପ୍ନାଦେଶ କରିଥିଲେ।***ଆପଣ କରନ୍ତୁ ମହାରାଜା। କେତେଦିନ ଈଶ୍ୱର ଏଇମିତି ସାଥୀହୀନ ହୋଇ ନିଃସଙ୍ଗ ଜୀବନଯାପନ କରିଥାନ୍ତେ ? ତାଙ୍କ ବିରହ ଯନ୍ତ୍ରଣା ପ୍ରବଳ ହେବାରୁ ଶେଷରେ ସେ ଏମିତି କାଣ୍ଡଟାଏ କରିବସିଲେ ***ଈଶ୍ୱରଙ୍କ ଛଡ଼ା ଏ କାଣ୍ଡ ଆଉ କାହାରି ନୁହେଁ।

ନାଟକରେ ମହାସେବକର ଭୟଙ୍କର ଷଡ଼ଯନ୍ତ୍ରର ଶିକାର ହୋଇଛନ୍ତି ସ୍ୱୟଂ ଈଶ୍ୱର। ଏପରିକି ଈଶ୍ୱର ଅସହାୟ ହୋଇ ଲୋତକପୂର୍ଣ୍ଣ ଚକ୍ଷୁରେ ମେରୀର ଶବକୁ ଧରି ଯାଇ ପହଞ୍ଚିଯାଇଛନ୍ତି ଯୋଶେଫ୍ ପାଖରେ । ଈଶ୍ୱର ବି ଯୋଶେଫ୍ ଆଗରେ ବଖାଣିଥିଲେ ଈଶ୍ୱର ନିବାସକୁ ନଯାଇ ପାରିବାର ଅସମର୍ଥପଣ।: "ଆଉ ପ୍ରଶ୍ନ କରନି ଯୋସେଫ୍! ମୁଁ ଆଜି ହାରିଯାଇଛି ? ଏ କଳେବର ନେଇ ମୁଁ ଆଉ କେବେ ସେ ଈଶ୍ୱରନିବାସକୁ ଯାଇପାରିବି ନାହିଁ। ହଁ, ଯୋଶେଫ୍ ତମେ ଆଉ କେବେ ସେ ଈଶ୍ୱର ନିବାସରେ ପୂଜା ପାଉଥିବା ସେ ପଥର ମୂର୍ତ୍ତିଟା ପାଖକୁ ଆସିବ ନାହିଁ ।"

ଈଶ୍ୱରବି ହୋଇପାରନ୍ତି କଳୁଷିତ। ଈଶ୍ୱର ବି ହୋଇପାରନ୍ତି ବିସର୍ଜିତ ଓ ନିରାଶ୍ରୟ। ଈଶ୍ୱର ବି ହୋଇପାରନ୍ତି ବିଧର୍ମୀ। ମହାସେବକ ହିଁ ଭିଆଇଛି ଏ ଷଡ଼ଯନ୍ତ୍ର। କାରଣ ସେ ଛୁଇଁଛନ୍ତି ମେରୀର ଶବକୁ। ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର ଶେଷରେ ହୋଇଛନ୍ତି ଅଛୁଆଁ।

ଈଶ୍ୱର ପ୍ରକାଶ୍ୟରେ ଘୃଣା କରିଛନ୍ତି ପୂଜକ, ସେବକ, ପଣ୍ଡା, ପଢିଆରୀ ମାନଙ୍କର ଦୌରାତ୍ମ୍ୟକୁ ଆଉ ଚାହିଁଛନ୍ତି ସ୍ୱୟଂ ନବକଳେବର। କିନ୍ତୁ 'ପଥର ମୂର୍ତ୍ତିକା ଥିଲା ପର୍ଯ୍ୟନ୍ତ ତୁମର କୌଣସି ଆବଶ୍ୟକତା ନାହିଁ ଈଶ୍ୱର'-ବୋଲି ମହା ସେବକ ଦୃଢୋକ୍ତିରେ ସ୍ପଷ୍ଟ ଐଶ୍ୱରୀୟ ସ୍ଥିତିହୀନତା । ଈଶ୍ୱରହୀନ ନିବାସ ଯେ ଗୃଧ୍ର ପେଚକର ବାସସ୍ଥଳୀ । କେବଳ ଶରୀର ରୂପକ ମୂର୍ତ୍ତି ଭିତରେ ଯେ 'ଆତ୍ମା' ନାହିଁ, ତାହା ଯେ ସାଧାରଣ ଜନତା ପାଇଁ ଅଜ୍ଞାତ ଚିରକାଳ- ସେଇ ଧାର୍ମିକ ଆଢୁଆଳ ହିଁ ମହାସେବକର 'ଦେବ ବ୍ୟବସାୟ' ଓ ଲବ୍ଧପ୍ରତିଷ୍ଠ'ର ମୂଳଭିତ୍ତି । ସେଥିପାଇଁ ତ ମହାସେବକ କହିଚି : "ମଥାରେ ସିନ୍ଦୂର, ମୁଖରେ ମନ୍ତ୍ର ଥିବା ପର୍ଯ୍ୟନ୍ତ ଜନତା ଆମକୁ ସମ୍ମାନ ଜଣାଇବା ପାଇଁ ବାଧ୍ୟ। ଆମେ ସେବକ...ସମାଜର ତ୍ରାଣକର୍ତ୍ତା...ଈଶ୍ୱରଙ୍କ ଚଳନ୍ତି ଅବତାର।"

## ଅସରନ୍ତି ରକ୍ତପାତ;ଶେଷହୀନ ସଂଘର୍ଷ ଓ ମୁମୂର୍ଷୁ ଈଶ୍ୱର:

ମେରୀ ପ୍ରତି ହୋଇଥିବା ଅନାଚାର ଓ ହତ୍ୟା ଭାଙ୍ଗିଦେଇଥିଲା । ଯୋଶେଫ୍‌କୁ ଏହା ଯେ କେବଳ ଗୋଟିଏ ମେରୀ ପ୍ରତି ଘଟିନାହିଁ, ସେ କଥାକୁ ବୁଝିବାକୁ ଚେଷ୍ଟିତ ଥିଲେ ଇସ୍‌ଲାମ୍ ଧର୍ମର ନେତା ସୁଲେମାନ୍। ସୁଲେମାନ୍, ଯୋଶେ'୍‌କୁ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉଠାଇବା ପାଇଁ ପ୍ରବର୍ତ୍ତାଇବା ମୂଳରେ ଥିଲା ପୁନଶ୍ଚ ସେଇ ଧର୍ମ ନେଇ ଷଡ଼ଯନ୍ତ୍ର ଓ ରାଜନୀତି : "ଯୋଶେ'୍, ଅତୀତ କଥା ଭୂଲିଯାଅ । ବର୍ତ୍ତମାନ ପାଇଁ ପ୍ରସ୍ତୁତ ହୁଅ । ମାଟି ଯେତେବେଳେ ଆମଠୁଁ ସଂଗ୍ରାମ ଚାହୁଁଛି, ଆମେ ସେତେବେଳେ ନୀରବ ହେଲେ ଚଳିବନି। **ଆଜି ଖ୍ରୀଷ୍ଟଧର୍ମ ପ୍ରତି ସେମାନେ ଅବିଚାର କରିଛନ୍ତି । ବାଲି ସ୍‌ଲାମ୍ ଧର୍ମ ପ୍ରତି କରିବେ । ତା'ପରେ ନିଜେ ଶିଖ୍ ଧର୍ମର ଅବମାନନା କରିବେ। କେତେଦିନ ଅନ୍ୟର ଚାବୁକ୍ ମାଡ଼ ଖାଇ ବସିବା** ଅଧିକାର କାହାରି ହାତଟେକା ଦାନ ଉପରେ ନିର୍ଭର କରେନା । ତାକୁ ଜୋର୍ କରି ଛଡ଼ାଇ ଆଣିବାକୁ ହୁଏ । **ଧର୍ମ ନାମରେ ସଂପ୍ରଦାୟ ଭିତରେ ସବୁକିଛି ସମ୍ଭବ। ଆଗକୁ ଇଲେକ୍ସନ୍ ଅଛି ** ଏ ଇଲେକ୍ସନ୍‌ରେ ଏଥର ଈଶ୍ୱର ନିବାସର ମହା ସେବକ । ସେ ଧରି ନେଇଚି, ଧର୍ମ ନାମରେ ସବୁ ଯାକ ଭୋଟ୍ ମାରିନବ।"

ସୁଲେମାନ୍ ଧର୍ମ ଓ ସଂପ୍ରଦାୟ ଭିତ୍ତିକ ଉଷ୍ମତାପୂର୍ଣ୍ଣ କଥାରେ ଯୋଶେ'୍ ମଧ୍ୟ ନିଜକୁ ସାମିଲ୍ କରିନେଇଛି। ଧର୍ମ-ଈଶ୍ୱର-ସଂପ୍ରଦାୟ ଭିତରେ ଏଇଠୁ ହିଁ ବିଖଣ୍ଡିତ ଭାବନା; ବ୍ୟକ୍ତି ମଣିଷର ସମସ୍ତ ସମ୍ବେଦନାକୁ କରିଚି ବିଷ। ରାଜନୀତି, ଏଭଳି ଏକ ପୃଷ୍ଠଭୂମି; ଯେଉଁଠି ଲୋକଙ୍କର ସମ୍ବେଦନଶୀଳ ଧମନୀକୁ ଟିକିଏ ଖାରି ନେଲେ-ତାହା ଏକତ୍ରିତ ହେବାକୁ ସମୟ ଲାଗେନି। ସେହିଭଳି ନ୍ୟସ୍ତସ୍ୱାର୍ଥ ଭଣ୍ଡନେତା ମାନେ ତାକୁ କରିଥାନ୍ତି

ଅନେକ ସମୟରେ ଅସ୍ତ୍ର। ଯାହା ମାନବୀୟ ସଭ୍ୟତା ପ୍ରତି କେତେ ସକାରାତ୍ମକ ତାହା ଅସ୍ପଷ୍ଟ ହୋଇଥିଲେହେଁ ଏକଥା ଅବଶ୍ୟ ସତ୍ୟ ଯେ ବ୍ୟକ୍ତି ମଣିଷର ସବୁ ସାତ୍ତ୍ୱିକ ଅବବୋଧକୁ ବିଶିଷ୍ଟ କରିଥାଏ। ଭାଙ୍ଗି ଦେଇଥାଏ ମାନବିକତା; ଚୂରଚୂର୍ କରିଦେଇଥାଏ ଭାଇଚାରା।

ନାଟକର ତ୍ରୟୋଦଶ ଦୃଶ୍ୟରେ ନିର୍ବାଚନର ରଣାଙ୍ଗନରେ 'ମହାସେବକ' 'ହିନ୍ଦୁଗୋଷ୍ଠି' ପ୍ରତୀକ ହୋଇଥିବା ସ୍ଥଳେ 'ସୁଲେମାନ୍' 'ସଖ୍ୟାଲଘୁ ଗୋଷ୍ଠୀ'ର ପ୍ରତୀକ ଭାବେ ଅବତୀର୍ଣ୍ଣ। ଉଭୟଙ୍କର ଭାଷଣରେ ତୀବ୍ର ଧର୍ମବିରୋଧୀ ଅଭିବ୍ୟକ୍ତିରେ ବିଖଣ୍ଡିତ ଐକ୍ୟତା । ବିପର୍ଯ୍ୟସ୍ତ ହୋଇପଡ଼ିଛି ଏକଦା ଅଖଣ୍ଡ ହୋଇରହିଥିବା ଭାଇଚାରା।

ମହାସେବକ ଯେମିତି ତା'ର ବିଜୟକୁ ସ୍ୱୟଂ ଈଶ୍ୱରଙ୍କ ବିଜୟ ଏବଂ ଆଜୀବନ ଯେ ସେ ଅବିବାହିତ ବ୍ରହ୍ମଚାରୀ ଭଳି ଈଶ୍ୱରଙ୍କ ସେବାରେ ନିଜକୁ ନିୟୋଜିତ କରିଆସିଚି ତା'ର ଦ୍ୱାହି ଦେଇ ଜନଗଣଙ୍କ ମନୋଭାବକୁ ଜିତିବାକୁ ଚାହିଁଚି । ଠିକ୍ ଅପରପକ୍ଷରେ ସୁଲେମାନ୍ କିନ୍ତୁ ସଂଖ୍ୟାଲଘୁର ମନସ୍ଥିତି ଉପରେ କରିଚି କୁଠାରଘାତ । ଉଭୟତ୍ର ସେଇ ଧାର୍ମିକ ଷଡ଼ଯନ୍ତ୍ରର ଆଢୁଆଳରେ ଭୋଟ୍ ରାଜନୀତିହିଁ ବଳବତ୍ତର। କଟକରେ ସୁଲେମାନ୍ 'ଭୋଟ୍' ନୁହେଁ 'ନ୍ୟାୟ' ମାଗିବା କଥାଟି ସେଇ ରାଜନୀତିକ ଅଭିସନ୍ଧିକୁ ହିଁ ଅଭିବ୍ୟଞ୍ଜନ କରେ: "ଭାଇମାନେ, ମୁଁ ଆପଣଙ୍କୁ ଭୋଟ୍ ମାଗୁନି । ମୁଁ ମାଗୁଛି ନ୍ୟାୟ***ଧର୍ମ ନାମରେ କେତେଦିନ ଧରି ବ୍ୟଭିଚାର ଚାଲିଥିବ। ସେଦିନ ମେରୀର ଇଜ୍ଜତ ଲୁଣ୍ଠନ କରି ତା'ର ଶବକୁ ସମୁଦ୍ର ବାଲିରେ ଫିଙ୍ଗି ନିଆଗଲା । ହେଲେ ସବୁଠୁଁ ଏ ଦୁଃଖଦାୟକ ହେଉଛି, ଘଟନାର କାଳିମାକୁ ଈଶ୍ୱରଙ୍କ ନାମରେ ବୋଳି ଦିଆଗଲା।***ଯେଉଁ ୀଶ୍ୱର ନିବାସ ସତ୍ୟ-ଧର୍ମ-ନ୍ୟାୟ ପାଇଁ ମୁକ୍ତି ଟେକି ଠିଆ ହୋଇଛି, ସେଠି କ'ଣ ଅନୀତି ହୋଇପାରେ ? ଈଶ୍ୱର ଆମ ସମସ୍ତଙ୍କର ସେ ହିନ୍ଦୁର ନୁହନ୍ତି... ମୁସଲମାନ୍‌ର ନୁହନ୍ତି...କି କେବଳ ଖ୍ରୀଷ୍ଟିଆନ୍ ମାନଙ୍କର ନୁହନ୍ତି। ସେ ସକଳ ମାନବ ସମାଜର...। ***ଏ ଘଟନାର ମୁଖ୍ୟ ନାୟକ କିଏ ? କାହା ଦ୍ୱାରା ଏ ଘଟନା ପ୍ରଥମେ ପ୍ରଚାରିତ ହୋଇଥିଲା । ରାତି ଅନ୍ଧାରରେ ଝିଅ-ବୋହୂଙ୍କର ଇଜ୍ଜତ ଲୁଣ୍ଠନ କରୁଥିବା ବ୍ୟକ୍ତି, ଯଦି ଦିନରେ ଗୀତା, ଭାଗବତ, ବାଈବଲ୍, କୋରାନ୍ ବାଣୀ ଶୁଣାଏ, ତା'ହେଲେ ଆପଣମାନେ କ'ଣ ତାକୁ ସ୍ୱାଗତ କରିବେ ?"

ଭୋଟ ରାଜନୀତିର କରାଳ ଚକ୍ରବ୍ୟୁହରେ ଧର୍ମର ଭିତ୍ତିରେ ମଇଳା ଫିଙ୍ଗାଫିଙ୍ଗି କରି ଏ ପଅହେଳିକା ନାଟକରେ ବେଶ୍ ଭାବେ ପ୍ରତି'ଳିତ। ଉଭୟତ୍ର ସେଇ 'ଧର୍ମ'ନେଇ ଅପରକୁ ଆଘାତ କରିବା ଭିତରେ ଅତ୍ୟନ୍ତ ସ୍ପଷ୍ଟ ମଣିଷର ଘୃଣିତ ରାଜନୀତି। ଏଠି ମହାସେବକ ପାଇଁ 'ଈଶ୍ୱର' ଏକ ଧର୍ମଭୀରୁ ସାଧାରଣ ଗଣ 'ଆସ୍ଥା'ର ପ୍ରତୀକ ହୋଇଥିବା

ସ୍ଥଳେ ଅପରପକ୍ଷରେ ସୁଲେମାନ୍ ଭଳି ସୁଯୋଗବାଦୀ ନେତାଙ୍କ ପାଇଁ 'ମେରୀ' ଏକ ରାଜନୀତିକ 'ମୁଦ୍ଦା' ଅଟେ।

ନାଟକର ଏହି ଦୃଶ୍ୟରେ ହିଁ ଯୋଶେଫ୍‌ର ଭାଷଣ ବେଳେ ମଞ୍ଚ ଉପରକୁ ଉଠି ଆସିଛନ୍ତି ପ୍ରଶାସକ ଏବଂ ତତ୍କ୍ଷଣାତ୍ ସୁଲେମାନ୍‌କୁ ଧକ୍‌କା ଦେବାକୁ ଆରମ୍ଭ କରିଛନ୍ତି । ଏଇ ରାଜନୀତିର ଭିତ୍ତିରେ ପ୍ରାରମ୍ଭ ହୋଇଥିବା ସାଂପ୍ରଦାୟିକ ସଂଘର୍ଷରେ ଗୋଟିଏ ପଟେ ରହିଯାଇଛନ୍ତି ସୁଲେମାନ୍ ଓ ଯୋଶେଫ୍ ଏବଂ ଅନ୍ୟପଟେ ପ୍ରଶାସକ ଓ ମହାସେବକ। ଏମାନଙ୍କ ଠିକ୍ ଭଝିରେ ସ୍ୱୟଂ ଈଶ୍ୱର।

ଈଶ୍ୱରଙ୍କୁ ନିଜକୁ ଜାହିର୍ କରିବା ଏବଂ ନିଜର ପରିଚୟ ଦେବା ପଛରେ ଛପିରହିଚି ବିଘ୍ନିତ ମୂଲ୍ୟବୋଧର ସମୟର ଛବି। ସୁଲେମାନ୍ ଦୋଷ ଦେଇଚି ଈଶ୍ୱରଙ୍କୁ ଯେ ତାଙ୍କ ପାଇଁ ହିଁ ଏ ରକ୍ତପାତ । ଏ ସାଂପ୍ରଦାୟିକ ସଂଘର୍ଷ । ଏପରିକି ସୁଲେମାନ୍ ଈଶ୍ୱରଙ୍କୁ ସୁବିଧାବାଦୀ କହିବା ସହିତ ତାଙ୍କୁ ଯେ କହିବାକୁ ପଡ଼ିବ ସେ ହିନ୍ଦୁର ନା ମୁସଲମାନ୍‌ର ନା ଖ୍ରୀଷ୍ଟିଆନ୍‌ର ନା ଶିଖ୍‌ର ? ବୋଲି କହିଲା ବେଳେ ଈଶ୍ୱରଙ୍କ ଉତ୍ତର : "ମୁଁ ସମସ୍ତଙ୍କର। ସାରା ବିଶ୍ୱର...ସମଗ୍ର ମାନବ ସମାଜର" । ନାଟକରେ ଏକ ଦୃଢ ନାଟ୍ୟାଭିବ୍ୟକ୍ତିର ସୂଚକ।

ହିନ୍ଦୁ ମହାସେବକ; ଈଶ୍ୱରଙ୍କୁ ହିନ୍ଦୁର ଏବଂ ତାଙ୍କ ପାଇଁ ଯେତେସବୁ ପର୍ବପର୍ବାଣୀ-ଯାନିଯାତ୍ରା-ମହୋତ୍ସବ କହିଥଇବା ବେଳେ ଇସ୍‌ଲାମ୍ ଧର୍ମନେତା ସୁଲେମାନ୍ କହିଚି ଯେ ତାଙ୍କ ପାଇଁ ପାଳିଚି ଇଦ୍-ରମ୍‌ଜାନ୍ ବୋଲି ଅଭିବ୍ୟକ୍ତି ଭିତରେ ରହିଚି ଧାର୍ମିକ ସଂକୀର୍ଣ୍ଣତାର ସୂତ୍ର। ଉଭୟ ଦର୍ମର ପ୍ରତିନିଧିତ୍ୱ କରୁଥିବା ମହାସେବକ ଓ ସୁଲେମାନ୍ ଯୁକ୍ତି ବାଢ଼ିଛନ୍ତି ଯେ ଈଶ୍ୱର ନିଜ ନିଜ ଧର୍ମର ଏବଂ ସେଇ ଧର୍ମର ରୂଢ଼ିବାଦୀ ଗଣ୍ଡି ଭିତରେ ହିଁ ସୀମାବଦ୍ଧ। ଏହି ଅମୀମାଂସିତ ସଂଘର୍ଷର ଶେଷ ହୋଇନାହିଁ ନାଟକରେ। ସେହିଭଳି ଶେଷ ହୋଇନାହିଁ ଧର୍ମ ଧର୍ମ ଭିତରେ ଥିବା ସଂକୀର୍ଣ୍ଣ ବିଭେଦନର ତର୍କ। ପ୍ରାରମ୍ଭ ହୋଇଥିବା ସାଂପ୍ରତିକ ରକ୍ତପାତର ଶୁଖିନାହିଁ ରକ୍ତଧାରା, ସରିନାହିଁ କାଳକାଳର ସଂଘର୍ଷ। ଏହି ସଂଘର୍ଷରେ ଯେଉଁ ବ୍ୟକ୍ତି ଜଣକ ଯେଉଁ ଅପର ବ୍ୟକ୍ତି ଜଣକର ରକ୍ତପାତ ଘଟାଉଚି । ସେ ଜାଣିପାରୁନାହିଁ ଯେ କେଉଁଥିପାଇଁ ଏ ରକ୍ତପାତ ଓ ସଂତ୍ରାସ । କେଉଁଥିପାଇଁ କେଉଁ ଆସ୍ଥାର ଆଧାରରେ ମଣିଷ ଖେଳୁଚି ଲହୁର ହୋଲି। ଈଶ୍ୱର ନିଜେ କେଉଁଠି ଏକ ପ୍ରଶ୍ନବାଚୀ। ଈଶ୍ୱର ନିଜେ ଯେଉଁଠି ହରାଇଛନ୍ତି ନିଜ ଠିକଣା । ହରାଇଛନ୍ତି ଆଶ୍ରା । ସେଠି କାହାପାଇଁ ଏ ସଂଘର୍ଷର ସୂତ୍ରପାତ । ଏହା ହିଁ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକର ଚରମ ଅସହାୟତା ଓ ଚରମ କଦର୍ଥନା ? ଯାହାର ଶିକାର ସ୍ୱୟଂ ଈଶ୍ୱର।

ନାଟକର ଏହି ତ୍ରୟୋଦଶ ଦୃଶ୍ୟରେ ଦୃଶ୍ୟାୟିତ ସାଂପ୍ରଦାୟିକ ସଂଘର୍ଷର ଶେଷ ନାହିଁ। ଈଶ୍ୱର ଯେ ନିଜ ନିଜ ଧର୍ମର ସଂପତ୍ତି ଏବଂ ତାଙ୍କୁ ଆଧାର କରି ଯେଉଁଠି କାଳ କାଳର ଷଡ଼ଯନ୍ତ୍ର ସେଥିରେ ବିଧ୍ୱସ୍ତ ମଣିଷର ମାନବିକତା ଓ ମୂଲ୍ୟବୋଧ ହିଁ ହୋଇଚି ପ୍ରଦର୍ଶିତ–ଏ ଭଳି ମୁହୂର୍ତ୍ତରେହିଁ ନାଟକରେ ଶୁଣାଯାଇଚି ଏକ ଘୋଷଣା: "ଅଯୋଧ୍ୟାଠାରେ ଆଜି ରାମ ମନ୍ଦିର ଶିଳାନ୍ୟାସ କାର୍ଯ୍ୟକ୍ରମ ଥିବାରୁ ଦେଶବାସୀ ଜାଗତିଆର ରହିବାକୁ ସରକାର ଘୋଷଣା କରିଛନ୍ତି। ବିହାରର ବାରଟି ଜିଲ୍ଲାରେ ରାମଶିଳା ପୂର୍ବକ ଘଟନାକୁ କେନ୍ଦ୍ରକରି ଉତ୍ତେଜନା ଲାଗି ରହିଥିବାରୁ ରାଜ୍ୟ ସରକାର ପକ୍ଷରୁ ନିରାପତ୍ତା ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି। ***ଗତକାଲି ରୋତାସ୍ ଥାନା ଅଞ୍ଚଳରୁ ତିନୋଟି ମୃତଦେହ ଉଦ୍ଧାର କରାଯାଇଛି । ହିଂସାକାଣ୍ଡ ଘଟାଇବା ଅଭିଯୋଗରେ ସତାବନ ଜଣକୁ ଗିରଫ କରାଯାଇଛି। ଏ ପର୍ଯ୍ୟନ୍ତ ରାଜ୍ୟରେ ଦଙ୍ଗା କବଳିତ ମୃତ୍ୟୁ ସଂଖ୍ୟା ଆଠ ବୋଲି ବେସରକାରୀ ସୂତ୍ରରୁ ଜଣାପଡ଼ିଛି।" ଏହି ଘୋଷଣା ପରେ ହିଁ ନାଟକରେ ଘଟିଚି ସବୁଠାରୁ ଚରମ ଘଟନା। ଉଭୟ ଗୋଷ୍ଠୀର ଲୋକେ ଈଶ୍ୱରଙ୍କୁ ଘେରିଯାଇ ତାଙ୍କୁ ପ୍ରହାର କରିବା ସହିତ ନିଜନିଜ ଭିତରେ ଆରମ୍ଭ କରିଦେଇଛନ୍ତି ଚରମ ବିଭତ୍ସତାର ଅସରନ୍ତି ରକ୍ତପାତ ଓ ସଂଘର୍ଷ । ଭୂଲୁଣ୍ଠିତ ହୋଇପଡ଼ିଛନ୍ତି ଈଶ୍ୱର।

## ରୂପାନ୍ତରଣର କାରୁଣିକ୍ସ : ଇଶରାରୁ ଈଶ୍ୱର:

ନାଟ୍ୟକାର ନାରାୟଣ ସାହୁଙ୍କ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' (୧୯୮୮) ନାଟକରେ ପରିବେଷିତ ବିଘ୍ନିତ ଆଧ୍ୟାତ୍ମିକତା ଓ ଧାର୍ମିକ ମୂଲ୍ୟବୋଧର ସ୍ଖଳିତ ରୂପବୋଧ ସହିତ ଭଙ୍ଗୁର ମାନବିକତାର ଛବି ବେଶ୍ ସ୍ପଷ୍ଟ। ଧର୍ମକୈନ୍ଦ୍ରିକ ଭ୍ରଷ୍ଟ ରାଜନୀତିରେ ବଳି ପଡ଼ିଯାଉଥିବା ମାନବୀୟ ସଂବେଦନା ଏବଂ ଐଶ୍ୱରୀୟ ଅସ୍ତିତ୍ୱର ଉପହସିତ ରୂପ ଚରମ ତାଡ଼ନାର ଶିକାର । ନାଟକର 'ଥିମ୍' ଅବକ୍ଷୟୀ ଧାର୍ମିକ ମୂଲ୍ୟବୋଧକୁ ଗୋଟିଏ ପଟେ ରୂପାୟିତ କରୁଥିବା ବେଳେ ଅନ୍ୟପଟେ ପ୍ରଶ୍ନବାଚୀ ସୃଷ୍ଟି କରିଚି ଭବିଷ୍ୟ ସାଂପ୍ରଦାୟିକ ସଦ୍‌ଭାବ ଓ ସୌହାର୍ଦ୍ଦ ପ୍ରସଙ୍ଗକୁ । ଯାହାକି ନାଟକରେ ଅମୀମାଂସୀୟ ଏକ ସନ୍ଦିଗ୍ଧ ଗୋଧୂଳି ଭଳି ଅସ୍ପଷ୍ଟ ଓ ରହସ୍ୟମୟ। ସଂତ୍ରାଶର ସେଇ ସଂଘର୍ଷ ଅସରନ୍ତି ଏବଂ ଅସରନ୍ତି ସେଇ ରକ୍ତପାତର ସୁଅ।

ନାଟକରେ ଶୈଳୀ ଓ ଶିଳ୍ପ ନେଇ ନାଟ୍ୟକାର ଅନେକ ସଚେତନ । 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'ନାଟକରେ ନାଟ୍ୟକାର ବ୍ରେଖେଟ୍‌ଙ୍କ ଏପିକ୍ ଥିଏଟର୍‌ର ଶୈଳୀକୁ ପ୍ରୟୋଗ କରିଛନ୍ତି । ନାଯକର ପ୍ରାରମ୍ଭ ଓ ଶେଷରେ 'ଓସ୍ତାଦ୍ ଯାଦୁକର' ଓ 'ଈଶ୍ୱର' ବା 'ଇଶରା'ର ଅବତୀର୍ଣ୍ଣ ଏବଂ ନାଟକର ଶେଷ ଦୃଶ୍ୟ ପୂର୍ବରୁ ଘୋଷକର 'ଘୋଷଣା'କୁ

ସପ୍ରସଙ୍ଗ ସ୍ମରଣ କରାଯାଇ ପାରେ। ନାଟକରେ ଓସ୍ତାଦ୍ ବା ଯାଦୁକର ଏବଂ ଇଶରା ବା ଇଶ୍ୱର, ଯେଉଁମାନଙ୍କର କାର୍ଯ୍ୟ ବିଭିନ୍ନ ଜାଗା ବୁଲିବୁଲି ଖେଳ ଦେଖାଇବା- ସେଇ ଦୁହେଁ ହିଁ ନାଟକର 'ସୂତ୍ରଧର' ଭାବେ ଆରମ୍ଭ ଓ ଶେଷରେ ଅବତୀର୍ଣ୍ଣ ହୋଇ ନାଟ୍ୟାରମ୍ଭ ଓ ନାଟ୍ୟ ସମାପ୍ତ କରିଛନ୍ତି। ନାଟକରେ ପରିବେଷିତ ତଥ୍ୟ ଓ ମୂଳ ଭାବବସ୍ତୁ ପ୍ରତୀକାତ୍ମକ ଭାବେ ସେମାନଙ୍କ ଦ୍ୱାରା ମଧ୍ୟ ହୋଇଚି ପରିବେଷିତ। ଏପରିକି ନାଟକର ପ୍ରାରମ୍ଭରେ ନାଟ୍ୟକାର ଲୋକଶୈଳୀକୁ ପ୍ରୟୋଗ କରିଛନ୍ତି । ଏଠାରେ ଲୋକକାହାଣୀ କହିବା ପୂର୍ବରୁ ଗଳ୍ପସାଗର ବା ଗଳ୍ପ କଥକର ଶ୍ରୋତାର ମାନସିକତାକୁ ପରଖିବା ପାଇଁ ପ୍ରଯୁକ୍ତ 'କଥାକୁହା ଶୈଳୀ'ର ପ୍ରୟୋଗ ବେଶ୍ ମହତ୍ୱପୂର୍ଣ୍ଣ । ଯେପରିକି ଗଳ୍ପ କଥକ- "କଥାଟିଏ କହୁଁ କଥାଟିଏ ? କି କଥା, ବେଙ୍ଗ ଲଥା"ଇତ୍ୟାଦିର ପ୍ରୟୋଗ ଶ୍ରୋତା ନିମନ୍ତେ କରିଥାଏ। ଠିକ୍ ସେହି ଅନୁରୂପ ଏ ନାଟକରେ ଲୋକକଥାର 'ପ୍ରାକ୍କଥନୀ'ର ସଂଯୋଗ ଘଟିଚି। ଅବଶ୍ୟ ଏ ଭଳି 'ପ୍ରାକ୍ କଥନୀ' ନାଟ୍ୟକାରୀ ଦଳ ବା ଜିକରମାନେ ମଧ୍ୟ ପ୍ରଦର୍ଶନ ପୂର୍ବରୁ ଅବତାରଣା କରୁଥିବା ଲକ୍ଷଣୀୟ । ଉଦାହରଣ ସ୍ୱରୂପ:

ଈଶ୍ୱର: ହଉ ଓସ୍ତାଦ୍, ତୁ ଯେତେବେଳେ କହୁଛୁ, ତୋରି କଥାମାନି ମୁଁ ଖେଳ ଆରମ୍ଭ କରୁଛି।

ଓସ୍ତାଦ୍: ଆରେ ଯେ ଇଶରା, ବାବୁ ଭାୟା ମାନଙ୍କୁ ଖେଳ ଦେଖାଇବୁ ନା ଏମିତି ଭାଷଣ ଦେଇ ଚାଲିଥିବୁ ?

ଈଶ୍ୱର: ଦେଖେଇବା, ଓସ୍ତାଦ୍।

ଓସ୍ତାଦ୍: କି ଖେଳ ?

ଈଶ୍ୱର: ଯାଦୁ ଖେଳ।

ଓସ୍ତାଦ୍: କି ଯାଦୁ ?

ଈଶ୍ୱର: ମନ୍ତର ଯାଦୁ।

ଓସ୍ତାଦ୍: କି ମନ୍ତର ?

ଈଶ୍ୱର: ଆଇଁଶି ମନ୍ତର କାଇଁଶ ମନ୍ତର

ଓସ୍ତାଦ୍: ଆଇଁଶି ମନ୍ତର...କାଇଁଶି ମନ୍ତର 'ହା' । ଆଇଁଶି ମନ୍ତର କାଇଁଶି ମନ୍ତର 'ହୁ'... ଆଇଁଶି ମନ୍ତର କାଇଁଶି ମନ୍ତର'ହେ'...(ଇତ୍ୟାଦି)

ଏହିଭଳି ସଂଳାପର ଦୀର୍ଘତା ନାଟକରେ ବେଶ୍ ଆତ୍ମୀୟତା ସୃଷ୍ଟି କରିପାରେ ନାଟ୍ୟ ଦର୍ଶକଙ୍କୁ। ଦର୍ଶକଙ୍କ ସହ ଏହି ନାଟ୍ୟ ସଂଯୁକ୍ତି ଏପିକ୍ ନାଟକ ପ୍ରମୁଖ ଏକ ଶୈଳୀରେ ଅନ୍ତର୍ଗତ ଅଟେ।

ନାଟକର ପ୍ରାରମ୍ଭରେ 'ଓସ୍ତାଦ୍' ଓ 'ଈଶ୍ୱର' ନାଟ୍ୟକଥାର ମୂଳଭାବକୁ ଅତ୍ୟନ୍ତ ପ୍ରତୀକାତ୍ମକ ଭାବେ ଆରୋପଣ କରି ନିଜେ ନାଟକର 'ଥିମ୍' ସହ ସମ୍ମିଶ୍ରିତ ହୋଇଯିବା ବେଶ୍ ଏକ ଉଲ୍ଲେଖଯୋଗ୍ୟ ଶୈଳୀ।

ଓସ୍ତାଦ୍‌ର ପ୍ରଶ୍ନର ଉତ୍ତରରେ ଈଶ୍ୱର ଆଖିରେ ଆଜି ଅନ୍ଧପୁଟୁଳି ବାନ୍ଧି ସବୁର ଉତ୍ତର ଦେବା ବେଶ୍ ବ୍ୟଞ୍ଜନାତ୍ମକ ଯେପରିକି :-

ଓସ୍ତାଦ୍: ଏଇ ବାବୁଟାର କ'ଣ ଅଛି ?

ଈଶ୍ୱରଃ ଆଖିରେ ଚଷମା ।

++++

ଓସ୍ତାଦ୍: କହ ଏପଟେ କିଏ ବସିଛନ୍ତି ?

ଈଶ୍ୱରଃ ରାଜୀବ ଗାନ୍ଧି।

ଓସ୍ତାଦ୍: ସେପଟେ କିଏ ?

ଈଶ୍ୱରଃ ଭି.ପି.ସିଂହ

ଓସ୍ତାଦ୍: ସାମ୍ନାରେ କିଏ ?

ଈଶ୍ୱରଃ ଦେବୀ ଲାଲ୍ ଆଉ ଆଡ୍‌ଭାନୀ।

ନାଟକରେ 'ଓସ୍ତାଦ୍' ଓ ଟହଲିଆ 'ଈଶରା' ଦ୍ୱିତୀୟ ଦୃଶ୍ୟର ଠିକ୍ ପ୍ରାରମ୍ଭ ପୂର୍ବରୁ ନାଟ୍ୟବସ୍ତୁରେ ମିଶିଯାଉଛନ୍ତି ଅପୂର୍ବ ଢଙ୍ଗରେ। କାରଣ ଓସ୍ତାଦର ପ୍ରଶ୍ନ: "ଆଚ୍ଛା କହତ ଦେଖି, ଏମାନେ କାହିଁକି ଏଠିକି ଆସିଛନ୍ତି ? କାହିଁକି ଆସିଛନ୍ତି ? କାହିଁକି ? କାହିଁକି ? ଉତ୍ତରରେ ଇଶରା ଘୂରିବାକୁ ଲାଗିଛି ସତେକି ଯେମିତି କାଳେସୀ ଲାଗିବାର ଅନୁଭବ ଏବଂ ସେଇ ଟହଲିଆ ଇଶରା ରୂପାନ୍ତରିତ ହେଉନି ନାଟକର 'ଈଶ୍ୱର' ଚରିତ୍ରରେ। ନାଟକର ଏହି ଅଂଶଟିକୁ ଏକ 'ଫାଣ୍ଟାସି' ପର୍ଯ୍ୟାୟଭୁକ୍ତ କରାଯାଇପାରେ ଏବଂ ଅପରପକ୍ଷରେ ଚରିତ୍ରର ଟ୍ରାନ୍ସଫରମେସନ୍ ବା ରୂପାନ୍ତରଣରେ ନାଟ୍ୟଭାବନାକୁ ଅଧିକ ସାନ୍ଦ୍ର ଭାବେ ଦେଖିବାର ପ୍ରତ୍ୟାଶା ଜାଗରିତ ହୋଇଥାଏ। ତେଣୁ ଏ ସବୁ ନାଟକର ଶିଳ୍ପ ଅନ୍ତର୍ଗତ ବିଶିଷ୍ଟତା ଭାବେ ପ୍ରତିପାଦିତ। ସେହିଭଳି 'ଓସ୍ତାଦ୍', 'ଈଶ୍ୱର' (ଇଶରା) ଏବଂ 'ସମୟ' ଚରିତ୍ର ମାନେ ସଂଯୋଜକ ଚରିତ୍ର ଭାବେ ଅବତୀର୍ଣ୍ଣ ହୋଇ ନାଟକର ଅନ୍ତର୍ନିହିତ ଅଭିବ୍ୟକ୍ତିକୁ ଅଧିକ ମହତ୍ତ୍ୱପୂର୍ଣ୍ଣ କରିବା ଏବଂ ଇଶରା ଈଶ୍ୱରରେ ରୂପାନ୍ତରିତ ହେବା ବ୍ରେଖ୍‌ଟୀୟ ଏପିକ୍ ଶୈଳୀକୁ ସ୍ମରଣ କରାଏ।

ଠିକ୍ ସେହିଭଳି ନାଟକର ତ୍ରୟୋଦଶ ଦୃଶ୍ୟରେ 'ଘୋଷଣା' ଏବଂ ଶେଷଦୃଶ୍ୟରେ ପୁନଶ୍ଚ ଓସ୍ତାଦ୍ ମଞ୍ଚକୁ ବାଦ୍ୟ ବାଦନ କରି ଉପଗତ ହେବା ଏବଂ ନାଟ୍ୟ ସମାପ୍ତିର ଅଧୂରାପଣକୁ ଅଭିବ୍ୟକ୍ତି କରିବାକୁ ଯାଇ ପରିବେଷିତ ସଂଳାପ ବେଶ୍ ଅନୁଚିନ୍ତାତ୍ମକ:

"ମୋ, ମାଉସୀ, ବାବୁଭାୟାମାନେ। ଆପଣମାନେ ଭାବନ୍ତୁନି ଯେ ମୋ ଖେଳ ସରିଗଲା ବୋଲି ? ଏ ଯେଉଁ ଖେଳ ଆରମ୍ଭ ହୋଇଛି, ତା'ର ଆରମ୍ଭଟା ସମସ୍ତେ ଦେଖିଛନ୍ତି ହେଲେ ଶେଷଟା କେବେ ହେବ, କେହି କହି ପାରିବେନି। ଆପଣମାନେ ଭାବୁଥିବେ, ମୁଁ ଇଶରାକୁ କୋଉଠି ଲୁଚେଇ ରଖିଚି । ହେଲେ ଅସଲ କଥାଟା ସେଇଆ ନୁହେଁ।*** ପେଟ ପାଇଁ ନାଟ ମୁଁ ନା ନା କରୁଛି । ଜବରଦସ୍ତି କରିଲା , ନାଇଁ ଅଯୋଧ୍ୟା ଯିବା । ହେଲେ ସିଏ... ଜାଗାଟା ଆଦୌ ଭଲନୁହେଁ । ଦି'ଦଳ ଲୋକେ ମାଡ଼ଗୋଳ ହୋଇ ତା'ମୁଣ୍ଡ ଫଟେଇ ଦେଇଛନ୍ତି । *** ତା'ଦେହଟା ଭଲ ହେଇଯାଉ। କଥା ଦଉଛି...ପୁଣି ଖେଳ ଦେଖେଇବୁ।"

ଈଶ୍ୱର ଚରିତ୍ର ସମଗ୍ର 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକର କେନ୍ଦ୍ର ଚରିତ୍ର। ସେଇ ପ୍ରତୀକାତ୍ମକ ଆରୋପଣ ଭିତରେ ସାର୍ବିକଭାବେ ନାଟ୍ୟମୂଲ୍ୟ ଓ ନାଟ୍ୟବାର୍ତ୍ତା ପରିବେଷିତ । ନାଟ୍ୟକାର ନାରାୟଣ ସାହୁଙ୍କର 'ଇଶରା' 'ଈଶ୍ୱର'ରେ ରୂପାନ୍ତରିତ ହେବା ଭିତରେ ଯେଉଁ ଭାବାଦର୍ଶ ସଂଗୁପ୍ତ; ତାହା ପୁନଶ୍ଚ ଆଶ୍ରାହୀନ, ନିରାଶ୍ରୟ, ଅସମର୍ଥ, ବିପର୍ଯ୍ୟସ୍ତ, ଭଙ୍ଗୁର, ପରାସ୍ତ ଓ ସଂତ୍ରସ୍ତ ହେବାରେ ଅଧିକ ମର୍ମସ୍ପର୍ଶୀ।

ନାଟ୍ୟକାର ନାରାୟଣ ସାହୁଙ୍କର 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'(୧୯୮୮) ନାଟକକୁ ଏକ ନୂଆ ଦୃଷ୍ଟିଭଙ୍ଗୀରେ ଅବଲୋକନ କରିବାର ଏହା ଏକ ସହୃଦୟ ପ୍ରଚେଷ୍ଟା ମାତ୍ର । ନାଟ୍ୟକାରଙ୍କ ଦ୍ୱାରା ଯେଉଁ ପରିଭୂମିରେ ନାଟକ ପିଣ୍ଡ ସର୍ଜିତ; ସେଇ ଭୂମିକୁ ଏକ ସମ୍ବେଦନଶୀଳ ମାନବୀୟ ଦୃଷ୍ଟିଭଙ୍ଗୀରୁ ପ୍ରଦକ୍ଷିଣ କରିବାର ପ୍ରଚେଷ୍ଟା ଆଲୋଚନାରେ ନିହିତ ରହିଚି। ତେଣୁ ଏ ଆଲୋଚକ ପ୍ରତି ଏବଂ ଆଲୋଚନା ପ୍ରତି ସହୃଦୟତା ହିଁ କାମ୍ୟ।

ଆସିଷ୍ଟାଣ୍ଟ ପ୍ରଫେସର
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ
କୋରାପୁଟ

●●●

# ନାଟ୍ୟକାର ନାରାୟଣ ସାହୁଙ୍କ 'ପୁନଶ୍ଚ ସଂଗ୍ରାମ': ଏକ ଦୃଷ୍ଟିପାତ

ସୋମନାଥ ବିଷୋୟୀ

ଆଧୁନିକ ଓଡ଼ିଆ ନାଟ୍ୟଧାରାରେ ଦ୍ୱିତୀୟ ପର୍ବ ଅର୍ଥାତ୍ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟର ଜଣେ ସୁପରିଚିତ ଓ ପ୍ରତିଷ୍ଠିତ ନାଟ୍ୟକାର ଭାବରେ ବହୁଳ ପ୍ରଶଂସା ଓ ସମ୍ମାନର ଅଧିକାରୀ ହୋଇପାରିଛନ୍ତି ନାଟ୍ୟକାର ଡ. ନାରାୟଣ ସାହୁ। ଡ.ସାହୁ ନାଟ୍ୟତତ୍ତ୍ୱ ବିଭାଗର ଜଣେ ଗବେଷକ ଓ ସୁସମାଲୋଚକ ହୋଇଥିବାରୁ ଏବଂ ଜଣେ ଅଧ୍ୟାପକର ବୃତି ନିର୍ବାହ କରୁଥିବାରୁ, ତାଙ୍କ ସୃଷ୍ଟି ନାଟକଗୁଡ଼ିକର ସମକାଳୀନ ନାଟ୍ୟଜଗତର ଅଧିକତର ସ୍ୱତନ୍ତ୍ରତା ଦାବିକରେ। ଗବେଷଣାତ୍ମକ ବିଚାରରେ ମୌଳିକ,ପରୀକ୍ଷାଧର୍ମୀ ନାଟକମାନ ରଚନା କରି ନୂତନ ଶତାବ୍ଦୀର ନାଟ୍ୟ ଆହ୍ୱାନରେ ସେ ନିଜକୁ ସାମିଲ୍ କରାଇପାରିଛନ୍ତି।

ସ୍ୱାଧୀନତା ପରବର୍ତ୍ତୀ ସମୟଟି ବହୁ ଭାବରେ ବିଡ଼ମ୍ବିତ। ଭାରତୀୟ ସମାଜ-ଜୀବନ ବିପନ୍ନ ଜାତୀୟତାର ପିଣ୍ଡି ଉପରେ ନିଜକୁ ଠିଆ କରାଇ ଏକ ମୂଲ୍ୟବୋଧ ରହିତ ରାଜନୀତିର ହିଁ ସ୍ତାବକ ପାଲଟିଚି। ଇଏ ବ୍ୟଭିଚାରଗ୍ରସ୍ତ ରାଜନୀତି। ଏଥିରେ ନେତୃତ୍ୱ ନାହିଁ କି ବ୍ୟକ୍ତିତ୍ୱ ନାହିଁ। ଜାତି ନାହିଁ କି ଜାତୀୟତା ନାହିଁ। ଭାରତୀୟତା କି ମହାଭାରତୀୟତାର ଭାବବୋଧଟି ସଂପୂର୍ଣ୍ଣ ଜଡ଼ତାର ରୂପନେବାକୁ ବସିଲାଣି। ଏ ମହାଜାତିର ଚେତନାରେ ମହାଜୀବନର ସ୍ପନ୍ଦନ ଟିକକ ଯେ ଆଉ ନାହିଁ, ତଥାକଥିତ ରାଜନୈତିକ ଅବାହାଓ୍ୱାରୁ ତା'ର ପ୍ରମାଣ ମିଳୁଛି। ଏଇଭଳି ଏକ ଜାତୀୟ ଦୁଃସ୍ଥିତିର ପୃଷ୍ଠଭୂମି ଉପରେ ଆଲୋଚ୍ୟ 'ପୁନଶ୍ଚ ସଂଗ୍ରାମ' ନାଟକଟି ରଚିତ।

କେବଳ 'ପୁନଶ୍ଚ ସଂଗ୍ରାମ' ନୁହେଁ, ଡ. ସାହୁଙ୍କର ପ୍ରାୟ ସବୁ ନାଟକ ସୀମା ଓ ସମ୍ଭାବନା ଦୃଷ୍ଟିରୁ ଜାତୀୟ ତଥା ଅନ୍ତର୍ଜାତୀୟ ବିଷୟବସ୍ତୁକୁ ରୂପଚିତ୍ର ପ୍ରଦାନ କରେ। କାରଣ,ଏଗୁଡ଼ିକର ଅନ୍ତଃସାର ସବୁକାଳର, ସବୁ ସ୍ତରର, ସବୁସ୍ଥାନର ସବୁ ମଣିଷଙ୍କର ହିଁ ଅନ୍ତଃସ୍ୱର। ସେ ରାଜନୀତି ହେଉ, ଧର୍ମନୀତି ହେଉ କିମ୍ବା ଅନ୍ୟ ଯେକୌଣସି ନୀତି କି ଆଦର୍ଶ ହେଉ, ଯାହା ଆଜିର ଏ ବିଶ୍ୱ-ଗ୍ରାମର ମଣିଷ ପାଇଁ ସଂହତି ଓ ସଂପ୍ରୀତିବୋଧର କାରଣ ବା ହେତୁ ହୋଇପାରୁ ନାହିଁ। ତାହା ସର୍ବାଦୌ ଅଗ୍ରହଣୀୟ। ମାନବ ସଭ୍ୟତା ଓ

ସଂସ୍କୃତିର ବିଚାରଭୂମିରେ ଏଇ ମାନବୀୟ-ମହାଜାତୀୟତାର ଅଭିଜ୍ଞାନଟି ଡ. ସାହୁଙ୍କର ନାଟ୍ୟକଳାର ମୂଳପ୍ରେରଣା।

ମଂଚରେ ଗୋଟିଏ ଜାତିକୁ ଜୀବନ୍ତ ରୂପରେ ଦେଖିହୁଏ। ଦେଖିହୁଏ ସେ କାନ୍ଦୁଥିବାର, ହସୁଥିବାର। ପୁଣି ଦେଖିହୁଏ ଏଇ ହସ-କାନ୍ଦ ଭିତରେ ବୁଡ଼ି ଆତ୍ମଦ୍ୱନ୍ଦ୍ୱରେ ସଢ଼ିଯାଉଥିବାର। ନାଟକ ଏଇଥିପାଇଁ ହିଁ ଅନ୍ୟାନ୍ୟ ସବୁ ସାହିତ୍ୟ ବିଭାବଠାରୁ ସ୍ୱତନ୍ତ୍ର ତା'ର କଳା କାରିଗରୀ। ସ୍ୱତନ୍ତ୍ର ତା'ର ଭାବନାର ସ୍ୱାଦ। ଏବଂ ଏଥିପାଇଁ ହିଁ ନାଟ୍ୟକାର ସ୍ୱତନ୍ତ୍ରତା ସର୍ବମାନ୍ୟ ସ୍ୱତନ୍ତ୍ରତା। ସେ ଗୋଟିଏ ଜାତିକୁ ବିଭିନ୍ନ ଦୃଶ୍ୟରେ ପ୍ରତ୍ୟକ୍ଷ କରେ ଓ କରାଏ। ଏଣୁ ପ୍ରତ୍ୟକ୍ଷ ଜୀବନର କଳା ଏଇ ନାଟକ। ଏହାର ଅଙ୍ଗେ ଅଙ୍ଗେ ଜୀବନର ସ୍ପନ୍ଦନ।

ଡ. ସାହୁ ଏହି ଧାରାର ଜଣେ ଅଗ୍ରଗଣ୍ୟ ନାଟ୍ୟକାର। ପୁନଶ୍ଚ ସଂଗ୍ରାମ ନାଟକଟି ମୁଖ୍ୟତଃ ଗାନ୍ଧୀବାଦର ବି'ଳତାକୁ ଆଧାର କରି ରଚିତ ହୋଇଛି। ଭାରତରେ ଗାନ୍ଧୀବାଦର ବିଫଳତା ଭାରତୀୟ ସ୍ୱାଧୀନତା ଓ ଗଣତନ୍ତ୍ରର ହିଁ ବିଫଳତା। ପ୍ରଶାସନିକ ସ୍ୱାଧୀନତା ଯେ, ଅସଲରେ ଏକ ରାଜନୈତିକ ସ୍ୱାଧୀନତା ନୁହେଁ ଏକଥା ପରୋକ୍ଷ ଭାବରେ ଆମମାନଙ୍କୁ ଚେତେଇ ଦେଇଛନ୍ତି ନାଟ୍ୟକାର ସାହୁ। ଏହାବାଦ୍ ସାମାଜ, ସଂସ୍କୃତି,ଅର୍ଥନୀତି,ଭୂଗୋଳ, ଭାଷା, ଜାତୀୟତା ଇତ୍ୟାଦି କ୍ଷେତ୍ରରେ ଆମର ସ୍ୱାଧୀନତା ଆମକୁ ଏଯାବତ୍ ପ୍ରାପ୍ତ ହୋଇନାହିଁ। ଆମ ଗଣତାନ୍ତ୍ରିକ ଆଦର୍ଶବାଦ ଆମକୁ ଠକି ଦେଇଛି। ପଂଚବାର୍ଷିକ ଯୋଜନାର ବଫଳତା ଆମର ଆର୍ଥନୀତିକ ପ୍ରଗତିକ ତ୍ୱରାନ୍ୱିତ କରିପାରି ନାହିଁ। କୃଷି କିମ୍ବା ଶିଳ୍ପ କୌଣସି କ୍ଷେତ୍ରରେ ବି ଆମର ପ୍ରଗତି ପରିଲକ୍ଷିତ ହୋଇନାହିଁ। ଆମେ ମୋଟାମୋଟି ଭାବରେ ଏକ ବିଡ଼ମ୍ବିତ ସମାଜ ଜୀବନର ଅଧିକୃତ ହୋଇ ବଂଚି ରହିଛୁ। ଗାନ୍ଧୀଙ୍କର ସ୍ୱପ୍ନର ମହତ ଉଦ୍ଦେଶ୍ୟକୁ ବୁଝି ନାହୁଁ। ବିଶ୍ୱରେ ଯେଉଁ ଗାନ୍ଧିବାଦ ଆଜି ଏକ ଗବେଷଣାର ପ୍ରସଙ୍ଗ ଯାହାର ଅହିଂସା ଅସ୍ତ୍ର ବଳରେ ଏତେବଡ଼ ମହାଭାରତୀୟ ଜାତି ଯୁଗଯୁଗର ଦାସତ୍ୱରୁ ମୁକ୍ତ ହୋଇପାରିଲା ତାହାର ଅବମୂଲ୍ୟାୟନ ଆମକୁ ଆଜି ଏକ ଅନ୍ତଃସାରଶୂନ୍ୟ ଜୀବନ ପାଖରେ ବନ୍ଦୀ କରିରଖିଛି।

ଏହି ବିଡ଼ମ୍ବିତ ଗାନ୍ଧୀବାଦର ପ୍ରସଙ୍ଗଟି ନାଟକର ସମୟ ଓ ବୃଦ୍ଧ ନିତାଇରାମ ଚରିତ୍ରଦ୍ୱୟଙ୍କ ମାଧ୍ୟମରେ ନାଟ୍ୟକାର ଦେଖାଇ ଦେଇଛନ୍ତି ଏତଦ୍‌ଭିନ୍ନ ସହରର ଛକ ଜାଗାରେ ଗାନ୍ଧିଜୀଙ୍କର ଏକ ପ୍ରତିମୂର୍ତ୍ତିର ଉପସ୍ଥାପନା କରି ନାଟକଟିର ଭାବଗତ ବୈଶିଷ୍ଟ୍ୟକୁ ଏକ ଶ୍ଳେଷାତ୍ମକ ଶୈଳୀରେ ପରିବେଷଣ କରିଛନ୍ତି। ଏହା ନାଟ୍ୟକାରଙ୍କର ସ୍ୱକୀୟ ବୈଶିଷ୍ଟ୍ୟର ହିଁ ପରିଚୟ ପ୍ରଦାନ କରେ। ଛକ ମଝିରେ Statue ଭିତ୍ତିକ ଭାରତୀୟ ଚେତନା ଆଜି ଜଡ଼ତାରେ ରୂପାନ୍ତରିତ ହୋଇଯାଇଥିବା ପ୍ରସଙ୍ଗଟିକୁ ସୂଚିତ କରୁଛି।

ଗାନ୍ଧୀବାଦ ହାରିଯାଇଛି। ଗାନ୍ଧୀ ଯେମିତି ପଥର ହୋଇଯାଇଛନ୍ତି। ରାଜରାସ୍ତାରେ ଯେଉଁ ଗାନ୍ଧୀ ଏକ ଜାତିର ଅଗ୍ରଦୂତ ସାଜି ଆଗେଇ ଚାଲିଥିଲେ ସେ ଆଜି ସେଇମିତି ସେଇ ରାସ୍ତା ଉପରେ ପଥର ହୋଇଯାଇଛନ୍ତି। ସମୟ ଅତୀତ ହୋଇଯାଇଛି ସେଇ ପଥର ମୂର୍ତ୍ତିର ଚତୁଃପାର୍ଶ୍ୱରେ ଅଭିନୀତ ହୋଇଛି ଅନ୍ଧାରି ଶାସନର ଚିତ୍ର ଓ ଚରିତ୍ର। ଶୋଷକ ଓ ପୀଡ଼କମାନଙ୍କର ଅତ୍ୟାଚାର ଶୋଷଣ ଓ ନିର୍ଯାତନା। ପଥର ମୂର୍ତ୍ତିର ସେହି ଗାନ୍ଧୀଙ୍କୁ ସାକ୍ଷୀ ରଖି ହିସାବ ନିକାଶ ଚାଲିଛି। ପାପ ଓ ପୁଣ୍ୟର, ଧର୍ମ ଅର୍ଧମର,ନୀତି ଓ ଅନୀତିର। ପଥର ହୋଇଯାଇଥିବା ଗାନ୍ଧୀ ଏସବୁ ଦେଖୁଛି। ଅଥଚ କିଛି ବି ଦେଖିପାରୁନି। ବାହାର ନୁହେଁ ଭାରତୀୟ ନିଷ୍ପ୍ରାଣ ଜନତାର ଛାତିତଳେ ଚେତନାର ଗାନ୍ଧୀମୂର୍ତ୍ତି ମୃତ ପାଲଟି ଯାଇଛି। ନାଟକୀୟ ଶୈଳୀରେ ଏବଂ ଏକ ନାଟ୍ୟଦ୍ୱନ୍ଦ୍ୱରେ ଏହି ଗାନ୍ଧୀମୂର୍ତ୍ତିର ଅବତାରଣାଟି ବଡ଼ ଚମତ୍କାର ସଂଯୋଜନା।

ସେହିପରି ଆଉ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସଂଯୋଜନା ସମୟ। ସମୟକୁ ଏଥିରେ ଏକ ଚରିତ୍ର ଭାବରେ ନିଆଯାଇଛି। ଅର୍ଥାତ୍ ସେ ଜଣେ ମଣିଷ ପରି କଥା କହିଛି। ତା'ର ସ୍ପନ୍ଦନ ଅଛି ଅନୁଭବ ଅଛି, ସ୍ୱପ୍ନ ଅଛି, ସମ୍ଭାବନା ଅଛି, ଆଶା ଆକାଂକ୍ଷା ଅଛି, ଚିନ୍ତା ଓ ଚେତନା ଅଛି,ଦୃଷ୍ଟି ଓ ଦର୍ଶନ ଅଛି, ପୁଣି ଅଛି ଆବେଗ ସଂବେଗ ଭାବ ଭାବନା। ସବୁଠୁ ସ୍ପର୍ଶକାତର ଚରିତ୍ର ଭାବରେ ନାଟ୍ୟକାର ଏହାକୁ ସଂଯୋଜିତ କରିଛନ୍ତି। ନାଟକ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ 'ପ୍ରସ୍ତାବନା'ରେ ଏହାର ଆବିର୍ଭାବ ଘଟିଛି। ନାଟକ ମନ୍ଦିରର ଏ ଯେପରି ମୁଖଶାଳା। ଏଇ ମୁଖଶାଳା ନିଜ ଭିତରକୁ ଚାହିଁବାର ଅର୍ଥାତ୍ ଆତ୍ମସମୀକ୍ଷା କରିବାର ଏକ ଅବକାଶ ସୃଷ୍ଟିକରିଛି। କିଛି ନ କହି ମଧ୍ୟ ଅନେକ କିଛି ଅନୁଭବର ସଂକେତ ବହନ କରିଛି। ଏହିଭଳି ଏକ ନାଟ୍ୟଅଭିବ୍ୟକ୍ତି ପ୍ରକଟ କରିଛି ସମୟ। ସେ ଯେପରି ଏକ ମହାଚରିତ୍ର। ନାଟକର ଅନ୍ୟ ସମସ୍ତ ଚରିତ୍ର ଅପେକ୍ଷା ଏହା ନିଆରା ଓ ସ୍ୱତନ୍ତ୍ର। ଏହାକୁ ଜୀବନ୍ତ ଭାବରେ ଉପସ୍ଥାପନା କରିବା ଏକ ସ୍ୱତନ୍ତ୍ର ନାଟ୍ୟ କୌଶଳ।

ସମୟ ଏକ ମହାସ୍ରୋତ। ଏକ ଅନନ୍ତ ଧାରା। ତା' ଭିତରେ ବହମାନ କେତେ ଜାତି, ମହାଜାତି, ସମାଜ, ସଭ୍ୟତା, ସଂସ୍କୃତି, କେତେ ଯୁଦ୍ଧ ବିଭୀଷିକା, କେତେ ଅହଂକାର ଆତ୍ମ ପ୍ରବଂଚନା, କେତେ ମାନବ ମହାମାନବ, କେତେ ଦାନବ ରାକ୍ଷସ କୁଳ, ଦେବତା ନରକିନ୍ନର ସଭିଏଁ। ସେ ଉଦାସୀନ ଓ ନିରପେକ୍ଷ ହୋଇ ସବୁ ଦେଖିଛି ଓ ଦେଖୁଛି ମଧ୍ୟ। ମାତ୍ର ନିଷ୍ପ୍ରାଣ ଓ ଜଡ଼ ପାଲଟି ନାହିଁ। ସବୁଠି ନିଜର ଅସ୍ତିତ୍ୱ ଓ ଅହଂକାରକୁ ସାବ୍ୟସ୍ତ କରିଛି। ତା'ର ଏହି ଅସ୍ତିତ୍ୱ ଅହଂକାର ସକଳ ମଣିଷର ଅସ୍ତିତ୍ୱ ଓ ଅହଂକାରର ଉର୍ଦ୍ଧ୍ୱରେ। ସେ ନିଜେ ନିଜ ତୁଣ୍ଡରେ ସ୍ୱୀକାର କରିଛି ଯେ, ସେ ନିରବଧି, ସେ ମହାକାଳ, ସେ ସତ୍ୟ, ସେ ପ୍ରଳୟ, ସେ ସନାତନ, ସେ ଶୂନ୍ୟ, ସେ ହିଁ ପୂର୍ଣ୍ଣ, ସେ ହିଁ ବ୍ୟକ୍ତି ସେ ହିଁ ସମଷ୍ଟି, ସେ ଗାନ୍ଧୀ ପୁଣି ଗୋପବନ୍ଧୁ,ସେ ସୃଷ୍ଟି, ସ୍ଥିତି ଓ ବିଲୟ, ସେ ହିଁ ଶାନ୍ତି।

ଏହି ସମୟର ନାଟକୀୟ ଅଭିବ୍ୟକ୍ତି ମାଧ୍ୟମରେ ନାଟ୍ୟକାର ଦର୍ଶକମାନଙ୍କର ଚେତନା ରାଜ୍ୟରେ ଏକ ଚରମ ସତ୍ୟକୁ ହିଁ ଉଦ୍‌ଘାଟନ କରିବାକୁ ଚାହିଁଛନ୍ତି। ସମୟ ସ୍ରୋତରେ ସବୁକିଛି ଭାସିଯାଏ। ମଣିଷର ଓ ସମାଜର ଏବଂ ଜାତିର ବା ମହାଜାତିର, ଏ ମାନବ ସଭ୍ୟତାର ନୀତି ଓ ଆଦର୍ଶର, ଅହଂ ଓ ଅସ୍ତିତ୍ୱର ଯାବତୀୟ କ୍ରିୟାକଳାପ ସବୁବେଳେ ରହେନି। ସମୟ ସ୍ରୋତରେ ଭାସିଯାଏ। ସମୟ ତେଣୁ ସର୍ବଶକ୍ତିମାନ ଓ ଚିରସତ୍ୟ ତାକୁ ଅତିକ୍ରମି ଯିବାର ସାଧ୍ୟ କାହାରିନାହିଁ। ଏହି ସମୟ ଚେତନାଟି ମାଧ୍ୟମରେ ନାଟକୀୟ ରସାଭାଷ ସୃଷ୍ଟି କରି ପ୍ରଥମରୁ ହିଁ ନାଟ୍ୟକାର ଦର୍ଶକଙ୍କର ମାନସିକତାକୁ ନିଜ ଭିତରେ କେନ୍ଦ୍ରୀଭୂତ କରିଛନ୍ତି। ସମକାଳୀନ ଭାରତୀୟ ସମାଜ ଜୀବନର ଭ୍ରଷ୍ଟ ଓ ବିଡ଼ମ୍ବିତ ଚିତ୍ର ପ୍ରଦାନ କରିବା ଉଦ୍ଦେଶ୍ୟରେ ଏହା ଏକ ଗୂଢ଼ ଶ୍ଳେଷାତ୍ମକ ଅଭିଜ୍ଞତା ବହନ କରିଛି।

ଚାରିତ୍ରିକ ମୂଲ୍ୟାୟନ ଦୃଷ୍ଟିରୁ ପ୍ରଥମ ପର୍ଯ୍ୟାୟର ଅନ୍ୟଏକ ଚରିତ୍ର ବୃଦ୍ଧ ନିତାଇରାମ ସେ ବୃଦ୍ଧ ହେଲେ ହେଁ ଗାନ୍ଧୀବାଦର ଜଣେ ଅନୁକାରୀ। ସତ୍ୟ, ନ୍ୟାୟ, ଧର୍ମ, ଅହିଂସା,ଭାତୃଭାବ ଓ ବିଶ୍ୱୈକ ପ୍ରାଣତାର ଆଧାର କ୍ଷେତ୍ର ଉପରେ ତା'ର ବ୍ୟକ୍ତିତ୍ୱ ପ୍ରତିଷ୍ଠିତ। ସେ ପରିବର୍ତ୍ତିତ ସମୟ ସ୍ରୋତରେ ଏକ ଅପରିବର୍ତ୍ତିତ ଭାବସତ୍ତାର ପ୍ରତୀକ। ସେ ମରିନି କି ସେ କେବେ ବି ମରିପାରେନା। ଅଥଚ ତାକୁ ଆଜି ମାରିଦିଆଯାଇଛି। ଗାନ୍ଧୀଙ୍କର ପଥର ମୂର୍ତ୍ତି ଓ ସିଏ ଗୋଟିଏ ଅର୍ଥ ଦ୍ୱେତନା ହିଁ ବହନ କରିଛନ୍ତି। ସେ ଏକ ସଂଗ୍ରାମୀ ସତ୍ତା। ନିଜର ରକ୍ତ ବଦଳରେ ଏ ଭାରତର ସ୍ୱାଧୀନତା ସେ ଆଣିଛି। ତା'ର ଦୃଢ଼ ଓ ବଳିଷ୍ଠ ବ୍ୟକ୍ତିତ୍ୱର ହିଁ ଏହା ଫଳଶ୍ରୁତି। ଗାଲମାଧବ ତୁଣ୍ଡରେ ନାଟ୍ୟକାର କହିଛନ୍ତି- 'ନିତାଇରାମ ସହଜ ଲୋକ ନୁହଁ। ଭାଙ୍ଗିପଡ଼ିବ ପଛେ ନଇଁବ ନାହିଁ। ପକ୍କା...ଗାନ୍ଧୀବାଦୀ'।

ନିତାଇରାମ ପ୍ରକୃତରେ ଥିଲା ସଚ୍ଚା ଦେଶଭକ୍ତ। ମୃତ୍ୟୁ ପର୍ଯ୍ୟନ୍ତ ଏଇ ଭଳି ନିତାଇରାମ ମାନଙ୍କର କେବେବି କିଛି ପରିବର୍ତ୍ତନ ହୁଏ ନାହିଁ। ଯେଉଁ ଅହିଂସା ବଳରେ ଏମାନେ ଦେଶର ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ, ତାହା କଦାପି ଗୋଟେ ଭାବପ୍ରବଣତା ନଥିଲା। ଥିଲା ଏକ ଆତ୍ମିକ ସାଧନାର ଧାରା। ଯେଉଁମାନେ ଭାରତୀୟ ମୁକ୍ତି ସଂଗ୍ରାମରେ ସାମିଲ୍ ହୋଇଥିଲେ ସେମାନେ ସମସ୍ତେ ଏଇ ନିତାଇରାମ ଭଳି ଚରିତ୍ର ନଥିଲେ। ଗାନ୍ଧିବାଦୀ ଓ ଜାତୀୟ କଂଗ୍ରେସର ପରିଚୟ ପତ୍ର ଧାରଣ କରି ଦଳେ ଏ ଦେଶର ଶାସନାଗାଦି ଆବେରି ବସିଲେ। ଅତୀତକୁ ଭୁଲିଗଲେ। ଅହିଂସା ଓ ଗାନ୍ଧିନୀତି ସେମାନଙ୍କ ପାଇଁ ପାଲଟିଗଲା ଦୁଃସ୍ୱପ୍ନ ଓ ଭାବପ୍ରବଣତା। ନିଜନିଜର ବ୍ୟକ୍ତ ସ୍ୱାର୍ଥଟିକୁ ଉଜ୍ଜୀବିତ କରି ଏମାନେ ଶାସକରୁ ଶୋଷକ ପାଲଟିଗଲେ। ଉପରେ ଖଦଡ଼ ଓ ସଫେଦ୍ ପୋଷାକ ପରିଧାନ କରି ନିର୍ମଳ ଭାବମୂର୍ତ୍ତି ପ୍ରଦର୍ଶନ କଲେ। ଭିତରେ ନିଜର ସାଆଁଟିଆ ମନୋଭାବକୁ ଜାବୁଡ଼ି ଧରି ସେହିଭଳି ଭୋଗ ସର୍ବସ୍ୱ ଜୀବନଟିମାନ ବଂଚିବାକୁ ଲାଗିଲେ। ନାଟକର ଗାଲମାଧବ ଚରିତ୍ର ଏକ ମିଛ ଗାନ୍ଧିବାଦୀମାନଙ୍କ ହିଁ ଉତ୍ତର ଦାୟାଦ।

ନିତାଇରାମ ଏହି ନାଟକଟିର କେନ୍ଦ୍ରୀୟ ଚରିତ୍ର । ସେ ସ୍ୱାଧୀନତାର ସୁବର୍ଣ୍ଣ ତିଥିରେ ଭାରତର ଅଧୋଗତିକୁ ନିଜ ଆଖିରେ ଦେଖିଛି । ଖୁବ୍ ବ୍ୟଥିତ ହୋଇଛି । ଭାରତୀୟତା କହିଲେ କିମ୍ବା ଭାରତବର୍ଷ କହିଲେ ଏହାର ମୂଳରେ ରହିଛି ଏକ ବିଶାଳଭୂଖଣ୍ଡର ପ୍ରତିଟି ମଣିଷର ରକ୍ତକଣିକା । ଭାରତୀୟମାନଙ୍କୁ ନେଇ ଭାରତୀୟତା ଓ ଭାରତବର୍ଷ ସ୍ୱାଧୀନତାର ପଚାଶ ବର୍ଷ ପରେ ନାନା କାରଣରୁ ଏହି ଭାରତର ସମାଜ ଜୀବନରେ ଦେଖାଦେଇଛି ମାନବିକତାର ଘୋର ଅଭାବ । ମଣିଷ ପାଲଟିଛି ସଇତାନ । ଉପଯୁକ୍ତ ଶିକ୍ଷା ଓ ସଂସ୍କାର ଅଭାବରୁ ତା' ଭିତରୁ ହଜିଯାଇଛି ଯାବତୀୟ ନୀତିନିଷ୍ଠା ଓ ଆଦର୍ଶବାଦର ଭାବଧାରା ଆର୍ଥନୀତିକ ବୈଷମ୍ୟ ଜନସଂଖ୍ୟା ବୃଦ୍ଧି ଭୋଗସର୍ବସ୍ୱ ବସ୍ତୁବାଦର ପ୍ରାବଲ୍ୟ- ସର୍ବୋପରି ଜୀବନ ସଂଗ୍ରାମର ତୀବ୍ରତା ବୃଦ୍ଧି ଘଟିବାରୁ ଏଭଳି ବିଡ଼ମ୍ବନାମାନ ସ୍ୱାଭାବିକ ଭାବରେ ପରିଲକ୍ଷିତ ହୋଇଛି । ମଣିଷ ଅତ୍ୟଧିକ ବସ୍ତୁ ମୋହରେ ଅନ୍ଧ ହୋଇ ନିଜସ୍ୱ ଭାବ ଓ ଭାବନାଠାରୁ ଏବଂ ମୁଗ୍ଧ ଚିତବୃତିଠାରୁ ଦୂରେଇ ଯାଇଛି । ସ୍ୱାଧୀନତା ପୂର୍ବର ଭାରତ ସ୍ୱାଧୀନତା ପରବର୍ତୀ ସମୟକୁ ଅଧିକତର ସମସ୍ୟା ଭାରତରେ ଭାରାକ୍ରାନ୍ତ ହୋଇପଡ଼ିଛି ସିନା କିଛି ବି ଭଲ ପରିବର୍ତନ ପରିଲକ୍ଷିତ ହୋଇନାହିଁ । ଗୋଟିଏ ସମସ୍ୟା ସମାଧାନ ହେବାକୁ ଯାଇ ଅସଂଖ୍ୟ ସମସ୍ୟା ସୃଷ୍ଟି ହୋଇଛି । ଗଣତନ୍ତ୍ର ସ୍ୱାଧୀନତା, ସ୍ୱରାଜ୍ୟ, ଗାନ୍ଧିବାଦ, ଅହିଂସା,ଜାତୀୟତା ତଥା ଭାରତୀୟ ଆଦି ସବୁକିଛି ନିଜ ନିଜର ଅର୍ଥ ବଦଳି କେବଳ ଶବ୍ଦ ପ୍ରଦୂଷଣର କାରର ପାଲଟି ଯାଇଚନ୍ତି । ଗାଲମାଧବ, ବଗୁଲି ଦାସ, ଚରଣ ଦାସ ଓ ସଲିମ୍ ମାନଙ୍କର ପ୍ରାଦୁର୍ଭାବ ବଢ଼ିଛି । ମରହଟ୍ଟା, ମୋଗଲ ଓ ଇଂରେଜମାନଙ୍କଠାରୁ ଏମାନଙ୍କର -ଆଧିପତ୍ୟ ଓ ଅତ୍ୟାଚାର କୌଣସି ଗୁଣରେ କମ୍ ହୋଇନାହିଁ । ଦେଶକୁ ହରିଲୁଟ୍ କରି ନିଜର ପୈଶାଚିକ ପ୍ରବୃତିକୁ ଚରିତାର୍ଥ କରିବା ହୋଇଉଠିଛି ଏକମାତ୍ର ଲକ୍ଷ୍ୟ । ମାନବିକତାର ଅଭାବରୁ ଉଜୁଡ଼ିଯାଇଛି ଭାରତର ଅସଲ ଜାତୀୟତା । ନିତାଇରାମର ତୁଣ୍ଡରେ ନାଟ୍ୟକାର ଡକ୍ଟର ସାହୁ ଏହି କଥା ହିଁ କହିଛନ୍ତି । ନିତାଇରାମ ଗାଲମାଧବକୁ କହିଛି- "ମୋର ଗୋଟାଏ କଥା ମନେ ରଖିଥିବ ସାଧାରଣ ଗରିବ ମଣିଷଯିଏ ଯେମିତି ତମ ଶାସନରେ ହଇରାଣ ହରକତ ନହୁଏ । ସେହି ମଣିଷଟି ବାପୁର ପ୍ରିୟ ମଣିଷ ।" ନାଟ୍ୟକାର ନାଟକର ଶେଷ ଦୃଶ୍ୟରେ ଆହୁରି ସ୍ୱଷ୍ଟ କରିଦେଇଛନ୍ତି ଯେ, ଭଲ ମଣିଷପଣିଆ ଆଜି ଦରକାର । ଏ ଦେଶ ଏ ଜାତି ପାଇଁ ଭଲ ମଣିଷଟିଏ କାଳେକାଳେ ଲୋଡ଼ା । ବୃଦ୍ଧ ନିତାଇରାମ ଗାଲମାଧବକୁ ଭଲ ମଣିଷଟିଏ ହେବାପାଇଁ ଉପଦେଶ ଦେଇନାହାନ୍ତି କେବଳ । ଅନ୍ତରରୁ ନିବେଦନ କରିଛନ୍ତି, ଆକୁଳ ଅନୁରୋଧ ଜଣାଇଛନ୍ତି ।

ନିତାଇରାମ-ଗାଲମାଧବ ମୋ କଥା ବି ଶୁଣିଯାଅ । ପ୍ରଥମେ ମଣିଷ ହେବାକୁ ଚେଷ୍ଟାକର । ତା'ପରେ ଦେଶ ଶାସନ କରିବ । ଏ ଦେଶ ଆଜି ଭଲ ମଣିଷଟିଏ ଖୋଜୁଛି । ଲଂଗଳା ଫୁଙ୍ଗୁଳା ହେଉ ପଛେ, ନିରୋଳା ମଣିଷ...ସଚ୍ଚୋଟ ମଣିଷ...ସାଧା ମଣିଷ ।

ନିତାଇରାମ କଣ୍ଠରେ ଏଠି ଆଶାବାଦର ଝଲକ। ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ ଦୀର୍ଘ ପଚାଶ ବର୍ଷ ଅତିକ୍ରାନ୍ତ ହୋଇଥିଲେ ହେଁ ଗାନ୍ଧୀଙ୍କର ସେହି ଅସଲ ମାନବିକତାର ଉଦାର ମନ୍ତ୍ରଟି ଏବେ ବି ନିଷ୍ପେଷିତ ଜନତାର ଚେତନା ରାଜ୍ୟରେ ସଂପୂର୍ଣ୍ଣ ଜଡ଼ତା ଲଭି ନାହିଁ। ଗାନ୍ଧିବାଦ ମାନବବାଦର ହିଁ ନାମାନ୍ତର। ତେଣୁ ତା'ର ବିଲୟ କେବେବି ଘଟିନପାରେ। କୌଣସି ସଂପ୍ରଦାୟିକତା କି ଭ୍ରଷ୍ଟ ରାଜନୀତି ତା'ର ବିଲୋପ ସାଧନ କରି ନପାରେ। ସେ ଆଶାବାଦର ଏକ ଫଲ୍‌ଗୁ ଧାରା ତା'ଭିତରେ ଅନେକ ସ୍ୱପ୍ନ ଓ ସଂଭାବନା ଏବେବି ନିଜର ଅସ୍ତିତ୍ୱ ହରାଇ ନାହାନ୍ତି। ନିତାଇରାମ ତେଣୁ କହିଛି- "ଏବେ ବି ସମୟ ଅଛି କିଛି ଭଲକାମ କରିବାକୁ ଚେଷ୍ଟାକର ବାବା। ପିତୃପୁରୁଷଙ୍କର ନାଁ ରଖ।"

ଦ୍ୱିତୀୟ ପର୍ଯ୍ୟାୟର ଚରିତ୍ରମାନଙ୍କ ମଧ୍ୟରେ ବିଧବା ଭାରତୀ ଓ ତା'ର ମାନସିକ ବିକାରଗ୍ରସ୍ତ ହେବା ମୂଳରେ ତୃତୀୟ ପର୍ଯ୍ୟାୟର ଶୋଷକ ଗୋଷ୍ଠୀର ପ୍ରଛନ୍ନ ହାତ ରହିଛି। ଭାରତୀ ଓ ରାମୁମାନେ ଏଠି କାଳେ କାଳେ ନିଷ୍ପେଷିତ ଓ ଶୋଷିତ। ଏମାନେ ଏଣୁ ସ୍ୱାଧୀନତା ପରବର୍ତ୍ତୀ ଏହି ନିଷ୍ପେଷିତ ଓ ଶୋଷିତ। ଏମାନଙ୍କର ମଧ୍ୟରୁ କେହି କେହି ଅବଶ୍ୟ ପ୍ରତିବାଦ କରନ୍ତି। କିନ୍ତୁ ଏ ପ୍ରତିବାଦ ଅକର୍ମକ କ୍ରିୟାପରି ମୂଲ୍ୟହୀନ ହୋଇଯାଏ। ଅର୍ଥହୀନ ପାଲଟିଯାଏ ଏମାନଙ୍କର ଯେତେ ଆବେଦନ ଓ ନିବେଦନ। କେହି ଶୁଣନ୍ତି ନାହିଁ ଏମାନଙ୍କ କଥା। ନିଜ ଭାଗ୍ୟ ଓ ଭବିତବ୍ୟକୁ ଆଦରି ଏମାନେ ପଡ଼ିରହିବାକୁ ବାଧ୍ୟ ହୁଅନ୍ତି। ସମୟ ଏହିମାନଙ୍କର ଦୁଃଖକୁ ଛାତିରେ ବହି ବୋହିଯାଏ। କେତେ ରୌପ୍ୟଜୟନ୍ତୀ, ସୁବର୍ଣ୍ଣ ଜୟନ୍ତୀ ଓ ହୀରକ ଜୟନ୍ତୀମାନ ପାଳିତ ହୁଏ। ମାତ୍ର ପରିବର୍ତ୍ତନ କିଛି ଘଟେ ନାହିଁ। ଅସଲ ସ୍ୱାଧୀନତା ଓ ଗଣତନ୍ତ୍ରର ସ୍ୱାଦ ସେମିତି ଅଚଖା ରହେ। ଅତ୍ୟାଚାରିତା ଭାରତୀ ନ୍ୟାୟ ମାଗିଛି ନିଜର ଅଧିକାର ସାବ୍ୟସ୍ତ କରିଛି। ତା'ର ମନରେ ପ୍ରଶ୍ନ- ଇନିସ୍‌ପେକ୍ଟର ବାବୁ, ସ୍ୱାଧୀନ ଭାରତରେ ଜଣେ ସାଧାରଣ ନାଗରିକ କ'ଣ ବଂଚିପାରିବନି ? କ'ଣ ପାଇଁ ତାହାଲେ ଏ ସ୍ୱାଧୀନତା ଆସିଥିଲା ? କାହାପାଇଁ ଆସିଥିଲା ? କାହାପାଇଁ ?

ଭାରତୀର ଏଇ ପ୍ରଶ୍ନମନସ୍କତା ଗୋଟେ ସିଂହ ଭାଗ ନିଷ୍ପେଷିତ ଜନତାର ବର୍ଷ ପରେ ବର୍ଷ ଏ ପ୍ରଶ୍ନ ସେଭଳି ଅନୁତ୍ତରିତ ରହିଛି। ଯୁଗଯୁଗର ଦାସତ୍ୱରୁ ଏମାନଙ୍କର ମୁକ୍ତି ନାହିଁ। ମଧ୍ୟ ଯୁଗୀୟ ସାମନ୍ତବାଦୀ ଆଧିପତ୍ୟରୁ ଏମାନଙ୍କର ତ୍ରାହି ନାହିଁ। ଏମାନଙ୍କୁ ବିନା ଦୋଷରେ ବିନା ଅପରାଧରେ ଭୋଗିବାକୁ ପଡ଼େ ଅହେତୁକ ଯନ୍ତ୍ରଣା। ଏହି ଯନ୍ତ୍ରଣା ନିତାଇରାମ ଓ ସମୟର ଅନ୍ତର୍ଜଗତରେ ପ୍ରତିଧ୍ୱନିତ ହୁଏ ଏବଂ ପ୍ରତିଧ୍ୱନିତ ହୁଏ ଏ ଜାତି ପ୍ରାଣଭୂମିରେ। ତୃତୀୟ ପର୍ଯ୍ୟାୟର ଚରିତ୍ରମାନେ ହେଲେ ପରମଗୁରୁ, ମାଳପାଣି, ଗାଲମାଧବ, ବଗୁଲିଦାସ, ଚରଣ ଦାସ ଓ ସଲିମ୍। ଶାସକ ଓ ପ୍ରଶାସକ ଗୋଷ୍ଠୀର ଏହି ଚରିତ୍ରମାନେ ମଧ୍ୟଯୁଗୀୟ ସାମନ୍ତବାଦୀ ଗୋଷ୍ଠୀର ଆଧୁନିକ ସଂସ୍କରଣ। ପରମଗୁରୁ ଓ

ମାଲପାଣି ପୁଲିସ୍ ଇନିସ୍‌ପେକ୍ଟର ଓ କନେଷ୍ଟବଲ ଭୂମିକାରେ ସମାଜର ଓ ଗରିବ ଜନତାର ଅଧିକାରକୁ ସୁରକ୍ଷା ଦେବାର ନିତାଇରାମ ପ୍ରତି ଏବଂ ଏ ଜାତିପ୍ରତି ଏନାଟକରେ ତା'ର କିଛିଟା ଆନୁଗତ୍ୟ ପ୍ରକଟିତ ହୋଇଛି। ମାତ୍ର ବାସ୍ତବ କ୍ଷେତ୍ରରେ ଏମାନେ ବି କୌଣସି ଗୁଣରେ କମ୍ ଧୂର୍ତ୍ତ ନୁହନ୍ତି। ତଥାକଥିତ ଓ ମନ୍ତ୍ରୀମାନଙ୍କର ପ୍ରଭାବରୁ ଏମାନଙ୍କର ମୁକ୍ତି ନାହିଁ। ସରକାରୀ ଚାକିରୀରେ ରହି ନିଜ ପେଟ ଚାଖଣ୍ଡକର ଦାୟ ପାଖରେ ଏମାନେ ପରାଧୀନ। ମନରେ ତେଣୁ ଭୟ ଓ କର୍ତବ୍ୟରେ ଶୃଙ୍ଖଳର ବେଡ଼ି ଏମାନଙ୍କୁ ଅନ୍ୟାୟକୁ ପ୍ରଶ୍ରୟ ଦେବାକୁ ବାଧ୍ୟ କରୁଛି। ଅସତ୍ୟ ଓ ଅଧର୍ମ ମାର୍ଗରେ ପରିଚାଳିତ ହେବାକୁ ଏମାନେ ବାଧ୍ୟ ହେଉଛନ୍ତି। ଦାସତ୍ୱ ପରାଧିନତାର ସେଇ ମଧ୍ୟ ଯୁଗୀୟ ଭାବସତ୍ତାଟିକୁ ଏମାନଙ୍କ ମାଧ୍ୟମରେ ନାଟ୍ୟକାର ପ୍ରଦର୍ଶିତ କରିଛନ୍ତି। ଏମାନଙ୍କୁ ଦେଖିଲେ ଜଣାଯାଏ ଯେ, ଭାରତ ଦଳେ ଅସହାୟ ରକ୍ଷାକର୍ତାଙ୍କ ହାତରେ ସେଇମିତି ଆଗଭଳି ପରାଧୀନ ହୋଇ ରହିଛି। ଏମାନେ ସଖି କଣ୍ଢେଇଙ୍କ ଭଳି ଦଲାଲମାନଙ୍କ ଇଙ୍ଗିତରେ ନାଚ କରିବାକୁ ବାଧ୍ୟ ହେଉଛନ୍ତି।

ଶେଷରେ ଅନ୍ୟ ଯେଉଁ ଚାରୋଟି ଚରିତ୍ର ନାଟକଟିର ଖଳନାୟକ ଭୂମିକାରେ ଅଛନ୍ତି ଏମାନେ ସମସ୍ତେ ଶୋଷକ ଗୋଷ୍ଠୀର। ରାଜନୀତି ଏମାନଙ୍କର ସଉକ। ପଇସା ବଳରେ ଏମାନେ ଶାସନଗାଦି ମାଡ଼ି ବସନ୍ତି। ଜନତାକୁ ବୋକା ବନାଇ ନିଜର ସ୍ୱାର୍ଥ ହାସଲ କରନ୍ତି। ରାଜନୀତି ଏମାନଙ୍କ ପାଇଁ ଗୋଟାପଣେ ବେପାର। ଗୁଣ୍ଡାମାନଙ୍କୁ ହାତ କରି ଏମାନେ ଜବରଦସ୍ତ ନିଜ ସପକ୍ଷରେ ମତ ଆଦାୟ କରି ନିଅନ୍ତି। ବଗୁଲି ନିଜ ତୁଣ୍ଡରେ କହିଛି, "ମୋ' ପଇସା ହିଁ ମୋତେ ଚେୟାରମ୍ୟାନ କରେଇଛି। କାହାରି ହାତଟେକା ଆଶୀର୍ବାଦରେ ମୁଁ ହେଇନି' ପୁଣି ସଲିମ୍ କହିଛି- "ଏଇ ଭୂଜାଲି ତମମାନଙ୍କଠାରୁ ଭୋଟ୍ ଆଦାୟ କରିଛି। ଏଥିରୁ ପ୍ରମାଣିତ ହୁଏ ଯେ, ବ୍ୟକ୍ତିର ଭୋଟାଧିକାର ବ୍ୟକ୍ତି ନିଜେ ବୁଝେନି। ତା'ର ମତ ଉପରେ ଏ ଦେଶର ଭାଗ୍ୟ ନିର୍ଭର କରୁଛି ବୋଲି ସେ ଅନୁଭବି ପାରେନା। ଭୟ ଆତଙ୍କବାଦ ଭିତରେ ଏବଂ ଅର୍ଥର ପ୍ରଭାବରେ ପ୍ରଭାବିତ ହୋଇ ସେ ଅଯୋଗ୍ୟମାନଙ୍କୁ ଯୋଗ୍ୟତମର ଆସନରୁ ନର୍ବାଚିତ କରି ପଠାଏ। ଭାରତବର୍ଷରେ ଆଜି ଗାଦିରେ ବସିବା ପାଇଁ କିଛି ବି ଯୋଗ୍ୟତାର ଆବଶ୍ୟକତା ନାହିଁ। ଯିଏ ଯେତେ ଅଯୋଗ୍ୟ, ଅପଦାର୍ଥ, ଅସଭ୍ୟ ଏବଂ ଅସାମାଜିକ ହୋଇପାରିବ ସିଏ ସେତେ ସହଜରେ ଗାଦୀସୀନ ହେବ। ନିର୍ଦ୍ୱନ୍ଦ୍ୱରେ ନିର୍ଭୟରେ ଓ ନିଃସଂକୋଚରେ ଦେଶର ମାଲିକ ବନିପାରିବ।

ବ୍ୟକ୍ତିତ୍ୱବିହୀନ ନେତୃତ୍ୱ ଓ ନୀତିବିହୀନ ରାଜନୀତିର ପ୍ରାବଲ୍ୟରେ ଏ ଦେଶର ଶାସନକଳ ଆଜି ରୁନ୍ଧି ହୋଇଯିବାକୁ ବସିଲାଣି। ମୂଲ୍ୟବୋଧ ରହିତ ଗଣତନ୍ତ୍ରର ଫମ୍ପା ଆଓ୍ୱାଜରେ ପ୍ରଦୂଷିତ ହୋଇଗଲାଣି ଭାରତର ଜୀବନ ଆକାଶ। ଗାଲୁମାଧବ ଓ ବଗୁଲି

ଦାସମାନେ ଚରଣ ଦାସ ଓ ସଲିମ୍ ଦାସଙ୍କୁ ହାତକରି ବର୍ଷ ପରେ ବର୍ଷ ଏ ଦେଶର ଗାଦିଗୁଡ଼ିକୁ ଅକ୍ତିଆର କରି ରଖୁଛନ୍ତି। ଜନତା ମୁହଁରେ ତୁଣ୍ଡି ଭିଡ଼ି ସେମିତି ବସିରହିଛି। ତା'ର ପ୍ରତିବାଦର ସ୍ୱର ଖୁବ୍ କ୍ଷୀଣ। ସେ ଆଜି ନିଷ୍ପ୍ରାଣ।

ଶେଷରେ କୁହା ଯାଇପାରେ ଯେ, ନାଟକଟି ସାମାଜିକ ଓ ରାଜନୈତିକ ଦୃଷ୍ଟିକୋଣରୁ ବେଶ୍ ଉଚ୍ଚକୋଟୀର ହୋଇପାରିଛି। ନାଟକୀୟତା ଏହାର ଗତିକୁ ନିୟନ୍ତ୍ରିତ କରିଛି। ଦ୍ୱନ୍ଦ୍ୱ ଓ ସଂଘର୍ଷ, ଉତ୍କଣ୍ଠା ନିଜନିଜର ସଫଳତା ପ୍ରତିପାଦନ କରିଛନ୍ତି। ପୁଣି ସମୟ ନିଜକୁ ମଂଚ ଉପରେ ଆର୍ବିଭାବ ଘଟାଇ ଦର୍ଶକମାନଙ୍କୁ ସଚେତନ କରାଇଦେଇଛି। ଏଇଠି ମହାଭାରତର ସେହି କାଳଚକ୍ରକୁ ମନେପକାଯାଇପାରେ। ମାନବ ଜାତିକୁ ଧ୍ୱଂସମୁଖରୁ ରକ୍ଷା କରି ଗୋଟେ ନୂତନ ସ୍ୱପ୍ନରେ,ଗୋଟେ ନୂତନ ଜୀବନବୋଧରେ, ଗୋଟେ ନୂତନ ସଂଭାବନାରେ ଅଭିମନ୍ତ୍ରିତ କରିବା ପାଇଁ ସମୟର ଅଭିନବ ଚେତାବନୀ ନାଟକଟିକୁ କଳାତ୍ମକତା; ଯୋଗାଇଛି। ନାଟକଟିର ପ୍ରଥମ ନାମ ଯଦିଓ ଥିଲା 'ବନ୍ଦେ ମାତରଂ' ପରେ 'ପୁନଶ୍ଚ ସଂଗ୍ରାମ' ନାମରେ ନାମିତ କରି ଏହାକୁ ଅଧିକ ଅର୍ଥବହ କରିଛନ୍ତି ନାଟ୍ୟକାର। ପ୍ରଖ୍ୟାତ ଗାଳ୍ପିକ ମନୋଜ ଦାସଙ୍କ 'ଓଟ' ଗଳ୍ପ ଏବଂ ବିଖ୍ୟାତ କବି ବେଣୁଧର ରାଉତଙ୍କର 'କାଠଘୋଡ଼ା ପାଣି ପିଇ' କବିତାକୁ ଏଇ ନାଟକ ସହ ତୁଳନା କରାଯାଇପାରେ। 'ଓଟ' ଗପର ଜେଜେ ନିଜର ପୁଅ ଓ ନାତି ଦ୍ୱାରା ପ୍ରତାରିତ ହୋଇଛି। ଏ ନାଟକର ନିତାଇରାମ ଚରିତ୍ର ସହ ତା'ର ସାମ୍ୟ ରହିଛି। ଦୁହେଁ ଗାନ୍ଧିବାଦୀ। ଦୁହିଁଙ୍କର ପ୍ରାଣସ୍ପନ୍ଦନ ଏକ। ଏ ଜାତିକୁ ଅବଲୋକନ କରିବାର ଦୃଷ୍ଟିକୋଣ ବି ଏକ। 'ଓଟ'ର ଜେଜେ ନାତିକୁ କହିଛି- "ମୁଁ ସିନା ଅତୀତ,ହେଲେ ତୁ ପରା ଭବିଷ୍ୟତ।ସାମାନ୍ୟ ଚକୋଲେଟ୍‌ରେ ଠକିଗଲୁ!" ସେହିଭଳି 'କାଠଘୋଡ଼ା ପାଣି ପିଇ' କବିତାଟିରେ କାଠଘୋଡ଼ାକୁ ସ୍ୱାଧୀନତା ପରବର୍ତ୍ତୀ ନିଷ୍ପ୍ରାଣ ଜନତାର ପ୍ରତୀକ ଭାବରେ ଏଠାରେ ଗ୍ରହଣ କରାଯାଇଛି। 'ପୁନଶ୍ଚ ସଂଗ୍ରାମ'ରେ ନାଟ୍ୟକାର ସମୟ ନିତାଇରାମ ଆଦିଙ୍କ ମାଧ୍ୟମରେ ଏଇ କାଠଘୋଡ଼ା ଭଳି ଜନତାକୁ ପାଣି ପିଇବାକୁ ଅର୍ଥାତ୍ ପ୍ରାଣବାନ୍ ହୋଇ ପ୍ରତିବାଦ କରିବାକୁ ଆହ୍ୱାନ ଦେଇଛନ୍ତି। ପଚାଶ କିମ୍ବା ଷାଠିଏ ବର୍ଷ କିଛି ବଡ଼ କଥା ନୁହଁ। ଗୋଟିଏ ଜାତି ଉତ୍‌ଥିତ ହେବାପାଇଁ ହଜାର ବର୍ଷ ବି ଲାଗିପାରେ। ତେଣୁ ନିଜନିଜକୁ ସୁଧାରି ନେଇ ଏ ଦେଶକୁ ଭଲ ପାଇଲେ ଏ ଦେଶ ନିଶ୍ଚେ ସୁନାର ଦେଶ ପାଲଟିବ। ଗାନ୍ଧୀଙ୍କର ସ୍ୱପ୍ନ ସାକାର ହେବ। ଏହାହିଁ ପୁନଃଶ୍ଚ ସଂଗ୍ରାମ ନାଟକଟିର କେନ୍ଦ୍ରୀୟ ଆଭିମୁଖ୍ୟ।

ବେଗୁନିଆ ମହାବିଦ୍ୟାଳୟ
ବେଗୁନିଆ, ଖୋର୍ଦ୍ଧା

•••

# ଉତ୍ତର ଆଧୁନିକ ନାଟ୍ୟ କଳାର ଏକ ସଫଳ ସୃଷ୍ଟି : ଅଶ୍ରୁ ଖୋଜି ବୁଲୁଥିବା ଈଶ୍ୱର

ସନ୍ଦୀପ୍ ମହାପାତ୍ର

ଥାର୍ଡ଼ ଥିଏଟର ମୁଭମେଣ୍ଟ ବା ତୃତୀୟ ନାଟ୍ୟ ବିପ୍ଳବ ପରେ ବିଶ୍ୱର ସବୁଦେଶରେ ନାଟକର ଧାରା ବଦଳିବାରେ ଲାଗିଲା। ପୁରୁଣା ପ୍ରଥା, ପୁରୁଣା ଧର୍ମ, ପୁରୁଣା ଧାରା, ଏପରି ସବୁ ପ୍ରଥାବଦ୍ଧତାକୁ ଅସ୍ୱୀକାର କଲା ସ୍ରଷ୍ଟା। ଦର୍ଶକ ସମ୍ମୁଖରେ ନୂଆ ଭାବରେ ଉଭା ହେଲା ଥିଏଟର। ଅଯଥା କୃତ୍ରିମତା ଓ ସାଜସଜା ଯୋଗୁଁ ପୂର୍ବରୁ ବ୍ୟୟବହୁଳ ହୋଇପଡୁଥିବା ନାଟକ ଅତି ସହଜ, ସରଳ ତଥା ବାସ୍ତବମୁଖୀ ହୋଇ ଦର୍ଶକ ପାଖରେ ପହଞ୍ଚିବାରେ ସଫଳ ହେଲା।

ପୂର୍ବରୁ ଅଯଥା ଏକ୍ସପେରିମେଣ୍ଟରେ ଭାରାକ୍ରାନ୍ତ ହୋଇପଡ଼ି ଦର୍ଶକ ଠାରୁ ଦୂରେଇ ଯାଉଥିଲା ନାଟକ। କିନ୍ତୁ ଥାର୍ଡ଼ ଥିଏଟର ବା ତୃତୀୟ ନାଟ୍ୟରେ ଦର୍ଶକ ଓ ଅଭିନେତା ଭିତରେ କୌଣସି ବ୍ୟବଧାନ ରହିଲାନି। ନାଟ୍ୟକାର ଡ.ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ ମତରେ- "ତୃତୀୟ ଥିଏଟର୍‌ରେ ଅଭିନେତା ଦର୍ଶକ ସହିତ ଘନିଷ୍ଠ ହେବାକୁ ଚେଷ୍ଟାକରେ। କାରଣ ଦର୍ଶକର ମୂଲ୍ୟ ତା ନିକଟରେ ଅସାଧାରଣ। ସେ ଦର୍ଶକକୁ ନିକଟରୁ ଦେଖିବାକୁ ଚାହେଁ। ଏଠାରେ ଦର୍ଶକ ଓ ଅଭିନେତା ଭିନ୍ନ ଗୋଷ୍ଠୀର ନୁହନ୍ତି। ଏକ ଗୋଷ୍ଠୀର। ସେହିପରି ଅଭିନେତାମାନେ ମଧ୍ୟ ପରସ୍ପର ଠାରୁ ବିଚ୍ଛିନ୍ନ ନୁହନ୍ତି। କାରଣ ଅନ୍ୟ ଜଣକୁ ଜାଣିବାକୁ ବୁଝିବାକୁ, ବିଶ୍ୱାସ କରିବାକୁ ସର୍ବୋପରି ପାଖରେ ପାଇବାକୁ ଚାହେଁ। ଏହିପରି ଅଭିନେତା ଓ ଦର୍ଶକ ମଧ୍ୟରେ ଗୋଷ୍ଠୀଗତି ସଂପର୍କ ସୁଦୃଢ଼ ହୋଇଉଠେ। ଅଭିନେତା ମଣିଷ ହିସାବରେ ନିଜକୁ ମଣିଷ ନିକଟରେ ଉପସ୍ଥାପିତ କରିବାର ବ୍ୟକୁଳ ଅଭିପ୍ସାରୁ ତୃତୀୟ ନାଟ୍ୟର ସୃଷ୍ଟି।"(ଭିନ୍ନ ସମୟ ଭିନ୍ନ ଦୃଷ୍ଟି, ପୃଷ୍ଠା-୯୧)

ଥାର୍ଡ଼ ଥିଏଟରର ପରିସର ଅତି ବ୍ୟାପକ। ଏଥିରେ ଦର୍ଶକ ଓ ଚରିତ୍ର ମଧ୍ୟରେ କୌଣସି ଦୂରତ୍ୱ ରହେନାହିଁ। ମଞ୍ଚ ଓ ଦର୍ଶକମଣ୍ଡଳୀ ଉଭୟ ସ୍ଥାନରେ ଅଭିନୟ ଜାରି ରହିଥାଏ। ଯାହାକି ଦର୍ଶକମାନଙ୍କୁ ନାଟକଠାରୁ ଦୂରେଇବାକୁ ଦିଏନି। ବରଂ ଦର୍ଶକ ନାଟକ ସହ ନିବିଡ଼ ହୋଇଯାଏ। ଏହା ହିଁ ପରେପରେ ନବନାଟ୍ୟ ବା ପରୀକ୍ଷାଧର୍ମୀ ନାଟକର ଧାରାସହ ମିଶି ଉତ୍ତର ଆଧୁନିକ ନାଟ୍ୟଧାରାକୁ ଆମନ୍ତ୍ରଣ କରେ।

୧୯୫୦ ମସିହାରେ ନାଟ୍ୟକାର ମନୋରଞ୍ଜନ ଦାସ 'ଆଗାମୀ' ନାଟକ ଲେଖି ଓଡ଼ିଆ ନବନାଟ୍ୟ ବା ପରୀକ୍ଷାଧର୍ମୀ ନାଟକର ଯେଉଁ ମୂଳୁଦୁଆ ପକାଇଥିଲେ ୧୯୮୦ ମସିହା ପରେ ପରେ ତାହା ନୂଆ ମୋଡ଼ ନେଇଛି। ଏହି ସମୟରେ ଏପିକ୍ ନାଟକର ସ୍ୱର ପୁଣିଥରେ ଶୁଣିବାକୁ ମିଳିଛି। ପରଂପରା ପାଖକୁ କିଛି ପରିମାଣରେ ଫେରିଛି ସ୍ରଷ୍ଟା। ଲୋକନାଟକର ଧାରା ଯଥା-ମିଥ୍, କିମ୍ବଦନ୍ତୀ, ଲୋକାକାହାଣୀ ଓ ଇତିହାସ ଇତ୍ୟାଦିକୁ ନେଇ ନାଟ୍ୟକାରମାନେ ସୃଷ୍ଟି କରିଛନ୍ତି ନାଟକ।

ମନୋରଞ୍ଜନ ଦାସଙ୍କ 'ନନ୍ଦିକା କେଶରୀ', ବିଜୟ ମିଶ୍ରଙ୍କ 'ଜଣେ ରାଜାଥିଲେ', କାର୍ତ୍ତିକ ରଥଙ୍କର 'କଳାପାହାଡ଼', ରତ୍ନାକର ଚଇନିଙ୍କ 'ଅଥଚ ଚାଣକ୍ୟ', ହରିହର ମିଶ୍ରଙ୍କ 'ଅଦୃଶ୍ୟ ନଟ', ନିଳାଦ୍ରୀ ଭୂଷଣ ହରିଚନ୍ଦନଙ୍କ 'ସ୍ୱର୍ଗାରୋହଣ' ଇତ୍ୟାଦି ଏହି ଫୋକ୍ ଶୈଳୀରେ ଲିଖିତ ନାଟକ। ଏହା ପରେ ପରେ ସୁବୋଧ ପଟ୍ଟନାୟକଙ୍କ 'ଏଥୁଅନ୍ତେ', ରତି ମିଶ୍ରଙ୍କ 'ଅବତାର', ନାରାୟଣ ସାହୁଙ୍କର 'କାହାଣୀ ସବାଶେଷ ଲୋକର', 'ଆଶ୍ରାଖୋଜିବୁଲୁଥିବା ଈଶ୍ୱର', ନାରାୟଣ ପତିଙ୍କର 'ମୁକ୍ତିପଥ', ନବୀନ ପରିଡ଼ାଙ୍କ 'ନାଟୁଆ', ବିଜୟ ଶତପଥୀଙ୍କର 'ପକା ପଇସା ଦେଖ ତାମସା', 'କାରାଗାରର କାହାଣୀ', ପ୍ରମୋଦ ତ୍ରିପାଠୀଙ୍କର 'ଫେରିଯାଅ ରାମଚନ୍ଦ୍ର', ରଣଜିତ୍ ପଟ୍ଟନାୟକଙ୍କର 'ଇଚ୍ଛା ବନାମ ପଦ୍ମନାଭ' ଓ ରମେଶ ଦାସଙ୍କର 'ବରଂ ନିବାସ ଭଲ' ଇତ୍ୟାଦି ନାଟକ ଏହି ଲୋକନାଟକ ଶୈଳୀରେ ରଚିତ। ତେବେ ପୂର୍ଣ୍ଣ ଲୋକନାଟକର ଆଙ୍ଗିକକୁ ନେଇ ନାଟ୍ୟକାର ନାରାୟଣ ପତି ମୁକ୍ତିପଥ ଓ ସତ୍ୟବ୍ରତ ରାଉତ ଝିମିଟିଖେଳ ନାଟକ ରଚନା କରିଛନ୍ତି। ଏ ଦିଗରେ ରତିମିଶ୍ରଙ୍କ ଭୂମିକା ମଧ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ।

୧୯୮୦ ପରେ ନବନାଟକର ଏହି ବାଙ୍କ ବୁଲାଣିକୁ ଆମେ ନାଟକରେ ଉତ୍ତର-ଆଧୁନିକତାର ଛାପ ଭାବେ ଗ୍ରହଣ କରିପାରିବା। ଏହି ଧାରାରେ ନାଟ୍ୟକାର ନାରାୟଣ ସାହୁଙ୍କର ନାଟକ-'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'କୁ ଗ୍ରହଣ କରାଯାଇପାରେ।

ନାଟ୍ୟକାର ନାରାୟଣ ସାହୁଙ୍କୁ ଆମେ ମୁଖ୍ୟତଃ ପ୍ରତିକ୍ରିୟାଶୀଳ ବା ବିଦ୍ରୋହୀ ସ୍ରଷ୍ଟାଭାବେ ଦେଖିବାକୁ ପାଉ। ତାଙ୍କର ଅଧିକାଂଶ ସୃଷ୍ଟିରେ ଧର୍ମ ନାମରେ ଭଣ୍ଡାମି କରୁଥିବା ସମାଜର ବଡ଼ପଣ୍ଡାମାନଙ୍କ ବିରୋଧରେ ସ୍ୱର ସ୍ପଷ୍ଟ ବାରିହୋଇପଡ଼େ। ରଙ୍ଗମଞ୍ଚଠାରୁ ବେତାର ଦୂରଦର୍ଶନ ପର୍ଯ୍ୟନ୍ତ ସବୁବିଭାଗରେ ଡକ୍ଟର ସାହୁ ନାଟକକୁ ନେଇ ପରୀକ୍ଷା ନିରୀକ୍ଷା ଜାରି ରଖିଛନ୍ତି। ତେବେ ମୁଖ୍ୟତଃ ସାମାଜିକ କୁ-ସଂସ୍କାର ବିରୋଧରେ ତାଙ୍କ ଲେଖନୀ ସଦା କ୍ରିୟାଶୀଳ।

ଏମିତି ଏକ ବିଦ୍ରୋହୀ ଘଟନାକୁ ନେଇ ନାଟ୍ୟକାର ନାରାୟଣ ସାହୁ ୧୯୮୮ ମସିହାରେ ସୃଷ୍ଟି କରନ୍ତି ନାଟକ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'। ବାସ୍ତବରେ ଏମିତି

ଏକ ନାମକରଣରୁ ହିଁ ବୁଝା ପଡ଼ିଥାଏ ନାଟ୍ୟକାରଙ୍କ ଆଭିମୁଖ୍ୟ। ସବୁଠାରୁ ନିରାଶ ହେଲାପରେ ଲୋକେ ଆଶ୍ରା ମାଗନ୍ତି ଈଶ୍ୱରଙ୍କୁ। କାରଣ ସେ ସର୍ବବ୍ୟାପୀ, ସର୍ବଶକ୍ତିମାନ। ହେଲେ ନାଟ୍ୟକାରଙ୍କ ମୁହଁରେ ଇଏ କି ଓଲଟା କଥା-ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର ? ଯିଏ ସମସ୍ତ ଦୁଃଖୀରଙ୍କିଙ୍କୁ ନିଜ ଚରଣ କମଳରେ ଆଶ୍ରାଦେଇ ମୁକ୍ତିର ବାଟ ଦେଖାନ୍ତି, ତାଙ୍କର ପୁଣି ଆଶ୍ରା ଦରକାର। ଏହା ଶୁଣିବାକୁ ଖାପଛଡ଼ା ଲାଗୁଥିଲେ ବି ନାଟକଟି ଦେଖିବା ବା ପଢିବା ପରେ ଆମେ ଈଶ୍ୱରଙ୍କ ଅସହାୟତାକୁ ସ୍ୱଷ୍ଟ ଦେଖିବାକୁ ପାଉ।

ନାଟକଟିରେ ମୋଟ ଚଉଦଟି ଦୃଶ୍ୟ ସଂଯୋଜିତ ହୋଇଥିବା ବେଳେ ଫୋକ୍ ଶୈଳୀରେ ସୂତ୍ରଧାର ରୂପେ ମଞ୍ଚକୁ ଆସିଛନ୍ତି ଓସ୍ତାଦ୍ ଓ ତାଙ୍କ ଶିଷ୍ୟ ଈଶରା। ଏ ଦୁହେଁ ନାଟକଟିକୁ ବର୍ଣ୍ଣନା କରିଥିଲେ ବି ନାଟକ ଶେଷରେ ଶିଷ୍ୟ ଈଶରା ଚରିତ୍ରଟି ଅସହାୟ ଈଶ୍ୱର ଚରିତ୍ର ସହ ମିଶିଗଲା ପରି ମନେହୁଏ।

କଥାରେ କୁହନ୍ତିନି "କହିବିନି, କହିଲେ ଏ ଘରେ ରହିବିନି।" ନାଟ୍ୟକାର କିନ୍ତୁ ଘରେ ରହିବେ ବୋଲି, ଅନ୍ୟାୟକୁ ପ୍ରଶ୍ରୟ ଦେଇନାହାନ୍ତି। ବରଂ ଘରୁ ବିଦା ହେବାକୁ ପଡୁପଛେ, ସେ ସାମାଜିକ ଅବିଚାରକୁ ଦୃଢଭାବରେ ବିରୋଧ କରିଛନ୍ତି।

ସମାଜର ବଡ଼ପଣ୍ଡାମାନଙ୍କର ଭଦ୍ରମୁଖା ଖୋଲି ଦେଇଛନ୍ତି ନାଟ୍ୟକାର। ସେମାନଙ୍କର ଅସଲି ସୈତାନୀ ଚେହେରା ଫୁଟି ଉଠିଛି ନାଟକରେ। ଜାତି, ଧର୍ମ,ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷ ସମାନବୋଲି ଡେଙ୍ଗୁରା ପିଟୁଥିବା ସମାଜ କିନ୍ତୁ ପ୍ରକୃତରେ ନିୟନ୍ତ୍ରିତ ହେଉଛି, କିଛି ମୁଷ୍ଟିମେୟ ହିପୋକ୍ରାଟ୍‌ଙ୍କ ଦ୍ୱାରା। ସବୁଧର୍ମ, ସବୁଜାତିରେ ଏମିତି ହିପୋକ୍ରାଟମାନେ ନିଜର ଆଧିପତ୍ୟ ବିସ୍ତାର କରିଛନ୍ତି। ଆଉ ଈଶ୍ୱରଙ୍କ ନାମରେ ଜାତି-ଜାତି, ଧର୍ମ-ଧର୍ମ ଭିତରେ ବାନ୍ଧି ଦେଇଛନ୍ତି ଧର୍ମର ଅନ୍ଧପୁଟୁଳି। ଫଳରେ ପ୍ରକୃତ ସତ୍ୟଠାରୁ ଅନେକ ଦୂରରେ ରହୁଛନ୍ତି ସାଧାରଣ ଲୋକେ।

ଗୋଟେ ଧର୍ମ ଆଉଗୋଟେ ଧର୍ମପ୍ରତି, ଗୋଟେ ଜାତି ଆଉ ଏକ ଜାତି ପ୍ରତି ଅସହିଷ୍ଣୁ ହେଲେ ହିଁ ସମାଜରେ ଏ ଭଳି ଅଘଟନାମାନ ଘଟିଥାଏ। ପଞ୍ଜାବର ହିନ୍ଦୁ ମନ୍ଦିରରେ ଗୋରୁମୁଣ୍ଡ ପକାଇ ସାଂପ୍ରଦାୟିକ ହିଂସାର ବୀଜବପନ କଲେ କିଛି ଦୁର୍ବୃତ୍ତ। ଆଉ କେରଡ଼ାଗଡ଼ ସମସ୍ୟା ତ ଦୋହଲେଇ ଦେଲା ସାରା ରାଜ୍ୟକୁ। ଅନ୍ୟ ଧର୍ମ, ଅନ୍ୟ ସଂପ୍ରଦାୟ ତ ନୁହେଁ, ଗୋଟିଏ ଧର୍ମ ଭିତରେ ଯେ ଜାତିପ୍ରଥା ଏତେ ଉଲ୍‌କଟ ରୂପ ଧାରଣ କରିପାରେ ତାର ନଗ୍ନରୂପ ଦେଖିଲା ସମାଜ। ସମସ୍ତେ ସମାନ ବୋଲି ଡିଣ୍ଡିମ ପିଟୁଥିବା ସମାଜ ଓ ପ୍ରଶାସନ ବି ଏଭଳି ସମସ୍ୟା ପାଖରେ ହୋଇପଡ଼ିଲେ ଅସହାୟ। ନୀଚଜାତି କହି କିଛି ଲୋକଙ୍କୁ ଦିଆଗଲାନି ମନ୍ଦିର ପ୍ରବେଶ ପାଇଁ ଅନୁମତି। ବରଂ ଫାଟକ ପାଖରେ ୯ଟି କଣା କରିଦେଇ ସେଇଠାରୁ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ କୁହାଗଲା। ଯାହାକି ସୃଷ୍ଟିକଲା ଏକ କଳଙ୍କିତ ଇତିହାସ।

ଇଏ ତ ଖାଲି କେରେଡ଼ାଗଡ଼ର ସମସ୍ୟା ନୁହେଁ, ସାରା ଦେଶର ଅବସ୍ଥା ଏମିତି। ଆମେ ଭାଷଣରେ ଗୋଟେ କଥା କହୁଥିବା ବେଳେ ବାସ୍ତବ କ୍ଷେତ୍ରରେ କିନ୍ତୁ ସେଇ ଧର୍ମାନ୍ଧତା ଆଉ ଜାତିଆଣ ଭାବକୁ ମନର ପେଡ଼ି ଭିତରେ ସାଇତି ରଖିଛୁ ଆଜିଯାଏ। ନାଟ୍ୟକାର ନାରାୟଣ ସାହୁଙ୍କୁ ଏଭଳି ସମସ୍ୟା କରିଛି ବିଚଳିତ। ଯାହାର ପ୍ରତଫଳନ ହୋଇଛି ତାଙ୍କ ନାଟକ-ଆଶ୍ରା ଖୋଜିବୁଲୁଥିବା ଈଶ୍ୱରରେ।

ଈଶ୍ୱରଙ୍କ ନାଁ ନେଇ ଗୋଟେ ଜାତିକୁ କିପରି ପଙ୍ଗୁ କରିଦିଆଯାଏ, ତାର ଚିତ୍ର ଏଇ ନାଟକରୁ ଆମେ ପାଇପାରିବା। ନାଟକରେ ସମୟ ଓ ଈଶ୍ୱରଙ୍କ କଥୋପକଥନ ଭିତରେ ଏହା ସ୍ପଷ୍ଟ ହୋଇଛି।

ଈଶ୍ୱର- ମତେ ବିଶ୍ୱାସ କର ସମୟ। ସାରା ଜୀବନ ମୁଁ କେବଳ ସେମାନଙ୍କର ଶୁଭ ମନାସି ଆସିଛି।

ସମୟ- ନା' ତମେ ସେମାନଙ୍କୁ ପ୍ରତାରିତ କରିଛ। ଧର୍ମର ମଦ ପିଆଇ ମଣିଷ ଜାତିକୁ ନପୁଂସକ କରିଛ ତମେ। ମକ୍ତିର ଭାକ୍ତିକ ପ୍ରବଚନ ଶୁଣାଇ ସେମାନଙ୍କୁ ଦୁର୍ବଳ କରିଛ ତମେ।

ଈଶ୍ୱର- ନା' ସମୟ ନା'। ଗୋଟେ ଜଡ଼ବାଦୀ ଜଗତ ମଧ୍ୟରୁ ସେମାନଙ୍କୁ ଉଦ୍ଧାର କରି ମୁଁ କଣ ଭୂଲ କରିଛି ? ସେମାନଙ୍କର ପିଣ୍ଡରେ ଶାନ୍ତି ଅହିଂସାର ବାଣୀ ଦେଇ ମୁଁ କ'ଣ ଅନ୍ୟାୟ କରିଛି ?

କୁହ... ସମୟ ?

ସମୟ- ସବୁ ଗୁଡ଼ାଏ ପ୍ରେମପୂର୍ଣ୍ଣ ପ୍ରତାରଣା।

(ଆଶ୍ରା ଖୋଜିବୁଲୁଥିବା ଈଶ୍ୱର-ପୃଷ୍ଠା-୨୪୨-୨୪୩)

ହିନ୍ଦୁ, ମୁସଲିମ୍, ଖ୍ରୀଷ୍ଟିଆନ ସମସ୍ତେ କହୁଛନ୍ତି, ଈଶ୍ୱର ତାଙ୍କର। ଆଉ ସବୁଠୁଁ ଆଶ୍ଚର୍ଯ୍ୟର କଥା ଈଶ୍ୱର ସେବା କରୁଥିବା ଈଶ୍ୱରଙ୍କ ବାର୍ତ୍ତା ସମାଜରେ ପହଞ୍ଚାଉଥିବା ସେବକ, ଈଶ୍ୱରଙ୍କଠାରୁ ଶକ୍ତିଶାଳୀ ମନେହେଉଛି। ଏପରିକି ସେ ଈଶ୍ୱରଙ୍କୁ ଧ୍ୱଂସ କରିଦେବାକୁ ଧମକ ଦେଉଛି। ଈଶ୍ୱରଙ୍କ ନାଁ ନେଇ ହତ୍ୟା, ଧର୍ଷଣ ପରି ଭୟଙ୍କର ଅପରାଧ କରୁଛି ମହାସେବକ। କିନ୍ତୁ ଈଶ୍ୱର ତାକୁ ବାଧା ଦେବାକୁ ହୋଇପଡୁଛନ୍ତି ଅକ୍ଷମ। ଭକ୍ତ ଉପରେ ହେଉଥିବା ଅକଥନୀୟ ଅତ୍ୟାଚାରକୁ ସହିପାରୁ ନାହାନ୍ତି ଈଶ୍ୱର। ଅତ୍ୟାଚାରୀ ଗୋଷ୍ଠୀକୁ ବିରୋଧ ବି କରିପାରୁନାହାନ୍ତି ସେ। ସଂପୂର୍ଣ୍ଣ ନାଟକଟିରେ ଈଶ୍ୱରଙ୍କର ଅବସ୍ଥା ବଡ଼ ଦୟନୀୟ ହୋଇପଡ଼ିଛି। ବାସ୍ତବିକ ଈଶ୍ୱରଙ୍କର ଏଭଳି ଅସହାୟତାକୁ ନାଟକରେ ରୂପ ଦେବା ନାଟ୍ୟକାରଙ୍କର ଏକ ସାହସିକ ପଦକ୍ଷେପ।

ନାଟ୍ୟକାର ଈଶ୍ୱର ଆଉ ଧର୍ମକୁ ନିଶା ସହ ତୁଳନା କରିଛନ୍ତି। ଯୁଗେ ଯୁଗେ ସାଧାରଣ ଜନତାକୁ ଈଶ୍ୱର ଆଉ ଧର୍ମର ନିଶା ଖୁଆଇ ମତୁଆଲା କରି ରଖିଛନ୍ତି କିଛି

ମୁଷ୍ଟିମେୟ ଲୋକ। ଆଉ ନିଶାସକ୍ତ ମଣିଷକୁ ଲୁଟି ଚାଲିଛନ୍ତି ଯୁଗଯୁଗ ଧରି। ଏମିତି ବର୍ଣ୍ଣନା ଆମେ ସଚ୍ଚି ରାଉତରାଙ୍କ 'ଅଭିଯାନ' ସଂକଳନର 'ସର୍ବନାଶର ପଥେ' କବିତାରେ ଦେଖିବାକୁ ପାଉ।

ଧର୍ମର ମଦ ଖୁଆଇ କରିଛ ଭାଇ,
ମଣିଷ ଜାତିକୁ ଚିରଦିନ ମସଗୁଲ।
ଅଫିମ ନିଶାରେ ଖୋଲି ସେ ନପାରେ ଆଖି,
ତମେ ଶୋଷ ତା'ର ବୁକୁର ଜୀବନଫୁଲ।

ସବୁଠୁ ଆଶ୍ଚର୍ଯ୍ୟ କଥା-ଈଶ୍ୱରଙ୍କ ସେବା କରୁଥିବା ମହାସେବକ ଈଶ୍ୱରଙ୍କୁ ଧ୍ୱଂସ କରିଦେବାକୁ ଧମକ ଦେଉଛି। ଯାହା କି ସାଂପ୍ରତିକ ପରିପ୍ରେକ୍ଷୀରେ ବାସ୍ତବ ଭଳି ମନେ ହେଉଥିଲେ ବି ଆମେ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାହସ ପାଉନା। ବାସ୍ତବତା କ'ଣ ତାହା ସମସ୍ତଙ୍କୁ ଜଣା। ସମସ୍ତେ ଜାଣୁଛନ୍ତି ଅନ୍ୟାୟ ହେଉଛି। ଅନ୍ୟାୟର ପ୍ରତିରୋଧ କରିବାର ସାମର୍ଥ୍ୟ ବି ରହିଛି ସେମାନଙ୍କ ପାଖରେ। ହେଲେ କେହି ବି ଆଗେଇ ଆସୁନି ଏଭଳି ଧର୍ମ ନାମରେ ଭଣ୍ଡାମି କରୁଥିବା ଗୋଷ୍ଠୀର ବିରୋଧ କରିବାକୁ। ଏହା ହିଁ ସବୁଠୁ ବଳି ଦୁଃଖ ତଥା ପରିତାପର ବିଷୟ। ସମାଜର ଏହି ଦୋ-ମୁହାଁ ନୀତି ବିରୋଧରେ ନାଟ୍ୟକାର ନାରାୟଣ ସାହୁ ପ୍ରତିକ୍ରିୟାଶୀଳ ହୋଇଛନ୍ତି। ନାଟକରେ ସମାଜରେ ଏଭଳି ବାସ୍ତବ ଅଥଚ ନଗ୍ନ ଚିତ୍ରଦେଇ ସେ ପାଠକ ବା ଦର୍ଶକଙ୍କୁ ସଚେତନ ଓ ପ୍ରତିକ୍ରିୟାଶୀଳ କରାଇବାର ଚେଷ୍ଟା କରିଛନ୍ତି।

ମହାସେବକ କିପରି ଈଶ୍ୱରଙ୍କୁ ବି ଅପମାନିତ କରୁଛି ଓ ଅସହାୟ ଈଶ୍ୱର ତାକୁ ବାଧା ଦେବାକୁ ଅକ୍ଷମ ହୋଇପଡୁଛନ୍ତି, ତାର ଚିତ୍ର ନାଟକରେ ସ୍ପଷ୍ଟ ହୋଇଛି।

ଈଶ୍ୱର- ମହାସେବକ, ସବୁ ଜିନିଷର ଗୋଟିଏ ସୀମା ଅଛି ? ତମେ ମୋର ସେବାଦାସୀ ସହିତ ଦୈହିକ ସଂପର୍କ ସ୍ଥାପନ କଲ...। ମୋ ଭକ୍ତ ମେରୀର ସର୍ବନାଶ କଲ।...।

ମହାସେବକ- ତମେ ଯଦି ଈଶ୍ୱର, ସର୍ବଶକ୍ତିମାନ...ବାଧା ଦେଲନାହିଁ କାହିଁକି ? ସେତେବେଳେ କୁଆଡ଼େ ଥିଲା ତୁମର ଐଶୀ ଶକ୍ତି ?

ଈଶ୍ୱର- କେବଳ ତମରିମାନଙ୍କ ଦୌରାତ୍ମ୍ୟରେ ଆଜି ସର୍ବତ୍ର ଦେବପୀଠ କବଳିତ। ଧର୍ମର ମଦଖୁଆଇ ଏ ଦେଶର ଜନତାଙ୍କୁ ତମେ ପ୍ରତାରିତ କରିଛ। ଶେଷରେ ମୋରି ନାମକୁ ନେଇ କିଣାବିକା ମଧ୍ୟ ଆରମ୍ଭ କରିଦେଲ ?

ମହାସେବକ- ଥାଉ ଈଶ୍ୱର, ଆଉ ନିର୍ମଳ ଭାବମୂର୍ତ୍ତି ଅବତାରଣା କରିବା ଦରକାର ନାହିଁ। ଆସନ୍ତାକାଲି ସର୍ବ ସମ୍ମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ

ତମର ଆବଶ୍ୟକତା ଶେଷ ହୋଇଛି। ଆଉ ଏକ ନୂଆ ଈଶ୍ୱର ସନ୍ଧାନ କରିବାକୁ ହେବ।

ଈଶ୍ୱର- ତମର ଏ ଗର୍ବ ବେଶୀଦିନ ରହତବ ନାହିଁ ମହାସେବକ। ମୁଁ ପୁଣିଥରେ ଅବତାର ଗ୍ରହଣ କରିବି।

ମହାସେବକ- ତା'ପୂର୍ବରୁ ଈଶ୍ୱର ନିବାସକୁ ମୁଁ ଭାଙ୍ଗି ଛାରଖାର କରିଦେବି। ଧରାପୃଷ୍ଠରୁ ତମର ସତ୍ତା ଟିକକ ବି ଲୋପ କରିଦେବି। ମଣିଷମାନଙ୍କୁ ଜଣାଇ ଦେବି, ତମେ ଏକ ଯନ୍ତ୍ର-ଈଶ୍ୱର ପାଲଟି ଯାଇଛ। ତମର ସଂସ୍କାର ଆବଶ୍ୟକ...ଦରକାର ନବକଳେବର...।

(ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର-ନବମ ଦୃଶ୍ୟ-ପୃଷ୍ଠା-୨୭୧-୨୭୪)

ଏଭଳି ସଂଳାପରୁ ସ୍ପଷ୍ଟ ଅନୁମାନ କରିହୁଏ, ମହାସେବକଙ୍କ ଧୂର୍ତ୍ତତା। ସବୁ ଅନ୍ୟାୟର ମୂଳପିଣ୍ଡ ସାଜି ମହାସେବକ କିନ୍ତୁ ଲୋକମାନଙ୍କ ପାଖରେ ହୋଇଯାଇଛି ସର୍ବଶକ୍ତିମାନ। ଏହା ହିଁ ଅନ୍ଧବିଶ୍ୱାସ ବିରୋଧରେ ପାଠକ ବା ଦର୍ଶକକୁ ତତାଏ, ମତାଏ।

ଈଶ୍ୱରଙ୍କ ପାଖରେ ଗୁହାରି ଜଣାଇବାକୁ ଆସିଥିବା ଭକ୍ତ ମେରୀକୁ ବଳାତ୍କାର ପରେ ହତ୍ୟା କରୁଛି ମହାସେବକ। କିନ୍ତୁ ମହାରାଜାଙ୍କ ପାଖରେ ଅତି ଘୃଣ୍ୟଭାବେ ଏ କାର୍ଯ୍ୟପାଇଁ ଈଶ୍ୱରଙ୍କୁ ଦାୟୀ କରୁଛି ସେ। ଯାହାକି ଅନ୍ୟାୟର ସୀମା ଲଂଘନ କରୁଛି। ଆଉ ଶେଷରେ ଈଶ୍ୱରଙ୍କୁ ନେଇ ଆରମ୍ଭ ହୋଇ ଯାଉଛି ରାଜନୀତି। ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିଆନ୍, ସମସ୍ତଙ୍କ ଭିତରେ ଈଶ୍ୱରଙ୍କୁ ନେଇ ଆରମ୍ଭ ହୋଇଛି ବିବାଦ। ସ୍ୱୟଂ ଈଶ୍ୱର ମଧ୍ୟ ଏହାର ସମାଧାନ କରିପାରି ନାହାନ୍ତି। ବରଂ ଶେଷରେ ଉଭୟ ଗୋଷ୍ଠୀର ଲୋକେ ଈଶ୍ୱରଙ୍କୁ ଘେରିଯାଇ ପ୍ରହାର କରିଛନ୍ତି। ଆଉ ନିଜ ନିଜ ଭିତରେ ଆରମ୍ଭ କରିଛନ୍ତି ସଂଘର୍ଷ, ଯାହାକି ସାଂପ୍ରତିକ ପରିସ୍ଥିତିରେ ଅତି ବାସ୍ତବ ଭଳି ମନେହୁଏ।

ନାଟକର ଅନ୍ତିମ ଦୃଶ୍ୟର ଶେଷରେ ଓସ୍ତାଦ ଏକ ବାଦ୍ୟ ବାଦନ କରି ଅତ୍ୟନ୍ତ ଦୁଃଖର ସହ ଆସିଛନ୍ତି ମଞ୍ଚକୁ। ତାଙ୍କ ଶିଷ୍ୟ ଈଶରା ଗୋଷ୍ଠୀ ସଂଘର୍ଷରେ ଲହୁଲୁହାଣ ହୋଇଥିବା କଥା କହୁଛନ୍ତି ଦର୍ଶକଙ୍କୁ। ଓସ୍ତାଦର ଶିଷ୍ୟ ଈଶରା ଓ ନାଟକର ଈଶ୍ୱର ଚରିତ୍ର ଉଭୟ ମିଶି ଯାଇଛନ୍ତି ଦର୍ଶକ ମନ ଭିତରେ। ଏଭଳି ଏକ ସାମାଜିକ ସମସ୍ୟାର ଚିତ୍ର ସ୍ପଷ୍ଟ ଭାବେ ଆଙ୍କି ହୋଇ ଯାଉଛି ଦର୍ଶକ ମନରେ। ନାଟକ ଦେଖିସାରି ଘରକୁ ଫେରିଲେ ବି ଏଭଳି ଏକ ଭୟଙ୍କର ସାମାଜିକ ସମସ୍ୟା ବିଷୟରେ ଚିନ୍ତା କରିବାକୁ ବାଧ୍ୟ ହେଉଛି ଦର୍ଶକ। ଏହା ହିଁ- "ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର" ନାଟକଟିକୁ ଉତ୍ତର ଆଧୁନିକ ନାଟ୍ୟ ଧାରାର ଏକ ସଫଳ ନାଟକ ଭାବେ ବିବେଚିତ କରୁଛି।

ସମାଲୋଚକ ହେମନ୍ତ କୁମାର ଦାସ କହିଛନ୍ତି- "ସୂଚିତ ନାଟକକୁ ସଂସ୍କାରଧର୍ମୀ ନାଟକ କୁହାଯାଇ ପାରେ। ଧର୍ମ ନାମରେ ଏଠାରେ ଯୁଗ ଯୁଗ ଧରି ଯେଉଁ ଭଣ୍ଡାମି

ଚାଲିଛି ନାଟ୍ୟକାର ତାହା ବିରୋଧରେ ପ୍ରତିବାଦର ସ୍ୱର ଉଠାଇଛନ୍ତି। ରାଜତନ୍ତ୍ରରେ ପୁରୋହିତ ଗୋଷ୍ଠୀର ଯେଉଁ ପ୍ରଭାବ ଥିଲା ଏବଂ ସାଧାରଣ ଜନତା ତାହା ଯୋଗୁଁ କିଭଳି ପ୍ରତାରିତ ଏବଂ ଦୁର୍ଦ୍ଦଶାଗ୍ରସ୍ତ ହେଉଥିଲେ ଏଥିରେ ତାହା ଦେଖାଇ ଦିଆଯାଇ, ଶେଷ ଆଡ଼କୁ ରାଜନୈତିକ ରୂପ ଦିଆଯାଇଛି।"(ଓଡ଼ିଆ ନାଟକର ଉତ୍ତର ଆଧୁନିକ ପର୍ବ:ପୃଷ୍ଠା-୩୪୧)

ନାଟକଟିର କାହାଣୀରେ ଉତ୍ତର ଆଧୁନିକତାର ଛାପ ସ୍ପଷ୍ଟ ହୋଇଛି। ସମାଲୋଚକ ଗୁରୁଚରଣ ବେହେରାଙ୍କ "ଅନେକ ଆଧୁନିକତା" ପୁସ୍ତକର "ଉତ୍ତର ଆଧୁନିକତାର ସ୍ୱର ଓ ସ୍ୱାକ୍ଷର" ପ୍ରବନ୍ଧଟିକୁ ନିରୀକ୍ଷଣ କଲେ ଏହା ଆଉଟିକେ ସହଜ ହୋଇଯିବ। "ଉତ୍ତର-ଆଧୁନିକତା ବିପକ୍ଷରେ ମସାଲୋଚନା ହେଉଛି-ଏହି ବିଶୃଙ୍ଖଳା, ବିଖଣ୍ଡନ ଆଡ଼କୁ ସାହିତ୍ୟକୁ ଆଗେଇ ନେଉଛି। ଅନ୍ୟ ଏକ ଅଭିଯୋଗଯେ-ଏହା ସଭ୍ୟତା ଓ ସଂସ୍କୃତିକୁ ଆଦିମତା ଆଡ଼କୁ ଟାଣି ନେଉଛି। ଏହାର ଉତ୍ତରରେ କୁହାଯାଇ ପାରେଯେ ବିବିଧତାକୁ ସଂସ୍କୃତି ଓ ସାହିତ୍ୟରେ ମର୍ଯ୍ୟାଦା ଦେଇ ଅନେକ ବକ୍ଲ ବିଚାର ଯୋଗାଇ, ସାଧାରଣ ମଣିଷର ମାନସିକତା ଓ ଜୀବନ ଦୃଷ୍ଟିକୁ ଆମର ସମ୍ମୁଖସ୍ଥ କରାଉଛି ଉତ୍ତର-ଆଧୁନିକତା। (ଅନେକ ଆଧୁନିକତା-ଉତ୍ତର ଆଧୁନିକତାର ସ୍ୱର ଓ ସ୍ୱାକ୍ଷର, ପୃ-୫୫)

ବାସ୍ତବିକ ନାଟ୍ୟକାର ନାରାୟଣ ସାହୁ ବିବିଧ ସମସ୍ୟାକୁ ନାଟକ ଆଶ୍ରା ଖୋଜି ବୁଲୁଥିବା ଈଶ୍ୱରରେ ମର୍ଯ୍ୟାଦା ଦେଇଥିବା ବେଳେ ସାଧାରଣ ମଣିଷର ମାନସିକତା ଓ ଜୀବନ ଦୃଷ୍ଟିକୁ ଦର୍ଶକ ସମ୍ମୁଖରେ ଅତି ନିଛକ ଭାବେ ପ୍ରଦର୍ଶିତ କରିଛନ୍ତି। ସାଧାରଣ ଜନତା ଉପରେ ହେଉଥିବା ଅତ୍ୟାଚାର ଓ ତା'ର ମାନସିକ ସ୍ଥିତିକୁ ନାଟ୍ୟକାର ଖୁବ ସାହସିକତାର ସହ ନାଟ୍ୟରୂପ ଦେଇଛନ୍ତି-ନାଟକ ଆଶ୍ରା ଖୋଜି ବୁଲୁଥିବା ଈଶ୍ୱରରେ।

ସମାଲୋଚକ ହେମନ୍ତ କୁମାର ଦାସଙ୍କ ମତରେ- "ଉତ୍ତର ଆଧୁନିକବାଦୀମାନେ କାଳ୍ପନିକତାର ଅବଲମ୍ବନରେ ଏଇଭଳି ସ୍ୱପ୍ନାଲୋକରେ ବିଚରଣ କରିପାରନ୍ତି। ଏହାକୁ ରୂପ ଦେବାପାଇଁ ନାଟ୍ୟକାର ରାଜା, ରାଣୀଙ୍କର 'ମିଥ୍ ଧର୍ମୀ' ପଟ୍ଟଭୂମିଟିଏ ସୃଷ୍ଟି କରିଛନ୍ତି।"(ଓଡ଼ିଆ ନାଟର ଉତ୍ତର ଆଧୁନିକ ପର୍ବ:ପୃଷ୍ଠା-୩୪୧)

ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଉତ୍ତର ଆଧୁନିକ ନାଟ୍ୟକଳାର ଏକ ସ'ଳ ସୃଷ୍ଟି-"ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର।"

ଗବେଷକ
ଉତ୍କଳ ବିଶ୍ୱିଦ୍ୟାଳୟ
ବାଣୀ ବିହାର, ଭୁବନେଶ୍ୱର

●●●

# ଏକାଙ୍କିକାର ପଥ ଓ ପୃଥିବୀ-ନାରାୟଣ ସାହୁ

ଅଧ୍ୟାପିକା ସୁଷମା ପତି

ସାହିତ୍ୟ ସାଧନାର ବିଭିନ୍ନ ଦିଗ ମଧ୍ୟରୁ ଏକାଙ୍କିକା ହେଉଛି ଅନ୍ୟତମ । ଏହା ସାହିତ୍ୟ ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନ ଦାବି କରେ । ଗଳ୍ପ, ଉପନ୍ୟାସ, ନାଟକ ପରି ଏକାଙ୍କିକା ମଧ୍ୟ ଭିନ୍ନ ଏକ କଳା । ଏହା ନାଟକର କ୍ଷୁଦ୍ର ସଂସ୍କରଣ ନୁହେଁ କିମ୍ବା ନାଟକ ଏକାଙ୍କିକାର ବୃହତ ରୂପ ନୁହେଁ । ଏକାଙ୍କିକା ହେଉଛି ଏକ ସ୍ୱୟଂସମ୍ପୂର୍ଣ୍ଣ କଳା । ଏହା ଗୋଟିଏ ମାତ୍ର ଅଙ୍କରେ ରଚିତ ହୁଏ, ଯଦିଓ କେତେକ କ୍ଷେତ୍ରରେ ଅଳ୍ପ ସଂଖ୍ୟାରେ ବ୍ୟତିକ୍ରମ ଦେଖାଯାଏ । ଏକାଙ୍କିକା ସଂପର୍କରେ ଡ. କୃଷ୍ଣଚରଣ ବେହେରା କହନ୍ତି- ରଂଗମଞ୍ଚରେ ସ୍ୱଳ୍ପ ସମୟ ମଧ୍ୟରେ ଅଭିନୟ ଉପଯୋଗୀ ଜୀବନର ଗୋଟିଏ ଗୋଟିଏ ଦିଗ, ଖଣ୍ଡ ଖଣ୍ଡ ଆବେଗ, ଅନୁଭୂତି କିମ୍ବା ସମାଜର କ୍ଷୁଦ୍ର କ୍ଷୁଦ୍ର ଘଟନା ବିଶେଷର ସଂହତି, ସଂଯତ ଓ ପ୍ରତିଛବି ପୂର୍ଣ୍ଣ ରଚନାକୁ ଏକାଙ୍କିକା ବୋଲାଯାଇପାରେ । (୧) ଏହା ଜୀବନର ପୂର୍ଣ୍ଣାଙ୍ଗ କାହାଣୀକୁ ନିଏ ନାହିଁ । ବହୁ ଘଟଣା ବା ବହୁ ଚରିତ୍ର ଏଥିରେ ନଥାଏ। ଏହା କ୍ଷୁଦ୍ରଗଳ୍ପ ପରି ଜୀବନର ଖଣ୍ଡିତାଂଶକୁ ଉପାଦାନ ଭାବରେ ନିଏ ଏବଂ ତାହାକୁ ସୀମିତ ପରିସର ମଧ୍ୟରେ ଚକିତ କରେ । ସୀମିତ ସମୟ ମଧ୍ୟରେ ନାଟ୍ୟକାର ତାଙ୍କର ବକ୍ତବ୍ୟକୁ ଏକାଙ୍କିକା ମାଧ୍ୟମରେ ପ୍ରକାଶ କରିଥାନ୍ତି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ହିଁ ଓଡିଆ ଏକାଙ୍କିକାର ହୋଇଛି ବିକାଶ । ସ୍ୱାଧୀନତା ପରେ ମନୋରଞ୍ଜନ ଦାସ, ରାମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, ପ୍ରାଣବନ୍ଧୁ କର, ବିଶ୍ୱଜିତ ଦାସ, ବିଜୟ ମିଶ୍ର, ରତ୍ନାକର ଚଇନି, କାର୍ତ୍ତିକ ଚନ୍ଦ୍ର ରଥ ପ୍ରମୁଖ ନାଟ୍ୟକାର ନାଟକ ରଚନା କରିଥିଲେ । କାଳିନ୍ଦୀ ଚରଣ ପାଣିଗ୍ରାହୀ ପ୍ରଥମେ ଏକାଙ୍କିକା ରଚନାର ପରମ୍ପରା ଆରମ୍ଭ କରିଥିଲେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ଏକାଙ୍କିକାର ହୋଇଛି ନାଁରେ ବିକାଶ ଓ ପ୍ରସାର । ବହୁ ପତ୍ର ପତ୍ରିକା, ବିଭିନ୍ନ କ୍ଷୁଦ୍ର ନାଟକ ପ୍ରତିଯୋଗିତା, ଆକାଶବାଣୀ, ଦୂରଦର୍ଶନ ଇତ୍ୟାଦି ଓଡ଼ିଶାରେ ଏକାଙ୍କିକା ସୃଷ୍ଟି ପାଇଁ ସଫଳ ପାଣିପାଗ ତିଆରି କରିଛନ୍ତି । ୧୯୮୦ ମସିହା ପରେ ଏକାଙ୍କିକାର ଏକ ଆକର୍ଷଣୀୟ ଯୁଗ ଆରମ୍ଭ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଜିର ଏକାଙ୍କିକା ହେଉଛି ବିଚିତ୍ରବର୍ଣ୍ଣା । ବିଭିନ୍ନ ପ୍ରକାର ଭାବ ଓ ଭାବନାକୁ ଦେଇ ଏକାଙ୍କିକା ଗତି କରୁଛି ଏହି ପରିପ୍ରେକ୍ଷୀରେ ଡ. ନାରାୟଣ ସାହୁଙ୍କ ଏକାଙ୍କିକା ବିଚାର୍ଯ୍ୟ । ସେ ଏକାଧାରରେ ଜଣେ ନାଟ୍ୟକାର ସମ୍ଭାଲୋଚକ, ଚିତ୍ରନାଟ୍ୟକାର, ସାମ୍ବାଦିକ ଓ ସମ୍ପାଦକ । ହେମନ୍ତ କୁମାର ଦାସ ନାଟ୍ୟକାରଙ୍କ ସଂପର୍କରେ କହନ୍ତି- "ଉତ୍ତର ଅଶୀ ସମୟରେ ଜଣେ ପ୍ରତିଭାବାନ ନାଟ୍ୟକାର ହେଉଛନ୍ତି ନାରାୟଣ ସାହୁ ପାରମ୍ପରିକତା ସହିତ ପରୀକ୍ଷାଧର୍ମିତାର ଏକ ସମନ୍ୱୟ ଘଟାଇ ନାଟ୍ୟକାର ନିଜ ଶୈଳୀ ପ୍ରସ୍ତୁତ କରନ୍ତି ।" ତାଙ୍କ ନାଟକରୁ ସଂଳାପ ମଧ୍ୟ ବେଶ୍ ମନଛୁଆଁ । ସାମାଜିକ ସମସ୍ୟାର ବିଶ୍ଳେଷଣ ହେଉଛି ତାଙ୍କ ନାଟ୍ୟ ଦର୍ଶନ ମୁଖ୍ୟ ଉଦ୍ଦେଶ୍ୟ । ଅଶୀ ଦଶକରୁ ସେ ସାହିତ୍ୟର ବିଭିନ୍ନ କ୍ଷେତ୍ର ଲେଖନୀ ଚାଳନା କରିଆସୁଛନ୍ତି । ସେ ଜଣେ ସାର୍ଥକ ଏକାଙ୍କିକାକାର ତାଙ୍କର ପ୍ରତ୍ୟେକ ଏକାଙ୍କିକାର ରଂଗ ନିଆରା, ଏଥିରେ ଆମର ସାମାଜିକ ଜୀବନର ଘଟଣା, ଦୁର୍ଘଟଣା, ଶୋଷଣ, ଅତ୍ୟାଚାରର ଆଦି କଥା ବର୍ଣ୍ଣନା କରାଯାଇ ଭବିଷ୍ୟତ ପିଢ଼ି ପାଇଁ କିଛି ସନ୍ଦେଶ ରହିଛି ସେ ଏଯାବତ୍ ୫୦ରୁ ଊର୍ଦ୍ଧ୍ୱ ଏକାଙ୍କିକା ରଚନା କରି ପ୍ରଶଂସିତ ହୋଇଛନ୍ତି ସେଗୁଡିକ ପତ୍ରପତ୍ରିକା, ପୁସ୍ତକ, ରେଡିଓ, ଟେଲିଭିଜନ୍ ଆଦି ମାଧ୍ୟମରେ ପ୍ରସାରିତ ।

ସାହିତ୍ୟର ବିଭିନ୍ନ ବିଭାଗ ପରି ଏକାଙ୍କିକା ପାଇଁ ମଧ୍ୟ କଥା ବସ୍ତୁର ଆବଶ୍ୟକତା ରହିଛି । ଏକାଙ୍କିକାକାର ଆପଣାର ରୁଚି ଏବଂ ଜୀବନ ଦର୍ଶନ ଅନୁଯାୟୀ ଯେ କୌଣସି ବିଷୟରେ ଏହା ମାଧ୍ୟମରେ ପ୍ରକାଶ କରିଥାନ୍ତି । ଦର୍ଶକର ପ୍ରାଣକୁ ଛୁଇଁଲା ଭଳି ବିଷୟ ବସ୍ତୁ ନାଟ୍ୟକାର ଗ୍ରହଣ କରିବା ଦରକାର, ନାରାୟଣ ସାହୁଙ୍କ ଏକାଙ୍କିକା ରେ କାହାଣୀ ହିଁ ମୁଖ୍ୟ ଆଧାର । ଅନେକ ଘଟଣାର ସମାହାରରେ ଏକାଙ୍କିକାର କଥାବସ୍ତୁକୁ ଗ୍ରହଣ କରିଥିବା ଦେଖାଯାଏ । ଦଳିତ ମଣିଷ ହିଁ ତାଙ୍କ କାହାଣୀର ନାୟକ । ସେହି ଦଳିତ ପ୍ରତି ସମବେଦନା ଓ ତାର ଅଧିକାର ପାଇଁ ସଂଗ୍ରାମ ମନୋବୃତ୍ତିକୁ ନେଇ ସେ ଏକାଙ୍କିକାର କଥାବସ୍ତୁ ରୂପେ ଗ୍ରହଣ କରିଥିବା ଦେଖାଯାଏ । ତାଙ୍କ ଏକାଙ୍କିକାର ମୁଖ୍ୟତଃ ସାମାଜିକ, ରାଜନୈତିକ, ପାରିବାରିକ, ଐତିହାସିକ, ଶିକ୍ଷାଧର୍ମୀ, ଶିଶୁ ସାମସମୟିକ, ମିଥିଧର୍ମୀ, ହାସ୍ୟରସାତ୍ମକ ଇତ୍ୟାଦି କଥାବସ୍ତୁକୁ ଆଧାର କରି ଗଢ଼ି ଉଠିଛି ।

ପୂର୍ବରାଗ, 'ବିରାଗ', 'ମୂଷା' ଏକାଙ୍କିକାରେ ଶିକ୍ଷା ନାଆଁରେ ଚାଲିଥିବା ଭାଣ୍ଡାମି ଠକାମିକୁ ଦୂର କରିବା ପାଇଁ ବିଦ୍ୟାଳୟରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଚାଲିଥିବା ଦୁର୍ନିତିକୁ ରୋକିବା ପାଇଁ ଚାହିଁଛନ୍ତି ଏବଂ ତାଙ୍କର ସେହି ଇଚ୍ଛାକୁ ପ୍ରକାଶ କରିଛନ୍ତି ଗଣେଶ ଓ ନାରଦ ମାଧ୍ୟମରେ । ସେହପରି ଥରେ ପୋତ ଖସିଗଲେ ଏକାଙ୍କିକାରେ ଯମରାଜ ଓ ଚିତ୍ରଗୁପ୍ତ ହାସ୍ୟରସ ମାଧ୍ୟମରେ ସମାଜରେ ସଂସ୍କାର ଆଣି ପାରିଛନ୍ତି ! ମହାପୁରୁଷ

ଏକାଙ୍କିକାରେ ଜଣେ ଉଗ୍ରପନ୍ଥୀ ହେଲେ ମଧ୍ୟ ତା ଭିତରେ ରହିଛି ମଣିଷର ସମସ୍ତ ଗୁଣ ଓ ଧର୍ମ ସେହି ମଣିଷତ୍ୱ ପାଇଁ ହିଁ ସେ ଶେଷରେ ମହାପୁରୁଷ ପାଲଟି ଯାଇଛି । 'ଅଭିମାନ' ଏକାଙ୍କିକାରେ କଥାବସ୍ତୁ ମଧ୍ୟ ଆଦିବାସୀ ବୀର ଶହୀଦ ଲକ୍ଷ୍ମଣ ନାୟକଙ୍କ ଉପରେ ଲେଖିଛନ୍ତି ଲେଖକ । 'ନାହିଁ ନାହିଁର ନକ୍ସା' ଏକାଙ୍କିକାରେ କଳୁଷିତ ରାଜନୀତି ପ୍ରତି କଟାକ୍ଷପାତ କରି ଶାସକ ମାନଙ୍କର ଦୁର୍ନୀତିର ରୂପ ଉଦ୍ ଘାଟନ୍ କରିଛନ୍ତି । 'ଏକ ଆତ୍ମହତ୍ୟା ସଂପର୍କରେ' ଏକାଙ୍କିକାରେ ନିଗମ ଓ ସୁଚେତା--ସ୍ୱାମୀ ଓ ସ୍ତ୍ରୀ। ନିଗମ ଜଣେ ଷ୍ଟେଟ୍ ବ୍ୟାଙ୍କର କର୍ମଚାରୀ । ତାଙ୍କୁ ବ୍ଲଡ୍ କ୍ୟାନସର୍ ସେଥିରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଶେଷ ନିଷ୍ପତି ଆତ୍ମହତ୍ୟା କରିବେ ବୋଲି ନିଗମ ସୁଚେତାକୁ କହିଛନ୍ତି । ଶେଷରେ ଝିଅ ସୀମା ଓ ପୁଅ ନିଲୁକୁ ଦୁଃଖରେ ହନ୍ତସନ୍ତ ହେବାକୁ ନ ଦେଇ ବିଷଲଡୁ ଦେଇ ମାରିଛନ୍ତି । ଉପନ୍ୟାସ ଏକାଙ୍କିକାରେ ଅଳକା ହେଉଛି ଜଣେ ବେଶ୍ୟା । ସେ ମଧ୍ୟ ଭଗିନୀ, ଜନନୀ, ଜାୟାର ରୂପ ହୋଇ ଝଲସି ଉଠିଛି । 'ବଡ ପୁଅ' ଏକାଙ୍କିକାରେ ଗୋଟିଏ ପରିବାରରେ ପୁଅ ଖୋଜୁଖୋଜୁ ଅନେକ ଗୁଡ଼ିଏ ଝିଅ ଜନ୍ମଦେଇଛନ୍ତି । ସେହି ଘରର ବଡ଼ଝିଅ ମିତା ଗୋଟିଏ ପୁଅର କର୍ତ୍ତବ୍ୟକୁ ମୁଣ୍ଡେଇଛି ଓ ମାଆ ବାପାଙ୍କୁ ସାହାଯ୍ୟ କରିଛି ଯେଉଁଥିପାଇଁ ସେ ଝିଅ ହୋଇ ମଧ୍ୟ ମାଆ ବାପାଙ୍କର ବଡ ପୁଅ ସାଜିଛି, ସେହିପରି 'ଚିଠି' ଏକାଙ୍କିକାରେ ଜଣେ ମାଆ ହେଉଛନ୍ତି ଇରାବତୀ ଯିଏ କି ନିଜର କର୍ତ୍ତବ୍ୟରେ ଅବହେଳା ନକରି ନିଜ ପରିବାରକୁ ସୁଦୃଢ଼ ଭାବେ ଗଢ଼ିବାପାଇଁ ଯାଇ ନିଜ ହୃଦୟରେ ରଖି ନିଜ ସ୍ୱାମୀ କେଶବ ପଟ୍ଟନାୟକଙ୍କ ମୃତ୍ୟୁକୁ ତାଙ୍କ ପିଲାମାନଙ୍କ ଆଗରେ କେବେ ପ୍ରକାଶ କରିବାକୁ ଦେଇନାହାନ୍ତି । ଉତ୍ତର ପର୍ବ, ଏକାଙ୍କିକାରେ ଜ୍ୟୋତି ତା'ର ସ୍ୱାମୀ ଗୁରୁଚରଣଙ୍କୁ ତ୍ୟାଗ କରି ବିପ୍ଳବକୁ ବାହା ହୋଇଛି । ଜୀବନରେ ସେ ନିଜକୁ ହରେଇ ଚାଲିଛି । ସବୁକିଛି ଥାଇ ମଧ୍ୟ ସେ ଶାନ୍ତିରେ ରହିପାରୁନାହିଁ ।

'ରେବତୀ' ଏକାଙ୍କିକାରେ ପ୍ରଚାରଧର୍ମିତାର ସ୍ୱର ଦେଖିବାକୁ ମିଳେ । ନାରୀ ସ୍ୱାଧୀନତା, ନାରୀ ସଶକ୍ତିକରଣ, ନାରୀ ମୁକ୍ତିକୁ କେନ୍ଦ୍ର କରି ଆଲୋଚ୍ୟ ଏକାଙ୍କିକାଟି ରଚିତ । ରେବତୀ ଚରିତ୍ର ପରି ନାରୀ ତାର ନିଜ ସ୍ୱାଧୀନତା ପାଇଁ ନିଜେ ଲଢ଼ିବ । ତାର ସ୍ୱାଧୀନତା ନିଜେ ଚାହିଁଲେ ହାସଲ କରିପାରିବ । ସେହିପରି ନାରୀ ସ୍ୱାଧୀନତାକୁ ନେଇ ହିଁ ସୃଷ୍ଟି ହୋଇଛି ତାହାର ପ୍ରଚାର, ଯାହା 'କହି ହୁଏନା' ଏକାଙ୍କିକାରେ ମିଛକୁ ସହାରା ନେଇ ମାଆକୁ ତାର ପୁଅ ବିଷୟରେ ଲୁଚେଇ ଚାଲିଛନ୍ତି ପରିବାରର ସଦସ୍ୟମାନେ । 'ଉପହାର'ରେ ଜଙ୍ଗଲର ସବୁ ପଶୁପକ୍ଷୀଙ୍କ ମଧ୍ୟରେ ଗୋଟିଏ ମଣିଷ ଛୁଆର ତିତ୍ରଣ ହୋଇଥିବାର ଦେଖିବାକୁ ମିଳେ । ଯାହାକି ପଶୁପତି ଶେଷରେ ମଣିଷ ସମାଜକୁ ଉପହାର ସଦୃଶ ଦେଇଛନ୍ତି । 'ଦରଜା ଖୋଲିଦିଅ' ଏକାଙ୍କିକାରେ ଭେଦଭାବ ଭୁଲି ମଣିଷ ଜାତି

ଏକ ଏବଂ ଆମେ ସବୁ ଭାଇ ଭାଇର ସ୍ୱର ଉତ୍ତୋଳନ କରିଛନ୍ତି । ସେହିପରି 'ଛୋଟ କଥା' ଏକାଙ୍କିକାରେ କୁନାକୁନି ଦୁଇ ଭାଇ ଭଉଣୀ । ସେମାନଙ୍କ ଜରିଆରେ ଲେଖକ ଇଂରାଜୀ ମିଡିୟମ ସ୍କୁଲରେ ପିଲାଙ୍କର ପାଠ ପଢାକୁ ଇଙ୍ଗିତ କରିଛନ୍ତି । 'ପୂର୍ଣ୍ଣିମାର ପ୍ରଶ୍ନ' ଏକାଙ୍କିକାରେ ଧନଞ୍ଜୟର ସ୍ତ୍ରୀ ପୂର୍ଣ୍ଣିମା । ଯଦିଚ ଧନଞ୍ଜୟ ଦୋଷୀ ତାହେଲେ ତାକୁ ଦଣ୍ଡ ଦିଆଗଲା । ହେଲେ ପୂର୍ଣ୍ଣିମାର ଦୋଷ କୋଉଠି ରହିଲା ! ତାର ଜୀବନ ଯୌବନର ଯେଉଁ ସମୟ ନଷ୍ଟ ହେଲା ତପାଇଁ ଦାୟୀ ହେବ କିଏ ଏହା ହେଉଛି ଏକାଙ୍କିକାର ପ୍ରଶ୍ନ ।

ନାଟ୍ୟକାର ଶ୍ରୀଯୁକ୍ତ ସାହୁ ତାଙ୍କର ପ୍ରତ୍ୟେକଟି ଏକାଙ୍କିକାର ଚରିତ୍ରକୁ ଜୀବନ୍ତ ରୂପେ ଗଢି ତୋଳିଛନ୍ତି କାରଣ ସେହି ଚରିତ୍ରଗଡ଼ିକ ବାସ୍ତବ ଜଗତରୁ ନିଜର ଅଭିଜ୍ଞତାରୁ ସେ ଏହି ସମାଜର ଧୂଳିମାଟିର ସଂସାରରୁ ସାଉଁଟି ଆଣିଛନ୍ତି । ଦରଦୀ ମଣିଷର ଦୁଃଖକୁ ଲାଘବ କରିବାପାଇଁ ସେ ସେହିଭଳି ଚରିତ୍ର ମାନଙ୍କର ବିଶେଷ ଭାବରେ ଉପସ୍ଥାପନା କରିଥିବାର ଦେଖାଯାଏ । ସେ ଜଣେ ଆଶାବାଦୀ ଲେଖକ ହୋଇଥିବାରୁ ତାଙ୍କ ଏକାଙ୍କିକାମାନଙ୍କରେ ସବୁବେଳେ ତିନୋଟି ଧରଣର ଚରିତ୍ରକୁ ସ୍ଥାନ ଦେଇଥାନ୍ତି । ପ୍ରଥମଟି ଶୋଷିତ, ଦ୍ୱିତୀୟଟି ଶୋଷକ ଓ ଦ୍ୱିତୀୟଟି ହେଉଛି ସଂଗ୍ରାମରତ ଚରିତ୍ର ।

ଏକାଙ୍କିକାରେ ସଂଳାପ ବେଶ୍ ନାଟକୀୟ ଶୈଳୀରେ ଉପସ୍ଥାପନ କରିଛନ୍ତି ନାଟ୍ୟକାର ଚରିତ୍ର ମୁଖରେ ସଂଯୋଜିତ ସଂଳାପ ଏହିପରି-

ନାରଦ - ନାରାୟଣ .... ନାରାୟଣ ......

ଗଣେଶ - ଆସନ୍ତୁ ଦେବର୍ଷି ନାରଦ, ହଠାତ୍ ଅସମୟରେ ଆଗମନରେ ଉଦ୍ଦେଶ୍ୟ ?

ନାରଦ- ଗଣପତି, ଆପଣ ଥାଉଥାଉ ବିଶ୍ୱରୁ ବିଦ୍ୟାର ଅଧୋଗତି ଘଟିବ । ଏହା ଶୋଭନୀୟ ନୁହେଁ ଦେବ ।

ଗଣେଶ- ହଁ, ଦେବର୍ଷି, ବିଶ୍ୱ ଆଜି ଏକ ଘଡି ସନ୍ଧି ମୁହୂର୍ତ୍ତରେ ଉପସ୍ଥିତ ସର୍ବତ୍ର ସଙ୍କଟ ଆଉ ସଙ୍କଟ ।

'ଥରେ ଗୋଡ ଖସିଗଲେ' ଏକାଙ୍କିକାରେ ଏଡ୍‌ସ ସଚେତନତା ଉପରେ ଓ ତାର ପ୍ରତିକାରକୁ ନେଇ ସେ ସଂଳାପ ସଂଯୋଜନା କରିଛନ୍ତି । ହାସ୍ୟରସ ମାଧ୍ୟମରେ ଜନସେଚତନତା ତାଙ୍କର ଏହି ଏକାଙ୍କିକା ସଂଯୋଜନାରେ ପ୍ରତିକୀତ ହୋଇଥାଏ । ଏମିତି ବି ହୁଏ । ଏକାଙ୍କିକାର ସମସ୍ତ ଚରିତ୍ରମାନଙ୍କ ନାମରୁ ହିଁ ହାସ୍ୟରସ ଉତ୍ପନ୍ନ ହୁଏ । ସେମାନଙ୍କ ସଂଳାପ ସଂଯୋଜନା କ୍ଷେତ୍ରରେ ମଧ୍ୟ ହାସ୍ୟରସ ପ୍ରକଟିତ ହୋଇଥାଏ । ରସିକ ଶେଖରର ଏକ ସଂଳାପ ଏଠାରେ ପ୍ରଣିଧାନଯୋଗ୍ୟ ।

ରସିକଶେଖର- ସୁଧିବୃନ୍ଦ, ମୁଁ ଭୁଲିଯାଇଥିଲି ମୁଖ୍ୟ ଅତିଥିଙ୍କ ପରିଚୟ ଦେବାକୁ । ଆମର ମୁଖ୍ୟ ଅତିଥି ରସରାଜ ହେଉଛନ୍ତି ନିଖିଲ ଉତ୍କଳ ମାଇଚିଆ ମଙ୍ଗଳ କେନ୍ଦ୍ରର

ପ୍ରେସିଡେଣ୍ଟ, କଳିଙ୍ଗ କଳାକ୍ଷେତ୍ର ଆସୋସିଏସନ୍‌ର ସେକ୍ରେଟାରୀ .ନିଖିଳ ଭାରତ ଅବଳା ଉଦ୍ଧାରଣ କେନ୍ଦ୍ରର ଅବୈତନିକ ସଂପାଦକ, ଏହାଛଡା ସେ ହେଉଛନ୍ତି ଝାଡୁଦାର ସଂଘର ଚେୟାରମେନ୍ । ସେହି ମହାମାନ୍ୟ ବ୍ୟକ୍ତିଙ୍କୁ ମୁଁ ।

ଏକାଙ୍କିକାର ସାହିତ୍ୟକ ମୂଲ୍ୟ ସତ୍ତ୍ୱେ ଏହାର ସମସ୍ତ ସଫଳତାର କ୍ଷେତ୍ର ହିଁ ରଙ୍ଗମଞ୍ଚ । ଦୃଶ୍ୟ ମାଧ୍ୟମରେ ଏକାଙ୍କିକା ଦର୍ଶକଙ୍କ ପାଖରେ ପହଞ୍ଚେ । ପରିବେଶ ସୃଷ୍ଟିପାଇଁ ବିଭିନ୍ନ ଦୃଶ୍ୟର ପ୍ରଭାବଶାଳୀ ଉପସ୍ଥାପନା ଆବଶ୍ୟକ । ଏକାଙ୍କିକା ରଚନା କରି ତାର ମଞ୍ଚ ସଫଳତା ଆସିବା ହେଉଛି ଗୋଟିଏ ସ୍ରଷ୍ଟାପାଇଁ ଏକାନ୍ତ ଅପରିହାର୍ଯ୍ୟ । ମଞ୍ଚ ସଫଳତା ଦୃଷ୍ଟିରୁ ଏକାଙ୍କିକାର ନିର୍ଦ୍ଦେଶନା, ପରିଚୟ, ଦୃଶ୍ୟ ବିଭାଗ, ମଞ୍ଚସଜ୍ଜା, ଆଲୋକ ସଂପାନ୍ ନୃତ୍ୟ ସଙ୍ଗୀତ ପ୍ରୟୋଗ ପାଇଁ ବା ଚରିତ୍ର ଭାବଭଙ୍ଗୀ ସମ୍ପର୍କରେ ପ୍ରାକ୍ ସୂଚନା ଦେଇଥାନ୍ତି ଲେଖକ ନିର୍ଦ୍ଦେଶକଙ୍କ ସହାୟତା ପାଇଁ ଆଧୁନିକ ଏକାଙ୍କିକାରେ ଆଲୋକ ସମ୍ପାତ, ଜୋନ୍ ପରିକଳ୍ପନା, ଶବ୍ଦ ସଂଯୋଜନା ପ୍ରଭୃତିରେ ଆଧୁନିକ ଟେକ୍ ନିକ୍ ପ୍ରୟୋଗ କରାଯାଇଛି ।

ମଞ୍ଚକଳା ପ୍ରତି ଯଥେଷ୍ଟ ଗୁରୁତ୍ୱାରୋପ କରିଛନ୍ତି ତାଙ୍କ ଏକାଙ୍କିକା ସମୂହରେ। ନାଟକର ହେଉକି ଏକାଙ୍କିକା ସବୁଥିରେ ସେ ମଞ୍ଚ ସଫଳତାକୁ ଦୃଷ୍ଟି ଆଗରେ ରଖି ରଚନା କରିଛନ୍ତି । ନୂତନ ଚିନ୍ତାଚେତନା ସମ୍ବଳିତ ବିଷୟକୁ ଉପସ୍ଥାପନ କରିବା ସହିତ ଅଭିନବ ମଞ୍ଚକୌଶଳର ପ୍ରୟୋଗ ମଧ୍ୟ ତାଙ୍କ ଏକାଙ୍କିକା ଗୁଡ଼ିକରେ ଦେଖିବାକୁ ମିଳେ । ପ୍ରାୟତଃ ପ୍ରତ୍ୟେକ ଏକାଙ୍କିକାରେ ମଞ୍ଚ ପରିକଳ୍ପନା ପାଇଁ ଯେଉଁସବୁ ପ୍ରବିଧି ରହିଛି, ତାର ଯଥାଯଥ ରୂପ ସେ ପ୍ରଦାନ କରିଛନ୍ତି । ତାଙ୍କ ରଚିତ ସମସ୍ତ ଏକାଙ୍କିକା ପ୍ରସେନିୟମ ମଞ୍ଚ ଏବଂ ଖୋଲାମଞ୍ଚରେ ସବୁଠାରେ ସବୁ ସମୟରେ ଅଭିନୀତ ହୋଇପାରିବ । ସମାଜରେ ଘଟୁଥିବା ବିଭିନ୍ନ ଘଟଣାକୁ ସେ ବ୍ୟଙ୍ଗାତ୍ମକ ରୂପରେ ଉପସ୍ଥାପନ କରିଛନ୍ତି ସାଧାରଣ ଲୋକଙ୍କ ଅଧିକାର ପାଇଁ । ବିରାଗ ଏକାଙ୍କିକାରେ ମଞ୍ଚଅଭିନୟ ପାଇଁ କୁହାଯାଇଛି ଯେ ମଞ୍ଚର କୌଣସି ସେଟ୍ ସେଟିଙ୍ଗ ଦରକାର ନାହିଁ । ମଞ୍ଚ ଉପରେ ମାତ୍ର କେତୋଟି ବ୍ଲକର ଉପସ୍ଥାପନା କରାଯାଇଛି । ପ୍ରତ୍ୟେକ ବ୍ଲକରେ ରଂଗ ବଦଳାଯିବ । ପୂର୍ବରାଗ ଏକାଙ୍କିକା ମଞ୍ଚସ୍ଥ ହୋଇଛି ଗୋଟିଏ ଶ୍ଳୋକରୁ । ମଞ୍ଚରେ ଭରି ରହିଥିଲା ଧୂମ୍ର କୁଣ୍ଡଳୀ ଏମିତି ବି ହୁଏ ଏକ ହାସ୍ୟରସାତ୍ମକ ଏକାଙ୍କିକା ମଞ୍ଚର ସାଜସଜ୍ଜାରେ ମଧ୍ୟ ସେହିପରି ଉପସ୍ଥାପନା । ଗୋଟିଏ ଆଲୋଚନା ସଭା, ଗୋଟିଏ ଟେବୁଲ୍, ଗୋଟିଏ ଚେୟାର , ତାର ନଥିବା ଏକ ମାଇକ୍ରୋଫୋନ ସେଠାରେ ଉପସ୍ଥାପନା କରାଯାଇଥିଲା । ରେବତୀ ଏକାଙ୍କିକାରେ ମଧ୍ୟ ଲୋକ କାହାଣୀର ଢଙ୍ଗରେ ଉପସ୍ଥାପନା କରାଯାଇଛି । ଏକ ପଲ୍ଲୀଦାଣ୍ଡ, ଗ୍ରାମ

ସଭାମଞ୍ଚ ଇତ୍ୟାଦି ରଙ୍ଗମଞ୍ଚରେ ଦର୍ଶିତ ହୋଇଛି ବାବାନାମ୍ ଅମୃତମ୍ ରେ ବାବାଙ୍କ ଆଶ୍ରମ, ଆଶ୍ରମର ଉପାସନା ପୀଠ, ସେଠି ଏକ ସୁସଜ୍ଜିତ ସିଂହାସନ, ଭକ୍ତ ଗଣ ଖୋଳ କରତାଳି ଧରି କୀର୍ତ୍ତନ କରୁଥିଲେ । ଆଲୋକ ମଧ୍ଯ ପୂର୍ଣ୍ଣ ରୂପେ ଏଥିରେ ବ୍ୟବହାର ହୋଇଥିବାର ଦେଖାଯାଏ ।

ଏକାଙ୍କିକା ରଚନା କ୍ଷେତ୍ରରେ ନାରାୟଣ ସାହୁଙ୍କ ପ୍ରତିଭା ବାସ୍ତବିକ ପ୍ରଶଂସନୀୟ। ବିଶେଷତଃ ଚଳନ୍ତି ସମାଜର ବାସ୍ତବ ତଥା ଜୀବନ୍ତ ଚିତ ତାଙ୍କ ଏକାଙ୍କିକାରେ ପ୍ରଦତ୍ତ ଯାହା ଏକ ଏକ ପ୍ରାମାଣିକ ଦଲିଲ । ସାଂପ୍ରତିକ ଶାସନ ବ୍ୟବସ୍ଥାକୁ ସେ ଖୁବ୍ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି । ବିଶେଷତଃ ସମାଜରେ ଦଳିତ, ନିଷ୍ପେସିତ, ନିଃସହାୟ ଚରିତ୍ରମାନଙ୍କ ପ୍ରତି ତାଙ୍କର ରହିଛି ଦରଦ । କେବଳ ସେତିକି ନୁହେଁ, ଚଳନ୍ତି ସମାଜରେ ଶିକ୍ଷା ବ୍ୟବସ୍ଥା ପ୍ରତି ସେ ଆଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସାଂପ୍ରତିକ ଶିକ୍ଷା ବ୍ୟବସ୍ଥାର ବ୍ୟଙ୍ଗାତ୍ମକ ଚିତ୍ର ପ୍ରଦାନ କରିଛନ୍ତି । ବର୍ତ୍ତମାନ ସମାଜରେ ଚାଲୁଥିଭା ସନ୍ତ୍ରାସବାଦୀ ତଥା ପ୍ରତାରକ ବାବାମାନଙ୍କ ସ୍ୱରୂପ ସେ ନିଖୁଣ ଭାବରେ ଉପସ୍ଥାପନ କରିଛନ୍ତି । ସମାଜରେ ବିଭିନ୍ନ ଶ୍ରେଣୀର ବ୍ୟକ୍ତିମାନଙ୍କ ଚିତ୍ର ତାଙ୍କ ଏକାଙ୍କିକାରେ ଦେଖିବାକୁ ମିଳେ । ସେ ଏଡସ୍ ରୋଗୀ ହୋଇଥାଉ କିମ୍ବା ବାରଙ୍ଗନା ଚରିତ୍ର ହୋଇଥାଉ, ସେ ଥିଏଟର କରୁଥିବା କଳାକାରଟିଏ ହୋଇଥାଉ କିମ୍ବା କ୍ଷମତାଲୋଭୀ ମଣିଷ ହୋଇଥାଉ ପ୍ରତ୍ୟେକଟି ପାଇଁ ତାଙ୍କର ଲେଖନୀ ତତ୍ପର ହୋଇଉଠିଛି ଯେତେବେଳେ ସୃଷ୍ଟିରେ ଅରାଜକତା ବ୍ୟାପିଯାଏ, ମୂଲ୍ୟବୋଧର ହ୍ରାସ ଘଟେ, ନୀତିଧର୍ମର ପଥରୁଦ୍ଧ ହେଇଯାଏ ସେତେବେଳେକୁ ସମାଜକୁ ସୁଧାର କରିବା ପାଇଁ ବିଦ୍ରୋହର ସ୍ୱର ଅନିର୍ବାଯ୍ୟ । ସେହି ସ୍ୱରକୁ ତ ସାହୁ ତାଙ୍କ ଏକାଙ୍କିକା ଭିତରେ ପ୍ରକାଶ କରିପାରିଥିବା ଦେଖାଯାଏ । ଏକାଙ୍କିକା ମାଧ୍ୟମରେ ଜୀବନ ପ୍ରତି ରହିଛି ମହନୀୟ ବାର୍ତ୍ତା ଯାହାକୁ ବହନକରି ତାଙ୍କର ଏକାଙ୍କିକା ପାଇଛି ଚରମ ସଫଳତା । କେବଳ ସଂଖ୍ୟାତ୍ମକ ଦୃଷ୍ଟିରୁ ନୁହେଁ, ଗୁଣାତ୍ମକ ଦୃଷ୍ଟିରୁ ମଧ୍ୟ । ଓଡିଆ ଏକାଙ୍କିକାର ମହତ୍ତ୍ୱ ବିକାଶରେ ଏହା ସହାୟକ ହୋଇପାରିଛି ।

**ସଙ୍କେତସୂଚୀ :**


୧. ବେହେରା, କୃଷ୍ଣଚରଣ, ପ୍ରସଙ୍ଗ ; ନାଟକ ଓ ଏକାଙ୍କିକା,ପୃଷ୍ଠା -୨୧୮

୨. ଦାସ, ହେମନ୍ତ କୁମାର, ଓଡିଆ ନାଟକର ବିକାଶଧାରା, ପୃଷ୍ଠା-୨୭୪

୩. ସାହୁ, ନାରାୟଣ, ପୂର୍ଣ୍ଣିମାର ପ୍ରଶ୍ନ, କଳିଙ୍ଗ, କଳା ପରିଷଦ, ପୃଷ୍ଠା-୬୧

୪. ସାହୁ, ନାରାୟଣ, ପୂର୍ବରାଗ, ସହାକାର(୧୯୯୮), ପୃଷ୍ଠା-୩୧

୫. ସାହୁ, ନାରାୟଣ, ଏମିତି ବି ହୁଏ, ଜନସୁଧା(୨୦୦୦), ପୃଷ୍ଠା-୧୬୭


●●●

# ଦୂର ଦିଗ୍‌ବଳୟ ସନ୍ଧାନରେ

## ଦେବାଶିଷ ପାତ୍ର

ଦର୍ଶକର ସ୍ମୃତି କେନ୍ଦ୍ରରେ ନୂତନ ଅଭିସାର ରଚେ ନାଟ୍ୟକାର ନାରାୟଣ ସାହୁଙ୍କ ଏକାଙ୍କିକା ଗ୍ରନ୍ଥ ସମୂହ। ସେ ଯେମିତି କହନ୍ତି ବ୍ୟକ୍ତି ଜୀଉଁଥିବା ଜୀବନ ସଂଗ୍ରାମର କଥା, ସେମିତି କହନ୍ତି ଚରିତ୍ର ଭିତରର ଗୋପନ ସଂଚିତ ବ୍ୟଥା। ନା'ଥାଏ ଆବରଣ, ନାଁ ଥାଏ ପାଲିସ୍। ଯାହା ବାସ୍ତବ ତାହା ମଞ୍ଚରେ ପ୍ରଦର୍ଶିତ ହେବ। ଏଇଟା ଯେମିତି ତାଙ୍କ ଲେଖକୀୟ ଅଭିବ୍ୟକ୍ତି। ଆଉ ତାଙ୍କ ନାଟ୍ୟ କାହାଣୀର ପୃଷ୍ଠଭୂମି ଆମପରି ସାଧାରଣ ମଣିଷ ଜୀଉଁଥିବା ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଘରର ଝାଟିମାଟି ପରି । ଆଉ ସେହି ନାଟ୍ୟ ଚେତନା ଭିତରେ ଚେର ମଡ଼ଉଥିବା ଚରିତ୍ରମାନେ ଯେମିତି ଆମରି ଚିହ୍ନା ମଣିଷ, ମଞ୍ଚ ଉପରେ କେବଳ ସେମାନେ ଦୁଃଖ ସୁଖର ଆସର ଜମେଇଥାନ୍ତି। ତାଙ୍କ ଏକାଙ୍କିକା ଓ ନାଟକର ଗତିଶୀଳତା ଅତ୍ୟନ୍ତ କଳାତ୍ମକତାରେ ଭରପୁର। ସଂଳାପ ବି ଅତ୍ୟନ୍ତ ମାପଚୁପ୍ ଶବ୍ଦରେ ଅଙ୍କ କଷିଲା ପରି। ଦର୍ଶକ ଦେଖୁଦେଖୁ ବାନ୍ଧି ହୋଇଯାଆନ୍ତି ମଞ୍ଚରେ, ସମାହିତ ହେଇଯାଆନ୍ତି ଚରିତ୍ରରେ ଆଉ ଅସରନ୍ତି ସମ୍ବେଦନା ଅଜାଡ଼ି ଦିଅନ୍ତି ସେଇଠି। ନାଟ୍ୟକାର ଯୋଡ଼ି ହୋଇଯାଆନ୍ତି ଦର୍ଶକ ସହିତ। କାରଣ, ଯାହା ଅସଜଡ଼ା, ଦୁର୍ଭେଦ୍ୟ, ଯାହା ବିସ୍ମୃତିର ଗର୍ଭରେ ଥାଏ ପୁଣି ଯାହା ପାଇଁ ଲୋକେ ନାକ ଟେକନ୍ତି ସେଇଠି ହିଁ ବାଟଚାଲନ୍ତି ନାଟ୍ୟକାର ଶ୍ରୀଯୁକ୍ତ ସାହୁ। ବୋଧହୁଏ ଏଇଥିପାଇଁ ତାଙ୍କ ସାମସମୟିକ ନାଟ୍ୟସ୍ରଷ୍ଟା ଓ ଏକାଙ୍କିକାକାରଙ୍କ ଠାରୁ ସେ ବହୁ ଆଗରେ। କୁହାଯାଇପାରେ ନାଟ୍ୟକାରିତାର ଦୃଶ୍ୟମାନ ପଥରେ ସେ ଏକ ଅଭିଜାତ ନକ୍ଷତ୍ର।

ନାଟ୍ୟକାର ଶ୍ରୀଯୁକ୍ତ ସାହୁଙ୍କର ଅନେକ ନାଟକ ଓ ଏକାଙ୍କିକା ଭିତରୁ 'ଫ୍ରଣ୍ଟ ଲାଇନ୍ ଓ ଅନ୍ୟାନ୍ୟ ନାଟକ' ଏବଂ 'ଏମିତି ବି ହୁଏ ଓ ଅନ୍ୟାନ୍ୟ ନାଟକ' ଦୁଇଟି ସଫଳ ଏକାଙ୍କିକା ସଂକଳନ। ନିଜେ ନାଟ୍ୟକାର ଯାହାକୁ ନାଟକ ଗ୍ରନ୍ଥ ଭାବରେ ଗ୍ରହଣ କରିଛନ୍ତି। ୨୦୦୧ ମସିହାରୁ ୨୦୦୬ ମସିହା ଭିତରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଓ ବିଭିନ୍ନ ରଂଗମଂଚରେ ଅଭିନୀତ ଏକାଙ୍କିକାମାନଙ୍କର ସଂକଳନ ଦୁଇଟି ଖଣ୍ଡରେ ୨୦୦୭ରେ ପ୍ରକାଶିତ ହୋଇ ପାଠକ ଓ ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରେ। ଦୁଇଟି ସଂକଳନରେ ରହିଛି ସମୁଦାୟ ୧୫ଟି ଏକାଙ୍କିକା। ଯେଉଁଥିରେ ରୂପ ପାଇଛି

ଆଜିର ମଣିଷ ଭିତରେ ଥିବା ପ୍ରୟୋଜନ ଭିତ୍ତି ସଂପର୍କ, ଶଠତା, ନିଜପ୍ରତି ବିଶ୍ୱାସହୀନତା, ଆସ୍ଥାହୀନତା ଏବଂ ମଣିଷକୁ ଅସଂପୂର୍ଣ୍ଣ ଓ ଅବୋଧ୍ୟ କରି ଗଢ଼ି ତୋଳିବାର ଚିତ୍ର। ତେଣୁ ସମାଜର ଏହି ଚିତ୍ର ସମାଜକୁ ପ୍ରଦାନ କରି ଏକାଙ୍କିକା ମାଧ୍ୟମରେ ଏକ ନୂତନ ମୂଲ୍ୟବୋଧ ସ୍ଥାପନ କରିବାରେ ପ୍ରୟାସ କରିଛନ୍ତି ନାଟ୍ୟକାର। ସମୟର ଏକତ୍ୱ ଓ କାର୍ଯ୍ୟର ଏକତ୍ୱ ଉପରେ ଗୁରୁତ୍ୱାରୋପ କରିବା ସହିତ ମୁହୂର୍ତ୍ତ ସର୍ବସ୍ୱ ଜୀବନର ଅବତାରଣା କରିଛନ୍ତି ସେ ତେବେ ଏକାଙ୍କିକା ଶୈଳୀ ଦୃଷ୍ଟିରୁ ତାଙ୍କର ଏଇ ଦୁଇଟି ସଂକଳନ କେତେ ପ୍ରଭାବଶାଳୀ ଆମେ ତାହା ଆଲୋଚନା ପରିସରଭୁକ୍ତ କରିବା। ଯାହାଦ୍ୱାରା ନାଟ୍ୟ ରଚୟିତା, ଦର୍ଶକ, ମଞ୍ଚ ଚରିତ୍ର ଓ ନାଟ୍ୟ ସମାଲୋଚକ ଗୋଟିଏ ଚତୁର୍ଭୁଜରେ ଥାଇ ପରସ୍ପରକୁ ଅନୁଭବ କରିବେ ଏବଂ ଚତୁର୍ଭୁଜର କେନ୍ଦ୍ର ବିନ୍ଦୁରେ ଥିବା ସମାଜପ୍ରତି ତାଙ୍କ ଦାୟିତ୍ୱ ନିର୍ବାହ ସ୍ପଷ୍ଟ ହୋଇଯିବ।

## ଏକ

'ଫ୍ରଣ୍ଟ ଲାଇନ୍ ଓ ଅନ୍ୟାନ୍ୟ ନାଟକ'ରେ ସଂକଳିତ ହୋଇଛି 'ଫ୍ରଣ୍ଟ ଲାଇନ୍', ଅଭିମାନ, ରେବତୀ, ଚିଠି, ଶହ କୋଡ଼ିଏ, ଥରେ ଗୋଡ଼ ଖସିଗଲେ, ଏବଂ କାଳିଦାସ କଥା । କାହାଣୀ ବିନ୍ୟାସ ଦୃଷ୍ଟିରୁ ପ୍ରତ୍ୟେକ ପରସ୍ପର ଠାରୁ ଭିନ୍ନ । ଚରିତ୍ରଗୁଡ଼ିକବି ପୂରାପୂରି ଅଲଗା; ସଂଳାପ ଭିନ୍ନ କିନ୍ତୁ ବକ୍ତବ୍ୟରେ ରହିଛି ବ୍ୟକ୍ତି ଜୀବନର ଖଣ୍ଡିତାଂଶର ଚିତ୍ର । କଥାବସ୍ତୁର ଚମତ୍କାରିତା ଓ ନୂତନତ୍ୱର ଭାବ ଦର୍ଶକକୁ ବାନ୍ଧି ରଖିବାର ଦୃଢ଼ତା ପ୍ରଦର୍ଶନ କରିଛି।

### (କ) ଫ୍ରଣ୍ଟ ଲାଇନ୍ (୨୦୦୨):

ଫ୍ରଣ୍ଟ ଲାଇନ୍ ଏକାଙ୍କିକା ଏକ ଭିନ୍ନ ସ୍ୱାଦର ପୃଷ୍ଠଭୂମିରେ ରଚିତ। ସମୁଦାୟ ପାଞ୍ଚଟି ଚରିତ୍ରକୁ ନେଇ ଗତିଶୀଳ ଏହାର କାହାଣୀ। ଯାହାର କେନ୍ଦ୍ର ବିନ୍ଦୁରେ ରହିଛି ଜଣେ ଦରଦୀ ସାହିତ୍ୟିକ ବଂଶୀଧରଙ୍କ କଥା। ଓଡ଼ିଆ ସାହିତ୍ୟ ସମାଜର କାର୍ଯ୍ୟାଳୟରେ ସ୍ଥାନିତ ହୋଇଛି ବିଭିନ୍ନ ସାହିତ୍ୟିକଙ୍କ ଫଟୋ । ସମୟ କ୍ରମେ ନୂଆ ସାହିତ୍ୟିକଙ୍କ ଫଟୋ ଆସୁଛି ଆଉ ସେମାନେ ପୁରୁଣା ସାହିତ୍ୟିକଙ୍କ ସ୍ଥାନ ଅକ୍ତିଆର କରୁଛନ୍ତି ଏବଂ ପୁରୁଣା ସାହିତ୍ୟିକଙ୍କ ଫଟୋ ଉପରଧାଡ଼ିକୁ ଯାଉଛି। କିନ୍ତୁ ସାହିତ୍ୟ ମାଫିଆ ମୋଟା ଅଙ୍କର ଟଙ୍କା ବଦଳରେ ଫ୍ରଣ୍ଟ ଲାଇନ୍‌ରେ ନିଜ ଆତ୍ମୀୟଙ୍କ ଫଟୋ ସ୍ଥାନିତ କରିପାରୁଛନ୍ତି। କବି ବଂଶୀଧରଙ୍କ ସ୍ୱପ୍ନ ତାଙ୍କ ମୃତ୍ୟୁପରେ ତାଙ୍କ ଫଟୋ ଫ୍ରଣ୍ଟ ଲାଇନ୍‌ରେ ସ୍ଥାନ ପାଇବ। କିନ୍ତୁ ପ୍ରତିଭା ପୂଜାରେ ବିମୁଖ ଉତ୍ତର ପୀଢ଼ି ଯେ ତାଙ୍କୁ ସେଠାରେ ସ୍ଥାନିତ କରିବ ନାହିଁ ଏହା ଜାଣି ବଂଶୀଧର ନିଜର ଫଟୋ ଓ କିଛି ଟଙ୍କା ଏକ ଟ୍ରଙ୍କ ଭିତରେ ରଖି ମୃତ୍ୟୁପରେ

ନାତି ବୁଲୁକୁ ତାହା ଖୋଲିବାକୁ କହିଛନ୍ତି । ଜେଜେଙ୍କ ମୃତ୍ୟୁପରେ ନାତି ବୁଲୁ ଟ୍ରଙ୍କ ଖୋଲିଛି ଏବଂ ସାହିତ୍ୟ ସମାଜର କେୟାରଟେକର ଦାମକୁ ତାହା ପ୍ରଦାନ କରିଛି। ଏକାଙ୍କିକାର ଶେଷ ଦୃଶ୍ୟ କରୁଣାତ୍ମକ ମନେ ହେଉଥିଲେ ବିଭଣ୍ଡ ସାହିତ୍ୟିକଙ୍କ ପ୍ରତି ଶାଣିତ ମନ୍ତବ୍ୟ ରହିଛି ପ୍ରରମ୍ଭରେ। ଅର୍ଥଲିପ୍ସୁ ସମାଜରେ ସମ୍ମାନ ଯେ କିଣାଯାଇପାରେ ତାହା 'ଷ୍ଟଲାଇନ୍ ଏକାଙ୍କିକାର ବକ୍ତବ୍ୟ। ତେବେ ଦୁଇପିଢ଼ି ଭିତରେ ଥିବା ତାରତମ୍ୟକୁ ଅତି ସୁନ୍ଦର ଭାବରେ ଏଠାରେ ଉପସ୍ଥାପିତ କରାଯାଇଛି। ଯେଉଁଠି ବଂଶୀଧର-ଅତୀତ, ବଂଶୀଧରଙ୍କ ପୁତ୍ର ଦେବକାନ୍ତ-ବର୍ତ୍ତମାନ ଏବଂ ବଂଶୀଧରଙ୍କ ନାତି ତଥା ଦେବକାନ୍ତଙ୍କ ପୁଅ ବୁଲୁ ଭବିଷ୍ୟତକୁ ପ୍ରତିନିଧିତ୍ୱ କରୁଛନ୍ତି । ଯେଉଁଠି ବୁଲୁର ଅନୁଭବ ଅଣନିଃଶ୍ୱାସୀ ହୋଇ ଦଉଡ଼ିବାରେ ବି ଗୋଟାଏ ପ୍ରକାର ଆନନ୍ଦ ଥାଏ । 'ବିଚିତ୍ର ପାଗଳାମି ! ଗୋଟାଏ ପ୍ରକାର କ୍ରେଜ୍' (ପୃ:୧୬)। ପ୍ରକୃତରେ କାହାଣୀ, ଚରିତ୍ର ଓ ସଂଳାପ ଦୃଷ୍ଟିରୁ ଏହା ଏକ ଉଚ୍ଚକୋଟୀର ଏକାଙ୍କିକା।

## (ଖ) ଅଭିମାନ (୨୦୦୬):

ନାଟ୍ୟକାର ନନ୍ଦିକେଶ୍ୱର ସହିଦ୍ ଲକ୍ଷ୍ମଣ ନାୟକଙ୍କୁ ନେଇ ନାଟକଟିଏ ରଚନା କରିବାକୁ ଚାହାନ୍ତି । ସେଇଥିପାଇଁ ସେ ଇତିହାସର ପ୍ରଫେସର୍, ହୋମ୍ ଡିପାର୍ଟମେଣ୍ଟର କର୍ମକର୍ତ୍ତା, ଲକ୍ଷ୍ମଣ ନାୟକଙ୍କ ଜୀବନୀ ଲେଖକ ପୁଣ୍ଡରିକ ମିଶ୍ର, ବ୍ରହ୍ମପୁର ଜେଲ୍‌ର ଜେଲରଙ୍କୁ ସାକ୍ଷାତ କରିବା ସହିତ ଶେଷରେ ଲକ୍ଷ୍ମଣ ନାୟକଙ୍କ ଗାଁ ତେନ୍ତୁଳିଗୁମ୍ମାରେ ପହଞ୍ଚିଛନ୍ତି । ନନ୍ଦିକେଶ୍ୱରଙ୍କ ଅନୁଭବ ହୋଇଛି ଲକ୍ଷ୍ମଣ ନାୟକଙ୍କ ନାଁରେ ଯାହା ଚାଲିଛି ତାହା କୁମ୍ଭୀର କାନ୍ଦଣା । ସମସ୍ତେ କେବଳ ଲକ୍ଷ୍ମଣ ନାୟକ ନାଁରେ ନିଜର ଡିଣ୍ଡିମ ପିଟିବାକୁ ଚାହାନ୍ତି । ତାଙ୍କ ଜନ୍ମଦିନ ଆସିଲେ ନେତା, ଅଫିସର୍ ବ୍ୟସ୍ତ ହୁଅନ୍ତି ଆଉ ପ୍ରତିମୂର୍ତ୍ତିରେ ଫୁଲମାଳ ପଡ଼େ। ସତ କହିବାକୁ ଗଲେ ଲକ୍ଷ୍ମଣ ନାୟକଙ୍କ ପ୍ରତି ଏ ଜାତିର ଆନ୍ତରିକ ଶ୍ରଦ୍ଧା ନାହିଁ । ଶେଷରେ ସତ୍ୟସନ୍ଧିତ୍ସୁ ନନ୍ଦିକେଶର 'ଅଭିମାନ' ନାମରେ ନାଟକଟି ରଚନା କରି ଗଣତନ୍ତ୍ରର ପ୍ରେକ୍ଷାପଟରେ ଥିବା ଘଟଣାକୁ ଦର୍ଶକଙ୍କୁ ଜଣାଇଛନ୍ତି । ମିଥ୍ୟା ପ୍ରବଞ୍ଚନା ଭିତରେ ବୁଡ଼ି ରହିଥିବା ସ୍ୱାଧୀନୋତର ସମାଜକୁ ଦେଖି ନନ୍ଦିକେଶର କହିଛନ୍ତି- 'ସେଇ ତ ଏ ଦେଶର ଦୁର୍ଭାଗ୍ୟ । ଯେଉଁଠି ବର୍ତ୍ତମାନ ଦ୍ୱିଧାଗ୍ରସ୍ତ ଆଉ ଭବିଷ୍ୟତ...ସେତ ଲକ୍ଷ୍ୟହୀନ ହେବାକୁ ବାଧ୍ୟ' (ପୃ.୩୭)।

ସମୁଦାୟ ସାତୋଟି ଦୃଶ୍ୟ ଓ ଆଠଟି ଚରିତ୍ରକୁ ନେଇ ଗତିଶୀଳ ଏହି ଏକାଙ୍କିକାର ବିଶେଷତ୍ୱ ହେଉଛି ଦର୍ଶକମାନଙ୍କୁ ଇତିହାସମନସ୍କ କରିବା । ସେଥିପାଇଁ ନାଟ୍ୟକାର ଲକ୍ଷ୍ମଣ ନାୟକଙ୍କ ପରି ଐତିହାସିକ ଚରିତ୍ରକୁ ନାୟକ ଭାବରେ ପ୍ରତିଷ୍ଠା ଦେଇଛନ୍ତି ଏବଂ

ଦୃଶ୍ୟର ଗୁରୁତ୍ୱ ବଢାଇବାପାଇଁ ଅନ୍ତରାଳରୁ ମଧୁସୂଦନ ଦାସଙ୍କ ଦେଶପ୍ରେମର କବିତା ଭାସି ଆସୁଛି ପ୍ରକୃତରେ 'ଅଭିମାନ' ଏକାଙ୍କିକାଟି ବ୍ୟଙ୍ଗ ଓ ବାସ୍ତବତାର ଅଦ୍ଭୁତ ମିଶ୍ରଣ।

## (ଗ) ରେବତୀ (୨୦୦୫):

'ରେବତୀ' ଏକାଙ୍କିକାଟି ସାମାଜିକ ବାସ୍ତବତା ଆଧାରିତ ଏକ ବାର୍ତ୍ତାଧର୍ମୀ ଏକାଙ୍କିକା । ଯେଉଁଥିରେ ମହିଳା ସଶକ୍ତିକରଣ କଥା କହିବା ପାଇଁ ନାଟ୍ୟକାର ଅଙ୍ଗୀକାରବଦ୍ଧ । ସମାଜରେ ମହିଳାଙ୍କ ପ୍ରତି ହେଉଥିବା ଶୋଷଣ ଏବଂ ତାହାର ପ୍ରତିବାଦ ପୁଣି ନାରୀଟିଏ ସ୍ୱୟଂସହାୟକ ଗୋଷ୍ଠୀ ଗଢି ନିଜକୁ ପ୍ରତିଷ୍ଠା କରିବାର ଘଟଣାରେ ରେବତୀ ପରି ଚରିତ୍ରମାନଙ୍କର ସଫଳତାର କାହାଣୀ ବର୍ଣ୍ଣିତ।

ସ୍ୱାମୀ ପ୍ରତ୍ୟାଖ୍ୟାତା 'ରେବତୀ' ସ୍ୱୟଂସହାୟକ ଗୋଷ୍ଠୀଟିଏ ଗଢି ଜିଲ୍ଲା ତଥା ଦେଶର ସୁନାମ ଅର୍ଜନ କରିଛି। ତାହାର ଏହି ସଫଳତାରେ ମହିଳା ଜିଲ୍ଲାପାଳ ଉଷାଦେବୀ ତାକୁ ସମ୍ମାନୀତ କଲାବେଳେ ଅନାମ, ନଟବର, ପରି ରାଜନୈତିକ ନେତୃବୃନ୍ଦ ସ୍ୱୟଂସହାୟକ ଗୋଷ୍ଠୀ ଉପଦେଷ୍ଟା ପଦ ଗ୍ରହଣ କରି ଫାଇଦା ପାଇବାକୁ ଚାହିଁଛନ୍ତି। ଦୃଢମନା ରେବତୀର ସଫଳତା ନାରୀମାନଙ୍କପାଇଁ ଉଦାହରଣ ପାଲଟିଛି। ଏକାଙ୍କିକାର ପ୍ରାରମ୍ଭରେ ଏବଂ ଶେଷରେ ଚକୁଳିଆ ପଣ୍ଡା ଗୀତ ଓ ଯୋଗୀଗୀତର ପ୍ରୟୋଗକରି ନାଟ୍ୟକାର ଶ୍ରୀଯୁକ୍ତ ସାହୁ ଆଧୁନିକତାକୁ ଲୋକପରଂପରା ସହିତ ଯୋଡ଼ି ଦେଇଛନ୍ତି। ଏହି ଏକାଙ୍କିକାଟି ବାର୍ତ୍ତାଧର୍ମୀ ହୋଇଥିବାରୁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରେ ଏହା ଅଭିନୀତ ହେବା ସମାର୍ଥ୍ୟ ରଖେ। ଯେଉଁଠି ଚକୁଳିଆ ପଣ୍ଡା କହୁଛି-'ଆମକୁ ଏହି ନାରୀଜାଗରଣର ବାର୍ତ୍ତା ଗାଁ ଗାଁ ବୁଲି ପ୍ରଚାର କରିବାକୁ ହେବ' (ପୃ.୬୮)

## (ଘ) ଚିଠି (୨୦୦୧):

'ଚିଠି' ଏକାଙ୍କିକା କେଶବ ପଟ୍ଟନାୟକଙ୍କ ପରିବାରର ଘଟଣା ଉପରେ ରଚିତ। ଯେଉଁଠି ତିନିପୁଅ ଓ ତିନି ବୋହୂର ସଂସାର ଏବଂ ପରିବାର ଭିତରେ ରହୁଥିବା ପାଳିତ ପୁତ୍ର ରାଜୁ, ମାତା ଇରାବତୀଙ୍କ ପାଖକୁ ଆସୁଥିବା ଚିଠି ଲେଖି ପରିବାର ଯୋଡ଼ିବାର ସ୍ୱପ୍ନକୁ ସାକାର କରେ। ବାପା ଫେରିବାର ସମୟକୁ ପ୍ରତୀକ୍ଷା କରି ଏବଂ ଚିଠି ବର୍ଣ୍ଣିତ ନିର୍ଦ୍ଦେଶକୁ ପାଳନ କରି ପୁଅମାନେ ବାଟଚାଲନ୍ତି । ତେବେ ତାଙ୍କ ଘରେ ଥିବା ଏକ ସୁବର୍ଣ୍ଣ ସରସ୍ୱତୀ ମୂର୍ତ୍ତିକୁ ବିକି କେଶବଙ୍କ ପୁଅମାନେ ଭାଗକରି ଟଙ୍କା ନେବାକୁ ଚାହିଁଛନ୍ତି। ଏହି ସମୟରେ କେଶବଙ୍କ ଚିଠି ଆସିଛି ସୁନା ମୂର୍ତ୍ତିକୁ ଗାଁ ମନ୍ଦିରକୁ ଦେବାପାଇଁ। ପୁଅମାନଙ୍କ ଭିତରେ ସମସ୍ତ ସମ୍ପତ୍ତି ସମାନ ଭାବରେ ବଣ୍ଟା ହେବା ପାଇଁ ଚିଠିରେ ଉଲ୍ଲେଖ ଅଛି, ଯଦି ସର୍ତ୍ତ ଖିଲାପ ହୁଏ ତା'ହେଲେ ସବୁ ସମ୍ପତ୍ତି ର ମାଲିକ ହେବ ରାଜୁ।

ଏକାଙ୍କିକା ଶେଷକୁ ନାଟକୀୟ ଉତ୍କଣ୍ଠା ପ୍ରକାଶ ପାଇଛି। ରାଜୁ ଜାଣି ପାରିଛି ଘରକୁ କେଶବଙ୍କ ନାମରେ ଯେତେ ଚିଠି ଆସୁଥିଲା ସବୁ ଲେଖିଛନ୍ତି ଇରାବତୀ। ଇରାବତୀ ସବୁ ମାନିଛନ୍ତି ଏବଂ କହିଛନ୍ତି ଏହି ମିଛ ଚିଠିଗୁଡ଼ାକ ମୋ ପରିବାରକୁ ଯୋଡ଼ି ରଖିଛି ଆଉ ସାହାରା ଦେଇ ଆସିଛି କାରଣ କେଶବଙ୍କ ଦେହାନ୍ତ ତିରିଶ ବର୍ଷ ତଳେ ଘଟିଛି । ଇରାବତୀ ରାଜୁଠାରୁ ପ୍ରତିଜ୍ଞା କରାଇ ନେଇଛନ୍ତି ଚିଠି ବିଷୟରେ ଗୋପନ ରଖିବାକୁ ଏବଂ ରାତି ପାହିଲା ବେଳକୁ ଇରାବତୀଙ୍କ ମୃତ୍ୟୁ ଘଟିଛି।

ଘଟଣାବିନ୍ୟାସ ଦୃଷ୍ଟିରୁ ଏକାଙ୍କିକାଟି ଅତ୍ୟନ୍ତ ଉତ୍କଣ୍ଠାପୂର୍ଣ୍ଣ । ଚରିତ୍ରମାନଙ୍କର ମାନସିକ ଦ୍ୱନ୍ଦ୍ୱ ମଧ୍ୟ ଅତ୍ୟନ୍ତ ନିପୁଣ ସହକାରେ ନାଟ୍ୟକାର 'ଚିଠି' ମାଧ୍ୟମରେ ଦେଖାଇଛନ୍ତି। ରାଜୁ ଏବଂ ଇରାବତୀ ପରି ଆଦର୍ଶବାଦୀ ଚରିତ୍ରକୁ ପ୍ରତିଷ୍ଠା ଦେବା ସହିତ ସାମାଜିକ ପୃଷ୍ଠଭୂମି ଆଧାରିତ ଏହି ଏକାଙ୍କିକାକୁ ସେ ସାର୍ଥକ ଏକାଙ୍କିକାରେ ପରିଣତ କରିଛନ୍ତି। ନିଜ ସନ୍ତାନମାନଙ୍କ ଭିତରେ ବଢ଼ୁଥିବା ସ୍ୱାର୍ଥପରତା ସଂପର୍କରେ ବୋଉ ଇରାବତୀଙ୍କ ମନ୍ତବ୍ୟ ଏହିପରି-'ତୋ ଉପରେ ସିନା ଭରସା ଅଛି । ହେଲେ ସେ ତିନିଟାଙ୍କ ଉପରେ କି ତାଙ୍କ ସ୍ତ୍ରୀମାନଙ୍କ ଉପରେ ସେତିକି ବିଶ୍ୱାସ ମୋର ନାହିଁ । ସେ ଚିଠିଗୁଡ଼ାକ ଆଜି ପର୍ଯ୍ୟନ୍ତ ମୋତେ ବଂଚେଇ ଆସିଛି। ସାହାରା ଦେଇ ଆସିଛି।' (ପୃ.୮୮)ସଂଳାପ ଓ ଚରିତ୍ର ଚିତ୍ରଣ ଦୃଷ୍ଟିରୁ ଏହା ଅତ୍ୟନ୍ତ ଉଚ୍ଚକୋଟୀର।

## (ଙ) ନ'ଶହ କୋଡ଼ିଏ :

ନ'ଶହ କୋଡ଼ିଏ ଶୀର୍ଷକଟି ଏକାଙ୍କିକାର ପ୍ରାରମ୍ଭରୁ ଦର୍ଶକ ଭିତରେ ଉତ୍କଣ୍ଠା ନେଇଆସେ। ଜଣେ ସଚ୍ଚୋଟ ପ୍ରଶାସକ କିପରି ସମୟ ପ୍ରଭାବରେ ଦୁର୍ନୀତିଗ୍ରସ୍ତ ହୋଇଛି ତାହା ଏହି ଏକାଙ୍କିକାର ବିଷୟବସ୍ତୁ। ଗଦା, ସୁମିତ୍, ମଧୁମିତା, କୈଳାସ ଓ ପଟେଲ ଚରିତ୍ରକୁ ନେଇ ସଂକ୍ଷିପ୍ତ ଏହି ଏକାଙ୍କିକା । କୈଳାସ ରାୟ ଛାତ୍ରାବସ୍ଥାରେ ଅତ୍ୟନ୍ତ ସଚ୍ଚୋଟ, ଯାହାର ସ୍ୱପ୍ନ ଥିଲା ଅଧ୍ୟାପକ ଚାକିରୀ କରିବ । କିନ୍ତୁ ବନ୍ଧୁ ସୁମିତ ତାକୁ ପ୍ରଶାସକ ଚାକିରୀ ପାଇଁ ପ୍ରବର୍ତ୍ତାଇଛି ଆଉ କୈଳାସ ସଫଳ ହୋଇଛି। ଅନେକବର୍ଷ ପରେ ସୁମିତ ଆସିଛି କୈଳାସ ଘରକୁ ଆଉ ଜାଣିଛି ସେ ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ। କୈଳାସ କେଉଁ ପରିସ୍ଥିତିରେ ମନ୍ତ୍ରୀଙ୍କ ସେବା କରିବାକୁ ଯାଇ ଉପର ଅଫିସରଙ୍କ ପ୍ରରୋଚନାରେ ଚାନ୍ଦା ଉଠାଇଛି ଆଉ ବଳକା ନ'ଶହ କୋଡ଼ିଏଟଙ୍କା ଫେରାଇବାକୁ ଯାଇ ଶୁଣିଛି 'ଏ ଲାଇନ୍‌ରେ ରହିଲେ ମୁଣ୍ଡରେ କିଛି ବୁଦ୍ଧିଥିବା ଦରକାର । ହଁ, ଶୁଣ ସେ ୯୨୦ ହେଲା ତମର ପ୍ରଥମ ପାଉଣା । ଯାଅ, ସ୍ତ୍ରୀ ପାଇଁ ଗୋଟାଏ ଭଲ ଶାଢି କିଣି ନେଇଯିବ। ଏହିଠାରୁ ଦୁର୍ନୀତିରେ ବୁଡ଼ିଛି କୈଳାସ । ସୁମିତକୁ କହିଛି ତା'ର ଅନୁଭବ-"ମଣିଷ

ଯେତିକି ଉପରକୁ ଉଠିବ, ସେତିକି ଯନ୍ତ୍ରଣା ବଢ଼ିବ, ନେତା, ମନ୍ତ୍ରୀ ସମସ୍ତଙ୍କୁ ଖୁସି କରିବାକୁ ପଡ଼ିବ।" (ପୃ:୯୭)

## (ଚ) ଥରେ ଗୋଡ଼ ଖସିଗଲେ (୨୦୦୩):

ଏଡ଼ସ୍ ସଚେତନତାର ବାର୍ତ୍ତା ପ୍ରଚାର ଉଦ୍ଦେଶ୍ୟରେ ଲିଖିତ ଏକାଙ୍କିକା ହେଉଛି 'ଥରେ ଗୋଡ଼ ଖସିଗଲେ' । କେଉଁ କେଉଁ କାରଣ ପାଇଁ ଏଡ଼ସ୍ ହୁଏ ଏବଂ ସେଥିରୁ ଦୂରେଇ ରହିବାର ମାଧ୍ୟମ ସଂପର୍କରେ ଦର୍ଶକଙ୍କୁ ସଚେତନ କରିବା ପାଇଁ ଏହି ଏକାଙ୍କିକା ରଚିତ। ବିଶେଷ କରି ଯୁବଶକ୍ତି ପାଇଁ ଏଥିରେ ଅନେକ ବାର୍ତ୍ତା ରହିଛି । ରେଡ଼୍‌କ୍ରସ୍ ଦିବସ ଉପଲକ୍ଷେ ପ୍ରସ୍ତୁତ ଏକାଙ୍କିକାଟିରେ ପ୍ରାରମ୍ଭରେ ଯମଦୂତ ଓ ଚିତ୍ରଗୁପ୍ତଙ୍କର କଥୋପକଥନରୁ ଏଡ଼୍‌ସ ସଂପର୍କରେ ଜାଣିବାର ଆଗ୍ରହ ପ୍ରକାଶ ପାଇଛି । ସ୍ୱୟଂ ଚିତ୍ରଗୁପ୍ତ ତଥ୍ୟ ସଂଗ୍ରହ ପାଇଁ ଧରାବତରଣ କରିଛନ୍ତି। ତିନିମାସ ପରେ ସମସ୍ତ ତଥ୍ୟ ସଂଗ୍ରହ କରି ଯମଲୋକକୁ ଫେରିଛନ୍ତି ଚିତ୍ରଗୁପ୍ତ। ଏଡ଼୍‌ସର କାରଣ ଓ ନିରାକରଣ ପରେ ଯମରାଜ ଜଗତବାସୀଙ୍କ ପାଇଁ ବାର୍ତ୍ତା ଦେଇଛନ୍ତି- 'ଏଡ଼୍‌ସକୁ ଘୃଣାକର, ହେଲେ ଏଡ଼ସ୍ ରୋଗୀକୁ ନୁହେଁ।'

ସ୍ୱଳ୍ପ ସମୟର ଅବଧି ଭିତରେ ଏକାଙ୍କିକାଟି ଏଡ଼୍‌ସ୍‌ର ବିଭିନ୍ନ ଦିଗକୁ ଦର୍ଶାଇ ପାରିଛି । ଏହା ଏକ ବାର୍ତ୍ତାଧର୍ମୀ ଏକାଙ୍କିକା ହୋଇଥିବାରୁ ଅତ୍ୟନ୍ତ ଶିକ୍ଷଣୀୟ, ମାତ୍ର ଦ୍ୱନ୍ଦ୍ୱ ଏବଂ ଉତ୍କଣ୍ଠା ନଥିବା ଯୋଗୁ ଏହା ଦର୍ଶକକୁ ବାନ୍ଧି ରଖିବାର ସାମର୍ଥ୍ୟ ରଖେନାହିଁ।

## (ଛ) କାଳିଦାସ କଥା (୨୦୦୦):

'କାଳିଦାସ କଥା' ଯଦିଓ ମିଥ୍‌ଧର୍ମୀ ଏକାଙ୍କିକା ନୁହେଁ ତଥାପି କବି ହେବା ପୂର୍ବରୁ କାଳିଦାସର ଭୋଳାପଣକୁ ଏହି ଏକାଙ୍କିକାରେ ଗ୍ରହଣ କରିଛନ୍ତି ନାଟ୍ୟକାର । ଏଥିରେ ରହିଛି କଥାର ଜଟିଳତା ଆଉ ତାହା ଅତ୍ୟନ୍ତ ଉତ୍କଣ୍ଠାପୂର୍ଣ୍ଣ ମନେ ହୋଇଛି ଶେଷ ପର୍ଯ୍ୟନ୍ତ। ନେତ୍ରାନନ୍ଦଙ୍କ ପରିବାରର ଚାକର କାଳୁ ଅତ୍ୟନ୍ତ ବୋକା । ଯେଉଁଥି ପାଇଁ ନେତ୍ରାନନ୍ଦଙ୍କ ପତ୍ନୀ ମନ୍ଦାକିନୀଠାରୁ ଆରମ୍ଭକରି ତାଙ୍କ ପୁଅ ବିକ୍ରମ, କନ୍ୟା ବେବି ପର୍ଯ୍ୟନ୍ତ ସମସ୍ତେ ତା'ର ଫାଇଦା ନେଇଛନ୍ତି।

ଦିନେ ନେତ୍ରାନନ୍ଦଙ୍କ ଅଫିସ୍‌କୁ ଚୌଧୁରୀବାବୁ ନାମକ ବ୍ୟକ୍ତି ଆସି ତାଙ୍କର ସମସ୍ତ ସମ୍ପତ୍ତି କାଳୁ ନାମରେ ରେଜେଷ୍ଟ୍ରି କରିବାକୁ ଚାହିଁଛନ୍ତି। ନେତ୍ରାନନ୍ଦ ଆଶ୍ଚର୍ଯ୍ୟ ହୋଇ ପଡ଼ିଛି- 'ସାର୍ ବୋକା ଲୋକଟାକୁ ଏତେ ସମ୍ପତ୍ତି ଦେଇଦେବେ ।' ଚୌଧୁରୀ ବାବୁ କାଳୁର ସଚ୍ଚୋଟତା କଥା ବଖାଣିଛନ୍ତି । ଏହି ଘଟଣା ପରେ ନେତ୍ରାନନ୍ଦଙ୍କ ଘରେ କାଳୁ ପ୍ରତି ସମସ୍ତଙ୍କର ଅନୁକମ୍ପା ଆସିଛି, ସମସ୍ତେ ତା'ରି ସେବାରେ ଲାଗିଛନ୍ତି । କାହାଣୀ

ଆଗକୁ ଗଡୁଥିଲା ବେଳେ ବିକ୍ରମ ଆସି ଖବର ଦେଇଛି ଚୌଧୁରୀ ବାବୁଙ୍କର ଦେହାନ୍ତ ହେଇଛି ଆଉ କାଲୁ କୌଣସି ସମ୍ପତ୍ତି ପାଇ ପାରିବନାହିଁ । ସମସ୍ତେ ମିଶି କଲୁ ଉପରେ ଅତ୍ୟାଚାର କରୁଥିଲା ବେଳେ ଚୌଧୁରୀବାବୁ ଆସିଛନ୍ତି କାଲୁକୁ ନିଜ ଘରକୁ ନେବାପାଇଁ।

ନେତ୍ରାନନ୍ଦଙ୍କ ପରିବାର ଲୋକେ ବିସ୍ମିତ ହୋଇଛନ୍ତି ଚୌଧୁରୀଙ୍କୁ ଦେଖି। ବିକ୍ରମ ପଚାରିଛି, ସକାଳେ ତାଙ୍କ ଘରୁ ଯେଉଁ ଶବ ଯାଉଥିଲା ଆଉ ଲୋକେ ଧ୍ୱନି ଦେଉଥିଲେ 'ଚୌଧୁରୀ ବାବୁ ଅମର ରହେ'।

ଚୌଧୁରୀ ବାବୁ ତାଙ୍କ ବାପାଙ୍କ ଦେହାନ୍ତ କଥା କହିଛନ୍ତି ଏବଂ କାଲୁକୁ କହିଛନ୍ତି କାଳି ଦାସ !ଏବେ ତମେ ନିଜ ଘରକୁ ଚାଲ । ଏକାଙ୍କିକାଟିର ପରିସମାପ୍ତି ଘଟୁଛି ଆଶ୍ଚର୍ଯ୍ୟଜନକ ଭାବରେ । ନାଟ୍ୟକାର ଏକାଙ୍କିକାକୁ ଆହୁରି ମଜାଦାର କରିବା ପାଇଁ ବେବି ଓ ତା'ର ପ୍ରେମିକ ପ୍ରସଙ୍ଗକୁ ଅତି ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି।

ବିଷୟ ଚୟନ, ପାତ୍ରୋଚିତ ସଂଳାପ, ନାଟକୀୟ ଉତ୍କଣ୍ଠା ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଦର୍ଶକଙ୍କୁ ବାନ୍ଧି ରଖିବାର ସାମର୍ଥ୍ୟ ରଖେ। ତେବେ ଏକାଙ୍କିକାର ମୂଳସ୍ୱର ମଣିଷ ପଣିଆକୁ ନେଇ ଯାହା ନାଟ୍ୟକାର ପ୍ରତିଷ୍ଠା କରିବାକୁ ଚାହାନ୍ତି । ମଣିଷର ସରଳ ଓ ନିରୀହପଣ ତାହାର ଅନ୍ଧକାରମୟ ଦିଗ ନୁହେଁ ବରଂ ଆଲୋକ ଦିଗରେ ଉଦ୍ଭାସିତ ହେଉଥିବା ବିବେକମୟତାର ଯାତ୍ରା, ଯାହା 'କାଳିଦାସ କଥା'କୁ ଅନେକ ସିଦ୍ଧି ଆଣି ଦେବାର ପଥରେ ଅଗ୍ରସର।

ଶେଷରେ କୁହାଯାଇପାରେ 'ଫ୍ରଣ୍ଟଲାଇନ୍ ଓ ଅନ୍ୟାନ୍ୟ ନାଟକ' ଏକ ସଫଳ ଏକାଙ୍କିକା ଗୁଚ୍ଛ ଯେଉଁଥିରେ ରହିଛି ନାଟ୍ୟକଳାର ବିବିଧ ଦିଗ। ପାତ୍ରମୁଖୀ ସଂଳାପ ସହିତ ଗ୍ରାମୀଣ ଭାଷାର ଅପୂର୍ବ ସମନ୍ୱୟ, କାହାଣୀର ବିବିଧତା, ବ୍ୟଙ୍ଗ ଗଠନ ମୂଳକ ପ୍ରୟୋଗ ଓ ଜୀବନର ଖଣ୍ଡିତାଂଶକୁ ନାଟ୍ୟବାତାବରଣରେ ସଜୀବ କରିବାର ପ୍ରବଣତାହିଁ ଏହାର ସଫଳତାର ଚାବିକାଠି।

## ଦୁଇ

'ଏମିତି ବି ହୁଏ ଓ ଅନ୍ୟାନ୍ୟ ନାଟକ'ରେ ସଂକଳିତ ହୋଇଛି 'ଏମିତି ବି ହୁଏ', 'ବାଘିତୋଟାର ସନ୍ଥ', 'ଶହୀଦ କୃତ୍ତିବାସ', 'ଛୋଟକଥା', 'ଦାୟୀ କିଏ ?' 'ବାର୍ତ୍ତା', 'ଦରଜା ଖୋଲିଦେବା ଓ ସେମାନଙ୍କ ଦୁନିଆଁ' ପରି ସମୁଦାୟ ଆଠଟି ଏକାଙ୍କିକା । ଏହିସବୁ ଏକାଙ୍କିକା ଗୁଡ଼ିକରୁ ଅର୍ଦ୍ଧାଧିକ ବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନିତ, ଯେଉଁଥିରେ ଶିଶୁ ଓ କୈଶୋର ମନୋବୃତ୍ତି ଉପରେ ଶିକ୍ଷଣୀୟ ଓ ରାଷ୍ଟ୍ରଗଠନର ଭାବାବେଗକୁ ସ୍ଥାନିତ କରିବାରେ ପ୍ରୟାସ କରାଯାଇଛି। ଐତିହାସିକ ଓ ସାମଜିକ ପୃଷ୍ଠଭୂମିରେ ରଚିତ ଏକାଙ୍କିକା

ସହିତ କିଛି ସାମାଜିକ ସମସ୍ୟା ବିଜଡ଼ିତ ଏକାଙ୍କିକା ଏହି ସଂକଳନକୁ ଏକ ଶିକ୍ଷଣୀୟ ଏକାଙ୍କିକା ଗ୍ରନ୍ଥରେ ପରିଣତ କରିବାର ସାମର୍ଥ୍ୟ ରଖିଛି ଯାହା ନାଟ୍ୟକାର ନାରାୟଣ ସାହୁଙ୍କ ବିବିଧ ଦୃଷ୍ଟିର ପରିଚୟ ପ୍ରଦାନ କରେ।

## ୧. ଏମିତିବି ହୁଏ (୨୦୦୦):

'ଏମିତି ବି ହୁଏ' ଏକାଙ୍କିକା ଏକ ରାଜନୈତିକ ବ୍ୟଙ୍ଗ ଉପରେ ଆଧାରିତ ଏକାଙ୍କିକା । ଏଥିରେ ଅଛି ସାହିତ୍ୟର ରାଜନୀତି ଦୁର୍ନୀତିର ରାଜନୀତି, ବିଜ୍ଞାନର ରାଜନୀତି ପରି ପ୍ରତିଟି ଘଟଣାର ରାଜନୀତି। ଯେଉଁଠି ରସିକ ଶେଖର, ରସରାଜ, ରସଗ୍ରୀବ, ରସପଂଚକ, ରସିକ ଚୂଡ଼ାମଣି ଓ ରସିକାନନ୍ଦ ପରି ଚରିତ୍ରମାନେ ସାମାଜିକ ପୃଷ୍ଠଭୂମିରେ ଥିବା ଦୋଷ ଦୁର୍ବଳତାକୁ ଦେଖାଇଛନ୍ତି। ରାତାରାତି ଡକ୍ଟରେଟ୍ ପାଉଥିବା ଲୋକଙ୍କ ପ୍ରତି ତୀର୍ଯ୍ୟକ୍ ଦୃଷ୍ଟିରେ ରସଗ୍ରୀବ କହୁଛି:- 'ସାହିତ୍ୟ ରାଜ୍ୟରେ ଯେଉଁମାନେ ରାତାରାତି ପିଏଚ୍‌ଡ଼ି ଦରକାର କରନ୍ତି, ସେମାନେ ସମସ୍ତେ ମୋ ପାଖକୁ ଆସନ୍ତି । ମାତ୍ର ପନ୍ଦର ହଜାର ଟଙ୍କା ବିନିମୟରେ ଆପଣମାନେ ନେଇପାରନ୍ତି ନିଜ ମନମୁତାବକ ପିଏଚ୍‌ଡ଼ି (ପୃ:୧୩)। ସେହିପରି ରସିକ ଚୂଡ଼ାମଣି ଦୁର୍ନୀତିର ମୂଳଉତ୍ସ ବିଷୟରେ ବ୍ୟାଖ୍ୟା କରିଛି:-'ବଥର ଜୀବାଣୁମାନେ ଗୋଟିଏ ମଣିଷ ପାଖରୁ ଆଉ ଗୋଟିଏ ମଣିଷ ପାଖକୁ ବ୍ୟାପ୍ତିଥାନ୍ତି । ଏହି ଜୀବାଣୁମାନେ ହେଉଛନ୍ତି ଦୁର୍ନୀତିର ମଞ୍ଜି'। (ପୃ:୧୯)। ଛଅଟି ଯାକ ଚରିତ୍ର ଦୈନନ୍ଦିନ ଜୀବନର ପ୍ରେକ୍ଷାପଟରେ ଘଟୁଥିବା ଘଟଣା ସଂପର୍କରେ ଦର୍ଶକମାନଙ୍କୁ ବଖାଣୁଥିବା ବେଳେ ଘୋଷଣା ହୋଇଛି ଯେ ସେମାନେ ସମସ୍ତେ ଜେଲ୍‌ରୁ ଫେରାର ହୋଇଥିବା କଏଦୀ। ପୁଲିସ୍ ହାଜତ୍‌କୁ ଯିବାପୂର୍ବରୁ ସେମାନେ ଦର୍ଶକମାନଙ୍କ ପାଖରେ କ୍ଷମା ମାଗି ବିଦାୟ ନେଇଛନ୍ତି।

ଉଭୟ ଚରିତ୍ର ଚିତ୍ରଣ ଓ କାହାଣୀ ପରିକଳ୍ପନା ଦୃଷ୍ଟିରୁ 'ଏମିତି ବି ହୁଏ' ଏକ ଭିନ୍ନ ସ୍ୱାଦ୍‌ର ଏକାଙ୍କିକା। ଯେଉଁଥିରେ ଅଛି ବ୍ୟଙ୍ଗ ମାଧ୍ୟମରେ ସମାଜକୁ ସଜାଡ଼ିବାର ମନ୍ତ୍ର ଏବଂ ଏକାଙ୍କିକାର ଚମକପ୍ରଦ ପରିଣତି ଏହାକୁ ଏକ ଭଲ ଏକାଙ୍କିକା ଭାବରେ ପ୍ରମାଣ କରିଛି।

## ୨. ବାଘିତୋଟାର ସନ୍ଥ (୨୦୦୫):

'ବାଘିତୋଟାର ସନ୍ଥ' ଏକ ଐତିହାସିକ ଏକାଙ୍କିକା ବିପ୍ଳବୀ ଜୟୀ ରାଜଗୁରୁଙ୍କ ଦେଶପ୍ରେମର ଗାଥାକୁ ଜନମାନସରେ ପହଞ୍ଚାଇବା ଯାହାର ଲକ୍ଷ୍ୟ । ଖୋର୍ଦ୍ଧା ଜିଲ୍ଲାର ବାଘିତୋଟାକୁ ପିକ୍‌ନିକ୍ କରି ଆସିଥିବା ଛାତ୍ରମାନଙ୍କୁ ବାଘିତୋଟାର ଐତିହ୍ୟ ସଂପର୍କରେ କହିଛନ୍ତି ଶିକ୍ଷକ । ଫ୍ଲାସବ୍ୟାକ୍ ଦୁଇଶହ ବର୍ଷତଳକୁ ନେଇଯାଇଛି ଦର୍ଶକଙ୍କୁ। ଯେଉଁଠି

ଓଡ଼ିଶାର ସ୍ୱାଭିମାନୀ ରାଜା ମୁକୁନ୍ଦ ଦେବଙ୍କ ମନ୍ତ୍ରୀ ରାଜଗୁରୁଙ୍କ ଦୃଢ ମନୋବଳ ଏବଂ ଇଂରେଜ ବିରୁଦ୍ଧରେ ଲଢିବାର ସାମର୍ଥ୍ୟ ରଖିଥିବା ପାଇକ ପୁଅର କଥାବର୍ଣ୍ଣିତ । କର୍ଣ୍ଣେଲ ହାଇକୋର୍ଟ ଏବଂ ଫ୍ଲେଚର୍ କୌଶଳ କରି ରାଜଗୁରୁଙ୍କୁ ବନ୍ଦୀ କରିଛନ୍ତି । ଶେଷରେ ରାଜଗୁରୁଙ୍କୁ ଫାଶୀ ଦିଆଯାଇଛି ।

ଏକାଙ୍କିକାର ସଫଳତା ବିଚାରକରି କୁହାଯାଇପାରେ ଏହା ଏକ ଶ୍ରେଣୀପାଠ୍ୟ ଉପଯୋଗୀ ଏକାଙ୍କିକା । ବିଶେଷକରି ସ୍ୱଳ୍ପସମୟର ଅବଧିରେ ଅଭିନୀତ ହେଉଥିବା ଏହି ଏକାଙ୍କିକାର ଚରିତ୍ର ଅଧିକ ଏବଂ ଦୃଶ୍ୟ ପରିକଳ୍ପନାର ସମୟ ଅତ୍ୟନ୍ତ ସ୍ୱଳ୍ପ । ତେବେ ବିଦ୍ୟାଳୟମାନଙ୍କରେ ଅଭିନୟ ପାଇଁ ଏହା ଅତ୍ୟନ୍ତ ଉପଯୋଗୀ ।

## ୩. ଶହୀଦ କୃତ୍ତିବାସ:

'ଶହୀଦ କୃତ୍ତିବାସ' ଏକ ଐତିହାସିକ ଏକାଙ୍କିକା ଯାହା 'ଆମ ଭାଷା ଆମ ସାହିତ୍ୟ' ଗ୍ରନ୍ଥରେ ସ୍ଥାନିତ ହୋଇ ଶ୍ରେଣୀ ପାଠ୍ୟ ଭାବରେ ଗୃହୀତ । ଶହୀଦ୍ କୃତ୍ତିବାସଙ୍କ ଜୀବନର ଅନେକ ଅଜଣା ତଥ୍ୟକୁ ନାଟକୀୟ ଉତ୍କଣ୍ଠାରେ ଭରିଦେଇ ନାଟ୍ୟକାର ଅତ୍ୟନ୍ତ ସୁନ୍ଦର ଭାବରେ ସଜାଇଛନ୍ତି ।

୧୮୩୬ରେ ବାଣପୁରଠାରେ କୃତ୍ତିବାସଙ୍କ ନେତୃତ୍ୱରେ ଇଂରେଜ ବିରୁଦ୍ଧରେ ଆନ୍ଦୋଳନ ତେଜିଥିଲା । ତେବେ କୃତ୍ତିବାସଙ୍କୁ ଇଂରେଜମାନେ ଗିରଫ କରିବା ପାଇଁ ତାଙ୍କ ଶ୍ୱଶୁରଙ୍କୁ ପ୍ରଲୋଭନ ଦେଖାଇଛନ୍ତି । ସ୍ୱାର୍ଥପର ନରେନ୍ଦ୍ର କୌଶଳ କରି କୃତ୍ତିବାସଙ୍କୁ ଘରକୁ ଖାଇବାକୁ ଡାକି ଗିରଫ କରାଇଛନ୍ତି । କଳାପାଣିରେ ବନ୍ଦୀ ଥିବାବେଳେ କୃତ୍ତିବାସ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ଶ୍ରେଣୀ ପାଠ୍ୟ ଉପଯୋଗୀ ବିଷୟଚୟନ, ଏକାଙ୍କିକାର ଅଗ୍ରଗତି, ଦୃଶ୍ୟସଜ୍ଜା, ଚରିତ୍ର ଚିତ୍ରଣ ଓ ସଂଳାପର ସରଳତା ଶିଶୁ ଏବଂ କୈଶୋର ମନରେ ନିଶ୍ଚିତ ଭାବରେ ଛାପ ସୃଷ୍ଟି କରିବାର ସାମର୍ଥ୍ୟ ରଖେ । ଏକାଙ୍କିକାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦେଶପ୍ରେମର ଭାବଧାରାକୁ ଅକ୍ଷୁଣ୍ଣ ରଖିବା ଦୃଷ୍ଟିରୁ ଏହା ଏକ ସଫଳ ସୃଷ୍ଟି ।

## ୪. ଛୋଟ କଥା:

'ଛୋଟ କଥା' ଏକ ସାମାଜିକ ସମସ୍ୟା ସମ୍ବଳିତ ମନସ୍ତତ୍ତ୍ୱଧର୍ମୀ ଏକାଙ୍କିକା । ଆଧୁନିକ ଜୀବନଧାରାରେ ସଫଳତାର ଶୀର୍ଷରେ ପହଞ୍ଚିବାକୁ ଚାହୁଁଥିବା ଦମ୍ପତ୍ତି ନିଜ ପୁଅ କୁନାକୁ ଇଂରାଜୀ ଶିକ୍ଷା ଦେଇ ନିଜର ଆତ୍ମବଡ଼ିମା ଦେଖାଇବାକୁ ଚାହାନ୍ତି । ପୁଅ କୁନାକୁ ସେମାନେ ବାଧ୍ୟ କରନ୍ତି ମମି-ଡାଡି ଡାକିବାକୁ । ପୁଅ ଭଲ ଚିତ୍ର କରୁଥିଲେ ବି ବାପା-

ମାଆ ଚାହାନ୍ତି ପୁଅ ଡାକ୍ତର ନହେଲେ ଇଂଜିନିୟର ହେବ। ପାଠ ଓ ଟିଉସନ୍‌ର ଚାପରେ କୁନାର ମାନସିକ ଦୁର୍ବଳତା ସୃଷ୍ଟି ହୋଇଛି। ପରିଣତିରେ ରୋଗଗ୍ରସ୍ତ ହୋଇଛି କୁନା। ସେହି ପରିବାରର ଝିଅ କୁନି ପ୍ରତି ବାପା-ମାଆ କିନ୍ତୁ ବିମୁଖ। ତାକୁ ଓଡ଼ିଆ ମାଧ୍ୟମ ବିଦ୍ୟାଳୟରେ ପଢାଯାଉଛି, ତା'ପାଇଁ ସ୍ୱତନ୍ତ୍ର ଟିଉସନ୍ ନାହିଁ। କେବଳ ଘରକାମ କରିବା ପାଇଁ ମାଆ ଠାରୁ ନିର୍ଦ୍ଦେଶ ପାଇଛି ସିଏ। ତଥାପି କୁନି ପାଠରେ ଭଲ କରୁଥିଲା ବେଳେ କୁନା ପାଠକୁ ଡରିଛି। ଡାକ୍ତର ଘରକୁ ଆସି କୁନାର ସ୍ୱାସ୍ଥ୍ୟ ପରୀକ୍ଷା କରି କହିଛନ୍ତି କୁନାର ଆଇ କ୍ୟୁ ସୀମିତ। ତା'ଉପରେ ଜବରଦସ୍ତ ପାଠର ବୋଝ ଲଦିଲେ ସେ ଉଠେଇବ କେମିତି ? ପିଲାକୁ ସବୁବେଳେ ଫ୍ରି ଛାଡ଼ନ୍ତୁ ଆଉ ସେ ଯାହା ଚାହୁଁଛି ସେହି ହିସାବରେ ସେ ଆଗେଇଲେ ତା'ର ମାନସିକ ଚାପ ନିଶ୍ଚୟ ଦୂରହେବ । ଏହି ଏକାଙ୍କିକାରେ ଯେଉଁ ଦିଗ ଉପରେ ବିଶେଷ ଧ୍ୟାନ ଦିଆଯାଇଛି ସେଗୁଡ଼ିକ ହେଲା:-

(କ) ନିଜ ସ୍ୱପ୍ନ ସାକାର ପାଇଁ ଶିଶୁ ଉପରେ ଅବାଂଛିତ ଚାପ ନପକାଇବା

(ଖ) ପୁଅ-ଝିଅ ଭିତରେ ପ୍ରଭେଦ ସୃଷ୍ଟି ନକରି ସମାନ ଭାବେ ବିବେଚନା କରିବା

(ଗ) ପାଠପଢା ସହିତ ସହପାଠ୍ୟକ୍ରମ ଉପରେ ଗୁରୁତ୍ୱ ଦେବା

(ଘ) ପିଲାଙ୍କ ରୁଚିକୁ ଉତ୍ସାହିତ କରିବା ।

ପ୍ରକୃତରେ 'ଛୋଟକଥା' ଏକାଙ୍କିକାଟିର ସଫଳତା ଆମ ସାମାଜିକ ଜୀବନରେ ଯେ ବଡ଼ ପରିବର୍ତ୍ତନ ଆଣିବ ଏହା ନିଃସନ୍ଦେହ।

## ୪. ଦାୟୀ କିଏ ? (୨୦୦୪)

'ଦାୟୀ କିଏ ?' ଏକାଙ୍କିକାଟି ସାମାଜିକ ବ୍ୟବସ୍ଥା ଭିତରେ ଥିବା ଅନେକ ଅବ୍ୟବସ୍ଥା ସଂପର୍କରେ ସ୍ୱର ଉତ୍ତୋଳନ କରେ। ଯେଉଁଠି ଗୋଟିଏ ପରିବାର ଭିତରେ ଥିବା ଦୁଇ ପିଲାଙ୍କ ବିଦ୍ୟାଗ୍ରହଣ କ୍ଷମତାକୁ ବାପା-ମାଆ ସହଜରେ ଗ୍ରହଣ କରିପାରନ୍ତିନି । ରୋମୁ ଭଲ ପଢୁଥିବାରୁ ବାପା-ମାଆ ତା'ପ୍ରତି ଅଧିକ ଯତ୍ନଶୀଳ ହେବା ସହିତ ସ୍ନେହପ୍ରବଣ ହେଉଥିଲାବେଳେ ପାଠରେ ପଛୁଆ ଥିବା ସୋମୁପ୍ରତି ଅବହେଳା ପ୍ରଦର୍ଶନ ସହିତ ତା'ପ୍ରତି ହୀନମନ୍ୟ ଭାବପୋଷଣ କରିଛନ୍ତି। ଯେଉଁଠି ମାଆ ଅହଲ୍ୟା ସୋମୁକୁ ସବୁବେଳେ କହିଛି- 'ତୁ ଗୋଟାଏ କୁଳାଙ୍ଗାର । ଆଉ କ'ଣ କରିପାରିବୁ । ପାନ ଦୋକାନ ଛଡ଼ା ଆଉ ତୋ ଭାଗ୍ୟରେ କିଛି ନାହିଁ ।' (ପୃ:୭୭) ପରିବାର ଭିତରେ ଥାଇ ଏହି ପାତର ଅନ୍ତର ନୀତି ଫଳରେ ସୋମୁର ମନ ବିଦ୍ରୋହ କରିଛି ଏବଂ କାହାଣୀର ମୋଡ଼ ବଦଳିଛି । ରୋମୁକୁ ହତ୍ୟା କରିବାପାଇଁ ଜଣେ ଅଳ୍ପବୟସର ହତ୍ୟାକାରୀ ଚେଷ୍ଟା କରିଛି। ଘଟଣା ତଦନ୍ତ ପାଇଁ

ପୋଲିସ୍ ଆସିଲାବେଳେ ଶିକ୍ଷକ ସୀତାନାଥ ଜାଣି ପାରିଛନ୍ତି ସୋମୁ ହେଉଛି ଅପରାଧୀ। ସୀତାନାଥ ଏହି ଘଟଣାପାଇଁ ବାପା-ମାଆଙ୍କୁ କହିଛନ୍ତି:- 'ଆପଣ ଦୁଇଜଣ ଯାକ ହିଁ ଏଥିପାଇଁ ଦାୟୀ'। ପ୍ରଥମରୁ କହିଥିଲି, ପିଲାଦୁହିଁଙ୍କୁ କେବେ ତୁଳନା କରିବେନି।

ସ୍ନେହ ଶ୍ରଦ୍ଧା ଦ୍ୱାରା ଏବଂ ସମଦୃଷ୍ଟି ଦ୍ୱାରା ପରିବାର ଭିତରେ ଥିବା ପିଲାମାନେ ପରସ୍ପରପ୍ରତି ସ୍ନେହ ଭାବରେ ବାନ୍ଧି ହୋଇ ଯାଆନ୍ତି ଯାହା ଏହି ଏକାଙ୍କିକାର ମୂଳଭିତ୍ତି। ଅବହେଳା ତୁଳନା ଏବହ ଅଧିକ ଆଶାବାଦୀ ହେବା 'ଳରେ ପରିବାର ଭିତରେ କେବଳ ହତାଶା ଓ ନୈରାଶ୍ୟ ଭାବ ସୃଷ୍ଟିହୁଏ ଯାହା ବାପା-ମାଆ ମନେ ରଖିବା ଉଚିତ।

## ୬. ବାର୍ତ୍ତା

'ବାର୍ତ୍ତା' ଏକାଙ୍କିକାର ନାମକରଣରୁ ଏହା ଯେ ବାର୍ତ୍ତାଧର୍ମୀ ଏକାଙ୍କିକା ତାହା ଗ୍ରହଣଯୋଗ୍ୟ । ମାତ୍ର ଏହି ସଂକଳନରେ ଥିବା ସମସ୍ତ ଏକାଙ୍କିକାଠୁ ଏହା ଭିନ୍ନ । ଅରଣ୍ୟ ପରିବେଶ ମଧ୍ୟରେ ମାନବେତର ଚରିତ୍ରମାନଙ୍କୁ ଗ୍ରହଣକରି ନାଟ୍ୟକାର ତାଙ୍କ ବିଷୟଚୟନରେ ବିବିଧତାର ପରିଚୟ ପ୍ରଦାନ କରିଛନ୍ତି।

ଏକାଙ୍କିକାର ପ୍ରାରମ୍ଭରେ ଛୋଟ ପିଲାଟିଏ ଅରଣ୍ୟ ଭିତରେ କାନ୍ଦୁଛି । ଆଉ ତା' କାନ୍ଦ ଶୁଣି ସମସ୍ତ ପଶୁ ସେଠାରେ ଏକତ୍ରିତ ହୋଇ ତାକୁ ଶାନ୍ତ କରାଇବାକୁ ଗୀତ ଗାଇଛନ୍ତି ଆଉ ତାହାର ଲାଳନ ପାଳନ କରିଛନ୍ତି। ପଶୁପତି ସିଂହ ରାଜ୍ୟର ସମସ୍ତ ଖବର ତାଙ୍କ ମନ୍ତ୍ରୀମାନଙ୍କ ଠାରୁ ଜାଣିବାକୁ ଚାହିଁଛନ୍ତି । ଶିକାରୀ ଓ ଜଙ୍ଗଲ ମାଫିଆମାନଙ୍କର ବଣ ଉପରେ ଉପଦ୍ରବ ସଂପର୍କରେ ଗୃହମନ୍ତ୍ରୀ ବାଘ ପ୍ରକାଶ କରିଛନ୍ତି । ବଣ ମୁଲକରେ ଶିକ୍ଷାର ଆଲୋକ ପଡ଼ିଲେ ଅରଣ୍ୟ ଜୀବଜନ୍ତୁ ଯେ ବିପଦରେ ପଡ଼ିବେନି ଏହି ମତ ଦେଇଛନ୍ତି ସମସ୍ତ ପଶୁ । ମଣିଷ ସମାଜରେ ଥିବା ଶିକ୍ଷା ବ୍ୟବସ୍ଥା, ରାଜନୀତି, ଇଲେକ୍‌ସନ୍ ସଂପର୍କରେ ଅତ୍ୟନ୍ତ ବ୍ୟଙ୍ଗ ଭାବରେ ପଶୁ ଚରିତ୍ର ମାଧ୍ୟମରେ ଦେଖାଇବାର ଚେଷ୍ଟା କରିଛନ୍ତି ଲେଖକ। ଉଦାହରଣ ସ୍ୱରୂପ ପଶୁପତି ସିଂହଙ୍କ ସମକ୍ଷରେ ଅର୍ଥମନ୍ତ୍ରୀ ଗଣ୍ଡା ବକ୍ତବ୍ୟ ରଖିଛନ୍ତି:-'ଦେଶରେ ଆର୍ଥିକ ସଂସ୍କାର ନିହାତି ଆବଶ୍ୟକ । ମନ୍ତ୍ରୀ ମାନଙ୍କ ଘରେ ଯେଉଁ ତିନି/ଚାରିଜଣ ଲେଖାଏଁ ପିଅନ ଚପରାଶୀ ରଖାଯାଇଛି, ସେମାନଙ୍କୁ ତୁରନ୍ତ ଫେରାଇ ଅଣାଯାଉ' (ପୃ:୯୨)। ଦୈନନ୍ଦିନ ଜୀବନଚର୍ଯ୍ୟା ଭିତରେ ଜଙ୍ଗଲ ଭିତରକୁ ଆସିଥିବା ମଣିଷଟିକୁ ପଶୁମାନେ ଦରବାରରେ ହାଜର କରାଇଛନ୍ତି। ତା'ଦୋଷକୁ କ୍ଷମା କରିବା ସହିତ ସେମାନଙ୍କ ପାଖରେ ଥିବା ମଣିଷ ଶିଶୁଟିକୁ ସେମାନେ ତାକୁ ଦେଇଛନ୍ତି। ଯେଉଁଥିରେ ମଣିଷଟିର ହୃଦ୍‌ବୋଧ ହୋଇଛି ପଶୁମାନେ ମଣିଷ ସମାଜଠାରୁ ମହାନ୍।

ପ୍ରକୃତରେ ଜଙ୍ଗଲ ସୁରକ୍ଷା, ପଶୁପକ୍ଷୀଙ୍କ ସୁରକ୍ଷା, ମାନବେତର ଚରିତ୍ର ସହିତ ମାନବକୁ ଯୋଡ଼ିଦେବାର ମହାର୍ଘ ଅନୁଭବ 'ବାର୍ତ୍ତା' ଏକାଙ୍କିକାକୁ ଏକ ପର୍ଯ୍ୟାବରଣ ଏକାଙ୍କିକା ଭାବରେ ପ୍ରତିଷ୍ଠା ଦେଇପାରେ ଏହା ନିଃସନ୍ଦେହ।

## ୭. ଦରଜା ଖୋଲିଦେବା:

ସାମ୍ବିଧାନିକ ବିଧି ବ୍ୟବସ୍ଥାର ସକାରାତ୍ମକ ଦୃଷ୍ଟିଭଙ୍ଗୀର ମୂଲ୍ୟାଙ୍କନ କରେ ଏକାଙ୍କିକା 'ଦରଜା ଖୋଲିଦେବା' । ବିଶେଷ କରି (କ) ଶିଶୁ ଶ୍ରମିକ ବ୍ୟବସ୍ଥା, (ଖ)ଗୋତି ପ୍ରଥା (ଗ)ଛୁଆଁ ଅଛୁଆଁ ଭେଦଭାବ ବିରୋଧରେ ସ୍ୱର ଉତ୍ତୋଳନ କରି ସମସ୍ତଙ୍କୁ ଶିକ୍ଷା ଓ ବଂଚିବାର ଅଧିକାର ଉପରେ ଗୁରୁତ୍ୱ ଦେଇଛି ଏହି ଏକାଙ୍କିକା । ପାଠ ପଢ଼ିବାକୁ ଇଚ୍ଛାଥିଲେ ବି ପାଠ ପଢ଼ିପାରୁନାହାନ୍ତି ଶିଶୁ ଶ୍ରମିକ ଥିବା ରହିମ୍ ଓ ବୁଲା । ସେହିପରି ଗୋତି ଭାବରେ କାମ କରୁଥିବା ରାମୁ ପାଠ ପଢ଼ିବାର ଇଚ୍ଛାକୁ ଦମନ କରି ରଖିଛି । ଗାଁ ପ୍ରଧାନ ପୁଅ ସତ୍ୟ ତା' ବାପାକୁ କହିଛି ସମସ୍ତେ ସମାନ । ଛୁଆଁ ଅଛୁଆଁ ଭେଦଭାବ ନାହିଁ। ଗୁରୁଜୀ ସେହିକଥା ସମସ୍ତଙ୍କୁ ଶିକ୍ଷା ଦେଇଛନ୍ତି। ନିଜେ ଗୁରୁଜୀ ଗାଁରେ ଶିଶୁ ଶ୍ରମିକ, ଗୋତିପ୍ରଥା ଦୂର କରିବା ପାଇଁ ଚେଷ୍ଟା କରିଛନ୍ତି ଏବଂ ସବୁ ପିଲାଙ୍କୁ ଶିକ୍ଷାର ଅଧିକାର ଦେବାପାଇଁ ଚେଷ୍ଟା କରିଛନ୍ତି। ସାମ୍ବିଧାନିକ ଅଧିକାର ସହିତ ସର୍ବଶିକ୍ଷା ଅଭିଯାନର ମନ୍ତ୍ର 'ଦରଜା ଖୋଲିଦେବା' ଏକାଙ୍କିକାର ମୂଳଭିତ୍ତି ଯେଉଁଠି ନାଟ୍ୟକାର ସମସ୍ତଙ୍କ ପାଇଁ ଜୀଇଁବାର ଓ ମାନବିକତାର ଦର୍ଜା ଖୋଲିଦେଇଛନ୍ତି।

## ୮. ସେମାନଙ୍କ ଦୁନିଆଁ (୨୦୦୨)

ବହୁ ବର୍ଷ ତଳେ ଜାନୁୟାରୀ ୨୬ରେ ପତାକା ଉତ୍ତୋଳନ ଦେଖିବାକୁ ଯାଇଥିବା କିଛି ସ୍କୁଲ୍ ଛାତ୍ର ବେଲୁନ୍‌ବାଲା ପାଖରେ ଛିଡ଼ା ହୋଇଥିବା ବେଳେ ଗ୍ୟାସ୍‌ଭର୍ତ୍ତି ଟାଙ୍କି ଫାଟିଯାଇ ଅନ୍ଧ ପାଲଟି ଯାଇଥିଲେ । ଆନନ୍ଦର ଜୟଯାତ୍ରାରୁ କାରୁଣ୍ୟର ଗହଗହ ଉଦାସୀନତା ଭିତରେ ବୁଡ଼ିଥିବା ସେହି ଚରିତ୍ର ମାନେହିଁ ଲେଖକୀୟ ସମ୍ବେଦନାକୁ ଛୁଇଁଥିଲା ବେଳେ ସୃଷ୍ଟି ହୁଏ 'ସେମାନଙ୍କ ଦୁନିଆଁ' ପରି ସମ୍ବେଦନାରେ ଭରପୂର ଏକାଙ୍କିକା । ଯେଉଁଠି ଦୃଷ୍ଟି ଶକ୍ତି ହରାଇବାର ପରବର୍ତ୍ତୀ ମୁହୂର୍ତ୍ତର କଥା ରୂପପାଏ ବିମଳ, ଶ୍ରୀନିବାସ, ରବି ପରି ଚରିତ୍ରମାନଙ୍କ ଦ୍ୱାରା । ଅଗଷ୍ଟ ପନ୍ଦର ବେଳକୁ ସେମାନେ ପରସ୍ପର ଏକଜୁଟ ହୁଅନ୍ତି ବିମଳର ଘରେ। ଟି.ଭି.ରେ ବି ପତାକା ଉତ୍ତୋଳନ ଦେଖପାରନ୍ତି ନାହିଁ। ସରକାରୀ ସାହାଯ୍ୟ ନପାଇ ସେମାନେ ଉଦାସୀନ ହୁଅନ୍ତି ତଥାପି ଭାଙ୍ଗି ପଡ଼ନ୍ତି ନାହିଁ। ସେମାନଙ୍କ ଅନୁଭବ, ଆମେ ଯଦି ଭାଙ୍ଗି ପଡ଼ିବା ଆମ ବାପା-ମାଙ୍କ ଅବସ୍ଥା କ'ଣ ହେବ ? ଉଦାସୀନତା

ଭିତରେ ଆଶାବାଦର ସଞ୍ଚରଣ ହୁଏ ଆଉ ସମସ୍ତେ ଛିଡ଼ା ହୋଇ ଜାତୀୟ ସଂଗୀତ ଗାନ କରନ୍ତି।

ସ୍ୱଚ୍ଛ ସମୟର ଅବଧି ଭିତରେ ଥିବା ଏହି ଏକାଙ୍କିକା ମାନବିକ ସମ୍ବେଦନାର ସଫଳ ଦସ୍ତାବିଜ୍ । ଯେଉଁଠି ନିରାଶାର ଅନ୍ଧାର ଭିତରୁ ନାଟ୍ୟକାର ଆଶାର ଆଲୋକ ଆଡ଼କୁ ଚରିତ୍ରମାନଙ୍କୁ ନେବାର ପ୍ରଚେଷ୍ଟା କରିଛନ୍ତି।

ଶେଷରେ ସାମଗ୍ରିକ ଭାବରେ କୁହାଯାଇପାରେ ଯେ ଡକ୍ଟର ନାରାୟଣ ସାହୁଙ୍କ ଦୁଇଟି ଯାକ ଏକାଙ୍କିକା ଗୁଚ୍ଛର ଏକାଙ୍କିକା ସମୂହ ଜଣେ ଭଦ୍ରଲୋକର ଡ୍ରଇଁରୁମ୍ ପରି। ଯେଉଁଠି ଅଛି ଭିନ୍ନଭିନ୍ନ କାହାଣୀର ଆସର, ଯେଉଁଠି ଚରିତ୍ର ସବୁ ମନ ମୁତାବକ ଟଙ୍ଗା ହୋଇଛନ୍ତି କାନ୍ଥଦେହରେ, ସଂଳାପ ସବୁ ଭାସି ଆସୁଛି ଝର୍କାର ଫାଙ୍କ ଦେଇ। କେତେବେଳେ ସମ୍ବେଦନାତ' କେତେବେଳେ ଜୀବନ ଜଞ୍ଜାଳ ପୁଣି କେତେବେଳେ ମଣିଷ ପଣିଆ ତ' କେତେବଳେ ଅନ୍ତରୀଣ ଆଳାପ ଥାକଥାକ ହୋଇ ସଜା ହୋଇଛି ଥାକରେ । ସେଠି ବସିଥିବା ଲୋକଟେ କିମ୍ବା ପଶି ଆସୁଥିବା ଆଗନ୍ତୁକଟେ ସେହି ଘରକୁ ଦେଖିଲେ କହିବ-ଏଇଟା ଗୋଟିଏ ସଫଳ ନାଟ୍ୟ ଚେତନାର ଘର ଯାହାର ଦର୍ଜାରୁ ବିଛୁରିତ ଆଲୋକ ଦୂର ଦିଗ୍‌ବଳୟ ଆଡ଼କୁ ହାତ ଠାରୁଛି ନୂଆ ଦିଗନ୍ତର ସନ୍ଧାନରେ।

ରାଜଧାନୀ କଲେଜ
ଭୁବନେଶ୍ୱର

●●●

# 'ନିଆରା ନାଟକ'ର କଥା କେତୋଟି...

ସୁଶ୍ରୀ ମୃଣ୍ମୟୀ ପ୍ରିୟଦର୍ଶିନୀ

ବ୍ୟକ୍ତିଚେତନା ଓ ପାରମ୍ପରିକ ମୂଲ୍ୟବୋଧ ଯେତେବେଳେ ବିପର୍ଯ୍ୟସ୍ତ ହୋଇପଡ଼େ ସେତେବେଳେ ଅସ୍ଥିର ହୋଇଉଠେ ସମାଜ ବ୍ୟବସ୍ଥା। ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା ଆମ ପାରିପାର୍ଶ୍ୱିକ ଅବସ୍ଥାକୁ କରେ ଅସଜଡ଼ା ଓ ସବୁକିଛିରେ ଘଟେ ବିଘଟଣ। ଏହିଭଳି ଏକ ପରିସ୍ଥିତିରେ ଆରମ୍ଭହୁଏ ସଜାଡ଼ିବାର ପ୍ରୟାସ। ଏଇ ସଜାଡ଼ିବା ପ୍ରୟାସର ସଫଳ ପରିପ୍ରକାଶ 'ନିଆରା ନାଟକ'ସଂକଳନ। ନାଟ୍ୟକାର ନାରାୟଣ ସାହୁଙ୍କ ଏହି ସଂକଳନରେ ସ୍ଥାନିତ ଛଅଗୋଟି ଶ୍ରୁତି ନାଟକ 'ମୋ ଜୀବନ ପଛେ', 'ନବପ୍ରଭାତ', 'ଝଡ଼', 'ଧୂଳିମାଟିର ଖାନ୍ଦୀ', 'ଓଦାମାଟିର ସପନ' ଓ 'ଆଉ ଏକ ବାଲ୍ମୀକି'। ପ୍ରତ୍ୟେକ ନାଟକରେ ଉପସ୍ଥାପିତ ହୋଇଛି ମୂଲ୍ୟବୋଧର ଅବକ୍ଷୟ ଜନିତ କେତେକ ସମସ୍ୟା ଓ ରହିଛି ମଧ୍ୟ ସମାଧାନର ଦିଗ। ବିପନ୍ନ ଓ ବିପଦାପନ୍ନର ସାମାଜିକ ବଳୟ ମଧ୍ୟରେ ବଂଚୁଥିବା ମଣିଷର ଅସହାୟତା ଓ ବିଶ୍ୱାସର ବିପର୍ଯ୍ୟୟ ମଧ୍ୟରେ ନାଟ୍ୟକାର ଦେଖାଇବାକୁ ଚାହିଁଛନ୍ତି ସ୍ୱପ୍ନଭଙ୍ଗର ଅସହାୟତା, ବଂଚିବାର ଅଧିକାରକୁ ହରାଇବାର ଭ୍ରାନ୍ତି ଓ ଶାନ୍ତିରେ ରଖିନପାରିବାର ବିରକ୍ତିବୋଧକୁ ନାଟକ ଗୁଡ଼ିକୁ ଅନୁଶୀଳନକଲେ ନାଟ୍ୟକାରଙ୍କ ଅବଚେତନରେ ଥିବା ସଂପର୍କ ବିଭିନ୍ନ ଚରିତ୍ର ମାଧ୍ୟମରେ ବିଚ୍ଛୁରିତ ହୋଇଯାଇଥିବା ଲକ୍ଷ୍ୟ କରାଯାଏ।

ଗଭୀର ବିଶ୍ୱାସରେ ଉତ୍ତର ପୁରୁଷକୁ ଜନ୍ମଦେଇ ତା'ଭିତରେ ଅଜସ୍ର ସମ୍ଭାବନାର ସ୍ୱପ୍ନ ଦେଖୁଥିବା ଅସଂଖ୍ୟ ପିତାମାତାଙ୍କ କରୁଣ ଆଲେଖ୍ୟ 'ମୋ ଜୀବନ ପଛେ', 'ନବପ୍ରଭାତ' ଓ 'ଓଦାମାଟିର ସପନ'। ମାନବୀୟ ସଂପର୍କ ଓ ଗ୍ରାମୀଣ ପରିବେଶ ମଧ୍ୟରେ ଏକ୍ ମନନଧର୍ମୀ ଓ ସମ୍ବେଦନଶୀଳ ନାଟକ ହେଉଛି 'ମୋ ଜୀବନ ପଛେ...'। ନାଟକଟିରେ ରବି ବାପା, ଟୁନି ବୋଉ ଓ ଟୁନି ଚରିତ୍ରକୁ ମୁଖ୍ୟ ଭୂମିକାରେ ରଖି ନାଟ୍ୟକାର ଏକ ମଧ୍ୟବିତ୍ତ ପରିବାରର ସମସ୍ୟାକୁ ଉପସ୍ଥାପନ କରିଛନ୍ତି। ଟୁନି ବୋଉ, ରବି ବାପା ରହନ୍ତି ଗ୍ରାମରେ। ପରିବାର ପ୍ରତିପୋଷଣର ସମ୍ବଳ କିଛି ମାତ୍ର ଚାଷ ଜମି ଯାହା ବନ୍ଧା ପଡ଼ିଛି ଦୁଇ ପୁଅ ରବି ଓ ଚିତ୍ତଙ୍କ ପାଠପଢା ଖର୍ଚ୍ଚ ନିମନ୍ତେ। ଘରେ ବଢିଲା ଝିଅ ଟୁନି ଓ ଭିନ୍ନକ୍ଷମ ପୁଅ ମୁନା। ରବି ବାପା ଓ ଟୁନି ବୋଉ ଆଶା ରଖିଛନ୍ତି ପୁଅମାନେ ଯୋଗ୍ୟ ହେଲାପରେ ଘରର ଅବସ୍ଥା ସୁଧୁରିବ, ଝିଅର ବାହାଘର ହେବ, ସେମାନଙ୍କ ଜମି ବନ୍ଧା

ରଖିଥିବା ଚୌଧୁରୀର ଝିଅ ଛବି ସହିତ ସାନପୁଅ ଚିନର ବାହାଘର। ମାତ୍ର ସେମାନଙ୍କ ସ୍ୱପ୍ନ ସତ ହୋଇପାରିନି। ଚାକିରୀ କଲାପରେ ବଡ଼ ପୁଅ ରବି ନିଜ ଇଚ୍ଛାରେ ବାହା ହେଉଛି ଆଇ.ଏ.ଏସ୍‌ଙ୍କ ଝିଅ ବେବୀକୁ। ବେବୀ ସ୍ୱେଚ୍ଛାଚାରୀ। ସେ ପସନ୍ଦ କରେନି କୌଣସି ବନ୍ଧନ, ପସନ୍ଦ ମଧ୍ୟ କରେନି ନିଜ ସ୍ୱାମୀର ଗ୍ରାମ୍ୟମନସ୍କତା ଓ ପିତାମାତାଙ୍କ ପ୍ରତି ଆନୁଗତ୍ୟକୁ। ଏପରି ଏକ ପରିସ୍ଥିତିରେ ରବି କିନ୍ତୁ ଅସହାୟ। ଏକ ପଟେ ପିତା ମାତା ଅନ୍ୟ ପଟେ ପତ୍ନୀ। କାହାକୁ ଆପଣାର କରିବ କାହାକୁ କରିବ ପର-ଏହି ଦ୍ୱିଧାରେ ସେ ନୀରବ ରହିବାକୁ ହିଁ ଶ୍ରେୟ ମଣିଛି। ଅପର ପକ୍ଷରେ ପିତାମାତାଙ୍କ ପସନ୍ଦକୁ ଅସ୍ୱୀକାର କରି ସାନପୁଅ ଚିନ ନିଜ ପସନ୍ଦର ଝିଅକୁ ବାହା ହେବାକୁ ଯୁକ୍ତି କରିଛି। ଏ ପରିସ୍ଥିତିରେ ଝିଅ ଟୁନି କିନ୍ତୁ ସମଦୁଃଖି ହୋଇଛି ବାପା ମାଙ୍କ ଦୁଃଖରେ। ସେ ଚାକିରି କରିଛି ଘରର ଦାୟିତ୍ୱ ନେଇଛି, ନେଇଛି ମଧ୍ୟ ଅବିବାହିତ ରହିବାର ଶପଥ। ତା ମତରେ "ବାପା ବାହାଘରଟା କ'ଣ ମଣିଷ ଜୀବନରେ ସବୁକିଛି ? ଏ ସମାଜରେ ବଂଚିବାକୁ ହେଲେ କିଛି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ। ମୁଁ ତାହାହିଁ କରିବାକୁ ଯାଉଛି"। ସାଧାରଣତଃ ଆମ ସମାଜରେ ଝିଅ ଅପେକ୍ଷା ପୁଅକୁ ଗୁରୁତ୍ୱ ଦିଆଯିବ। ଚଳଣି ପ୍ରତି ନାଟ୍ୟକାର କଟାକ୍ଷ କରିଛନ୍ତି। ସେହିପରି ଚିନର ପଢ଼ାଖର୍ଚ୍ଚ ପାଇଁ ଚୌଧୁରୀ ବାବୁ ଦେଇଥିବା ଦଶ ହଜାର ଟଙ୍କା ପ୍ରତି ବଦଳରେ ଛବି ସହିତ ଚିନର ବାହାଘର କରିବାର ପ୍ରତିଶ୍ରୁତି ଦେଇଥିବା ରବିବାପା ଓ ଟୁନିବୋଉ ଚିନର ନାସ୍ତିବାଣୀରେ ମର୍ମାହତ ହୋଇଥିବା ବେଳେ ଛବି ଜମିର ସବୁ କାଗଜ ପତ୍ର ଫେରାଇ ଦେବା ସହିତ ସେମାନଙ୍କ ପରିବାରରୁ ଦୂରେଇ ଯାଇଛି। ଏହି ପ୍ରସଙ୍ଗ ମାଧ୍ୟମରେ ନାଟ୍ୟକାର ନାରୀ ସମାଜ ପ୍ରତି ତାଙ୍କର ସଶ୍ରଦ୍ଧ ସମ୍ମାନବୋଧକୁ ଉପସ୍ଥାପିତ କରିଛନ୍ତି। କେବଳ ପୁଅ ନୁହେଁ ଝିଅବି ହୋଇପାରେ ବାର୍ଦ୍ଧକ୍ୟର ଆଶ୍ରୟ। ଏହି ଚିନ୍ତାଧାରା ମଧ୍ୟରେ ପୁତ୍ର ପାଖରେ ଅନେକ ସମ୍ଭାବନାର ଆଶା ରଖୁଥିବା ଅସଂଖ୍ୟ ପିତାମାତାଙ୍କ ବିଶ୍ରାମଭଙ୍ଗ ମାଧ୍ୟମରେ ଆଗାମୀ ଭବିଷ୍ୟତ ପାଇଁ ନାଟ୍ୟକାରଙ୍କ ବକ୍ତବ୍ୟ ହେଉଛି "ଗୋଟାଏ ମାଘରେ ସବୁ ଶୀତ ଶେଷ ହୋଇ ଯାଉନି। ସେମାନେ ବି ପୁଅ ଝିଅର ବାପା ମା ହେବେ। ବୟସ ହୋଇଗଲେ ସେମାନେ ବି ବୁଝିବେ।"

"ମୋ ଜୀବନ ପଛେ..."ପରି "ଓଦା ମାଟିର ସପନ"ରେ ମଧ୍ୟ ବୃଦ୍ଧ ପିତାମାତାଙ୍କ ଅସହାୟତା ଓ ବିଶ୍ୱାସଭଙ୍ଗର କାହାଣୀ ରୂପାୟିତ। ମାତ୍ର "ମୋ ଜୀବନ ପଛେ..."ରେ ନାରୀର ଆବେଗମୟୀରୂପ ବଦଳରେ "ଓଦା ମାଟିର ସପନ"ରେ ବର୍ଣ୍ଣିତ ତା'ର ସ୍ୱାର୍ଥପର ଓ ସ୍ୱେଚ୍ଛାଚାରୀ ପ୍ରବୃତ୍ତି। ପୁତ୍ରଠାରୁ ଦୂରରେ ରହି ଘୋର ମାନସିକ ଯନ୍ତ୍ରଣାରେ ରୋଗଗ୍ରସ୍ତ ହୋଇ ପଡ଼ିଥିବା ଅସହାୟ ବାପା ମା ଚିକିତ୍ସା ନିମନ୍ତେ ସହରକୁ ଆସି ପହଞ୍ଚିଛନ୍ତି ସେହି ଡାକ୍ତର ଖାନାରେ ଯେଉଁଠି ତାଙ୍କ ପୁତ୍ରବଧୂ ଅଛି ଡାକ୍ତର। ଜୀବନରେ ଶାଶୁ ଶଶୁରଙ୍କ ମୁଖ

ଦେଖି ନଥିବା ବୋହୂ ଚିକିତ୍ସା ନାମରେ ଶାଶୁଙ୍କ କିଡ଼ନି ଚୋରାଇ ବିକି ଦେଇଛି ଅନ୍ୟ ଜଣେ ଧନୀ ଲୋକକୁ। ତା'ପରେ ବୃଦ୍ଧ ଶାଶୁଙ୍କର ମୃତ୍ୟୁ ଘଟିଛି। ଘଟଣା କ୍ରମେ ସବୁକିଛି ଧରା ପଡ଼ିଛି। ବୃଦ୍ଧ ପିତା ମାତାଙ୍କ ଅସହାୟତା ବ୍ୟତୀତ ଏହି ନାଟକରେ ସାଂପ୍ରତିକ ସମାଜର ଅନ୍ୟ ଏକ ରୂପ ଦେଖାଇ ଦିଆ ଯାଇଛି। ଯେଉଁଠି କାହାର କାହା ପ୍ରତି ବିଶ୍ୱାସ ନାହିଁ। ସମସ୍ତଙ୍କ ପାଖରେ ଏବେ ସମୟର ଘୋର ଅଭାବ, କାରଣ ସମସ୍ତେ ଧାଇଁଛନ୍ତି ଟଙ୍କା ପଛରେ। ହାଡ଼ିବନ୍ଧୁ ଓ ପାର୍ବତୀ ପତି ପତ୍ନୀ ସେମାନଙ୍କ ଗୋଟେ ପୁଅ ଅଛି ପପୁ। ହାଡ଼ିବନ୍ଧୁ ଓ ପାର୍ବତୀ ବାପ ମାଙ୍କୁ ବୋଝ ମନେ କରି ସର୍ବଦା ତାଙ୍କ ଠାରୁ ଦୂରରେ ରହିଛନ୍ତି। ପୁଅ ପ୍ରତି ଥିବା କର୍ତ୍ତବ୍ୟରୁ ମଧ୍ୟ ବିଚ୍ୟୁତ ହୋଇଛନ୍ତି। ସେମାନଙ୍କ ମତରେ ପଇସା ଖର୍ଚ୍ଚକରି ପୁଅକୁ ଭଲ ସ୍କୁଲ୍‌ରେ ପଢ଼ାଇଲେ ଦାୟିତ୍ୱ ସରିଗଲା। ଫଳରେ ସେମାନଙ୍କ ନିମନ୍ତେ ଟଙ୍କାହିଁ ମୁଖ୍ୟ ପୁଅ ନୁହେଁ। ଫଳରେ ପପୁ ବଂଚିତ ମା ବାପା ଓ ଜେଜେ-ଜେଜେମାଙ୍କ ସ୍ନେହରୁ। ସେ ବଢ଼ନ୍ତି ଆୟା ପାଖରେ। ମାତ୍ର ସବୁବେଳେ କେମିତି ଏକ ଉଦାସ ଭାବନା ଗ୍ରାସ କରିଛି ତାକୁ। ନାଟକର ପରିସମାପ୍ତି କିନ୍ତୁ ମିଳନରେ। ସମସ୍ତେ ପଶ୍ଚାତାପ କରିଛନ୍ତି ସବୁ ସମାଧାନ ହୋଇଛି ନାଟକଟି ଆଧୁନିକ ଚାକିରୀ ଜୀବୀ ମଣିଷର ମନ ଭିତରେ ଜମାଟ ବାନ୍ଧିଥିବା ଯାବତୀୟ କଳଙ୍କ ଛଡ଼ାଇବାର ଏକ ମାର୍ମିକ ଆଲେଖ୍ୟ।

'ନବପ୍ରଭାତ'ରେ ଅନୁଭବ୍ୟ ମାନବୀୟ ସଂପର୍କର ସମ୍ବେଦନଶୀଳତା। ଏଥିରେ ବି ଅଛି ଅସହାୟ ମାତା ପିତାଙ୍କ କାହାଣୀ। ସ୍ୱେଚ୍ଛାଚାରୀ ପୁତ୍ରମାନଙ୍କ ସ୍ୱାର୍ଥପର ମନୋବୃତ୍ତି ଓ ବୋହୂର କୁଟିଳତାରେ ବ୍ୟଥିତ ଜଗନ୍ନାଥ ଓ ଜାହ୍ନବୀଙ୍କ ଜୀବନରେ ଆସିଛି ଜଣେ ବିଦେଶୀ କନ୍ୟା, ଯିଏ ତାଙ୍କ ସାନପୁଅକୁ ବିବାହ କରିଥିବା କଥା କହିଛି ଓ କହିଛି ମଧ୍ୟ ସେ ଗର୍ଭବତୀ ଥିବା କଥା। ସନାତନ ଓ ଜାହ୍ନବୀ ତାକୁ ଗ୍ରହଣ କରିଦେଇଥିଲେ ମଧ୍ୟ ସାନପୁଅ ସୁବୋଧ ଅସ୍ୱୀକାର କରିଛି ବିଦେଶିନୀ ସୋଫିଆ ସହିତ ତା'ର ସବୁ ସଂପର୍କକୁ। ଫଳରେ ସୋଫିଆ ଚାଲି ଯାଇଛି। କିନ୍ତୁ ପୁତ୍ର ଓ ପୁତ୍ରବଧୂ ମାନଙ୍କ ଦ୍ୱାରା ନିର୍ଯ୍ୟାତିତ ସନାତନ ଓ ଜାହ୍ନବୀ ଆଶ୍ରୟ ନେଇଛନ୍ତି ଏକ ଜରାଶ୍ରମରେ ଯାହାର ପ୍ରତିଷ୍ଠାତା ସୋଫିଆ। ସେମାନେ ସୋଫିଆ ପ୍ରତି ଭାରତର ମମତାକୁ ଦେଖି ଅଭିଭୂତ ହୋଇଛନ୍ତି ଓ କହିଛନ୍ତି, "ତୁ ସିନା ଭାରତରେ ଜନ୍ମ ହୋଇନୁ ହେଲେ ଭାରତୀୟ ମାନଙ୍କୁ ଯଥେଷ୍ଟ ବଳିଯାଇଛୁ।" ଭାରତୀୟ ପରମ୍ପରା ବ୍ୟତୀତ ନାଟକଟିରେ ଆଉ ଏକ ବିଷୟ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଛି। ତାହା ହେଲା ଧର୍ମୀୟ ସମ୍ଭାନତା। ଏହାର ଉଦାହରଣ ସୋଫିଆର ଏକ ସଂଳାପରେ ଦିଆଯାଇପାରେ – "ଏଠି ହିନ୍ଦୁ, ମୁସଲ୍‌ମାନ୍, ଖ୍ରୀଷ୍ଟିଆନ୍ ସମସ୍ତେ ଅଛନ୍ତି। ସବୁ ଜାତିର ସବୁ ଧର୍ମର ଲୋକ ଅଛନ୍ତି। ହେଲେ ଗୋଟିଏ ପରିବାର ପରି।"

ସାଂପ୍ରତିକ ସମୟରେ ହଜି ଯାଉଥିବା ମଣିଷର ବିଶ୍ୱାସକୁ ଫେରାଇ ଆଣିବା ପାଇଁ ନାଟ୍ୟକାର ଇଙ୍ଗିତ ଦେଇଛନ୍ତି ।

'ଝଡ଼' ନାଟକରେ ବିଷୟବସ୍ତୁ ସାଧାରଣତଃ 'ମୋ ଜୀବନ ପଛେ...', 'ନବ ପ୍ରଭାତ' ଓ 'ଓଦାମାଟିର ସପନ'ରେ ଥିବା ମାତା ପିତାଙ୍କ ଅସହାୟତାର କାହାଣୀ ଏଥିରେ ମଧ୍ୟ ରୂପାୟିତ । ମାତ୍ର 'ଝଡ଼'ରେ ପୁତ୍ର କନ୍ୟାମାନେ ନିଜର ସ୍ୱାର୍ଥପରତାକୁ ଲୁଚାଇ ରଖିଛନ୍ତି । କିନ୍ତୁ ଏକ ଝଡ଼ ସମୟର ଘଟଣା ବର୍ଣ୍ଣନା ମାଧ୍ୟମରେ ସବୁ ସ୍ୱାର୍ଥପରତା ପଦାରେ ପଡ଼ନ୍ତି । ବାହାଘର ଠିକ୍ ହୋଇସାରିଥିବା ନଣନ୍ଦକୁ ଧକ୍କା ମାରି ଠେଲି ଦେବା ମଧ୍ୟରେ ପଦର୍ଶିତ ହୋଇଛି ନାରୀର ଇର୍ଷାପରାୟଣ ଓ ସ୍ୱାର୍ଥପର ମନୋଭାବ । ଉପରୋକ୍ତ ଅନ୍ୟ ନାଟକ ଗୁଡ଼ିକ ପରି ଏଥିରେ ମଧ୍ୟ ଅଛି ବିଶ୍ୱାସ ଓ ବିଶ୍ୱାସଭଙ୍ଗର କଥା । ସଂପର୍କ ଭିତରେ ଛଳନା ଓ ଦ୍ୱୈତ ବ୍ୟକ୍ତିତ୍ୱ ମଧ୍ୟରେ ନିଜକୁ ସ୍ୱତନ୍ତ୍ର କରି ଆଭିଜାତ୍ୟ ଦେଖାଇବାର ପ୍ରବୃତ୍ତି ନାଟକର ମୁଖ୍ୟସ୍ୱର ।

'ଧୂଳିମାଟିର ଗାନ୍ଧୀ' ରଚିତ ଗାନ୍ଧୀ ଦର୍ଶନର ପୃଷ୍ଠଭୂମିରେ । ଫ୍ଲାସବ୍ୟାକ୍ ଶୈଳୀରେ ରଚିତ ନାଟକଟିରେ ରହିଛି ଦୁଇଟି ଭାଗ । ପ୍ରଥମ ଭାଗରେ ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଜାତୀୟ ଅନ୍ଦୋଳନର ଘଟଣାବଳୀ ଓ ଦ୍ୱିତୀୟ ଭାଗରେ ରହିଛି ସ୍ୱାଧୀନତା ପରର ସ୍ୱପ୍ନଭଙ୍ଗର କାହାଣୀ । ନାଟକର ମୁଖ୍ୟ ଚରିତ୍ର ଭଜହରି ରହିଛି ସହରତଳି ବସ୍ତିରେ । ସେଠା ପିଲାଙ୍କୁ ପାଠ ପଢାନ୍ତି, ସମସ୍ତଙ୍କୁ ସାହାଯ୍ୟ କରନ୍ତି ସାଧ୍ୟମତେ । ଏ ଘଟଣା ହେଉଛି ଦେଶ ସ୍ୱାଧୀନ ହେବା ପରେ । ମାତ୍ର ପରାଧୀନ ଦେଶରେ ଭଜହରି ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କ ଏକମାତ୍ର ପୁତ୍ର । ମୁକ୍ତି ସଂଗ୍ରାମରେ ପିତାଙ୍କର ମୃତ୍ୟ ଘଟିବାରୁ ଅନୁପ୍ରାଣିତ ହୋଇଥିଲେ ସେ । "ମା'ଠାରୁ ମାତୃଭୂମି ବଡ଼" ନ୍ୟାୟରେ ଅସହାୟ ଏକାକୀ ମାଙ୍କୁ ଛାଡ଼ି ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଦେଶ ସ୍ୱାଧୀନ ହେଲା, ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମ ସମାଜ ଧାରାରେ ଘଟିଲା ଉଲ୍ଲେଖନୀୟ ପରିବର୍ତ୍ତନ, ଭାଙ୍ଗିଗଲା ଗାନ୍ଧୀଙ୍କ ରାମରାଜ୍ୟର ସ୍ୱପ୍ନ, ବଦଳିଗଲା ମଧ୍ୟ ଭଜହରିଙ୍କ ସ୍ୱାଧୀନ ଭାରତର ଚିତ୍ରପଟ । ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟରେ ଆମ ସମାଜରେ ହିଂସା ବଢିଛି, ସ୍ୱାର୍ଥପରତା ବଢଛି, ଦୁର୍ବଳ ହୋଇ ପଡ଼ିଛି ଶିକ୍ଷା ବ୍ୟବସ୍ଥା । ଭଜହରିଙ୍କ କାହାଣୀ ମାଧ୍ୟମରେ ନାଟ୍ୟକାର ସମସାମୟିକ ମଣିଷ ଜୀବନ, ଗଣତାନ୍ତ୍ରିକ ବିଫଳତା, ରାଜନୀତିକ, ସାମ୍ବିଧାନିକ, ସାମାଜିକ ଓ ଶିକ୍ଷାଗତ ତ୍ରୁଟି ବିଚ୍ୟୁତିକୁ ଉପସ୍ଥାପିତ କରିଛନ୍ତି । ସାମାଜିକ ଅସଂଗତି ଓ ଗାନ୍ଧୀଦର୍ଶନର ପରାଜୟ ମଧ୍ୟରେ ନାଟ୍ୟକାରଙ୍କ ଖେଦୋକ୍ତି ହେଉଛି:- "ଆପଣ ମୋର ଏତେବଡ଼ ସ୍ୱପ୍ନକୁ ଧୂଳିସାତ୍ କରି ଦିଅନ୍ତୁ ନାହିଁ । ଗାନ୍ଧୀ ସିନା ଚାଲିଗଲେ, ହେଲେ ତାଙ୍କ ଆଦର୍ଶତ ଯାଇନି, ଯାହା କିଛି ବଳିଛି ସେତକ ବି ଧ୍ୱଂସମୁଖକୁ ଠେଲିଦେବ" । ଏହି ନାଟକ ମାଧ୍ୟମରେ ନାଟ୍ୟକାର

ରାଜନୀତିରେ ମାତିଥିବା ନେତାଙ୍କର ଅଗଭୀର ଜ୍ଞାନ, ସଂସ୍କୃତି ଓ ସ୍ମୃତିରକ୍ଷା ନାମରେ ଆନ୍ତରିକତା ଶୂନ୍ୟ ଶିକ୍ଷା ନାମରେ ଭ୍ରଷ୍ଟାଚାର, ଗାନ୍ଧୀ ଦର୍ଶନର ଅପପ୍ରଚାର ଆଦି ଚେତନାକୁ ତୀବ୍ର କଟାକ୍ଷ କରିଛନ୍ତି।

କରିବାର ଅର୍ଥ ଏୟା ଯେ ନାରଦ ଓ ବିଷ୍ଣୁ ନାମରେ ଦୁଇଟି ଚରିତ୍ର ଚିତ୍ରାୟନ ହୋଇଛି ଏଥିରେ। ଏ ଦୁହେଁ ବାରମ୍ବାର ପୃଥିବୀକୁ ଆସୁଛନ୍ତି ମଣିଷର ସୁଖ ଦେଖିବା ପାଇଁ। ରତନା ନାମରେ ଜଣେ ଲୋକକୁ ବର ପ୍ରଦାନ କରି ତାଙ୍କୁ ସୁଖୀ କରିବାର ଚେଷ୍ଟା କରିଛନ୍ତି। ମାତ୍ର ପ୍ରକାରାନ୍ତରେ ତାଙ୍କର ପ୍ରୟାସ ହେଲା ମଣିଷ ଅନ୍ତରର କାମନା ବାସନା ରୂପି ଦସ୍ୟୁ ପ୍ରବୃତ୍ତିର ଅନ୍ତ କରି ତାକୁ ନିର୍ମଳ କରିବ । ସେଥିପାଇଁ ନାଟକର ନାମକରଣ ଏହିପରି ହୋଇଅଛି । ମନୁଷ୍ୟ ଅନ୍ତରରୁ ଯେତେବେଳେ ଭୋଗଲାଳସା ଅପସରି ଯାଏ ସେ ଲକ୍ଷ୍ୟ କରେ ତା'ର ପୂର୍ଣ୍ଣତା ହିଁ ପ୍ରକୃତରେ ତା'ର ଅପୂର୍ଣ୍ଣତା। ସେତେବେଳେ ସଂସାର ପ୍ରତି ତା'ର ଆସକ୍ତି କମିଯାଏ ଓ ସେ ହୋଇଯାଏ ନିର୍ବନ୍ଧନ। ଏହା ହିଁ ଘଟିଥିଲା ଦସ୍ୟୁ ରତ୍ନାକର ଜୀବନରେ। ଏହା ମଧ୍ୟ ଘଟିଛି ରତନାର ଜୀବନରେ। ମଣିଷର ଭୋଗଲାଳସା ଅପରିସୀମ ଏବଂ ତା'ର କାମନା ସବୁବେଳେ ଅତୃପ୍ତ। ଗୋଟିଏ ବାସନାର ପରିତୃପ୍ତିରେ ପୁଣି ଏକ ବାସନାର ସୃଷ୍ଟିହୁଏ । ଏହି ମାନବୀୟ ଗୁଣକୁ ରତନା ଚରିତ୍ର ମାଧ୍ୟମରେ ଦେଖାଇ ଦିଆଯାଇଛି । ଭଗବାନଙ୍କୁ ସବୁବେଳେ ଦିଅ ଦିଅ, ଏଇଟା ଦିଅ ସେଇଟା ଦିଅ କହି ସବୁ ପାଇ ସାରିବା ପରେ ସେ ଅନୁଭବ କରି, ସେ ହରାଇ ବସିଛି ଅନେକ କିଛି । ସମୟ ଅନୁସାରେ ଅବ୍ୟବସ୍ଥିତ ହୋଇପଡ଼ନ୍ତି ସବୁକିଛି । ଗୋଟାଏ ସୂତାରେ ବନ୍ଧା ହୋଇଥିବା ସ୍ନେହ ମମତା ଭରା ତା'ର ପରିବାର ଅସଜଡ଼ା ହୋଇଯାଇଛି। କାହାର କାହା ପ୍ରତି ଆନ୍ତରିକତା ନାହିଁ, ନାହିଁ ମଧ୍ୟ ସମୟ । ପରିସୀମାର ପରିଧି ପାର କରିଯାଉଥିବା ପତ୍ନି, ନିଶାସକ୍ତ ପୁତ୍ର ଓ ବେପରୁଆ ମନୋବୃତ୍ତିର କନ୍ୟା କାହାକୁ ମଧ୍ୟ ସେ ସଜାଡ଼ି ପାରିନି। ମାନସିକ ଅସନ୍ତୁଳନ ମଧ୍ୟରେ ସେ ହତ୍ୟା କରିଛି କନ୍ୟାର ପ୍ରେମିକକୁ। ଶେଷରେ ସେ ଅନୁଭବ କରିଛି କାମ ଠାରୁ ମୋକ୍ଷ ମଣିଷର ଏକାନ୍ତ କାମ୍ୟ। ତା'ର ଭାବାନ୍ତର ଘଟିଛି ଘରସଂସାର, ଆଶା ଓ କାମନା ମଧ୍ୟରେ ବୁଡ଼ି ରହିଥିବା ଲୋକଟି ଶେଷରେ କହିଛି, "ମୁଁ ତ ସନ୍ୟାସୀ ଲୋକ ମୋର ଘର କେଉଁଠୁ ଆସିବ।". ରତନାର ଏହି ଅଭିବ୍ୟକ୍ତି ମଧ୍ୟରେ ନାଟ୍ୟକାର ଲୋଭ ଓ ମୁକ୍ତି ଉପରେ ଯେଉଁ ସତ୍ୟ ଉପସ୍ଥାପନ କରିଛନ୍ତି ତାହା ବେଶ୍ ହୃଦୟଗ୍ରାହୀ।

'ନିଆରା ନାଟକ'ର ନାଟକଗୁଡ଼ିକୁ ପଢ଼ିଲେ ଆମ ସମାଜର ଆମ ପରିବାରର ନିଛକ ଚିତ୍ରଟିଏ ଆଙ୍କି ହୋଇଥାଏ ମନ ମଧ୍ୟରେ। ତେବେ ସେହି ଚିତ୍ର ମଧ୍ୟରେ କ୍ଷୟିଷ୍ଣୁ ସମାଜ, ବିପର୍ଯ୍ୟସ୍ତ ସାମାଜିକ ଓ ପାରିବାରିକ ବ୍ୟବସ୍ଥାର କେବଳ ପରିପ୍ରକାଶ ଘଟିନାହିଁ

ଏହାର ଅନ୍ତରାଳରେ ସଚେତନ କରି ଦେବାର ଦାୟିତ୍ୱବୋଧ ମଧ୍ୟ ସଂପାଦିତ ହୋଇଛି । ମଣିଷ ଜୀବନରେ ସମସ୍ୟାର ଅନ୍ତ ନାହିଁ, ଅନ୍ତ ନାହିଁ ମଧ୍ୟ ସମାଧାନର ଦିଗ ଖୋଜାରେ । ସମାଜରେ ସମସ୍ୟା କାଲି ଥିଲା, ଆଜି ଅଛି ଏବଂ ଆଗାମୀ ଦିନରେ ତା'ର ସ୍ଥିତି ସୁଧୁରିଯିବ ସେ ପ୍ରତ୍ୟୟ ବି ସୃଷ୍ଟି ହୋଇ ପାରିନି ଏ ପର୍ଯ୍ୟନ୍ତ । ନିଷ୍ଠୁର ବାସ୍ତବତା ମଧ୍ୟରେ ବି ଖୋଜା ହେଉଛି ବିଶ୍ୱାସ ଓ ପ୍ରତ୍ୟୟ । ଏହି ପ୍ରତ୍ୟୟରୁ ସୃଷ୍ଟି 'ନିଆରା ନାଟକ' ।

ବର୍ତ୍ତମାନ ପରିପ୍ରେକ୍ଷୀରେ ମଣିଷ କ୍ରମଶଃ ପରମ୍ପରାରୁ ଦୂରେଇ ଯାଉଛି ତା'ର ମୂଲ୍ୟବୋଧର ଅବକ୍ଷୟ ଘଟୁଛି ଫଳରେ ଏକାନ୍ନବର୍ତ୍ତୀ ପରିବାର ସବୁ ଭାଙ୍ଗି ଯାଉଛି । ପିତା-ପୁତ୍ର, ପତି-ପତ୍ନୀ, ଓ ଭାଇ-ଭଉଣୀର ମଧୁର ସଂପର୍କ ତିକ୍ତ ହୋଇ ଉଠୁଛି । ଏହି ପାରିବାରିକ ସଂପର୍କର ମଧୁରପଣ ଖୋଜିବା ପ୍ରୟାସର ସଫଳ ପରିପ୍ରକାଶ 'ମୋ ଜୀବନ ପଛେ...', 'ନବ ପ୍ରଭାତ', 'ଓଦା ମାଟିର ସପନ', ଓ 'ଝଡ଼' ନାଟକ । ଦୁଇ ଖଣ୍ଡ ନାଟକରେ ପ୍ରଦର୍ଶିତ ପରମ୍ପରା ଓ ଆଧୁନିକତାର ପ୍ରତୀକ । ପ୍ରତି ମୁହୂର୍ତ୍ତରେ ପରମ୍ପରା ଚାହିଁଛି ଆଧୁନିକତା ଆଶ୍ରୟ ଓ ଆଧୁନିକତା ଚାହୁଁଛି ବନ୍ଧନ ମୁକ୍ତ ଜୀବନ । ଫଳରେ ଦେଖା ଦେଇଛି ଦ୍ୱନ୍ଦ୍ୱ । ଏହି ଦ୍ୱନ୍ଦ୍ୱର ସମାଧାନ କେତେବେଳ ଅନୁତାପରେ । କେତେବେଳେ ଦଣ୍ଡ ବିଧାନରେ ତ କେତେବେଳେ ସ୍ନେହ ପ୍ରେମ ମାଧ୍ୟମରେ ଘଟୁଛି । ଏତଦ୍‌ଭିନ୍ନ ନରମପନ୍ଥୀ ମନୋଭାବ ଓ ମୋକ୍ଷପ୍ରାପ୍ତି ମଧ୍ୟରେ ନାଟକ ଗୁଡ଼ିକ ସ୍ୱୟଂସଂପୂର୍ଣ୍ଣ । ସବୁ ନାଟକରେ ଅଛି ଆଜିର ପୃଥିବୀରେ ଅଲଗା ହୋଇ ଯାଉଥିବା ମଣିଷ ମାନଙ୍କ ଭିତରେ ସଂପର୍କର ମନ୍ନୟ ବାର୍ତ୍ତା । ଏହି ସଂପର୍କ ମଧ୍ୟ ପରମ୍ପରା ଓ ଆଧୁନିକତାର ଦିବ୍ୟ ସେତୁବନ୍ଧନ । ସ୍ରଷ୍ଟା ମାନସ ଖୋଜିଛନ୍ତି ଆଧୁନିକ ବସ୍ତୁ ସର୍ବସ୍ୱ ମଣିଷ ଭିତରୁ ହ୍ରାସ ପାଉଥିବା ସଂପର୍କର ଖିଅକୁ । ଛଳନା, ପ୍ରତାରଣା ଓ ଶଠତାର ମୁଖା ଉନ୍ମୋଚନ କରି ସେ ମଣିଷପଣିଆ ବିକାଶର ଆହ୍ୱାନ ଦେଇଛନ୍ତି ।

ସଂକଳନର ସମସ୍ତ ନାଟକ ଶ୍ରୁତି ନାଟକ ହୋଇଥିବାରୁ ସେଥି ମଧ୍ୟରେ ବର୍ଣ୍ଣନା ବୈଚିତ୍ର୍ୟ ପ୍ରାୟତଃ ଦେଖାଯାଏ ନାହିଁ । ବେତାର ମାଧ୍ୟମରେ ପ୍ରଚାରି ହୋଇଥିବାରୁ ଏହାର ଆବେଦନ କେବଳ କର୍ଣ୍ଣ ପାଇଁ । ତେଣୁ ଘଟଣା ଗୁଡ଼ିକୁ ମୁଖଭଙ୍ଗୀ ବା ଅଙ୍ଗଭଙ୍ଗୀ ମାଧ୍ୟମରେ ଦେଖାଇବାର ଅବକାଶ ଏଥିରେ ନଥାଏ । କଥା ସାହାଯ୍ୟରେ ହିଁ ଦ୍ୱନ୍ଦ୍ୱର ଅବତାରଣା ଓ ଅବସାନ ଘଟିଥାଏ । ବେତାର ନାଟ୍ୟକାରଙ୍କ ପାଖରେ ବକ୍ତବ୍ୟ ପ୍ରକାଶନ ନିମନ୍ତେ ଥାଏ ତିନୋଟି ମାଧ୍ୟମ । ପ୍ରଥମଟି ସଂଳାପ, ଦ୍ୱିତୀୟଟି ଧ୍ୱନି ପ୍ରୟୋଗ କୌଶଳ ଓ ତୃତୀୟଟି ସଂଗୀତ । ଏହି ତିନୋଟିର ସହାୟତାରେ ହିଁ ନାଟ୍ୟକାର ଶ୍ରୋତାକୁ ଆକୃଷ୍ଟ କରିଥାନ୍ତି । ତେଣୁ ଏ ସବୁ ଦୃଷ୍ଟିରେ ରଖି ନାଟ୍ୟକାର ନାରାୟଣ ସାହୁ ନାଟକ ଗୁଡ଼ିକ ଅଯଥା ଦ୍ୱନ୍ଦ୍ୱାତ୍ମକ, ଜଟିଳ ଓ ସମସ୍ୟାବହୁଳ ନକରି କରିଛନ୍ତି ଯଥା ସମ୍ଭବ ସରଳ ।

ସଂଳାପ ସଂଯୋଜନା, ଚରିତ୍ର ଚିତ୍ରଣ ଓ ଧ୍ୱନି ପ୍ରୟୋଗ କ୍ଷେତ୍ରରେ ନାଟକ ଗୁଡ଼ିକ ସର୍ବଜନବୋଧ୍ୟ। ବର୍ତ୍ତମାନ ପରିପ୍ରେକ୍ଷୀରେ ବେତାରକୁ କିଛି ଗ୍ରାମ୍ୟଜନତା ଓ ବହୁତ କମ୍ ପରିମାଣରେ ସହରୀ ଓ ବୁଦ୍ଧିଜୀବୀ ଶୁଣୁଥିବାର ପରିସ୍ଥିତିକୁ ବୋଧହୁଏ ଶ୍ରୀ ସାହୁ ଅନୁଭବ କରିଛନ୍ତି। ଫଳରେ ସାଧାରଣ ମଣିଷଙ୍କୁ ସାଥିରେ ରଖି ସେ ନାଟକଗୁଡ଼ିକୁ ରଚନା କରିଛନ୍ତି।

ପ୍ରାୟତଃ ସମସ୍ତ ନାଟକର ଗୋଟେ ସମସ୍ୟା ଓ ଅନ୍ତ ମଧ୍ୟ ସମାଧାନର ଦିଗ। ଯାହା ନିଶ୍ଚିନ୍ତ ଆଦୃତ ହୋଇ ପାରିବ। ହଁ,ଏଇଠି ଆଉ ଗୋଟେ କଥା କୁହାଯାଇ ପାରେ ଯେ ଅନେକ ସମୟରେ ପ୍ରସାରଣ ପରେ ବେତାର ନାଟକର ପ୍ରୟୋଜନ ଶେଷ ହୋଇଯାଏ। ଅଧିକାଂଶ ବେତାର ନାଟକ ପ୍ରକାଶିତ ହେଉ ନଥିବାରୁ ଏ ସବୁ ଆଲୋଚନା ସମାଲୋଚନା ପରିସରଭୁକ୍ତ ହୋଇପାରେ ନାହିଁ। ଏ କ୍ଷେତ୍ରରେ କିନ୍ତୁ ନାରାୟଣ ସାହୁଙ୍କ ପଦକ୍ଷେପ ସ୍ୱାଗତଯୋଗ୍ୟ। ସେ ନାଟକଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିଥିବାରୁ ଏହା ଶ୍ରୋତା ଭିନ୍ନ ପାଠକ, ଗବେଷକ ଓ ବୁଦ୍ଧିଜୀବୀ ମାନଙ୍କର ଦୃଷ୍ଟି ଆକର୍ଷଣ କରିପାରନ୍ତି। ଯାହାଦ୍ୱାରା ବେତାର ନାଟକର ଆଦର ବଢୁଛି ଓ ଉନ୍ମୁକ୍ତ ହେଉଛି ମଧ୍ୟ ସମାଲୋଚନାର ପଥ। ସେ ଯାହାହେଉ, ବେତାର ନାଟକ ଭାବରେ 'ନିଆରା ନାଟକ'ର ଯେ ସ୍ୱତନ୍ତ୍ର ସାହିତ୍ୟିକ ଆବେଦନ ରହିଛି ତାହା ସ୍ୱୀକାର କରାଯାଇପାରେ।

ଗବେଷିକା
ଓଡ଼ିଆ ବିଭାଗ, ବିଶ୍ୱଭାରତୀ
ଶାନ୍ତିନିକେତନ

●●●

# ନାରାୟଣ ସାହୁଙ୍କ ଶିଶୁ ନାଟକ : ଏକ ସମୀକ୍ଷାତ୍ମକ ଆକଳନ

ଡ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ

'କାବ୍ୟେଷୁ ନାଟକଂ ରମ୍ୟମ୍' ଅର୍ଥାତ୍ କାବ୍ୟର ନାନାବିଧ ବିଭାଗ ମଧ୍ୟରୁ ଅଧିକ ରମଣୀୟ ନାଟକ। ଭିନ୍ନ ଭିନ୍ନ ରୁଚିର ଲୋକଙ୍କୁ ଆନନ୍ଦ ଦେବାପାଇଁ ନାଟକ ଏକ ବଳିଷ୍ଠ ମାଧ୍ୟମ ଅଟେ। ସାହିତ୍ୟର ଅନ୍ୟ ବିଭାଗ ତୁଳନାରେ ନାଟକହିଁ ଶିଶୁର ମନକୁ ବହୁ ପରିମାଣରେ ଆକୃଷ୍ଟ କରିବା ସହିତ ତା'ର ହୃଦୟରେ ଏକ ଆଲୋଡ଼ନ ସୃଷ୍ଟି କରିଥାଏ। ଏହାଦ୍ୱାରା ସେ ତା'ର ବିଭିନ୍ନ ଭାବାବେଗକୁ ବ୍ୟବହାର କରି ଶିଖିବା ସହିତ ସୁଖ ଦୁଃଖ, ଯନ୍ତ୍ରଣା, ଆନନ୍ଦକୁ ନିଜର ଦେହରେ ଖେଳାଇ ଆପଣାର ଭବିଷ୍ୟତକୁ ସୁଦୃଢ କରି ଗଢି ତୋଳେ। ନାଟକ ମାଧ୍ୟମରେ ଶିଶୁର ଚରିତ୍ର ଗଠନ ହେବା ସହ ମାନସିକ ସଚେତନତାବୋଧ ତଥା ଉନ୍ନତ ବ୍ୟକ୍ତିତ୍ୱର ବିକାଶ ଘଟିଥାଏ।

ଅନୁକରଣ ଓ ଅଭିନୟର ପ୍ରବୃତ୍ତି ଶିଶୁମାନଙ୍କର ମନରେ ସେହି ସମୟରୁ ଜାଗ୍ରତ ହେବାରେ ଲାଗେ। ଯେବେଠାରୁ ଆଖପାଖର ଦୁନିଆକୁ ବୁଝିବାର ଶକ୍ତି ଜାଗ୍ରତ ହୋଇଥାଏ ସେ ମନକୁ ମନ ସିଂହ ହୋଇ ଅନ୍ୟକୁ ଡରାଇବା, ଖେଳ ମାଧ୍ୟମରେ ବାପା ମାଆ, ବଡ଼ ଭାଇ ହେବା ଆଦି ନାଟକୀୟ ସଂଚାର କରୁଥିବା ଏହି ବୀଜ ଯେତେବେଳେ ବିକଶିତ ହୁଏ ସେତେବେଳେ ତା'ପାଇଁ ଅଭିନୟ ଯୋଗ୍ୟ ନାଟକର ଆବଶ୍ୟକତା ଅନୁଭୂତ ହୁଏ। ତେବେ ଶିଶୁ ନାଟକର ମୁଖ୍ୟ ଲକ୍ଷ୍ୟ ଶିକ୍ଷାଦାନ ନୁହେଁ। ମନୋରଂଜନ ପ୍ରଦାନ କରିବା ହେଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ତେବେ ଶିଶୁମାନଙ୍କର ନାଟକ ଏପରି ହେବା ଉଚିତ ତା'ର କଳ୍ପନାଶକ୍ତିକୁ ଜାଗ୍ରତ ଓ ଉତ୍ତେଜିତ କରିପାରିବ। ତା'ର ବ୍ୟକ୍ତିତ୍ୱର ବିକାଶ କରିବା ସହିତ ତା'ର ଅନୁଭବ କ୍ଷେତ୍ରକୁ ବିସ୍ତାର କରିବାରେ ସମର୍ଥ ହେବ।

ଶିଶୁ ନାଟକ ପିଲାମାନଙ୍କୁ ଅଭିନୟ କୁଶଳୀ କରିବା ସହିତ ସେମାନଙ୍କର ପ୍ରତିଭାକୁ ବିକଶିତ କରିଥାଏ। ସେମାନଙ୍କୁ ଜୀବନର ରଂଗମଞ୍ଚରେ ସଫଳ କଳାକର କରି ଗଢ଼ି ତୋଳିବାରେ ପ୍ରେରଣା ଦେଇଥାଏ। ନିତ୍ୟ ପରିବର୍ତ୍ତନଶୀଳ ଶିଶୁ ସମାଜର ମାନସିକତାକୁ ଜଣେ କୃତବିଦ୍ୟ ଚିକିତ୍ସକ ଭଳି ଟିକିନିଖି ବିଶ୍ଳେଷଣକରି ଶିଶୁ ନାଟକର ଲେଖକ ଆପଣାର

ଲେଖନୀ ମାଧ୍ୟମରେ ପ୍ରକୃତ ସତ୍ୟର ସନ୍ଧାନ ଦେଇଥା'ନ୍ତି। ତାଙ୍କ ଦ୍ୱାରା ପ୍ରୟୋଗ କରାଯାଉଥିବା ସଂଳାପ ହିଁ ଶିଶୁମନକୁ ବିଶେଷ ଭାବରେ ଆକୃଷ୍ଟ କରିଥାଏ। ନାଟକକୁ ପାଠକରି ଶିଶୁ ଯେଉଁ ପରିମାଣରେ ଆନନ୍ଦାନୁଭୂତି ଲାଭ କରେ ଏହାକୁ ଅଭିନୟ ମାଧ୍ୟମରେ ଦର୍ଶନକରି ସେ କିଛି ପରିମାଣରେ ଅନୁକରଣ କରିବା ଶିକ୍ଷା କରିଥାଏ। ଏହି ଅନୁକରଣ ହିଁ ତାକୁ ପ୍ରକୃତ ଆନନ୍ଦ ପ୍ରଦାନ କରିଥାଏ।

ସ୍ୱାଧୀନତାର ପରବର୍ତ୍ତୀକାଳରେ ବିଦ୍ୟାଳୟମାନଙ୍କରେ ଉତ୍ସବାନୁଷ୍ଠାନର ସଂଖ୍ୟାବୃଦ୍ଧି ସହିତ ଆକାଶବାଣୀକେନ୍ଦ୍ର ସ୍ଥାପନ ହେବାଦ୍ୱାରା ଶିଶୁନାଟକର ବ୍ୟାପକ ପ୍ରଚାର ହେବାରେ ଲାଗିଲା । ଶିଶୁ ମାନସିକତାକୁ ତନ୍ନତନ୍ନ କରି ପରୀକ୍ଷା କରି ସେମାନଙ୍କ ରୁଚି ଅନୁକୂଳ ଶିଶୁନାଟକମାନ ରଚନା କରାଗଲା। ଯାହାଦ୍ୱାରା ପ୍ରଭାବଶାଳୀ ଶିଶୁନାଟକ ସମୂହ ଶିଶୁକୁ ବହୁଭାବରେ ପ୍ରଭାବିତ କରିବାରେ ଲାଗିଲେ। ଏଗୁଡ଼ିକ ଶିଶୁକୁ ଆନନ୍ଦଦେବା ସହିତ ଶିକ୍ଷଣୀୟ ବାର୍ତ୍ତା ଦେବାରେ ସହାୟତା କଲେ । ଏଣୁ ଶିଶୁମାନଙ୍କ ପାଇଁ ଯେଉଁ କେତେଜଣ ସ୍ରଷ୍ଟା ନାଟକ ତଥା ଏକାଙ୍କିକା ରଚନା କରିଛନ୍ତି, ସେମାନଙ୍କ ମଧ୍ୟରେ ନାରାୟଣ ସାହୁ (୧୯୫୫) ଅନ୍ୟତମ । ସେ ଜଣେ ସଫଳ ନାଟ୍ୟସ୍ରଷ୍ଟା ଭାବରେ ସେ ଓଡ଼ିଆ ନାଟ୍ୟ ଜଗତରେ ସୁପରିଚିତ । ସମାଲୋଚନା, ଜୀବନୀ, ଶିଶୁ ସାହିତ୍ୟ ପ୍ରଭୃତିରେ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଥିଲେ ମଧ୍ୟ ନାଟକ ରଚନା କ୍ଷେତ୍ରରେ ସେ ଯଥେଷ୍ଟ ପରାକାଷ୍ଠା ଅର୍ଜନ କରିଛନ୍ତି । ନାଟକ, ରେଡ଼ିଓ ନାଟକ, ଦୂରଦର୍ଶନ ନାଟକ, ଟେଲି ଫିଲ୍ମ, ଚଳଚ୍ଚିତ୍ର ଆଦିରେ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଉଠିଛି। ନାଟକ ରଚନା ନିମିତ୍ତ ୧୯୯୧ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ମଧ୍ୟ ଲାଭ କରିଛନ୍ତି। ଏଯାବତ୍ ସେ ଅଠରଟି ନାଟକ ବହି ରଚନା କରିଥିଲେ ହେଁ ଶିଶୁମାନଙ୍କ ପାଇଁ ଚାରିଗୋଟି ଶିଶୁ ନାଟକ ପୁସ୍ତକ ରଚନା କରି ଓଡ଼ିଆ ଶିଶୁ ନାଟକର ଅଭାବିତ ଦିଗକୁ ପୂରଣ କରିପାରିଛନ୍ତି । ତାଙ୍କ ରଚିତ ଶିଶୁ ନାଟକ ପୁସ୍ତକଗୁଡ଼ିକ ହେଲା :-୧. ପିଲାଙ୍କ ନାଟକ (୨୦୦୫), ୨.ଟିକିମିକିଙ୍କ ନାଟକ (୨୦୧୨), ୩.ଶିଶୁ ନାଟକ (୨୦୧୨) ତଥା ବୁଢ଼ୀ ମା'ର ନାଟ ପେଡ଼ି (୨୦୧୪) । ଉକ୍ତ ଚାରିଗୋଟି ଶିଶୁ ନାଟକ ପୁସ୍ତକରେ ବିଭିନ୍ନ ସ୍ୱାଦର ସର୍ବମୋଟ ଅଠରଗୋଟି ଶିଶୁ ଉପଯୋଗୀ ନାଟକ ସଂକଳିତ ହୋଇଛି। ପ୍ରଫେସର ସାହୁଙ୍କ ରଚିତ ଏହି ଅଠରଗୋଟି ଶିଶୁ ନାଟକକୁ ନିମ୍ନ ଭାବରେ ବିଭକ୍ତ କରାଯାଇପାରେ । ଯଥା:-୧.ପୌରାଣିକ, ୨.ପଶୁପକ୍ଷୀଭିତ୍ତିକ, ୩.ଅମର ଶହୀଦ ଭିତ୍ତିକ, ୪.ଐତିହାସିକ, ୫.ଲୋକକଥା ଆଧାରିତ, ୬. ସାମାଜିକ ତଥା ଶିକ୍ଷଣୀୟ କାହାଣୀ ଭିତ୍ତିକ ।

## ୧. ପୌରାଣିକ ବିଷୟ ଆଧାରିତ ଶିଶୁ ନାଟକ:

ଆମର ପୁରାଣ ସାହିତ୍ୟରେ ବହୁ ବଳିଷ୍ଠ କାହାଣୀ ରହିଛି, ଯାହାକି ପିଲାଙ୍କ ମନରେ ବହୁ ଭାବରେ ପ୍ରଭାବ ପକାଇଥାଏ । ଏହାର ଅନ୍ତରାଳରେ ଲୁଚି ରହିଥିବା ନୀତିଶିକ୍ଷାଟି ଶିଶୁ ପାଠକକୁ ସୁମାର୍ଗଗାମୀ କରାଇବାରେ ସହାୟକ ହୁଏ। ପ୍ରଫେସର ସାହୁଙ୍କ ରଚିତ ନାଟକ ମାଧ୍ୟମରେ ମାର୍ଗଦର୍ଶନ (ଟିକିମିକିଙ୍କ ନାଟକ ପୃ:୩-୧୫), ଧୈର୍ଯ୍ୟର ଫଳ ମିଠା (ଶିଶୁ ନାଟକ, ପୃ:୨୮-୩୭), 'ସମ୍ମାନ ଦେଲେ ସମ୍ମାନ ମିଳେ' (ଶିଶୁ ନାଟକ ପୃ:୪୫-୫୫) ଆଦି ନାଟକ ପୌରାଣିକ କଥାର ପୃଷ୍ଠଭୂମିରେ ରଚିତ ହୋଇଛି। ଏହି ନାଟକ ମାଧ୍ୟମରେ ଯେଉଁ ଶିକ୍ଷଣୀୟ ବାର୍ତ୍ତା ଶିଶୁପାଖରେ ଉପସ୍ଥାପନ କରିଛନ୍ତି, ତାହା ହେଲା:

୧. ମଣିଷ ସମୟର ଦାସ, ଗୋଟିଏ ପରିବେଶରୁ ଆଉ ଗୋଟିଏ ପରିବେଶକୁ ଚାଲିଗଲେ ସବୁକିଛି ଭୁଲିଯାଏ । (ଟିକିମିକି ନାଟକ-ପୃ.୪)

୨. ଜୀବନରେ ଶିକ୍ଷାର କେବେ ଶେଷ ହୁଏ ନାହିଁ । ମଣିଷ ମାତ୍ରେ ଭୁଲ୍ କରିବା ସ୍ୱାଭାବିକ ।

୩. ବେଳେବେଳେ ମଣିଷ ମଧ୍ୟ ନିୟତି ନିକଟରେ ହାର ମାନିବାକୁ ବାଧ୍ୟ ହୁଏ।

୪. ଗର୍ବ ହିଁ ବିନାଶର କାରଣ । ବୀରର ଘୋର ଶତ୍ରୁ । ଧୈର୍ଯ୍ୟ, ଅନୁକମ୍ପା ବୀରର ଭୂଷଣ।

୫. ଧୈର୍ଯ୍ୟ ହିଁ କାର୍ଯ୍ୟର ସଫଳତା ଆଣି ଦେଇଥାଏ ।

୬. ପ୍ରଥମେ ନିଜକୁ ସଂଯତ କରିବା ଉଚିତ ।

୭. ଯାହା ତୁମ ଦ୍ୱାରା ଅର୍ଜିତ ନୁହେଁ । ସେଥିପାଇଁ ଲାଳାୟିତ ହୁଅନି ।

୮. ଅନ୍ୟକୁ ସମ୍ମାନ ଦେଇ ଶିଖିଲେ, ଗୌରବ ଆପେ ମିଳିଯିବ।

ଏ ସବୁ ନାଟକର ପୃଷ୍ଠଭୂମି ପୁରାଣ କଥାବସ୍ତୁ ହେଲେ ହେଁ ବିଭିନ୍ନ ପୌରାଣିକ ଚରିତ୍ର ମାଧ୍ୟମରେ ନାଟ୍ୟକାର ଯେଉଁ ମହନୀୟ ବାର୍ତ୍ତାମାନ ପ୍ରଦାନ କରିଛନ୍ତି; ତାହା ଶିଶୁକୁ ବହୁ ଭାବରେ ପ୍ରଭାବିତ କରିବ।

## ୨. ପଶୁପକ୍ଷୀ ବିଷୟ ଭିତ୍ତିକ ଶିଶୁ ନାଟକ:

ଶିଶୁ ଆପଣାର ଚତୁଃପାର୍ଶ୍ୱରେ ବାସକରୁଥିବା ପଶୁପକ୍ଷୀ ଜୀବଜନ୍ତୁଙ୍କ ସଂପର୍କରେ ଅନୁଭୂତିରେ ଜ୍ଞାନାର୍ଜନ କରିଥାଏ। ସେମାନଙ୍କ ମାଧ୍ୟମରେ ସେ ବହୁ ଶିକ୍ଷଣୀୟ ତଥା ଆନନ୍ଦ ଦାୟକ କଥାକୁ ଗ୍ରହଣ କରେ। ଶିଶୁର କଳ୍ପନା ମାନସରେ ପଶୁପକ୍ଷୀମାନଙ୍କର

କଥା ସତେ ଯେପରି ଜୀବଜନ୍ତୁପରି ପ୍ରତିଭାତ ହୋଇଥାଏ। ଶିଶୁଗଳ୍ପ, କବିତା ପରି ଶିଶୁ ନାଟକ ମଧ୍ୟ ପଶୁପକ୍ଷୀଙ୍କୁ ଆଧାରକରି ଲେଖାଯାଇଛି । ପଶୁପକ୍ଷୀମାନଙ୍କୁ ନେଇ ମଣିଷ ପରି ସଂଳାପ ସେମାନଙ୍କର ମୁହଁରେ କୁହାଇ ଦିଆଯାଇଥାଏ। ଏହି ପଶୁପକ୍ଷୀମାନଙ୍କୁ ଆଧାରକରି ପ୍ରଫେସର ସାହୁ 'ଉପହାର' (ପିଲାଙ୍କ ନାଟକ , ପୃ:୧୦୬) ଓ 'ବାର୍ତ୍ତା' (ଟିକିମିକିଙ୍କ ନାଟକ, ପୃ:୨୮-୪୮) ନାଟକ ରଚନା କରିଛନ୍ତି। ତେବେ ଏହି ନାଟକର ମୁଖ୍ୟ ଅନ୍ତଃସ୍ୱର ହେଲା-ସମବେତ ପ୍ରଚେଷ୍ଟା ଦ୍ୱାରା ଶକ୍ତିଶାଳୀ ଶତ୍ରୁର ପରାଜୟ, ମନ୍ଦବୁଦ୍ଧିର ବିନାଶ, ବୁଦ୍ଧିର କରାମତି ତଥା ପଶୁ ବି ମଣିଷ ଠାରୁ କୌଣସି ଗୁଣରେ କମ୍ ନୁହେଁ। ମଣିଷକୁ ସଚେତନ କରାଇବାର ଲକ୍ଷ୍ୟନେଇ ଏହି ଦୁଇଟି ଶିଶୁ ନାଟକ ସେ ରଚନା କରିଛନ୍ତି। ଯାହା ମାଧ୍ୟମରେ ଶିଶୁ ଭରପୂର ମନୋରଞ୍ଜନର ଖୋରାକ ପାଇବା ସହିତ ନୀତିଶିକ୍ଷାକୁ ଗ୍ରହଣ କରି କାର୍ଯ୍ୟକ୍ଷମ ହୋଇପାରିବ।

### ୩. ଅମର ଶହୀଦଙ୍କ ଜୀବନୀ ଭିତ୍ତିକ:

ମହାପୁରୁଷମାନଙ୍କର ଜୀବନର ଘଟଣାବହୁଳ କାର୍ଯ୍ୟଧାରା ତଥା ସେମାନଙ୍କର ଆଦର୍ଶର କଳାତ୍ମକ ରୂପ ଶିଶୁମାନଙ୍କୁ ବେଶ୍ ପ୍ରଭାବିତ କରିଥାଏ। ଏହା ସେମାନଙ୍କୁ ଏକ ଉନ୍ନତ ଜୀବନଧାରା ଗଠନ ଦିଗରେ ପ୍ରେରଣା ଯୋଗାଇଥାଏ। ସେହି ଅମର ଶହୀଦମାନଙ୍କର ସଂଘର୍ଷମୟ ଜୀବନର କାର୍ଯ୍ୟଧାରା ଓ ଆଦର୍ଶ ଯୁଗେ ଯୁଗେ ଆମମାନଙ୍କର ସ୍ମରଣୀୟ ହୋଇ ରହିଅଛି । ସେହି ଅମର ଶହୀଦମାନଙ୍କର ଜୀବନାଦର୍ଶକୁ ନେଇ ଯେଉଁ ନାଟ୍ୟ ରଚନା କରାଯାଏ, ତାହା ଶିଶୁ ତଥା କିଶୋରମାନଙ୍କୁ ବହୁଭାବରେ ପ୍ରଭାବିତ କରିଥାଏ। କାରଣ ଶିଶୁ କିଶୋର ମାନଙ୍କ ଆଗରେ ସେହି ମହାନ୍ ବୀର ମାନଙ୍କର ଜୀବନର ଯେଉଁ ଆଦର୍ଶ ପ୍ରତଫଳିତ କରାଯାଏ। ତାହା ଅନେକାଂଶରେ ସେମାନଙ୍କୁ ପ୍ରଭାବିତ କରିଥାଏ। ଦେଶ ତଥା ଜାତି ନିମିତ୍ତ ଆତ୍ମବଳୀ ଦେବା ଏହି ଧରଣର ନାଟକର ମୁଖ୍ୟସ୍ୱର ।ଅନ୍ୟନ୍ୟ ଆତ୍ମୋତ୍ସର୍ଗ ତଥା ସ୍ୱାର୍ଥତ୍ୟାଗର ବାର୍ତ୍ତା ଏହି ନାଟକରେ ପୂର୍ଣ୍ଣତଃ ପ୍ରତଫଳିତ ହୋଇଥାଏ। ଏହି ପରିପ୍ରେକ୍ଷୀରେ ପ୍ରଫେସର ସାହୁଙ୍କ ରଚିତ 'ଶହୀଦ କୃତ୍ତିବାସ' (ପିଲାଙ୍କ ନାଟକ ପୃ୭-୧୩), 'ବାଘିତୋଟାର ସନ୍ଥ' (ପିଲାଙ୍କ ନାଟକ ପୃ:୩୪-୪୪) ତଥା 'ବୀର୍‌ସା ଭଗବାନ' (ଟିକିମିକିଙ୍କ ନାଟକ ପୃ:୧୬-୨୭) ଆଦି ନାଟକକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ । ଉକ୍ତ ନାଟକରେ ତିନିଜଣ ମହାନ୍ ଶହୀଦ୍ କୃତ୍ତିବାସ ପାଟଶାଣୀ, ଜୟୀ ରାଜଗୁରୁ, ଓ ବୀର୍‌ସା ମୁଣ୍ଡାଙ୍କ ସାଧନା ତଥା ଦେଶପାଇଁ ଆତ୍ମବଳୀର ନିଛକ ପ୍ରତିଛବି ପ୍ରତଫଳିତ ହୋଇଛି। ଶିଶୁମାନେ ଏହାକୁ ପଢିବା ସହିତ

ମଞ୍ଚରେ ଅଭିନୀତ ହେବାର ଦେଖିଲେ ବହୁଭାବରେ ପ୍ରଭାବିତ ହୋଇଥାନ୍ତି । ଏପରିକି ଜନ୍ମଭୂମି ସେବା ନିମିତ୍ତ ସେମାନଙ୍କ ମନରେ ଏକ ସୁପ୍ତ ବୀଜ ଜାଗରିତ ହୋଇଥାଏ।

ଏହି ତିନୋଟିର ମୁଖ୍ୟସ୍ୱର ହେଲା ଅନ୍ୟାୟ ଆଗରେ ମଥାନତ ନକରି ଦୃଢ ଭାବରେ ଦେଶମାତୃକାର ସେବା ଦିଗରେ ଆତ୍ମବଳୀ ଦେବ କାରଣ ଅନ୍ୟାୟକୁ ମଥାପାତି ସହିନେବା ହେଉଛି ସବୁଠୁ ବଡ଼ ଅପରାଧ। ଏହି ତିନୋଟି ନାଟକ ମଧ୍ୟରୁ 'ବାଘିତୋଟାର ସନ୍ଥ' ନାଟକ ଭିନ୍ନ ଢଙ୍ଗରେ ପରିବେଷଣ କରାଯାଇଛି। ବଣଭୋଜି କରିବା ଆଳରେ ଶିକ୍ଷକ ତଥା ଛାତ୍ରମାନଙ୍କ ଦ୍ୱାରା ବାଘିତୋଟାର ସନ୍ଥ ଜୟୀ ରାଜଗୁରୁଙ୍କୁ ଭକ୍ତିନୈବେଦ୍ୟ ଅର୍ପଣ କରାଯାଇଚି। ଆଉ ଅନ୍ୟଦୃଶ୍ୟ ମାଧ୍ୟମରେ ଜୟୀ ରାଜଗୁରୁ ଓ ଇଂରେଜ୍ ସରକାରଙ୍କର ସଂଳାପ ରହିଛି। ଏହାହିଁ ନାଟ୍ୟକାର ସାହୁଙ୍କ ନାଟକ ରଚନା ଶୈଳୀର ଅନନ୍ୟ ପରିବେଷଣଧାରା। ପ୍ରକୃତରେ ଏପରି ନାଟକରେ ଧାରା ଆମ ଶିଶୁ ନାଟକରେ କୌଣସିଠାରେ ଅନୁସୃତ ହୋଇନାହିଁ । ଯାହାହିଁ ପ୍ରଫେସର ସାହୁଙ୍କ ଦ୍ୱାରା ଅନୁସୃତ ହୋଇ ଏକ ନୂତନ ଦିଗ ଉନ୍ମୋଚନ କରିବାରେ ସହାୟକ ହୋଇପାରିଛି।

## ୪. ଐତିହାସିକ ଶିଶୁନାଟକ:

ଭାରତ ତଥା ଉତ୍କଳର ଇତିହାସ ଅତ୍ୟନ୍ତ ଉନ୍ନତ ତଥା ସଂସ୍କୃତି ସଂପନ୍ନ । ସେହି ଭୂମିରେ ଅନେକ ମହନୀୟ ଘଟଣା ସଂଘଟିତ ହୋଇଛି। ଯାହା ଆମକୁ ପ୍ରତି ମୁହୂର୍ତ୍ତରେ ଅନୁପ୍ରେରିତ କରିଚାଲିଛି। ଐତିହାସିକ ବିଷୟବସ୍ତୁକୁ ନେଇ ଗଳ୍ପ ରଚନା ହେଲା ପରି ନାଟକ ମଧ୍ୟ ରଚନା କରାଯାଇଛି। ଏହି ନାଟକରେ ଅତୀତ ଇତିହାସର ବୀର ତଥା ଆଦର୍ଶ ପୁରୁଷମାନଙ୍କର ପିଲାଦିନର କାହାଣୀ ହେଉ ଅଥବା ବୀରତ୍ୱପୂର୍ଣ୍ଣ ଶାସନର କିଛି ଝଲକକୁ ମୁଖ୍ୟ ଉତ୍ସ ଭାବରେ ଗ୍ରହଣ କରାଯାଇଥାଏ। ତେବେ ଏ ପ୍ରକାରର ନାଟକରେ କାଳ୍ପନିକ ଭାବଧାରା ଅପେକ୍ଷା ସତ୍ୟତାର ପରିମାଣ ଅଧିକ ଦୃଶ୍ୟମାନ ହୁଏ। ସତ୍ୟତାର ଆବରଣରେ ସାମାନ୍ୟତମ କଳ୍ପନାର ପୁଟ ଦେଇ ନାଟ୍ୟକାର ନାଟକ ରଚନା କରିଥା'ନ୍ତି । ଯାହାକୁ ପାଠକରି ଅଥବା ଦର୍ଶନକରି ଶିଶୁ ତଥା କିଶୋରମାନେ ବହୁ ଭାବରେ ପ୍ରଭାବିତ ହୋଇଥାନ୍ତି।

ନାଟ୍ୟକାର ସାହୁଙ୍କ ରଚିତ ଶିଶୁ ନାଟକ ମଧ୍ୟରେ 'ମହତ୍ ଭିକ୍ଷା' (ଶିଶୁ ନାଟକ-ପୃ:୩-୧୦) ନାଟକଟି ଏହି ଧରଣର ନାଟକ। ଏଥିରେ ଛତ୍ରପତି ଶିବାଜୀଙ୍କର ଜୀବନର ଏକ ଶିକ୍ଷଣୀୟ ଘଟଣାକୁ ପ୍ରାଧାନ୍ୟ ଦିଆଯାଇ ନାଟକଟିକୁ ଗତିଶୀଳ କରାଯାଇଛି। ବହୁଦିନ ତଳେ ପଞ୍ଚମ ଶ୍ରେଣୀ ସାହିତ୍ୟ ବହିର 'ଦେଶପ୍ରେମ ଦୀପ ଜାଳ'ର ଏହାର ନାଟ୍ୟରୂପ

କହିଲେ ଭୂଲ୍‌ହେବନାହିଁ। ନାଟକର ବିଷୟବସ୍ତୁଟି ଉକ୍ତ କବିତାର ବିଷୟକୁ ଆଧାରକରି ରଚିତ ହୋଇଥିଲେହେଁ ନାଟ୍ୟକାରଙ୍କ ବଳିଷ୍ଠ ଲେଖନୀର କାଉଁରୀ ସ୍ପର୍ଶରେ ଯେପରି ମାର୍ମିକ ହୋଇଚି ସେପରି ଶିଶୁ ହୃଦୟଗ୍ରାହୀ ହୋଇପାରିଛି। ତେବେ ଉକ୍ତ ନାଟକର ପ୍ରଦତ୍ତ ମନୋମୁଗ୍ଧକର ତଥା ଶିକ୍ଷଣୀୟ ସଂଳାପଗୁଡ଼ିକ ଉଭୟ ଶିଶୁ ତଥା ବଡ଼ମାନଙ୍କୁ ଅନୁପ୍ରେରିତ କରିଥାଏ । ଏଇ ଯେମିତି:

- ଇତିହାସ କେବଳ ବୀରମାନେ ହିଁ ସୃଷ୍ଟି କରିଥାନ୍ତି।
- ଏ ପୃଥିବୀରେ କୌଣସି କାର୍ଯ୍ୟ ବିନା ଉଦ୍ଦେଶ୍ୟରେ ହୁଏ ନାହିଁ । କୌଣସି ବସ୍ତୁ ବିନା ପ୍ରୟୋଜନରେ ଆତଜାତ ହୁଏନି।
- ସିଂହାସନରେ ବସିଗଲେ କେହି ରାଜା ହୋଇଯାଏ ନାହିଁ ସେଥିପାଇଁ ସାଧନା କରିବାକୁ ପଡ଼େ।
- ସଦାବେଳେ ଯୁଦ୍ଧରେ ମାତିଲେ ପ୍ରଜାଙ୍କ କଥା ବୁଝିବାକୁ ସେ ସମୟ ପାଇବ କେତେବେଳେ ?
- ପ୍ରତ୍ୟେକ କାମହିଁ ତଳ ସ୍ତରରୁ ଆରମ୍ଭ କରିବା ଉଚିତ ।
- ରାଜା କେବେ ନିଜ ପାଇଁ ଜନ୍ମ ନେଇନଥାଏ । ତା'ର ଜନ୍ମ ଅନ୍ୟ ପାଇଁ ।

ଜଣେ ପ୍ରକୃତ ଗୁରୁ ନିଜର ଶିଷ୍ୟର କାମନା କରିବା ସହିତ ନିଜ ଶିଷ୍ୟକୁ ଶୀର୍ଷତମ ସ୍ଥାନରେ ଆସୀନ ହେବାକୁ ଚାହିଁଥାନ୍ତି । ତେଣୁ ବେଳେବେଳେ ସେ ଶିକ୍ଷା ଦେବାକୁ ବ୍ୟଗ୍ର ହୋଇ ଉଠନ୍ତି। ଶିଷ୍ୟକୁ ସତ୍‌ମାର୍ଗରେ ପରିଚାଳିତ କରାଇଥାନ୍ତି। ଗୁରୁ ରାମଦାସ ଠିକ୍ ସେହିପରି ଆପଣାର ଶିଷ୍ୟ ଶିବାଜୀଙ୍କୁ ମହତ୍‌ଶିକ୍ଷା କରାଇ ପାରିଛନ୍ତି। ଏହାହିଁ ଉକ୍ତ ନାଟକର ବୈଶିଷ୍ଟ୍ୟ।

## ୫. ଲୋକକଥା ଆଧାରିତ ଶିଶୁ ନାଟକ:

ଆମ ଓଡ଼ିଆ ସାହିତ୍ୟ ଲୋକକଥାରେ ପରିପୂର୍ଣ୍ଣ । ପ୍ରତ୍ୟେକ ଭାଷାର ଶିଶୁ ସାହିତ୍ୟ ପରି ଓଡ଼ିଆ ଭାଷାର ଶିଶୁ ସାହିତ୍ୟ ଲୋକକଥାର କୁକ୍ଷୀରୁ ଜନ୍ମଲାଭ କରିଛି। ତାହା ମୌଖିକ ରୂପରେ ବହୁଦିନ ଧରି ଲୋକରୁ ଲୋକମୁଖକୁ ପ୍ରଚାରିତ ହୋଇ ଏକ ଭାବଗାମ୍ଭୀର୍ଯ୍ୟପୂର୍ଣ୍ଣ ଧାରା ସୃଷ୍ଟି କରିପାରିଛି। ଏହି ଲୋକଗଳ୍ପଗୁଡ଼ିକ ସବୁକାଳରେ ଶିଶୁମାନଙ୍କର ଚିତ୍ତବିନୋଦନର ପ୍ରଧାନ ସାମଗ୍ରୀ ହୋଇପାରିଛି । ଏହାମଧ୍ୟ ଶିଶୁକୁ କୌତୁହଳୀ କରାଇବାରେ ପ୍ରେରଣା ଯୋଗାଇଛି।

ଲୋକକଥାର ବିଷୟକୁ ଆଧାରକରି ନାଟ୍ୟକାର ସାହୁ ଏକ ଶିଶୁନାଟକ 'ନନ୍ଦା ସରସ୍ୱତୀ' (ଶିଶୁ ନାଟକ, ପୃ:୧୮-୨୨)ରଚନା କରିଛନ୍ତି । 'ବଉଳା ଗାଈ' ଉପାଖ୍ୟାନ ଏହି ନାଟକର ମୁଖ୍ୟ ବିଷୟବସ୍ତୁ ହେଲେ ହେଁ ନାଟ୍ୟକାରଙ୍କ ନୂତନ ପରିବେଷଣ ଶୈଳୀ ତଥା ବିଷୟବସ୍ତୁ ସଂଯୋଜନାରେ ନୂତନତ୍ୱ ନାଟକଟିକୁ ବେଶ୍ ମନଛୁଆଁ କରିପାରିଛି। ଏହାରି ମାଧ୍ୟମରେ ପ୍ରସିଦ୍ଧ ପୁଷ୍କର ତୀର୍ଥର ଏକ ଧାରା 'ନନ୍ଦା ସରସ୍ୱତୀ'ର କିମ୍ବଦନ୍ତୀମୂଳକ ଉପାଖ୍ୟାନକୁ ସେ ଖୁବ୍ ମନୋଜ୍ଞ ଶୈଳୀରେ ଉପସ୍ଥାପନ କରିଛନ୍ତି । "ସତ୍ୟରେ ଏ ପୃଥିବୀ ଆତଯାତ ହେଉଛି" । "ଅହିଂସା ଭଳି ଦାନ ବା ତପସ୍ୟା ଏ ସଂସାରରେ ନାହିଁ"। ଏହା ହିଁ ଉକ୍ତ ନାଟକରେ ସଭିଁଙ୍କ ଅଜାଣତରେ ରଖି ଦିଆଯାଇଛି।

## ୬. ସାମାଜିକ ତଥା ଶିକ୍ଷଣୀୟ ଭିତ୍ତିକ ଶିଶୁ ନାଟକ:

ଶିଶୁ ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତା'ର ସମାଜ ସହିତ ଘନିଷ୍ଠ ପରିଚୟ ଘଟାଇବା ଦିଗରେ ଶିଶୁ ସାହିତ୍ୟିକ ଗଣଙ୍କର ଅହରହ ପ୍ରଚେଷ୍ଟା ଚଳାଇଥାନ୍ତି। ଶିଶୁକୁ ଆନନ୍ଦ, ଉତ୍ସାହ, ଜ୍ଞାନ, ତଥା ନୀତି କଥା, ଏକ ମହତ୍ତ୍ୱପୂର୍ଣ୍ଣ ଆଦର୍ଶବୋଧ ସହିତ ମୂଲ୍ୟବୋଧ ଭିତ୍ତିକ ବାର୍ତ୍ତା ପ୍ରଦାନର ଲକ୍ଷ୍ୟ ନେଇ ନାଟ୍ୟକାରମାନେ ନାନାବିଧ ଶିଶଉ ନାଟକ ରଚନା କରିଛନ୍ତି। ସମାଜରେ ନିତିଦିନ ଘଟୁଥିବା ଘଟଣା ସମୂହରୁ ଶିକ୍ଷଣୀୟ ତଥା ଆଦର୍ଶବୋଧ ନାଟକ ମାଧ୍ୟମରେ ପରିବେଷଣ କରାଇ ଶିଶୁର ମାନସିକ ତଥା ଚାରିତ୍ରିକ ଦିଗଟିକୁ ବଳିଷ୍ଠ କରିବାକୁ ନାଟ୍ୟକାରଗଣ ଅହରହ ଚେଷ୍ଟା ଚଳାଇଥାନ୍ତି। ଆପଣାର ନାଟକ ସମୂହରେ ସେମାନେ ପରିବାର, ଶିକ୍ଷାୟତନ, ଉଚ୍ଚନୀଚ, ଛୁଆଁ ଅଛୁଆଁ, ଭେଦାଭେଦର ବାର୍ତ୍ତା ପ୍ରଦାନ କରିବାକୁ ସର୍ବଦା ଚେଷ୍ଟିତ ଥାନ୍ତି। ସଂଘର୍ଷପୂର୍ଣ୍ଣ ଜୀବନକାହାଣୀ ତଥା କିଶୋର ମନସ୍ତତ୍ତ୍ୱର ନିଛକ ପ୍ରତିଛବି ଏହି ନାଟକମାନଙ୍କରେ ପୂର୍ଣ୍ଣତଃ ଦେଖିବାକୁ ମିଳିଥାଏ।

ନାଟ୍ୟକାର ସାହୁଙ୍କ ରଚିତ 'ଦରଜା ଖୋଲିଦେବା' (ପିଲାଙ୍କ ନାଟକ, ପୃ:୧୪-୩୩)ତଥା 'ବୁଢ଼ୀ ମାଆର ନାଟ ପେଡ଼ି' ପୁସ୍ତକ ଅନ୍ତର୍ଗତ ସାତଗୋଟି ନାଟକ ଏହି ପର୍ଯ୍ୟାୟର ଅଟେ । ପାଠ ପଢ଼ିବା ସମସ୍ତଙ୍କ ଅଧିକାର । ସେଠାରେ ଜାତିଧର୍ମ ସଂପ୍ରଦାୟର ବାଛ ବିଚାର ପ୍ରଶ୍ନ ଉଠେନାହିଁ। କାରଣ ଖାଇବା, ପିଇବା, ପିନ୍ଧିବା ପରି ପାଠ ପଢ଼ିବା ମଧ୍ୟ ଆମର ଏକ ଆବଶ୍ୟକତା । ପାଠ ହେଉଛି ଏମିତି ଏକ ଆଲୁଅ ତାହା ଅନ୍ଧାର ରାତିରେ ବାଟବଣା ବାଟୋଇକୁ ଉପଯୁକ୍ତ ମାର୍ଗ ଦର୍ଶନ କରାଏ। ଏପରି ବିଦ୍ୟାଳୟ ଭଳି ଜନନୀ ପ୍ରତି ଅନ୍ୟାୟ କରୁଥିବା ଲୋକକୁ କେବେ କ୍ଷମା ଦିଆଯାଏ ନାହିଁ। ବିଦ୍ୟାଳୟରେ

ସମସ୍ତଙ୍କର ପାଠ ପଢ଼ିବାର ଅଧିକାର ଅଛି। ବିଦ୍ୟାଳୟ ପାଇଁ ଉଚ୍ଚନୀଚ ଧନୀ ଗରିବ, ହିନ୍ଦୁ, ମୁସଲମାନ୍ ସମସ୍ତେ ସମାନ। ସେଠାରେ ଜାତି ଧର୍ମବର୍ଣ୍ଣଗତ ବିଭେଦର ପ୍ରଶ୍ନ ଉଠି ନଥାଏ। ଏଠାରେ ସମସ୍ତଙ୍କର ସମାନ ଅଧିକାର ରହିଛି । ଏହି ବିଷୟବସ୍ତୁକୁ ନେଇ 'ଦରଜା ଖୋଲି ଦେବା ନାଟକଟି ଗତିଶୀଳ ହୋଇଛି। ଗାଆଁ ପ୍ରଧାନଙ୍କ ମନରେ ଥିବା ଜାତିଧର୍ମଗତ ବିଭେଦର ପ୍ରାଚୀରକୁ ଭାଙ୍ଗିଦେଇ ସାମ୍ୟବାଦର ବାର୍ତ୍ତା ପ୍ରଚାର ଲକ୍ଷ୍ୟ ନାଟ୍ୟକାର ପ୍ରଧାନ ମୁହଁରେ ମନର ଦରଜା ଖୋଲିଦେବାର ବାର୍ତ୍ତାକୁ ପ୍ରଚାର କରିଛନ୍ତି। ତେବେ ଉକ୍ତ ନାଟକଟିରେ ଶିଶୁ ଶ୍ରମିକ ପ୍ରଥାର ବିଲୋପ, ଗୋତି ଶ୍ରମିକ ପ୍ରଥାର ବିଲୋପ, ଶିଶୁକୁ ଉପଯୁକ୍ତ ମାର୍ଗରେ ଗଢ଼ି ତୋଳିବାର ସାଧନା, ସର୍ବୋପରି ଛୁଆଁ ଅଛୁଆଁ ଭେଦାଭେଦର ଦୂରୀକରଣ ବାର୍ତ୍ତାକୁ ଅତି ସୁନ୍ଦର ତଥା ସାବଲୀଳ ଶୈଳୀରେ ପରିବେଷଣ କରିପାରିଛନ୍ତି। ତାହାହିଁ ତାଙ୍କର ନାଟକୀୟ ଶୈଳୀର ଅନ୍ୟତମ ବୈଶିଷ୍ଟ୍ୟ। ମନର ଆବଦ୍ଧ ଦରଜାକୁ ଖୋଲିଦେଇ ଏକ ସଂହତିର ବାର୍ତ୍ତା ପ୍ରଚାର ନିମିତ୍ତ ଏହି ଦରଜାର ଦ୍ୱାରକୁ ସର୍ବଦା ଉନ୍ମୁକ୍ତ ରଖିବା ସଙ୍ଗେ ସଙ୍ଗେ ବହିର୍ଜଗତର ଚିନ୍ତାଧାରା ତଥା ଭାବଧାରାର ପବନ ଯେପରି ଅନ୍ତର ମଧ୍ୟରେ ଖେଳିଯିବ; ତାହାହିଁ ଉକ୍ତ ନାଟକର ସାରମର୍ମ।

'ବୁଢ଼ୀମାଆର ନାଟପେଡ଼ି' ନାଟକଟି ଏକ ଭିନ୍ନ ସ୍ୱାଦର ଶିଶୁ ନାଟକ। ବୋଧହୁଏ ଏପରି ଶୈଳୀରେ ଆଉ କୌଣସି ଶିଶୁ ନାଟକ ରଚନା କରାଯାଇନାହିଁ। ଉକ୍ତ ନାଟକରେ ସର୍ବମୋଟ୍ ସାତଗୋଟି ଶିଶୁ ନାଟକ ସ୍ଥାନ ପାଇଛି। ସେଥି ମଧ୍ୟରୁ ଶେଷ ପାଞ୍ଚଟି ନାଟକ ଅର୍ଥାତ୍ 'ଅଦରକାରୀ ଜିନିଷ କାହିଁ', 'ରାଶିଫଳ ଭାଗ୍ୟ ଗଢ଼େନା', 'ସ୍ୱାର୍ଥହୀନ ସେବା ହିଁ ଶ୍ରେଷ୍ଠ', 'ଚାପ ହିଁ ଦୁଃଖର କାରଣ' ଓ 'ସନ୍ତୋଷ ହିଁ ସୁଖ' ଏକ ଶିକ୍ଷଣୀୟ ଆଦର୍ଶବୋଧକୁ ନେଇ ରଚିତ ହୋଇଥିଲାବେଳେ ପ୍ରଥମ ନାଟକ 'ଅଳଂକାର' ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଜୀବନାଦର୍ଶକୁ ଭିତ୍ତିକରି ରଚିତ ହୋଇଛି। ପୁସ୍ତକରେ ଦ୍ୱିତୀୟ ନାଟକ 'ବାଘ ନଦେଖିଲେ ବିଲେଇ ଦେଖ' ଏକ ଆଦିବାସୀ କାହାଣୀକୁ ଭିତ୍ତିକରି ରଚିତ ହୋଇଛି।

ଉକ୍ତ ନାଟକ ବହିର ଅନ୍ୟତମ ବୈଶିଷ୍ଟ୍ୟ ହେଲା ଗୋଟିଏଗୋଟିଏ ଆଦର୍ଶବୋଧକୁ ପ୍ରଚାର କରିବାର ଲକ୍ଷ୍ୟ ନେଇ ପ୍ରଥମରୁ ବୁଢ଼ୀ ମାଆ ଓ ନାତି ନାତୁଣୀଙ୍କୁ ମାଧ୍ୟମ ଭାବରେ ଗ୍ରହଣ କରାଯାଇଛି। ନାଟକଟି ପାଠକଲାବେଳେ ପାଠକ ମନରେ ପ୍ରଥମେ କାହାଣୀ ଶୁଣିବା ଭ୍ରମ ସୃଷ୍ଟିହେବ । ପ୍ରତ୍ୟେକ ନାଟକର ପ୍ରାରମ୍ଭିକ ପର୍ବ ଏକ ସାମାନ୍ୟ ପରିବେଶରୁ ଆରମ୍ଭ ହୋଇଛି। ଚାଳିଆ ଘରେ ବୁଢ଼ୀ ମାଆ ଓ ତାଙ୍କର ଆଦରର ନାତି ନାତୁଣୀଙ୍କୁ ଦେଖିବାକୁ ମିଳେ। ବୁଢ଼ୀ ମାଆ କାହାଣୀ ଶୁଣାଇବାକୁ ଯାଇ ଏକ ଆଦର୍ଶବୋଧର କାହାଣୀ

ଆରମ୍ଭ କରନ୍ତି । ସେହି ଆଦର୍ଶବୋଧର ବାର୍ତ୍ତା ପ୍ରଚାର କରିବା ଅବସରରେ ନାଟକଟି ଗତିଶୀଳ ହୋଇ ପରିସମାପ୍ତି ପଥରେ ଅଗ୍ରସର ହୋଇଥାଏ ।

'ଅଳଂକାର' ନାଟକରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଆଦର୍ଶବୋଧକୁ ପରିବେଷଣ କରାଯାଇଛି । 'ବାଘ ନଦେଖିଲେ ବିଲେଇ ଦେଖ' ନାଟକରେ ଆମ ରାଜ୍ୟରେ ଥିବା ଆଦିବାସୀମାନଙ୍କର ବିଶ୍ୱାସକୁ ନେଇ ଯେଉଁ କାହାଣୀ ଶୁଣିବାକୁ ମିଳେ, ତାହା ପରୀକ୍ଷଣକୁ ନେଇ ଗଢି ଉଠିଛି । କୌଣସି ଜିନିଷ ଅଦରକାରୀ ନୁହେଁ, ତେଣୁ କିଛି ଜିନିଷ ପତ୍ର ନଷ୍ଟ କରିବା ଅନୁଚିତ; ଏହାହିଁ 'ଅଦରକାରୀ ଜିନିଷ କାହିଁ ?'ନାଟକରେ ପରିବେଷିତ ହୋଇଛି ।

ଚତୁର୍ଥ ନାଟକଟି ଏକ ସୁନ୍ଦର ଅନ୍ଧବିଶ୍ୱାସକୁ ନେଇ ଗଢ଼ି ଉଠିଛି । ରାଶିଫଳ କାହାରି ଭାଗ୍ୟ ଗଢ଼ି ନଥାଏ । ମଣିଷ ହିଁ ନିଜେ ନିଜର ଭାଗ୍ୟ ବିଧାତା । ସେ ହିଁ ନିଜେ ନିଜର ଭାଗ୍ୟକୁ ଗଢେ । ଏହି ନୀତିବାଣୀକୁ ଉପସ୍ଥାପିତ କରିବାର ଲକ୍ଷ୍ୟ ନେଇ 'ରାଶଫଳ ଭାଗ୍ୟ ଗଢେନି' ନାଟକର ପରିକଳ୍ପନା । ଅଭିଜ୍ଞ କାହାଣୀ କଥନ ମାଧ୍ୟମରେ ବିବେକାନନ୍ଦ, ରାଜା, ଜ୍ୟୋତିଷ ଓ ମନ୍ତ୍ରୀ ପ୍ରଭୃତି ପାତ୍ର ପାତ୍ରୀଙ୍କୁ ନେଇ ନାଟ୍ୟକାର ଏହି ନାଟକଟିକୁ ରଚନା କରିଛନ୍ତି । ଏହା କେବଳ ଶିଶୁ କାହିଁକି ବଡ଼ମାନଙ୍କ ମନରେ ରାଶିଫଳ ପ୍ରତି ଅହେତୁକ ଉତ୍କଣ୍ଠା ଓ ଅନ୍ଧବିଶ୍ୱାସକୁ ଦୂରକରିବାରେ ସହାୟକ ହେବ ।

ପଞ୍ଚମ ନାଟକଟି ଏକ ସୁନ୍ଦର ଉପାଖ୍ୟାନକୁ ନେଇ ସୃଷ୍ଟି । ଏଥିରେ ଯମ ଓ ଚିତ୍ରଗୁପ୍ତଙ୍କ ଚରିତ୍ର ଭାବରେ ଅବତୀର୍ଣ୍ଣ କରାଇ ନାଟ୍ୟକାର ନିଃସ୍ୱାର୍ଥପର କର୍ମ ସଂପର୍କରେ ଉଲ୍ଲେଖ କରିଛନ୍ତି । କାରଣ ଯେଉଁ କାମରେ ସ୍ୱାର୍ଥ ନଥାଏ, ସେଇ ହେଉଛି ଶ୍ରେଷ୍ଠକାମ । ନିଃସ୍ୱାର୍ଥପର କାମ କରୁଥିବା ମଣିଷକୁ ହିଁ ଶେଷରେ ଶ୍ରେଷ୍ଠ ପୁରସ୍କାର ମିଳିଥାଏ, ଏହି ମହାନ୍ ବାର୍ତ୍ତାର ପ୍ରଚାର ଲକ୍ଷ୍ୟ ନେଇ ନାଟ୍ୟକାର ସ୍ୱାର୍ଥହୀନ ସେବାହିଁ ଶ୍ରେଷ୍ଠ ନାଟକଟିକୁ ରଚନା କରିଛନ୍ତି ।

ଆଜିର ସମାଜରେ ସବୁବର୍ଗର ଲୋକ ଚାପଗ୍ରସ୍ତ । ମାନସିକ ଚାପରେ ହେଉ କି କାମ ଚାପରେ ହେଉ ସମସ୍ତେ ଆଜି ଅତିଷ୍ଠ ହୋଇ ପଡ଼ିଛନ୍ତି । ତେଣୁ ସମସ୍ତେ ଏକ ସ୍ୱରରେ କହି ଚାଲିଛନ୍ତି "ଅଧିକ କାମ ପଡ଼ିଗଲା, । ଚାପ ବଢିଗଲା" । ତେବେ ତା'ରି ମଧ୍ୟରେ ଆମକୁ ସମାଧାନର ବାଟ ଖୋଜିବାକୁ ହେବ । ଖାଲି ଭଲ ପଛରେ ଧାଇଁଲେ ଜୀବନର ଗୋଟିଏ ପାଖ କେବଳ ଦୃଶ୍ୟମାନ ହେବ । ନିଜର ଭଲ ଚିନ୍ତା କରିବା ସହିତ ଅନ୍ୟମାନଙ୍କ କଥା ଭାବିବାକୁ ହେବ । ଆମ ସମସ୍ତଙ୍କର ଜୀବନର ଧାରାକୁ ସରଳ କରିବାକୁ ହେବ । ଚାପ ଭିତରେ ଆନନ୍ଦ ଖୋଜିବାକୁ ହେବ । ନିଜକୁ ସମସ୍ତଙ୍କ ସହିତ ସମାନ କରିବାକୁ ହେବ । ଅନ୍ୟର ଦୁଃଖ ସୁଖରେ ଆମକୁ ଭାଗିଦାରୀ ହେବାକୁ ପଡ଼ିବ ।

ଏହା ହୋଇ ପାରିଲେ ଚାପର ସଂଜ୍ଞା ସଂପୂର୍ଣ୍ଣ ବଦଳିଯିବ। 'ଏହା ହିଁ ନାଟକ 'ଚାପ ହିଁ ଦୁଃଖର କାରଣ' ର ବିଷୟବସ୍ତୁ। ପ୍ରକୃତରେ ନାଟ୍ୟକାର ଏହି ନାଟକ ମାଧ୍ୟମରେ ସାମାଜିକ ସ୍ତରର ଯେଉଁ ସାର୍ବଜନୀନ ସତ୍ୟକୁ ଉପସ୍ଥାପନ କରିଛନ୍ତି ବାସ୍ତବରେ ତାହା ବେଶ୍ ମାର୍ମିକ ହୋଇ ଉଠିଛି। ଶିଶୁ ବା କିଶୋରଟି ଏହି ନାଟକରେ ଥିବା ଚାପ ସଂପର୍କରେ ସମାଧାନ ମନ୍ତ୍ରକୁ ଆପଣେଇ ନେଲେ ଭବିଷ୍ୟତ ଜୀବନରେ ସେ କେବେହେଲେ ଚାପଗ୍ରସ୍ତ ପ୍ରାଣୀ ପାଲଟିବ ନାହିଁ ।

'ବୁଢ଼ୀ ମା'ର ନାଟ ପେଡ଼ି' ନାଟଗୁଚ୍ଛର ସପ୍ତମ ତଥା ଅନ୍ତିମ ନାଟକଟି ହେଲା- 'ସନ୍ତୋଷହିଁ ସୁଖ' ଧନୀ ପିଲା ଓ ଗରିବ ପିଲା ଚରିତ୍ର ମାଧ୍ୟମରେ ନାଟ୍ୟକାର ଆତ୍ମସନ୍ତୋଷ ହିଁ ସୁଖର ଚାବିକାଠି ମନ୍ତ୍ରକୁ ପରିବେଷଣ କରିଛନ୍ତି। କାରଣ ମନୁଷ୍ୟ ଜୀବନରୁ ସନ୍ତୋଷ ଚାଲିଗଲେ ସେ ଦୁଃଖୀ ପାଲଟିଯାଏ । ଆଇଙ୍କର ଏହି ଗଳ୍ପର ଭାବଧାରାକୁ ଭିତ୍ତିକରି ନାଟକଟି ଗତିଶୀଳ ହୋଇଛି । ତେବେ ଧନ ହିଁ ସବୁ ଅନର୍ଥ ଓ ଅଶାନ୍ତିର କାରଣ । କାମନାହିଁ ଦୁଃଖର କାରଣ। କାମନା ଥିଲେ ଦୁଃଖ ଆସିବ । ଆଉ ଦୁଃଖ ବଢ଼ିବ ହିଁ ବଢ଼ିବ। ଯିଏ କାମନା ଶୂନ୍ୟ ହୋଇ ଅଳ୍ପକରେ ସନ୍ତୁଷ୍ଟ ହୋଇଯାଏ, ସେ ଆତ୍ମସନ୍ତୋଷ ଲାଭକରେ। ଘରେ ଧନ ଥାଉ ବା ନଥାଉ ଯଦି ଭଲ ମନଟିଏ ଅଛି ତେବେ ମଣିଷ ସର୍ବଦା ସୁଖ ଭୋଗ କରିଥାଏ। ଏହି ମହାନ୍ ସତ୍ୟକୁ ଏ ନାଟକରେ ଏକ ମନୋଜ୍ଞ ଶୈଳୀରେ ପରିବେଷଣ କରାଯାଇଛି।

ସରକାରୀ ଉଚ୍ଚବିଦ୍ୟାଳୟ
ସହୀଦ ନଗର, ଭୁବନେଶ୍ୱର

●●●

# ଏକ ନୂତନ ଆବେଦନ 'ବୁଢ଼ୀମା'ର ନାଟପେଡ଼ି

ଡ. ବିଜୟାନନ୍ଦ ସିଂହ

କାହାଣୀ ଶୁଣିବା ପରମ୍ପରା ବହୁ ପ୍ରାଚୀନ। ଗଳ୍ପକଥନ ଭିତରେ ଶ୍ରୋତାର ମନୋରଞ୍ଜନ କରିବା ଏହାର ମୂଳ ଲକ୍ଷ୍ୟ ହେଲେ ହେଁ ବହୁ ସମୟରେ ନୀତି ଶିକ୍ଷାଧର୍ମୀ ମାର୍ଗଟିଏ ଉନ୍ମୋଚିତ କରିବାରେ ସହାୟକ ହୋଇଥାଏ। ପ୍ରାଚୀନ ସମୟରୁ ଏଯାବତ୍ କାହାଣୀ ପ୍ରତି ଏକ ଶ୍ରଦ୍ଧାଶୀଳ ଆକର୍ଷଣ ରହିଆସିଛି । ପୁନଶ୍ଚ ସେହି କଥିତ କାହାଣୀଗୁଡ଼ିକ ଯଦି ଅଭିନୀତ ବା ଦର୍ଶନଧର୍ମୀ ହୋଇଯାଏ, ତାହାର ସ୍ୱାଦ ଟିକେ ନିଆରା ହୁଏ। ଏହି କ୍ରମରେ ଶିଶୁ ମନର ଭାବାବେଗ ଓ ଆଗ୍ରହ ନିଶ୍ଚିନ୍ତ ରୂପେ ପ୍ରଭାବିତ ହୋଇଥାଏ। କାହିଁକିନା ଶ୍ରବଣ ସହିତ ଦର୍ଶନର ସଂଯୋଗ ତା'ର ଉତ୍କଣ୍ଠିତ ମନକୁ ଏକ ନୂତନ ଉଦ୍ଦୀପନାରେ ଅବଗାହିତ କରାଇଥାଏ। ସେଥି ନିମନ୍ତେ ଗଳ୍ପ-କାହାଣୀକୁ ନାଟ୍ୟରୂପ ଦେଇ ଶିଶୁ-ଦର୍ଶକର ଚିତ୍ତକୁ ବାନ୍ଧି ରଖିବାର ପ୍ରୟାସ କରିଅଛନ୍ତି ସାହିତ୍ୟିକ ନାଟ୍ୟକାର।

ଆମ ସମୟର ଜଣେ ବଳିଷ୍ଠ ପ୍ରତିଭା ହେଉଛନ୍ତି ନାଟ୍ୟକାର ଡ.ନାରାୟଣ ସାହୁ। ଓଡ଼ିଆ ନାଟ୍ୟ ସାହିତ୍ୟରେ ତାଙ୍କର ସ୍ଥିତି ଓ ନାଟକକୁ ନୂତନ ରୂପରେ ବିଶ୍ଳେଷଣ କରିବାର ପରୀକ୍ଷାଧର୍ମୀ ପ୍ରାମାଣିକତା ପ୍ରତିପାଦନ କରିବାରେ ସେ ନେଇଛନ୍ତି ବହୁମୁଖୀ ଭୂମିକା। ତାଙ୍କ ରଚିତ ବହୁ ନାଟକ ପାଠକ, ଦର୍ଶକ, ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି। ଏହି କ୍ରମରେ ଡ.ସାହୁଙ୍କର ଭିନ୍ନ ଏକ ସ୍ୱାଦର ନାଟ୍ୟଗ୍ରନ୍ଥ 'ବୁଢ଼ୀମାର ନାଟପେଡ଼ି' ଏକ ନିଆରା ଓ ଅଭିନବ ସର୍ଜନା। ଶିଶୁମାନଙ୍କ ନିମନ୍ତେ ରଚିତ ହୋଇଥିବା ଏହି ନାଟକର ଆବେଦନ ବେଶ୍ ଗଭୀର ଓ ସୁଦୂର ପ୍ରସାରୀ।

ସଂପ୍ରତି ବୈଦ୍ୟୁତିକ ଗଣମାଧ୍ୟମର ବିପୁଳ ବ୍ୟବହାର, କମ୍ପ୍ୟୁଟର, ଇଣ୍ଟରନେଟ୍ ଓ କାର୍ଟୁନ୍ ଭଳି ବହୁ ଆକର୍ଷଣୀୟ ବିଭାବ କେବଳ ବ୍ୟକ୍ତିବର୍ଗଙ୍କୁ ନୁହେଁ, କୋମଳମତି ଶିଶୁମାନଙ୍କର ମଧ୍ୟ ପ୍ରମୁଖ ଆବଶ୍ୟକତା ଭାବରେ ଉଭା ହୋଇଛି। ପରିବର୍ତ୍ତନଶୀଳ ସମୟରେ ଶିଶୁମାନଙ୍କ ଲାଗି ନାଟକ ପ୍ରସ୍ତୁତ କରିବା ଡ. ସାହୁଙ୍କ ଏକ ସାହସିକ ପଦକ୍ଷେପ। କହିବାର ଉଦ୍ଦେଶ୍ୟ, ଏକ ବିରାଟ ପରିବର୍ତ୍ତନର ଧାରା ଭିତରେ ବିଭିନ୍ନ ସଫ୍ଟୱେୟାର କମ୍ପାନୀମାନେ ଶିଶୁମାନଙ୍କ ଲାଗି କାର୍ଟୁନ୍, ସଙ୍ଗୀତଧର୍ମୀ ଚଳଚ୍ଚିତ୍ର ପ୍ରସ୍ତୁତ କରୁଥିବା ବେଳେ ନାଟ୍ୟକାର ସାହୁଙ୍କ ମଞ୍ଚ ନାଟକ ଭେଟି ଦେବା ନିଶ୍ଚିତ ଭାବରେ ଏକ ବଳିଷ୍ଠ ମାନସିକତା।

ଏହା ତାଙ୍କର ଐତିହ୍ୟ ପ୍ରାଣର ଏକ ନମୁନା ଭାବରେ ଆମକୁ ଗ୍ରହଣ କରିବାକୁ ହେବ। ସମାଜିକ ଜୀବନରେ ଯେତେ ବିବର୍ତ୍ତନ, ପରିବର୍ତ୍ତନ ସଂଗଠିତ ହେଲେ ମଧ୍ୟ ଜଣେ ସାହିତ୍ୟିକର ଦାୟବଦ୍ଧ ଭୂମିକାକୁ ସେ ନିଷ୍ଠାପର ଭାବରେ ସଂପାଦିତ କରି ଅଛନ୍ତି। ବୁଢ଼ୀ ମା' କାହାଣୀ, ଆଈମା' ଗପପେଡ଼ି, ବୁଢ଼ୀ ଅସୁରୁଣୀ, ବାଘ ହାତୀ ଘୋଡ଼ା ଆଦି ବହୁ ଆବେଗଧର୍ମୀ ଚିତ୍ର ଚରିତ୍ର କ୍ରମଶଃ ସମୟାନ୍ତରେ ବିଲୀନ ହୋଇଯାଇଛନ୍ତି। ଏକବିଂଶ ଶତାବ୍ଦୀରେ ଅତୀତର ସେହି ଆକର୍ଷଣୀୟ ଭୂମିକୁ ଫେରାଇ ନେଇ ଏକ ପାରମ୍ପରିକ ମୂଲ୍ୟବୋଧର ପ୍ରତିଷ୍ଠା କରିବାରେ ବ୍ରତୀ ନାଟ୍ୟକାର ନାରାୟଣ ସାହୁ। ଅତୀତର କାହାଣୀ ଉପସ୍ଥାପନ ମଧ୍ୟରେ ନୈତିକ ଶିକ୍ଷାମୂଳକ ବହୁ ଉପଦେଶାତ୍ମକ ବାକ୍ୟକୁ ଉକ୍ତ ନାଟକ ସଂକଳନସ୍ଥ ବିଭିନ୍ନ ନାଟକମାନଙ୍କରେ ଶିଶୁମାନଙ୍କ ଲାଗି ନିବେଦିତ କରିଅଛନ୍ତି ନାଟ୍ୟକାର। କାରଣ ବୈଦ୍ୟୁତିକ ଗଣମାଧ୍ୟମର ଚଳଚ୍ଚିତ୍ରଠାରୁ ଏହି ମଞ୍ଚନାଟକରେ ବାସ୍ତବ ଚରିତ୍ରମାନଙ୍କର ପ୍ରତ୍ୟକ୍ଷ ସାନିଧ୍ୟ ନିଶ୍ଚିତ ରୂପେ ଚପଳମତି ଶିଶୁପ୍ରାଣକୁ ଉଦ୍‌ବୋଧିତ ଓ ଅନୁପ୍ରାଣିତ କରିବ।

"ବୁଢ଼ୀ ମା'ର ନାଟପେଡ଼ି"ରେ ରହିଛି ସାତଗୋଟି ପ୍ରସଙ୍ଗୋଚିତ କାହାଣୀଧର୍ମୀ ନାଟକ। ନାଟକର ନାମକରଣରୁହିଁ ତାହାର ଆକର୍ଷଣ ଓ ସାର୍ଥକତା ବାରିହୋଇପଡ଼େ; ଯଦିଓ ଦର୍ଶନ ଓ ପଠନରେ ତାହା ଅଧିକ ପ୍ରମୋଦିତ ହୋଇପାରିବ। 'ଅଳଙ୍କାର', 'ବାଘ ନ ଦେଖିଲେ ବିଲେଇ ଦେଖ', 'ଅଦରକାରୀ ଜିନିଷ କାହିଁ?' 'ରାଶିଫଳ ଭାଗ୍ୟ ଗଢ଼େନା', 'ସ୍ୱାର୍ଥହୀନ ସେବା ହିଁ ଶ୍ରେଷ୍ଠ', 'ଚାପହିଁ ଦୁଃଖର କାରଣ', 'ସନ୍ତୋଷହିଁ ସୁଖ' ଆଦି ନାଟକକୁ ନେଇ ସଂକଳନଟି ସମୃଦ୍ଧ। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି ନାଟ୍ୟକାରଙ୍କ ଗଳ୍ପ ଚୟନ ଏବଂ ସେହି ଆଦରଣୀୟ ବଢ଼ୀ ମା' ପ୍ରମୁଖ ଭୂମିକାକୁ ଅବତାରଣା କରିବା। ବୁଢ଼ୀମା'ର ଅନାବିଳ ମମତାରେ ବାନ୍ଧି ହୋଇ ଅଳିଅଝଟ କରୁଥିବା ନାତି ନାତୁଣୀ ମାନଙ୍କୁ ସେ ପ୍ରାଚୀନ କାଳରୁ ଏଯାବତ୍ ତା'ର ଅଯାଚିତ ସ୍ନେହ ଶ୍ରଦ୍ଧା ବାଣ୍ଟି ଆସିଛି। ଶିଶୁର ପ୍ରାରମ୍ଭିକ ଶିକ୍ଷକ ଏହି ଆଦ୍ୟଗୁରୁର ଆବଶ୍ୟକତାକୁ ନାଟ୍ୟକାର ସାହୁ କେବଳ ଉପଲବ୍ଧି କରିନାହାନ୍ତି ପରମ୍ପରାର ସୁସ୍ଥ ବାତାବରଣର ପୁନଃ ପ୍ରବାହ ନିମନ୍ତେ ସେହି ସଂସ୍କୃତିପ୍ରାଣା ମୂର୍ତ୍ତିମନ୍ତ ବୁଢ଼ୀ ମା'ର ଚରିତ୍ରକୁ ପୁନର୍ବାର ଫେରାଇ ଆଣିଛନ୍ତି ଆମ ଶିଶୁ ସମାଜକୁ।

ନାଟକଟି ସୁଖପାଠ୍ୟ, ଶିଶୁ ମନୋରଞ୍ଜନଧର୍ମୀ। ଚଳନ୍ତି ସମୟର ବହୁ ନାଟ୍ୟକାର ପରିବର୍ତ୍ତନର ଦ୍ୱାହିଦେଇ ଅତୀତ ଐତିହ୍ୟକୁ ପାଶୋରି ଦେଇଥିବାବେଳେ, ନାଟ୍ୟକାର ସାହୁଙ୍କ ଏହି ପରମ୍ପରାଧର୍ମୀ ଅବବୋଧ ବିଶେଷକରି କୋମଳପ୍ରାଣ ଶିଶୁ ସମାଜ ପ୍ରତି ସେହି ନୀତି ଶିକ୍ଷକ ବୁଢ଼ୀ ମା' ଓ ତା'ର ଗପପେଡ଼ିକୁ ଖୋଲି ଦେବାର ପ୍ରୟାସ ସାର୍ଥକ

ହୋଇଛି ଏବଂ ଏହି ନାଟକଗୁଡ଼ିକ ସଫଳ ଭାବରେ ଅଭିନୀତ ହୋଇ ଜନାଦୃତ ଲାଭ କରିଚି।

ନାଟ୍ୟକାର ସମାଜକୁ ଦେଖିପାରନ୍ତି । ସମାଜର ପରିବର୍ତ୍ତନ ଧାରାକୁ ଉପଲବ୍ଧି କରିପାରନ୍ତି। ସେଥିପାଇଁ ନାଟକ ପରିବର୍ତ୍ତନଶୀଳ ସମାଜର କଥାକୁହେ। ସମକାଳୀନ ଜୀବନ ଓ ସମାଜର ଚିତ୍ରକୁ ନାଟକ ବହନ କରିଥାଏ ବୋଲି ନାଟକ ଦେଖିବାପାଇଁ ଦର୍ଶକର ଥାଏ ଆଗ୍ରହ। ଓଡ଼ିଶା ପରମ୍ପରା ଓ ସଂସ୍କୃତିକୁ ଗୁରୁତ୍ୱ ଦିଏ। ସେଥିପାଇଁ ଓଡ଼ିଶାର ରହିଛି ଏକ ନିଜସ୍ୱ ପରିଚୟ। ଆମ ପରମ୍ପରା ଭିତରେ ରହିଛି ମଣିଷକୁ ଶୃଙ୍ଖଳିତ ଓ ସୁନ୍ଦର କରିବାପାଇଁ ଅନେକ ଉପାଦାନ । ବୁଢ଼ୀ ମା' କାହାଣୀ ହେଉ ବା ପ୍ରାଚୀନ କାହାଣୀ ହେଉ ସେଥିରେ ଅଛି ହିତୋପଦେଶ ବା ନୀତି ଉପଦେଶ। ଡ. ସାହୁ ଆମ ସଂସ୍କୃତିର ପରମ୍ପରାକୁ ଯଥାର୍ଥରେ ଉପଲବ୍ଧି କରି ଯୁଗୋପଯୋଗୀ ନାଟ୍ୟ ସଂକଳନ 'ବୁଢ଼ୀ ମା'ର ନାଟପେଡ଼ି'କୁ ପ୍ରସ୍ତୁତ କରିଛନ୍ତି। ମୋ ବିଚାରରେ ଆମର ଗଳ୍ପପେଡ଼ି ଥିଲା, ଗୀତ ପେଡ଼ି ଥିଲା ନଥିଲା ନାଟ ପେଡ଼ି । ଯାହା ଶିଶୁକୁ ସହଜରେ ପ୍ରଭାବିତ କରିବା ପାଇଁ ଏକ ପ୍ରତ୍ୟକ୍ଷ ମାଧ୍ୟମ । ଏହି "ବୁଢ଼ୀ ମା' ନାଟପେଡ଼ି" କେବଳ ଶିଶୁଙ୍କୁ ନୁହେଁ ସମାଜର ସବୁବର୍ଗର ଜନସାଧାରଣଙ୍କୁ ଏହି ନାଟକ ମୁଗ୍ଧବିଭୋର କରାଇବ ବୋଲି ଆମର ବିଶ୍ୱାସ। ଏହାର ଭାଷା ସହଜ ଓ ସରଳ। ଚରିତ୍ର ଚୟନ ଆକର୍ଷଣୀୟ, ଦୃଶ୍ୟ ମଧ୍ୟ ସୀମିତ।

"ବୁଢ଼ୀମା'ର ନାଟପେଡ଼ି" ଏକ ନୂତନ ପ୍ରୟାସ । ନାଟ୍ୟକାର ଡ.ସାହୁଙ୍କ ଦୂରଦୃଷ୍ଟି ଓଡ଼ିଆ ନାଟ୍ୟ ସାହିତ୍ୟ ପରମ୍ପରାକୁ ସମୃଦ୍ଧ କରାଇବ। ନାଟକର ଆଦର ଆଜିର ସମାଜରେ ହ୍ରାସ ପାଇ ଆସୁଥିଲାବେଳେ ବୁଢ଼ୀମା'ର ନାଟପେଡ଼ି' ଏ କ୍ଷେତ୍ରରେ ଏକ ଅଭିନବ ଉଦ୍ୟମ।

ସଭାପତି

ଉତ୍କଳ ସାହିତ୍ୟ ସମାଜ

●●●

# ରେଡ଼ିଓ ନାଟକ ଓ ନାରାୟଣ ସାହୁ

ଡ. ରବି ଶତପଥୀ

ରେଡ଼ିଓ ନାଟକ ହେଉଛି, ରେଡ଼ିଓରେ ଶବ୍ଦ ମାଧ୍ୟମରେ କାହାଣୀ ବର୍ଣ୍ଣନା କରିବାର ଏକ ଶୈଳୀ। ଦୃଶ୍ୟର କୌଣସି ଉପକରଣ ନ ଥାଇ ଏହି ନାଟକ ବିଶେଷ ସଂଳାପ, ସଙ୍ଗୀତ ଓ ଧ୍ୱନି ସଂକେତ ଉପରେ ନିର୍ଭରଶୀଳ । ଏହି ନାଟକ କେବଳ ଶ୍ରାବ୍ୟ ହୋଇଥିବାରୁ ଏହାର ସ୍ୱରୂପ ଓ ପ୍ରକୃତି ସ୍ୱତନ୍ତ୍ର ଆଲୋଚନା ପରିସରଭୁକ୍ତ।

ସାଂସ୍କୃତିକ ଓ ସାମାଜିକ ଜାଗରଣ କ୍ଷେତ୍ରରେ ଏହାର ଅବଦାନ ଉଲ୍ଲେଖଯୋଗ୍ୟ। ଏହା ଆମ ସଂସ୍କୃତିର ଜାଗ୍ରତ ପ୍ରହରୀ ହୋଇଥିବାରୁ କଳାର ଏକ ମୌଳିକ ଓ ନିର୍ଭରଯୋଗ୍ୟ ରୂପ ଭାବେ ପ୍ରତିଷ୍ଠା ଲାଭ କରିଛି। ଚିନ୍ତା ଓ ଚେତନାର ଯେ କୌଣସି ରୂପ, ବିଷୟ ଦୃଷ୍ଟିରୁ ହେଉ ବା ଭାବ ଦୃଷ୍ଟିରୁ ହେଉ, ରେଡ଼ିଓ ଓ ନାଟକରେ ସହଜରେ ଓ ଅନ୍ତରଙ୍ଗ ଭାବେ ରୂପାୟିତ ହୋଇପାରେ।

ମଂଚ ନାଟକ ଏହାର ଭିତ୍ତିଭୂମି ହୋଇଥିଲେ ସୁଦ୍ଧା, ପରୀକ୍ଷା ନିରୀକ୍ଷା ହୋଇ ସମୟକ୍ରମେ ଏହା ଏକ ସ୍ୱତନ୍ତ୍ର ନାଟ୍ୟକଳାର ରୂପ ନେଇଛି । ପରେ ପରେ ମଂଚନାଟକ ଏହା ଦ୍ୱାରା ବହୁଭାବେ ପ୍ରଭାବିତ ହୋଇଛି।

ରେଡ଼ିଓ ନାଟକର ରଚନା ପଦ୍ଧତି ମଧ୍ୟ ସ୍ୱତନ୍ତ୍ର । ଭାଷା ସ୍ୱତନ୍ତ୍ର । ପରିବେଷଣ ଓ ପରିଚାଳନା ମଧ୍ୟ ସ୍ୱତନ୍ତ୍ର। ସେଥିପାଇଁ କୁହାଯାଇଥାଏ-ରେଡ଼ିଓରେ ସବୁ ପ୍ରକାରର ନାଟକ ପ୍ରଚାରିତ ହୋଇ ପାରିବ, କିନ୍ତୁ ସବୁ ନାଟକ ରେଡ଼ିଓ ନାଟକ ହୋଇପାରିବନି । ସେ ନାଟକ ନିଆରା ହୋଇଥିବା ଆବଶ୍ୟକ।

ଆମ ଦେଶରେ ପ୍ରତିବର୍ଷ ପ୍ରାୟ ପାଂଚହଜାର 'ରେଡ଼ିଓ ନାଟକ' ପ୍ରସାରତି ହୋଇଥାଏ । ମନୋରଂଜନ ଏହାର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିଲେ ମଧ୍ୟ ରାଷ୍ଟ୍ରୀୟ ଏକତା, ସାଂପ୍ରଦାୟିକ ସଦ୍‌ଭାବ, ସାମାଜିକ ନ୍ୟାୟ, ପରିବାର କଲ୍ୟାଣ ଠାରୁ ଆରମ୍ଭ କରି ସାମାଜିକ କୁସଂସ୍କାର ଅଂଧବିଶ୍ୱାସ ଆଦି ପର୍ଯ୍ୟନ୍ତ ବିଭିନ୍ନ ସମସ୍ୟା ଆଦି ଏହାର ପରିସରଭୁକ୍ତ । ଏହା ଲୋକ ରୁଚିର ବାହକ। ତେଣୁ ରେଡ଼ିଓ ନାଟକ ଅନ୍ୟ ନାଟକ ଠାରୁ ଅଧିକ ରୁଚିବନ୍ତ ଓ ବୁଦ୍ଧିମନ୍ତ।

ଓଡ଼ିଆ ରେଡ଼ିଓ ନାଟକକୁ ଅନୁଶୀଳନ କଲେ ଜଣାଯାଏ ଯେ ଆରମ୍ଭରେ ଏହାର ବିକାଶ ଥିଲା ବିକ୍ଷିପ୍ତ। ହେଲେ କଟକରେ ବେତାର କେନ୍ଦ୍ର ସ୍ଥାପିତ ହେବାପରେ ଏହାର ଗତି ହୋଇଛି କ୍ଷିପ୍ର। ମଂଚନାଟକରୁ ମୁକ୍ତ ହୋଇ ଏହାର ପରିମାଣ ଓ ଲୋକପ୍ରିୟତାର ଯଥେଷ୍ଟ ଅଭିବୃଦ୍ଧି ଘଟିଛି । ମଂଚ ନାଟକ ରଚନା ସହ ସଂପୃକ୍ତ ଅନେକ ଯଶସ୍ୱୀ ନାଟ୍ୟକାର, ରେଡ଼ିଓ ପାଇଁ ନାଟକ ରଚନା କରି ବେତାର ଜଗତକୁ ସମୃଦ୍ଧ କରିଛନ୍ତି । ୧୯୬୦ ପରେ ରାଜ୍ୟରେ ସ୍ଥାପିତ ହୋଇଛି ଆଉ ଦୁଇଟି ବେତାର କେନ୍ଦ୍ର-ଜୟପୁର ଓ ସମ୍ବଲପୁର କେନ୍ଦ୍ର। ୧୯୮୦ ବେଳକୁ ପେଶାଦାର ମଞ୍ଚର ବିଲୋପ ଓ ସୌଖିନ ନାଟ୍ୟସଂସ୍ଥାର ଆବିର୍ଭାବ ଯୋଗୁ ନାଟକ ସଂପୂର୍ଣ୍ଣଭାବେ ରେଡ଼ିଓକୁ ଆପଣାଇ ନେଇଛି । ମଂଚପାଇଁ ନାଟକ ଲେଖୁଥିବା ନାଟ୍ୟକାରମାନେ ଇତିମଧ୍ୟରେ ରେଡ଼ିଓ ପାଇଁ ନାଟକ ଲେଖିବା ଆରମ୍ଭ କରିଛନ୍ତି।

୧୯୭୦ ମସିହାପରେ ଓଡ଼ିଆ ନାଟକ କ୍ଷେତ୍ରରେ ପ୍ରୟୋଗ ଓ ପରୀକ୍ଷାର ନୂତନ ପର୍ବ ଆରମ୍ଭ ହୋଇଛି ଏହାର ପ୍ରତିଫଳନ ଘଟିଛି ଓଡ଼ିଆ ରେଡ଼ିଓ ନାଟକରେ । ଗତାନୁଗତିକ ନାଟ୍ୟଧାରାଠାରୁ ଦୂରେଇଯାଇ ଏହା ଏକ ସ୍ୱତନ୍ତ୍ର ଧାରା ସୃଷ୍ଟି କରିଛି । ମଂଚ ନାଟ୍ୟକାରମାନେ ଏହି ଧାରାପ୍ରତି ଆକୃଷ୍ଟ ହୋଇ ମୌଳିକ ରେଡ଼ିଓ ନାଟକ ସୃଷ୍ଟି କରିବାକୁ ଲାଗିଲେ। ଏହି ସମୟରେ ରେଡ଼ିଓ ନାଟକର ପରୀକ୍ଷା ନିରୀକ୍ଷା ମଂଚନାଟକକୁ ପ୍ରଭାବିତ କଲା। ମଂଚ ନାଟକର ଚରିତ୍ର, ସଂଳାପ ଓ ସର୍ବୋପରି ପରିବେଷଣ ଶୈଳୀ ଉପରେ ଏହା ପ୍ରଭାବ ପକାଇଲା।

ରେଡ଼ିଓ ନାଟକରେ ପରୀକ୍ଷାର ଯେଉଁ ନୂତନ ଦିଗନ୍ତ ଏହି ସମୟରେ ଉଦ୍‌ଘାଟିତ ହେଲା, ପରବର୍ତ୍ତୀ କାଳରେ ସେଥିରେ ଯୋଗ ଦେଇଛନ୍ତି ଅନେକ ନୂତନ ନାଟ୍ୟକାର। ଏହି ସମୟରେ ପ୍ରତିଷ୍ଠିତ ରେଡ଼ିଓ ନାଟ୍ୟକାର ମନୋରଂଜନ ଦାସ, ଗୋପାଳ ଛୋଟରାୟ, ଦାଶରଥି ପ୍ରସାଦ ଦାସ, ବିଜୟ ମିଶ୍ର, ରମେଶ ପାଣିଗ୍ରାହୀ, ହରିହର ମିଶ୍ର ଆଦି ସ୍ୱଳ୍ପ ରେଡ଼ିଓ ନାଟକ ରଚନା କରିଥିଲେ ମଧ୍ୟ ଏମାନଙ୍କ ସହ ଯୋଗ ଦେଇଛନ୍ତି ଗୋପାଳଚନ୍ଦ୍ର ପଟ୍ଟନାୟକ, ରାମଚନ୍ଦ୍ର ବେହେରା, ହେମନ୍ତକୁମାର ଦାସଙ୍କ ଠାରୁ ଆରମ୍ଭ କରି ପ୍ରସନ୍ନ କୁମାର ମିଶ୍ର, ପଂଚାନନ ପାତ୍ର, ନାରାୟଣ ସାହୁ, ନିଳାଦ୍ରୀ ଭୂଷଣ ହରିଚନ୍ଦନ, କୁଂଜ ରାୟ, ପ୍ରଫୁଲ୍ଲ ତ୍ରିପାଠୀ, ରତି ମିଶ୍ର, ବିଜୟ କୁମାର ଶତପଥୀ ଆଦି ଅନ୍ୟ ଅନେକ ନାଟ୍ୟକାର। ଓଡ଼ିଆ ନାଟ୍ୟ ସାମ୍ରାଜ୍ୟର ସୁପରିଚିତ ନାଟ୍ୟକାର ଅଧ୍ୟାପକ ନାରାୟଣ ସାହୁଙ୍କ ରେଡ଼ିଓରେ ପ୍ରଚାରିତ ତାଙ୍କର ପ୍ରଥମ ନାଟକ ଥିଲା 'ଅନ୍ତରାଗର ଏଲିଜି'। ତା'ପରେ ସେ ଆଉ ପଛକୁ ଫେରି ନାହାନ୍ତି। ୧୯୮୧ ରୁ ୨୦୦୬ ମଧ୍ୟରେ ସେ ରେଡ଼ିଓକୁ

ଭେଟି ଦେଇଛନ୍ତି ୨୦ରୁ ଉର୍ଦ୍ଧ୍ୱ ନାଟକ। ମୌଳିକ ରେଡ଼ିଓ ନାଟକ ରଚନାରେ ସିଦ୍ଧହସ୍ତ ଡକ୍ଟର ସାହୁ ପାରଂପରିକ ନାଟକର ଶୃଙ୍ଖଳା ମଧ୍ୟରେ ରହି ମଧ୍ୟ ତାଙ୍କର ନାଟକ ଗୁଡ଼ିକ ବଳିଷ୍ଠ। ଅସହାୟତାବୋଧ ତଥା ଦୁଃଖ ଯନ୍ତଣା ତାଙ୍କର ନାଟ୍ୟଧାରାକୁ ପ୍ରଭାବିତ କରିବାରୁ ନାଟକ ଗୁଡ଼ିକ ଶ୍ରୋତାଙ୍କର ଆଦୃତି ଲାଭ କରିଛି।

ନାଟ୍ୟକାର ସାହୁଙ୍କ ବହୁ ପ୍ରସାରିତ ରେଡ଼ିଓ ନାଟକ ଗୁଡ଼ିକ ମଧ୍ୟରେ ରହିଛି 'ଅସ୍ତରାଗ ଏଲିଜି'(ପ୍ରସାରଣ ତାରିଖ ୧୦.୦୯.୧୯୮୧), 'ଅଂଧକାରର ପୂରବୀ' (ପ୍ରସାରଣ ତାରିଖ ୦୩.୦୫.୧୯୮୨) 'ଏକ ମୃତ ବ୍ୟକ୍ତି ସଂପର୍କରେ' (ପ୍ରସାରଣ ତାରିଖ ୦୬.୦୨.୧୯୮୩), 'ଅମ୍ୱାପଲ୍ଲୀ ସହ ଦିନେ' (ପ୍ରସାରଣ ତାରିଖ-୧୪.୦୩.୧୯୮୩), ସବୁଜ ଅନ୍ଧାର-ଅନ୍ୟ ଏକ ବର୍ତମାନ-(୧୯୮୩), ଶେଷ ପାହାଚ-(୧୩.୧୦.୧୯୮୫), 'ଅପରାହ୍ନର ଅବଶୋଷ'-(୦୭-୦୪-୧୯୮୬), 'ଲୀଳା ବିଧୃତ କଳେବର'(୨୬.୧୦.୧୯୮୬), 'ରାଧା' (୨୯.୧୨.୧୯୮୬), 'ଏକାନ୍ତ ଅନୁଭବ'-(୧୩.୧୨.୧୯୮୭), 'ସାବିତ୍ରୀ ଉପାଖ୍ୟାନମ୍ -(୧୯୮୮), 'ନିଷିଦ୍ଧ ସଂଳାପ'-(୧୪.୧୨.୧୯୮୯), 'ମୋ ଜୀବନ ପଛେ' (୦୮.୦୧.୧୯୯୦), 'ଆଉ ଏକ ବାଲ୍ମିକୀ'-(୧୯୯୫), 'ପ୍ରଶ୍ନ' (୨୭.୦୩.୧୯୯୫), 'ଓଦା ମାଟିର ସପନ' (୨୮.୦୭.୧୯୯୬), 'କାଳିଦାସ କଥା'-(୧୯୯୯), 'ଝଡ଼' (୧୫.୦୬.୨୦୦୧), 'ହା ଅନ୍ନ' (୦୮.୦୭.୨୦୦୧), 'ସବୁଠୁ ସୁନ୍ଦର ପକ୍ଷୀ'(୦୮.୦୩.୨୦୦୬) । ଏହା ବାଦ୍ 'ଅସହାୟ ଈଶ୍ୱର' ଓ ନାଟକ 'ନବ ପ୍ରଭାତ' ଓ 'ଧୂଳିମାଟିର ଗାନ୍ଧୀ' ମଧ୍ୟ ରେଡ଼ିଓରେ ପ୍ରସାରିତ ହୋଇ ବହୁଳ ସଫଳତା ହାସଲ କରିଛି । ତେବେ ତାଙ୍କର ସୃଷ୍ଟି ସମ୍ଭାର ମଧ୍ୟରୁ ସେ କେବଳ ଛଅଟି ନିର୍ବାଚିତ ରେଡ଼ିଓ ନାଟକକୁ 'ନିଆରା ନାଟକ' ପୁସ୍ତକରେ ସ୍ଥାନୀତ କରିଛନ୍ତି।

ନିର୍ବାଚିତ ନାଟକ ଗୁଡ଼ିକର କାହାଣୀ ସରଳ ଓ ବୋଧଗମ୍ୟ । ନାଟକ ଗୁଡ଼ିକ ସୁଖପାଠ୍ୟ ମଧ୍ୟ। ଏ ସବୁର ଆରମ୍ଭ ରହିବା ସହିତ ଶେଷ ପର୍ଯ୍ୟନ୍ତ ଅବିରାମ ଗତିରେ କାହାଣୀକୁ ଆଗେଇ ନେଇ ଚୂଡ଼ାନ୍ତ ପରିଣତିରେ ପହଂଚାଇ ପାରିଛି । ଆଗ୍ରହ ବୃଦ୍ଧି କଲାଭଳି ଘଟଣା ନାଟକ ଗୁଡ଼ିକରେ ଭରପୁର ମାତ୍ରାରେ ରହିଛି। ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଲା କାହାଣୀମାନ ଯୁଗୋପଯୋଗୀ ଓ ପ୍ରାସଙ୍ଗିକ। ସମସ୍ୟାବହୁଳ କାହାଣୀ ମଧ୍ୟରେ ସମାଧାନ ମଧ୍ୟ ନିହିତ। ସର୍ବୋପରି ଘଟଣା କ୍ରମରେ କ୍ଷିପ୍ରତା ଯୋଗୁ ଶ୍ରୋତା ମହଲରେ ବେଶ୍ ଆଦୃତ। ରେଡ଼ିଓ ନାଟକର ଅବଧି କମ୍ ହୋଇଥିବାରୁ ଏଥିରେ ନାଟକୀୟ

ଘଟଣାର ଅବତାରଣା ଜରୁରୀ। ଯାହାକି ଶ୍ରୋତାଙ୍କୁ ବାଂଧି ରଖିବାରେ ସକ୍ଷମ ହୋଇଥାଏ। ଶ୍ରୋତାଙ୍କ ମନର ଝରକା ଖୋଲିବାରେ ସାହାଯ୍ୟକରେ । ତେଣୁ ଶ୍ରୋତାଙ୍କ ମନ ଚହଲେଇ ଦେବାଭଳି ଘଟଣା ଦୁର୍ଘଟଣା ରେଡ଼ିଓ ନାଟକରେ ସ୍ଥାନ ପାଇବା ନିତାନ୍ତ ଆବଶ୍ୟକ । ସେ ଦୃଷ୍ଟିରୁ ନାଟକ ଗୁଡ଼ିକ ବେଶ୍ ସଫଳ। ଅନ୍ୟ ସବୁ ଶ୍ରେଣୀର ନାଟକ ଭଳି ରେଡ଼ିଓ ନାଟକର ଏକ ବିଶିଷ୍ଟ ଉପାଦାନ ହେଉଛି 'ଚରିତ୍ର' । ଏଥିରେ ଗୌଣ ଚରିତ୍ର ପ୍ରାୟ ନଥାନ୍ତି । ଆଉ ଆବଶ୍ୟକତାକୁ ନେଇ ଯଦି ଥାଆନ୍ତି ତା'ହେଲେ ସେମାନଙ୍କ ସଂଖ୍ୟା ଖୁବ୍ ସୀମିତ। ଯେତେ ଚରିତ୍ର ଥିଲେ ମଧ୍ୟ କାହାଣୀରେ ଜଟିଳତା ନ ଆଣିବା ପାଇଁ ଗୋଟିଏ ବା ଦୁଇଟି ଚରିତ୍ରକୁ ଆଧାରକରି ନାଟକର ମୁଖ୍ୟ ପ୍ରସଙ୍ଗ ଗଢି ଉଠିଥାଏ। ଅନ୍ୟ ଚରିତ୍ର ଗୁଡ଼ିକ ମୁଖ୍ୟ ଚରିତ୍ରଙ୍କ ଗତିକୁ ଶାଣିତ କରିଥାନ୍ତି। ତେବେ ରେଡ଼ିଓ ନାଟକରେ ନିସ୍ତେଜ ଚରିତ୍ର ନଥାନ୍ତି। କାରଣ ଶ୍ରୋତା ଯେଉଁ ଚରିତ୍ର ସହ ନିଜକୁ ଚିହ୍ନଟ କରିପାରିବ ତା'ର କାର୍ଯ୍ୟକଳାପ ତା'ପାଇଁ ସେତିକି ବିଶ୍ୱାସଯୋଗ୍ୟ ହୋଇଥାଏ । ସେ ଚରିତ୍ର ତାକୁ ବାସ୍ତବ ମନେ ହୁଏ । ଚରିତ୍ରକୁ ସେ ମାନସ ଚକ୍ଷୁରେ ଦେଖିଥାଏ। ଚରିତ୍ର ଚିତ୍ରଣ କରିବାରେ ନାଟ୍ୟକାର ଶ୍ରୀ ସାହୁ ସିଦ୍ଧହସ୍ତ। ତାଙ୍କର ନାଟକଗୁଡ଼ିକରେ ଆମେ ଆମର ଦୈନନ୍ଦିନ ଜୀବନରେ ଭେଟୁଥିବା ସାଧାରଣ ବା ଗାଉଁଲୀ ଚରିତ୍ରଙ୍କୁ ଭେଟୁ । ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ଶ୍ରୋତାଙ୍କ ମାନସିକ ଚେତନାରେ ଚରିତ୍ରର ବୌଦ୍ଧିକ ଛାପ ଫୁଟାଇବାରେ ଯେଉଁ କେତେଜଣ ରେଡ଼ିଓ ନାଟ୍ୟକାର ସିଦ୍ଧହସ୍ତ ସେମାନଙ୍କ ମଧ୍ୟରେ ନାଟ୍ୟକାର ନାରାୟଣ ସାହୁ ଅନ୍ୟତମ । ଉଦାହରଣ ଭାବେ ତାଙ୍କର ପ୍ରାୟ ସମସ୍ତ ରେଡ଼ିଓ ନାଟକ ଏହାର ପରିସରଭୁକ୍ତ। ନାଟକ ଗୁଡ଼ିକରେ ଚରିତ୍ର ଚିତ୍ରଣ ଯୁଗୋପଯୋଗୀ ଓ ବାସ୍ତବଧର୍ମୀ । ଚରିତ୍ର ଗୁଡ଼ିକ ଜୀବନ୍ତ, ପ୍ରଭାବଶାଳୀ, ସାମାଜିକ ଓ ସର୍ବୋପରି ବ୍ୟକ୍ତିତ୍ୱ ସଂପନ୍ନ । ଶ୍ରୋତାଙ୍କର ଗ୍ରହଣଶୀଳତା ଉପରେ ନାଟ୍ୟକାର ଜୋର୍ ଦେଇଥିବା ମନେହୁଏ।

ରେଡ଼ିଓ ନାଟକ ସଂଳାପ ସର୍ବସ୍ୱ। କୁହାଯାଏ ଜଣେ ସଫଳ ସଂଳାପ ଲେଖକ ସହଜରେ ରେଡ଼ିଓ ପାଇଁ ନାଟକ ଲେଖିପାରିବ। ସଫଳ ନାଟ୍ୟକାର ମନୋରଂଜନ ଦାସ ଓ ଗୋପାଳ ଛୋଟରାୟ ଏ ଦୃଷ୍ଟିରୁ ବେତାର ନାଟ୍ୟ ଜଗତକୁ ସମୃଦ୍ଧ କରିଯାଇଛନ୍ତି । ରେଡ଼ିଓ ନାଟକର କଳା ମୁଖ୍ୟତଃ ସଂଳାପ ଲେଖିବାର କଳା। ତେବେ ସଂଳାପ ଚରିତ୍ର ଉପଯୋଗୀ, କଥନ ଉପଯୋଗୀ ଓ ବାସ୍ତବ ହୋଇଥିବା ଆବଶ୍ୟକ । ଯାହାକି ସଂପୂର୍ଣ୍ଣ ଶ୍ରୁତିଗୋଚର ହୁଏ ଅଧ୍ୟାପକ ଶ୍ରୀ ସାହୁଙ୍କ ନାଟକ ଗୁଡ଼ିକରେ। ଚରିତ୍ରମାନଙ୍କ ମୁହଁରେ ଆଂଚଳିକ ଓ କଥିତ ଭାଷାର ପ୍ରୟୋଗ କରି ଶ୍ରୀ ସାହୁ ସଫଳ ହୋଇପାରିଛନ୍ତି । 'ଓଦାମାଟିର ସପନ' 'ଆଉ ଏକ ବାଲ୍ମୀକି' ଓ 'ଧୂଳିମାଟିର ଗାଂଧୀ' ନାଟକକୁ ଏହାର ଉଦାହରଣ ଭାବେ ନିଆଯାଇପାରେ। ଏହି ନାଟକ ଗୁଡ଼ିକ ଜୀବନଧର୍ମୀ ସଂଳାପରେ ପରିପୂର୍ଣ୍ଣ।

ନାଟକ ଗୁଡ଼ିକୁ ଅନୁଶୀଳନ କଲେ ଜଣାଯାଏ ଯେ ନାଟକ ଗୁଡ଼ିକ ସୁସ୍ଥ ମନୋରଂଜନ ପରିବେଷଣ କରିବା ସହ ରେଡ଼ିଓ ନାଟକର ଅନ୍ୟ ଏକ ଉଦ୍ଦେଶ୍ୟ ସାମାଜିକ ସଚେତନତାର ସ୍ୱର ଉତ୍ତୋଳନ କରିଛନ୍ତି। ମଣିଷ ଜୀବନର ଜଟିଳତା ଓ ଅନ୍ତର୍ଜୀବନର ଚିତ୍ର, କଳାତ୍ମକ ଢଙ୍ଗରେ ଉପସ୍ଥାପିତ ହୋଇଛି । ପ୍ରସଙ୍ଗଗତ ରୂପହିଁ ନାଟକ ଗୁଡ଼ିକର ମୁଖ୍ୟ ଉପାଦାନ। ବିଷୟବସ୍ତୁ କାଳ୍ପନିକ ହେଲେ ମଧ୍ୟ ବାସ୍ତବ ଆଭିମୁଖ୍ୟର ଜୀବନଚିତ୍ର ଏଥିରେ ପ୍ରତଫଳିତ। ପ୍ରଚଳିତ ବ୍ୟବସ୍ଥା, କୁସଂସ୍କାର, ଶୋଷଣ. ଅଶିକ୍ଷା ଓ ଅଂଧବିଶ୍ୱାସ ବିରୁଦ୍ଧରେ ବିଦ୍ରୋହ ନାଟକ ଗୁଡ଼ିକରେ ମୁଖ୍ୟ ଉପଜୀବ୍ୟ। ସବୁ ନାଟକରେ ଏ ସବୁ ସୁସ୍ପଷ୍ଟ।

ଡକ୍ଟର ସାହୁଙ୍କ ଅଧିକାଂଶ ନାଟକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସଂକୁଚିତ ହୋଇ ରହିନାହିଁ । ୧୯୯୯ର ମହାବାତ୍ୟା ଉପରେ ଆଧାରିତ ନାଟକ 'ଝଡ଼' ପ୍ର.ତା- ୧୫.୦୬.୨୦୦୧ ଏହାର ଏକ ଅନବଦ୍ୟ ଉଦାହରଣ। ଏହି ନାଟକଟି ଜୀବନର ଏକ ନିଚ୍ଛକ ପ୍ରତିଫଳନ ଓ ଅନେକ ମାତ୍ରାରେ ସଂକେତଧର୍ମୀ। ରେଡ଼ିଓ ନାଟକର ଅନ୍ୟ ଏକ ପ୍ରଧାନ ଉପକରଣ ଧ୍ୱନି। ସଙ୍କେତରେ ପରିପୂର୍ଣ୍ଣ ଏହି ନାଟକ ରଚନା ନାଟ୍ୟ ସ୍ରଷ୍ଟାଙ୍କ ଏକ ଦୁଃସାହସିକ ପଦକ୍ଷେପ କହିଲେ ଭୁଲ୍ ହେବନାହିଁ।

ମଂଚନାଟକର ଦୃଶ୍ୟ ସଜ୍ଜାର ଆବରଣ ମଧ୍ୟରେ ହଜି ଯାଉଥିବା ଚିନ୍ତା ଚେତନା ରେଡ଼ିଓ ନାଟକର ଶବ୍ଦ ମାଧ୍ୟମରେ ପ୍ରକାଶ କରିବାର ସୁଯୋଗ ବେଶି ଥାଏ । ତେଣୁ ସାହିତ୍ୟର ଯେ କୌଣସି ସ୍ରଷ୍ଟାଙ୍କ ଅପେକ୍ଷା ରେଡ଼ିଓ ନାଟ୍ୟକାର ଶ୍ରୋତାଙ୍କ ନିକଟରେ ସହଜରେ ଆତ୍ମପ୍ରକାଶ କରିଥାଏ । ଡ.ସାହୁଙ୍କ ଉଲ୍ଲେଖନୀୟ କୃତି ହେଲା ନାଟକ ଗୁଡ଼ିକ ଭାରତୀୟ ମାର୍ଗରେ ପରିଚାଳିତ । ସେଇଟି ହେଲା ନିଜ ପାଇଁ ବଂଚିବା ଓ ସମଗ୍ର ପାଇଁ ବଂଚିବାର ପାର୍ଥକ୍ୟ । ତାଙ୍କର ନାଟକ ଗୁଡ଼ିକରେ ଏହି ଦର୍ଶନ ବିଶେଷ ଭାବେ ପ୍ରତଫଳିତ।

ରେଡ଼ିଓ ନାଟକ ଲୋକପ୍ରିୟତାର ଶୀର୍ଷରେ ଥାଇ ମଧ୍ୟ କେବଳ ଦୃଶ୍ୟତ୍ୱ ଅଭାବରୁ ଏ ପର୍ଯ୍ୟନ୍ତ ନାଟକର ସ୍ୱୀକୃତି ପାଇପାରିଲା ନାହିଁ, ଏଥିରେ ନାଟକର ସମସ୍ତ ଉପାଦାନ ଥାଇ ମଧ୍ୟ ଏହା ନାଟ୍ୟଶାସ୍ତ୍ରୀଙ୍କ ଦ୍ୱାରା ଉପେକ୍ଷିତ। ସୂକ୍ଷ୍ମଭାବେ ବିଚାରକଲେ ରେଡ଼ିଓ ନାଟକ ଶ୍ରୋତାର ମାନସ ମଂଚରେ ଅଭିନୀତ ହୋଇଥାଏ ଏବଂ ମନରେ ଗଭୀର ରେଖାପାତ କରିଥାଏ। ସହଜ ଲଭ୍ୟ ମନୋରଂଜନର ଏହି ଉପାଦାନ 'ରେଡ଼ିଓ ନାଟକ' ତା'ର ମୂଳ ରୂପରେ ପୁସ୍ତକ ଆକାରରେ ପ୍ରକାଶ ପାଏନାହିଁ। ଅବଶ୍ୟ ବହୁ ନାଟ୍ୟକାର ଏହାର ମୂଳରୂପରେ ସାମାନ୍ୟ ପରିବର୍ତ୍ତନ କରି ପରବର୍ତ୍ତୀ କାଳରେ ଏହାକୁ ମଂଚପାଇଁ ପ୍ରସ୍ତୁତ କରିଛନ୍ତି। ଫଳରେ ଏହା ପୁସ୍ତକ ଆକାରରେ ପ୍ରକାଶପାଇଁ ସାହିତ୍ୟିକ ମୂଲ୍ୟାୟନ ସୁଯୋଗ ଲାଭ କରିପାରିଛି। ଏହାର ଉଦାହରଣ ଅନେକ 'ରେଡ଼ିଓ ନାଟକ ଏହି ସୁବିଧାରୁ

ବଂଚିତ। ପୁସ୍ତକ ଆକାରରେ ପ୍ରକାଶ ନପାଇବାରୁ ଆଲୋଚନାପାଇଁ ଏହାକୁ ଖୁବ୍ ବେଶୀ ସୁଯୋଗ ମିଳିନାହିଁ। ଏଇଠି ଗୋଟାଏ କଥା ସ୍ପଷ୍ଟ କଲେ ଠିକ୍ ହେବ ଯେ ଗଣ ମାଧ୍ୟମର ବିକାଶ ସହ ବ୍ରିଟେନ୍‌ର ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଉଚ୍ଚଶିକ୍ଷା ବିଭାଗରେ "Media Studies" ଆରମ୍ଭ ମୂଳରୁ ହୋଇଥିବାରୁ BBC ରେ ପ୍ରସାରିତ ନାଟକ ଗୁଡ଼ିକ ଉପରେ ବହୁ ସମାଲୋଚନା ମୂଳକ ନିବନ୍ଧ ପ୍ରକାଶ ପାଇଥାଏ। ଫଳରେ ପ୍ରଚାରିତ ଓ ପ୍ରସାରିତ ନାଟକ ସବୁ ସେହି ଅନୁସାରେ ପରିମାର୍ଜିତ ହେବାକୁ ସୁଯୋଗ ପାଇଥାଏ । ଅନ୍ୟ ସବୁ ମାଧ୍ୟମର ନାଟକପରି ରେଡ଼ିଓ ନାଟକରେ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିବର୍ତ୍ତନର ମାର୍ମିକ ଚିତ୍ର ସ୍ଥାନ ପାଇଥାଏ। ସ୍ଥାନୀତ ହୁଏ ସମସାମୟିକ ସମାଜଚିତ୍ର। କିନ୍ତୁ ଏହା କେତେଦୂର ସଫଳତା ଲାଭ କରିଛି, ଏ ବିଷୟ ସମୟ ହାତରେ ଛାଡ଼ି ନଦେଇ ବରଂ ଆମ ଶିକ୍ଷାନୁଷ୍ଠାନରେ ଏହାର ଅଧ୍ୟୟନ ପାଇଁ ବ୍ୟବସ୍ଥା କରାଯିବା ଆବଶ୍ୟକ। ଏଥିପାଇଁ ଏବେ ସମୟ ଉପନୀତ।

ଶେଷରେ ଠିକ୍‌ଭାବେ କହିବାକୁ ଗଲେ, ଡକ୍ଟର ସାହୁଙ୍କ ରେଡ଼ିଓ ନାଟକ ଗୁଡ଼ିକ ମଣିଷକୁ ନିଜର ସତ୍ତାସହ, ନିଜେ ବଂଚୁଥିବା ସମାଜ ସହ ଏପରିକି ନିଜେ ଜିଉଁଥିବା ଜୀବନ ସହ ତଥା ନୂଆ ଚେତନା ସହ ପରିଚିତ କରାଇ ଦେଇଛି । ତେଣୁ ନାଟକଗୁଡ଼ିକ ଭଲ ରେଡ଼ିଓ ନାଟକ ପଦବାଚ୍ୟ। ନାଟକ ଗୁଡ଼ିକୁ ପ୍ରକାଶକରି ନାଟ୍ୟକାର ଶ୍ରୀ ନାରାୟଣ ସାହୁ ଆମମାନଙ୍କର ବିଶେଷକରି ଉତରପୀଢ଼ିଙ୍କ ନିକଟରେ ଧନ୍ୟବାଦର ପାତ୍ର । ଏହା ରେଡ଼ିଓ ନାଟକକୁ ସାହିତ୍ୟ ପଦବାଚ୍ୟ ପ୍ରଦାନ ଦିଗରେ ସହାୟକ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ।

ଆକାଶବାଣୀ
କଟକ

●●●

# ଦୂରଦର୍ଶନ ନାଟକ ଓ ନାଟ୍ୟକାର ନାରାୟଣ ସାହୁ

ଡ. ସୌଭାଗ୍ୟ ମହାନ୍ତି

ଶାସ୍ତ୍ର ଅନୁଯାୟୀ ନାଟକ ଦୃଶ୍ୟକାବ୍ୟ। ମଂଚରେହିଁ ନାଟକର ପରୀକ୍ଷା କରାଯାଇ ତା'ର ମାନଦଣ୍ଡ ନିର୍ଦ୍ଧାରଣ କରାଯାଏ। ବେତାର ନାଟକ ଶ୍ରାବ୍ୟ-ଦୃଶ୍ୟ ନୁହେଁ। ଆଖିବୁଜି ଶ୍ରୋତା ଏହାକୁ କଳ୍ପନାରେ ଦେଖିପାରେ। କିନ୍ତୁ ଦୂରଦର୍ଶନ ନାଟକ-ଉଭୟ ଶ୍ରାବ୍ୟ ଓ ଦୃଶ୍ୟ। ଏହାର ଅଭିନୀତ ସ୍ଥାନ ହେଉଛି ଦୂରଦର୍ଶନର ବିଭିନ୍ନ ସାଜସଜ୍ଜା ବା ସେଟ୍। ଏହାକୁ କିନ୍ତୁ ଦର୍ଶକ ଦେଖେ-ନିଜର ଘରେ-ଅନ୍ଧାରରେ ନୁହେଁ ଆଲୁଅରେ ନିଜ ପରିବାର ସହିତ। ତେଣୁ ଦୂରଦର୍ଶନ ନାଟକ ମଂଚ-ବେତାର ନାଟକ ସହିତ ଆଧୁନିକ ବୈଜ୍ଞାନିକ କଳା କୌଶଳ ମିଶ୍ରିତ ଅନ୍ୟ ଏକ ନାଟ୍ୟକଳା । ସମୟକ୍ରମେ ଏହା ବିଭିନ୍ନ ରୂପରେ ଆତ୍ମପ୍ରକାଶ କରିଛି। ପ୍ରାରମ୍ଭିକ ଅବସ୍ଥାରେ ଉନ୍ନତ ଯାନ୍ତ୍ରିକ କୌଶଳରେ ଅଭାବ ଥିବା ଦୃଷ୍ଟିରୁ ମୁଖ୍ୟତଃ ଲୋକପ୍ରିୟ ମଂଚ ନାଟକ ଗୁଡ଼ିକ ଦୂରଦର୍ଶନ ମାଧ୍ୟମରେ ସିଧାସଳଖ ପ୍ରସାରଣ କରାଯାଉଥିଲା। ମୁଖ୍ୟତଃ ଗୋଟିଏ କ୍ୟାମେରା ଦ୍ୱାରାହିଁ ଏ ଗୁଡ଼ିକର ପ୍ରସାରଣ ହେଉଥିଲା। ଦୃଶ୍ୟପଟ୍ଟର ପରିବର୍ତ୍ତନରେ ଅନେକ-ଅସୁବିଧା ଏଥିରେ ରହିଥିବାରୁ ପରେ ପରେ ଭିଡ଼ିଓ ଟେପ୍‌ର ଆବିଷ୍କାର ପରେ ଏହାର ଚିତ୍ରଗ୍ରହଣ କରାଯାଇ-'ସଂପାଦନା'ର କୌଶଳ ମାଧ୍ୟମରେ-ଖରାପ ଅଂଶ, ଦୃଶ୍ୟ ଇତ୍ୟାଦିକୁ କଟାଯାଇ ଏକ ସ୍ୱୟଂସଂପୂର୍ଣ୍ଣ ନୂତନ ସଂପାଦିତ ରୂପରେ ଏହା କାଳାଦିକ୍ରମେ ଆତ୍ମପ୍ରକାଶ କଲଣ। ଗୋଟିଏ କ୍ୟାମେରା ପରିବର୍ତ୍ତେ ବହୁ କ୍ୟାମେରାର ସଂଯୋଗୀକରଣ ଦ୍ୱାରା ବିଭିନ୍ନ ଚରିତ୍ରର ସଂଳାପ, ମାନସିକ ଅବସ୍ଥା, ପ୍ରତିକ୍ରିୟା, ପରିବେଶ ତଥା ପରିପାଟୀକୁ ସହଜରେ ରେକର୍ଡ଼ିଂ କରାଯାଇ ପରେ ସଂପାଦିତ କରାଯାଇ ପ୍ରସାରିତ କରାଯିବାର ବନ୍ଦୋବସ୍ତ ହେଲା। ସଂପ୍ରତି ଦୂରଦର୍ଶନ ନାଟକ ଏହିପରି ଭାବରେ ଦର୍ଶକମାନଙ୍କ ପାଖରେ ପହଂଚି ପାରି ଲୋକପ୍ରିୟ ହୋଇପାରିଛି।

ପ୍ରାରମ୍ଭରେ ଲୋକପ୍ରିୟ ନାଟ୍ୟକାରଙ୍କ ମଂଚସ୍ଥ ନାଟକଗୁଡ଼ିକ ହିଁ ଦୂରଦର୍ଶନରେ ପ୍ରସାରିତ ହେବାର ସୁଯୋଗ ପାଇଲା। ଦର୍ଶକ ଏହିପରି ନାଟକ ଗୁଡ଼ିକ ପୂର୍ବରୁ ମଂଚସ୍ଥ ହୋଇଥିବାର ଏବଂ ଦେଖିଥିବା ନାଟକ ଗୁଡ଼ିକ ପରେ ଏକ ଛୋଟ ପରଦା ମଧ୍ୟରେ ହିଁ ନୂଆ ଭାବରେ ଦେଖିବାର ସୁଯୋଗ ପାଇଲେ । ସେଥିପାଇଁ ଦର୍ଶକଙ୍କ ପାଇଁ ଏସବୁ ନାଟକର କଥାବସ୍ତୁ ନୂଆ ନଥିଲା। କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ନାଟ୍ୟକାରମାନେ ନୂଆ

ନୂଆ କାହାଣୀକୁ ନେଇ କେବଳ ଦୂରଦର୍ଶନ ପାଇଁ ନାଟକ ଲେଖିବା ପାଇଁ ଆଗେଇ ଆସିଲେ। ଫଳରେ ଦୂରଦର୍ଶନ ମଧ୍ୟ ନାଟକ ପାଇଁ ଅନ୍ୟ ଏକ ପରୀକ୍ଷାଗାର ବା ମଂଚ ସଦୃଶ ହେଲା।

ଏକଥା କୁହାଯାଇପାରେ ଯେ ଦୂରଦର୍ଶନ ନାଟକର ରଚନା ପାଇଁ ସେପରି କୌଣସି ବିଧିବଦ୍ଧ ନିୟମ ନାହିଁ। ମଂଚ ନାଟକର ସମସ୍ତ ବୈଶିଷ୍ଟ୍ୟ ଦୂରଦର୍ଶନ ନାଟକରେ ରହିବା ଆବଶ୍ୟକ। ଦୂରଦର୍ଶନ ନାଟକ ଲେଖିବା ବେଳେ ନାଟ୍ୟକାରକୁ ପ୍ରଥମେ ମନେ ରଖିବାକୁ ହେବଯେ ସେ ଏହି ନାଟକ ପରିବାର ପାଇଁ ଲେଖୁଛି। ପରିବାରର ସୁଖ-ଦୁଃଖ, ସମସ୍ୟା, ଯନ୍ତ୍ରଣା ଏଥିରେ ସ୍ଥାନ ପାଇଲେ ଏହା ଆହୁରି ଲୋକପ୍ରିୟତା ହାସଲ କରିବ। ପାରିବାରିକ ତଥା ସାମାଜିକ ମୂଲ୍ୟବୋଧହିଁ ଏହି ଦୂରଦର୍ଶନ ନାଟକର ଅନ୍ୟତମ ଦିଗ। ପ୍ରାରମ୍ଭରେ ଯେପରି ମଂଚ ନାଟକରେ ବହୁ ଅଙ୍କ ବହୁ ଦୃଶ୍ୟ ସଜ୍ଜା, ବହୁ ଚରିତ୍ରର ସଂଯୋଜନା ଘଟୁଥିଲା-ତାହା ଦୂରଦର୍ଶନର ସୀମିତ ମଂଚ, ସମୟ ଯୋଗୁଁ ସମ୍ଭବ ହୋଇ ପାରିଲା ନାହିଁ । ତେଣୁ ଏକ ସେଟ୍ ବା ମଂଚକୁ ନେଇ ଦୂରଦର୍ଶନର ନାଟକ ଗୁଡ଼ିକ ରଚିତ ହେଲା । ଦୂରଦର୍ଶନ ସୀମିତ କୋଠରୀ ମଧ୍ୟରେ କେବଳ ଦୁଇ ବା ତିନୋଟି ମଂଚସଜ୍ଜା ହିଁ ସହଜରେ ଏବଂ କମ୍ ସମୟ ମଧ୍ୟରେ ହୋଇପାରିଲା । ସେଥିପାଇଁ ଏବେ ଏଇପରି ମଂଚସଜ୍ଜାକୁ ନେଇ ଅଧିକ ନାଟକ ଦୂରଦର୍ଶନ ପାଇଁ ସୃଷ୍ଟି ହେଲାଣି । ଦୂରଦର୍ଶନ ନାଟକ ପାଇଁ କୌଣସି ସମୟସୀମା ନଥିଲେ ମଧ୍ୟ-ବର୍ତ୍ତମାନ ଦୁଇ ବା ଅଢେଇ ଘଣ୍ଟା ବସି ଦୂରଦର୍ଶନ ନାଟକ ଦେଖିବାର ଧୈର୍ଯ୍ୟ ଦର୍ଶକ ମାନଙ୍କର ଆଉ ନାହିଁ । ତେଣୁ ଅଧ ଘଣ୍ଟା ବା ଘଣ୍ଟାଏ ମଧ୍ୟରେ ଏହି ନାଟକଗୁଡ଼ିକୁ ସୀମିତ ରଖିବା ପାଇଁ ନାଟ୍ୟକାରଗଣ ଚେଷ୍ଟିତ ହେଲେ । ନାଟକର କାହାଣୀ ଚୟନ ପରେ ଏହାର ସଂଳାପ ନାଟ୍ୟକାର ଲେଖିଥାଏ। ଦୂରଦର୍ଶନ ନାଟକରେ ନାଟ୍ୟକାର କାହାଣୀ ଚୟନ କରିସାରିବା ପରେ ଏହାର ଦୃଶ୍ୟ ଗୁଡ଼ିକ କିପରି କ୍ରମାନ୍ୱୟରେ ରହିବେ ତାହା ଠିକ୍ କରିଥାଏ। ଏହାକୁ ଅନ୍ୟ ଅର୍ଥରେ ଚିତ୍ରନାଟ୍ୟ ମଧ୍ୟ କୁହାଯାଏ। ସାଧାରଣ ଭାବରେ ଚିତ୍ରନାଟ୍ୟ ଚଳଚ୍ଚିତ୍ରର ପ୍ରସ୍ତୁତିରେ ଏକ ମୁଖ୍ୟ ଭୂମିକା ନେଇଥାଏ। ଚିତ୍ରନାଟ୍ୟ-ମୁଖ୍ୟତଃ ନିର୍ଦ୍ଦେଶକଙ୍କର ଦ୍ୱାରା ରଚିତ ଏକ ବିବରଣୀ । ବିଭିନ୍ନ ଦୃଶ୍ୟର ଉପସ୍ଥାପନା, ଚରିତ୍ର ଚିତ୍ରଣ, ନାଟକୀୟ ମୁହୂର୍ତ୍ତ, ସଂଘର୍ଷ, ସଂଗୀତ, କ୍ୟାମେରାର ଅବସ୍ଥିତି ଚରିତ୍ର ମାନଙ୍କର ଗତିସଂପର୍କରେ ଏଥିରେ ପୁଙ୍ଖାନୁପୁଙ୍ଖ ଭାବରେ ଉଲ୍ଲେଖ ଥାଏ। ଦୂରଦର୍ଶନ ନାଟକରେ ମଧ୍ୟ ନାଟ୍ୟକାର ଏହାର ନିର୍ଦ୍ଦେଶକଙ୍କ ସହ ପରାମର୍ଶରେ ଏହିପରି ଚିତ୍ରନାଟ୍ୟ ପ୍ରସ୍ତୁତ କରି ସଂଳାପ ରଚନା କରିଥାଏ। ତେଣୁ ନିର୍ଦ୍ଦେଶକ ତଥା ନାଟ୍ୟକାର ବା ସଂଳାପକାରହିଁ ପ୍ରଥମେ ଦୂରଦର୍ଶନ ନାଟକକୁ ପ୍ରଥମ ରୂପ ପ୍ରଦାନ କରନ୍ତି।

ଦୂରଦର୍ଶନ ନାଟକର ପାଣ୍ଡୁଲିପି ରଚିତ ହେବାପରେ ଏହାର ପ୍ରାକ୍ ପ୍ରଯୋଜନା ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ । କଳାକାର ଚୟନ, ମଂଚସଜ୍ଜା, ରୂପସଜ୍ଜା, କେଶ ସଜ୍ଜା, ପୋଷାକ ପତ୍ର, ସେଟ୍‌ର ବିଭିନ୍ନ ଉପକରଣ, ସଂଗୀତ, ସର୍ବୋପରି ବୈଷୟିକ ଜ୍ଞାନ କୌଶଳ, ଅଭିଜ୍ଞତା ଥିବା କର୍ମଚାରୀ ମାନଙ୍କର ଉପଦେଶ, ଆଲୋଚନା ଦ୍ୱାରା ଏହି ନାଟକଗୁଡ଼ିକ ଦୂରଦର୍ଶନ ଷ୍ଟୁଡ଼ିଓରେ ରେକର୍ଡ଼ିଂ କରାଯାଏ ଏବଂ ପରେ ପରେ ଭିଡ଼ିଓ ସଂପାଦକଙ୍କ ଦ୍ୱାରା ଏହା ସୁସଂପାଦିତ ହୋଇଥାଏ । ପାର୍ଶ୍ୱ ସଂଗୀତ, ବିଭିନ୍ନ ଶବ୍ଦର (ସାଉଣ୍ଡ ଏଫେକ୍ଟ) ସଂଯୋଜନା ଦ୍ୱାରା ଏହା ସଂପୂର୍ଣ୍ଣ ରୂପ ପାଇଥାଏ । ନିର୍ଦ୍ଦେଶକ, ନାଟ୍ୟକାର ଏବଂ ସଂପାଦକଙ୍କର ସୁସଂଯୋଜନା ହିଁ ଦୂରଦର୍ଶନ ନାଟକକୁ ପୂର୍ଣ୍ଣାଙ୍ଗ କରିଥାଏ । କେବଳ ଦୂରଦର୍ଶନ ଷ୍ଟୁଡ଼ିଓ ନୁହେଁ ବର୍ତ୍ତମାନ ଚଳଚ୍ଚିତ୍ରର ବୈଷୟିକ କଳା-ଜ୍ଞାନ କୌଶଳକୁ ନେଇ ଦୂରଦର୍ଶନରେ ନାଟକ, ବହୁ କ୍ୟାମେରା ନୁହେଁ-ଗୋଟିଏ କ୍ୟାମେରା ଦ୍ୱାରା ସର୍ବୋପରି ଷ୍ଟୁଡ଼ିଓରେ ଆବଦ୍ଧ ଗୃହ ପରିବର୍ତ୍ତେ ବାସ୍ତବ ମଂଚ ବା ଲୋକେସନ୍‌ରେ ଦୂରଦର୍ଶନ ନାଟକ ଚିତ୍ରାୟିତ ହେଉଛି । ତେଣୁ ଏହାକୁ ଦୂରଦର୍ଶନ ନାଟକ ନକହି ବରଂ ଦୂରଦର୍ଶନ ଚଳଚ୍ଚିତ୍ର ବା ଟେଲି ଫିଲିମ୍ କହିଲେ ଭଲ ହେବ । ଏହି ପଦ୍ଧତିରେ ବୈଷୟିକ କର୍ମଚାରୀମାନଙ୍କର ଅଭିଜ୍ଞତାର ଆବଶ୍ୟକତା ଅଧିକ । ସାଂପ୍ରତିକ ଯୁଗରେ ଏହିପରି ଟେଲିଫିଲିମ୍ ଅଧିକ ଲୋକପ୍ରିୟ ହୋଇଛି ଏବଂ ନାଟ୍ୟକାରଗଣ ମଧ୍ୟ ଚଳଚ୍ଚିତ୍ରଧର୍ମୀ ଦୂରଦର୍ଶନ ପାଣ୍ଡୁଲିପି ପ୍ରସ୍ତୁତ କରୁଛନ୍ତି । ନାଟ୍ୟକାର-ମାନଙ୍କର ମଧ୍ୟ ଦୂରଦର୍ଶନ-ତଥା ଚଳଚ୍ଚିତ୍ରର ପ୍ରସ୍ତୁତି ସଂପର୍କୀତ ଜ୍ଞାନର ଆବଶ୍ୟକତା ଏ କ୍ଷେତ୍ରରେ ଏକାନ୍ତ ଜରୁରୀ ।

ଦୂରଦର୍ଶନ ନାଟକ କ୍ଷେତ୍ରରେ ଡ.ନାରାୟଣ ସାହୁ ବେଶ୍ ଏକ ପରିଚିତ ନାମ । ତାଙ୍କ ନାଟକ ଜୀବନରେ ଆରମ୍ଭ ଘଟିଛି କଟକ ଅନ୍ନପୂର୍ଣ୍ଣା (ବି) ରଂଗମଂଚରୁ । ନିର୍ଦ୍ଦେଶକ ଅଭିନେତା ହର ପଟ୍ଟନାୟକ, ହରୀଶ ମହାନ୍ତି, ଜ୍ୟୋତି ନାୟକ ତାଙ୍କର ନାଟ୍ୟ ଜୀବନର ମୂଳ ଦୁଆରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ପ୍ରାରମ୍ଭରେ ଅନେକ ଲୋକପ୍ରୀୟ କ୍ଷୁଦ୍ରଗଳ୍ପକୁ ଶ୍ରୀ ସାହୁ ତାଙ୍କ ସାଥୀ ମାନଙ୍କ ପରାମର୍ଶ-ଉପଦେଶ ଅନୁଯାୟୀ ମଂଚ ନାଟକ ଭାବରେ ପ୍ରସ୍ତୁତ କରିଛନ୍ତି । ଏହିସବୁ ନାଟକଗୁଡ଼ିକ କହିବାକୁ ଗଲେ ଅନ୍ନପୂର୍ଣ୍ଣା ରଂଗମଂଚ ମଧ୍ୟରେହିଁ ରଚିତ ହୋଇଛି । ରିହିରସାଲ୍ ବେଳେ ମଧ୍ୟ ନାଟକର ଆବଶ୍ୟକୀୟ ପରିବର୍ତ୍ତନ ନାଟ୍ୟକାର ନିର୍ଦ୍ଦେଶକଙ୍କ ପରାମର୍ଶ ଅନୁଯାୟୀ କରିଛନ୍ତି । ତେଣୁ ଏକ ଅଭିଜ୍ଞ ନାଟ୍ୟମଣ୍ଡଳୀର ଅଭିଜ୍ଞତା, ଆଲୋଚନା ଏବଂ ସଂପର୍କହିଁ ନାଟ୍ୟକାର ଶ୍ରୀ ସାହୁଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛି । ଦୂରଦର୍ଶନ ପାଇଁ ଶ୍ରୀ ସାହୁ ପ୍ରାୟ ତେର ଗୋଟି ନାଟକ ରଚନା କରିଛନ୍ତି । ତାଙ୍କର ପ୍ରଥମ

ନାଟକ କଟକ ଦୂରଦର୍ଶନରେ ପ୍ରସାରିତ 'ଚେତନା' । ତା'ପରେ ପ୍ରାୟଶ୍ଚିତ୍ତ' ନାମକ ଏକ ନାଟକ ମଧ୍ୟ କଟକ ଦୂରଦର୍ଶନ କେନ୍ଦ୍ରରୁ ପ୍ରସାରିତ। ତୃତୀୟ ନାଟକ 'ସୌଦାଗର' ତା ୨୧।୨।୧୯୮୪ ତାରିଖରେ ଦୂରଦର୍ଶନରୁ ପ୍ରସାରିତ। ଏହାର ସମୟ ଅବଧି ହେଉଛି ୪୦ ମିନିଟ୍ । ଏହାପରେ ଚତୁର୍ଥ ନାଟକ 'ପ୍ରଶ୍ନ' ପ୍ରସାରଣ ତାରିଖ ତା ୨୫।୨।୧୯୮୨ରିଖ, ସମୟ ଅବଧି ୩୮ ମିନିଟ୍ । ପଂଚମ ନାଟକ 'ଅନ୍ଧ ଦିଗନ୍ତ' ପ୍ରସାରଣ ତାରିଖ ୫।୩।୧୯୮୭, ସମୟ ଅବଧି ୩୪ ମିନିଟ୍ । ଷଷ୍ଠ ନାଟକ 'ଅପରାହ୍ନର ଅବଶୋଷ' ପ୍ରସାରଣ ସମୟ ତା୬।୧।୨୦୦୦ରିଖ, ସମୟ ଅବଧି ଏକ ଘଣ୍ଟା । ପରେ ପରେ 'ମଣିଷ', 'କର୍ଣ୍ଣ', 'ଚିଠି'-ତିନୋଟି ନାଟକ ଦୂରଦର୍ଶନରେ ପ୍ରସାରିତ । ଶ୍ରୀ ସାହୁଙ୍କର ପରବର୍ତ୍ତୀ ନାଟକ 'ଏ ଦୌଡ଼ର କ'ଣ ଶେଷ ନାହିଁ' ତା ୧୧।୮।୨୦୧୩ରେ ଦୂରଦର୍ଶନରୁ ପ୍ରସାରିତ ହୋଇଛି।

ଶ୍ରୀଯୁକ୍ତ ସାହୁ ଦୂରଦର୍ଶନ ପାଇଁ ଦୁଇଟି ଧାରାବାହିକ "ସାବଧାନ" ଏବଂ "ଆମ ଶ୍ରୀମତୀ" ରଚନା କରିଛନ୍ତି। ଧାରାବାହିକ "ସାବଧାନ"ର ପ୍ରଯୋଜକ ଦୂରଦର୍ଶନ ଥିବାବେଳେ "ଆମ ଶ୍ରୀମତୀ" ବାହାରର ପ୍ରଯୋଜକଙ୍କ ଦ୍ୱାରା ପ୍ରଯୋଜିତ ଏବଂ ଏହା ଏକ ପ୍ରାୟୋଜିତ ଧାରାବାହିକ । ୨୦୦୬ ମସିହାରେ 'ଫାଶ' ନାଟକ ଏକ ଦୂରଦର୍ଶନର ଚଳଚ୍ଚିତ୍ରର ପାଣ୍ଡୁଲିପି ଶ୍ରୀ ସାହୁ ପ୍ରସ୍ତୁତ କରିଛନ୍ତି ଏବଂ ଏହା ଦୂରଦର୍ଶନରେ ରେକର୍ଡ଼ିଂ କରାଯାଉଥିବା ଅନେକ କାର୍ଯ୍ୟକ୍ରମ ଭବିଷ୍ୟତ ପାଇଁ ସଂରକ୍ଷଣ କରିବାର ସୁଯୋଗ ପୂର୍ବରୁ ନଥିଲା । ବର୍ତ୍ତମାନ ଡିଜିଟାଲ୍ ଭିଡ଼ିଓ ଡିସ୍କର ପ୍ରଚଳନ ଫଳରେ ବିଭିନ୍ନ ଲୋକପ୍ରିୟ କାର୍ଯ୍ୟକ୍ରମଗୁଡ଼ିକ ସଂରକ୍ଷିତ ହୋଇପାରୁଛି । ସେଥିପାଇଁ ଶ୍ରୀ ସାହୁଙ୍କର ଅନେକ ନାଟକ ଏବେ ଦୁଷ୍ପ୍ରାପ୍ୟ । ମାତ୍ର ଛ'ଗୋଟି ପାଣ୍ଡୁଲିପି ହିଁ ଏବେ ସଂରକ୍ଷିତ ଅବସ୍ଥାରେ ରହିଛି । ସେଗୁଡ଼ିକ ସଂପର୍କରେ ନିମ୍ନରେ ଆଲୋଚନା କରାଯାଉଛ।

ନିଶା ନିବାରଣ ଉପରେ ରଚିତ ୪୦ ମିନିଟ୍ ଅବଧିର ଶ୍ରୀ ସାହୁଙ୍କ ପ୍ରଥମ ନାଟକ 'ସୌଦାଗର' ୨୧।୨।୧୯୮୪ ମସିହାରେ ଦୂରଦର୍ଶନ କେନ୍ଦ୍ରରୁ ପ୍ରସାରିତ ହୋଇଥିଲେ ସୁଦ୍ଧା ଏହାର ପାଣ୍ଡୁଲିପି ତଥା ରେକେର୍ଡ଼ିଂ ଟେପ୍ ଏବେ ଦୁଷ୍ପ୍ରାପ୍ୟ।

ନାଟ୍ୟକାର ଡକ୍ଟର ନାରାୟଣ ସାହୁ-ମଣିଷ ଜୀବନର ସୁଖ ଦୁଃଖଳ ସଂଘର୍ଷ, ସମସ୍ୟା, ଜୀବନ ଯନ୍ତ୍ରଣା ସହିତ ବେଶ୍ ପରିଚିତ। ଦରଦୀ ନାଟ୍ୟକାର ଶ୍ରୀ ସାହୁ କଟକରେ ଅବସ୍ଥାନ ସମୟରେ ବ୍ୟକ୍ତିଗତ ଭାବରେ ଏଇ ଲେଖକ ତାଙ୍କର ପ୍ରତିଟି ମୁହୂର୍ତ୍ତ ସହିତ ବେଶ୍ ପରିଚିତ । 'ପ୍ରଶ୍ନ' ନାଟକ ଏଇ ଯନ୍ତ୍ରଣାର ଏକ ମାର୍ମିକ ଅଭିବ୍ୟକ୍ତି । ଏହି

ଦୂରଦର୍ଶନ ନାଟକ ପ୍ରଯୋଜକ ଶ୍ରୀ ମିହିର କୁମାର ମେହେରଙ୍କ ଦ୍ୱାରା ପ୍ରଯୋଜିତ ଏବଂ ନିର୍ଦ୍ଦେଶିତ । ୧୯୮୬ ମସିହା ଫେବୃୟାରୀ ୨୫ ତାରିଖରେ କଟକ ଦୂରଦର୍ଶନ କେନ୍ଦ୍ରରୁ ଏହା ପ୍ରଥମେ ପ୍ରସାରିତ ହୋଇଥିଲା । ଏହି ନାଟକର ସମୟ ଅବଧି ହେଉଛି ୩୮ ମିନିଟ୍। ଏହାର ପ୍ରସାରଣ ପରେ ଚଳଚ୍ଚିତ୍ର ସାଂବାଦିକ ତପନ ଘୋଷ ଏହା ସଂପର୍କରେ ଲେଖିଥିଲେ-'ପ୍ରଶ୍ନ'ର ସାତୋଟି ଭୂମିକାରେ ବହୁ ଅଭିଜ୍ଞ ଓ ଅନଭିଜ୍ଞ କଳାକାର ଅଭିନୟ କରିଥିଲେ । ବାପା, ମା, ଓ ତାଙ୍କର ତିନି ଉଚ୍ଚପଦସ୍ଥ ଚାକିରିଆ ପୁଅଙ୍କ ମର୍ମସ୍ପର୍ଶୀ କାହାଣୀକୁ ନେଇ ପାରିବାରିକ ସଂପର୍କର ଋତୁ କ୍ରମଶଃ ଶିଥିଳତା ପଡ଼ିଯାଉଥିବା ବିଷୟ ଦର୍ଶାଯାଇଛି। ଏକ ପାରିବାରିକ କାହାଣୀହିଁ 'ପ୍ରଶ୍ନ' ନାଟକର ମୁଖ୍ୟ କଥାବସ୍ତୁ। ଏଥିରେ ସମୁଦାୟ ଚାରିଟି ଦୃଶ୍ୟ ରହିଛି। ଏକ ମଂଚ ବା ସେଟ୍‌ରେ ଏହି ନାଟକ ଅଭିନିତ କରାଯାଇ ରେକର୍ଡ଼ିଂ କରାଯାଇଥିଲା । ସେତେବେଳେ କଟକ ଦୂରଦର୍ଶନ କେନ୍ଦ୍ରରେ ପ୍ରାୟତଃ ଦୁଇଟି କ୍ୟାମେରାରେ ଦୃଶ୍ୟ ଗ୍ରହଣ କରାଯାଉଥିଲା । ନାଟକର ମୁଖ୍ୟ ଚରିତ୍ର ଭଗିଚନ୍ଦର ଘର ଏବଂ ଘର ବାହାର ପାଖର ଦୃଶ୍ୟ ଏହାର ମୁଖ୍ୟ ସେଟ୍ । କଟକରେ ଥିବା ଦୂରଦର୍ଶନର ଷ୍ଟୁଡ଼ିଓ ବଡ଼ ନଥିଲା । ସେଥିପାଇଁ ମାତ୍ର ଦୁଇଟି ସେଟ୍ ମାଧ୍ୟମରେ ଏହି ନାଟକ ପରିକଳ୍ପନା ଓ ରେକର୍ଡ଼ିଂ ନାଟ୍ୟକାର ଓ ଏହାର ନିର୍ଦ୍ଦେଶକ କରିଛନ୍ତି। ପ୍ରଥମ ଓ ଦ୍ୱିତୀୟ ଦୃଶ୍ୟପରେ ଦୁଇଟି ଗୌଣ ଚରିତ୍ର ଭଗିଚନ୍ଦ ନାମଧାରୀ ଏକ ଡାକ୍ତରଙ୍କ ଘର ଖୋଜି ଖୋଜି ନାଟକର ମୁଖ୍ୟ ଚରିତ୍ର ଭଗିଚନ୍ଦଙ୍କ ପାଖରେ ପହଂଚିଛନ୍ତି । ହାସ୍ୟରସର ପରିବେଷଣ କରି ଏହି ଦୃଶ୍ୟ ମାଧ୍ୟମରେ ନାଟକର ମୁଖ୍ୟ ରସ ଦୁଃଖ-ଯନ୍ତ୍ରଣାରୁ ସାମୟିକ ମୁକ୍ତି ପାଇଁ ନାଟ୍ୟକାରଙ୍କ ଏହି ଉଦ୍ୟମ ପ୍ରଶଂସନୀୟ । ଯଦିଓ ଏହି ଦୁଇଟି ଚରିତ୍ରର ମୁଖ୍ୟ କାହାଣୀ ସହିତ କୌଣସି ସଂପର୍କ ନାହିଁ । ନାଟକର ଆରମ୍ଭରେ ସହରର ବିଭିନ୍ନ ସମସ୍ୟା ସଂପର୍କିତ ଏକ ଗୀତ ନାଟ୍ୟକାର ରଚନା କରିଛନ୍ତି ଯଥା:-

ମଦ ଏଠି ଅଟେ କୁଟୀର ଶିଳ୍ପ, ଅଫିମ ଗଂଜେଇ ଖୋଲାରେ ମିଳେ
ରାତିସାରା ଏଠି ଅନ୍ଧାର ତାଙ୍କର, ଦିନ ଦି'ପହରରେ ଲାଇଟ୍ ଜଳେ ।
ମଣିଷ ମାରିଲେ ପୋଲିସ୍ ଧରେନି, ଗୁଣ୍ଡାମୀର ଏଠି ବାଇଦ ବାଜେ ।

ନାତି ବୁଲୁ ଚରିତ୍ର ମୁହଁରେ ଗୀତଟି ପ୍ରଦାନ କରି ନାଟ୍ୟକାର ଏହି ସୂଚନା ଦେଇଛନ୍ତି। ନାଟ୍ୟକାର ସାହୁ କଟକର ବକ୍‌ସି ବଜାର ଅଂଚଳରେ ଅବସ୍ଥାନ କରୁଥିଲେ ଏବଂ ବକ୍‌ସିବଜାର ଛକରୁ ଅନ୍ନପୂର୍ଣ୍ଣା ରଂଗମଂଚ ଯିବା ବାଟରେ ଏପରି ଅସାଧାରଣ ଦୃଶ୍ୟ ସାଧାରଣତଃ ଆଖିରେ ପଡ଼େ । ନାଟକର ମୁଖ୍ୟ ଚରିତ୍ର ଭିଗିଚନ୍ଦ, ସ୍ତ୍ରୀ-ସାରିଆ ଏକ ଗାଁର

ବାସିନ୍ଦା । ସାରିଆ କର୍କଟ ରୋଗରେ ପୀଡ଼ିତା । ବଡ଼ପୁଅ ଗୋପାଳ ଡାକ୍ତର, ମଝିଆ ପୁଅ ରଘୁନାଥ ଇଂଜିନିୟର । ସାନପୁଅ ନଟବର ଗବେଷକ । ସବୁ ପୁଅମାନେ ସହରରେ ରହନ୍ତି । ବାପ-ମାଆଙ୍କ ପାଖକୁ ଆସି, ନିଜର ପୁରୁଣା ନୂଆଣିଆ ଚାଳଘର, ଗାଁରେ କର୍ଣ୍ଣମାକ୍ତକୁ ଚାଳଛାଡ ନିକଟସ୍ଥ ଡାକବଙ୍ଗଳାରେ ରହିବାକୁ ପସନ୍ଦ କରିଛନ୍ତି । ମାଆକୁ କର୍କଟ ରୋଗ ହୋଇଥିବାରୁ ନିଜ ପୁଅ ବୁଲୁକୁ ତା ସହିତ ମିଶିବାକୁ ବାପା ମାଆ ହାତରୁ କିଛ ଖାଇବାକୁ ଦେଇ ନାହାନ୍ତି ପୁଅ । ଭଗିଚନ୍ଦ ପୁଅମାନଙ୍କର ଦୁର୍ନୀତି ଖୋର ମନୋଭାବ ଏବଂ ଅର୍ଥ ଉପାର୍ଜନକୁ ସମାଲୋଚନା କରିଛନ୍ତି । ପୁଅମାନେ କିନ୍ତୁ ବାପା-ମାଆଙ୍କୁ ସହରକୁ ନେବାକୁ ଚାହିଁଥିଲେ ମଧ ଗାଁ ଛାଡିବାକୁ ଅମଙ୍କ ହୋଇଛନ୍ତି ଭଗିଚନ୍ଦ ଓ ସାରିଆ । ଦୁଇଟି ପୁରୁଷର ଯନ୍ତ୍ରଣା, ଅହମିକା, ମୁଲ୍ୟ ବୋଧ, ମାନସିକ ସଂଘର୍ଷ ନାଟ୍ୟକାର ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି । କିଛିଦିନ ପରେ କିନ୍ତୁ ଗତିବୁଲୁ ଲୁଚି କରି ଅଜାଆଇଙ୍କ ପାଖକୁ ଚାଲିଆସିଛି । ଏ ପ୍ରସଙ୍ଗରେ ନାଟ୍ୟକାରଙ୍କ ବ୍ୟଙ୍ଗୋକ୍ତି ମଧ ଚମତ୍କାର । ବାପା ଦାଦା ତ ପାଠପଢି ତମ ଦିଜଣଙ୍କୁ ପଚାରୁନାହାନ୍ତି ? ମୁଁ କାଇଁକି ସେ ପାଠ ପଢିବି ? କିନ୍ତୁ ନାଡ଼ିକୁ ଧରି ଭଗିଚନ୍ଦ ସାରିଆ ପାଖକୁ ଆସିବା ବେଳକୁ ସାରିଆର ପ୍ରାଣପକ୍ଷୀ ଉଡିଯାଇଛି ଭଗିଚାନ୍ଦ ଓ ସାରିଆର ଜୀବନ ସଂଗ୍ରାମର ଶେଷ ନାହିଁ । ସହରୀ ସଭ୍ୟତାର ସ୍ୱାର୍ଥପର ମୋହ, ଗାଉଁଲୀ ମୂଲ୍ୟବୋଧ ନିଃସ୍ୱାର୍ଥପର ମମତାର ଚିତ୍ରଣ ହିଁ ଏହି ଏହି ନାଟକ ପ୍ରଶ୍ନ । ଏ ସଂପର୍କରେ ନାଟ୍ୟକାର କହନ୍ତି-ମଣିଷକୁ ବଂଚିବାକୁ ହେବ ସଂଗ୍ରାମ ଭୂମିରେ ସଂଘର୍ଷ ସହିତ ; ତାକୁ କ୍ଷତାକ୍ତ ହେବାକୁ ପଡିବ-ତା ଶରୀରର ଶେଷ ରକ୍ତ ବିନ୍ଦୁ ଥିବା ପର୍ଯ୍ୟନ୍ତ । ତା ଆଶାର କଣ ପରିସମାପ୍ତି ନାହିଁ ? ତା ସଂଗ୍ରାମର କଣ ଶେଷ ନାହିଁ ?

ପ୍ରଶ୍ନ ଏକ ସଫଳ ଦୂରଦର୍ଶନ ନାଟକ । ଅଭିଜ୍ଞ ତଥା ବରିଷ୍ଠ କଳାକାର ଯଥା-ଦୁର୍ଲ୍ଲଭ ସିଂ, କିର୍ତ୍ତନପାତ୍ର, ବାସନ୍ତୀ ପଟ୍ଟନାୟକ, କାଶୀନାଥ, ପରାଶ ପଟ୍ଟନାୟକ ଏବଂ ନବାଗତ ସୁଧୀରା ପଟ୍ଟନାୟକ ଅଭିନୟ ଏହି ନାଟକକୁ ଅଧିକ ଜୀବନ୍ତ କରିପାରିଛି । ଯଦିଓ ନାଟ୍ୟକାର ସୁଧୀରା ଚରିତ୍ର ସଂପର୍କର କିଛି ସୂଚନା ଦେଇନାହାନ୍ତି ମାତ୍ର ନାଟକର ଦୃଶ୍ୟାଙ୍କନ ସମୟରେ ନିର୍ଦ୍ଦେଶକ ଏହି ଚରିତ୍ରର ସଂଯୋଜନା କରି ନାଟକକୁ ଅଧିକ ପ୍ରାଣବନ୍ତ ଏବଂ ଗତିଶୀଳ କରାଇବାରେ ସାହାଯ୍ୟ କରିଛନ୍ତି । ନାଟକର ପ୍ରଥମ ଦୃଶ୍ୟର ସମୟ ସୀମା ଅଧିକ । କିନ୍ତୁ ଅନ୍ୟ ତିନୋଟି ଦୃଶ୍ୟର ସମୟ କମ୍ । ନାଟକର ଚିତ୍ରନାଟ୍ୟ ପ୍ରସ୍ତୁତିବେଳେ ପ୍ରତ୍ୟେକ ଦୃଶ୍ୟର ସମୟ ସୀମା ପ୍ରାୟତଃ ସମାନ ରଖିଲେ ନାଟକରେ ଉତ୍କଣ୍ଠା ଏବଂ ସଂଘର୍ଷକୁ ଅଧିକ ବୃଦ୍ଧି କରିଥାଏ । ସେହିପରି ତିନିପୁଅଙ୍କ ଆଗମନ ଏକ

ଦୃଶ୍ୟରେ ନକରି ଜଣଙ୍କ ପରେ ଜଣେ ତିନୋଟି ଦୃଶ୍ୟରେ କରାଇ ଏବଂ ପ୍ରତ୍ୟେକ ପୁଅର ଆଗମନ ପରେ ଆଉ ଗୋଟିଏ ବା ଦୁଇଟି ଗୌଣ ଚରିତ୍ରର ସୃଷ୍ଟି ଦ୍ୱାରା ଏକ ସମସ୍ୟାର ଅବତାରଣା କରାଇ ପାରିଥିଲେ ନାଟ୍ୟକାରଙ୍କ ଚିତ୍ରନାଟ୍ୟ ଅଧିକ ବଳିଷ୍ଠ ହୋଇପାରିଥାନ୍ତା । ଯେହେତୁ ଏହା ନାଟ୍ୟଜୀବନର ପ୍ରାରମ୍ଭର ନାଟକ ବୋଧହୁଏ ନାଟ୍ୟକାର ସେଥିପ୍ରତି ବିଶେଷ ଧ୍ୟାନ ଦେଇ ପାରିନାହାନ୍ତି ।

'ଅନ୍ଧ ଦିଗନ୍ତ' ନାଟ୍ୟକାର ଶ୍ରୀ ସାହୁଙ୍କର ପରବର୍ତ୍ତୀ ନାଟକ । ଏହି ନାଟକର ପ୍ରସାରଣ ସମୟ ହେଉଛି–୫/୩/୧୯୮୭ ଏହାର ସମୟ ଅବଧି ହେଉଛି ୩୪ ମିନିଟ । ଦିବ୍ୟ ଜୀବନର ଓ ସଂଘର୍ଷକୁ ନେଇ ସାତଗୋଟି ଦୃଶ୍ୟ ଏବଂ ଦଶଗୋଟି ଚରିତ୍ର ମାଧ୍ୟମରେ ନାଟ୍ୟକାର ଏହାର କାହାଣୀ ପ୍ରକାଶ କରିଛନ୍ତି । ମୁଖ୍ୟତଃ ଦୁଇଟି ଦୃଶ୍ୟ .... ଏହି ନାଟକର ରହିଛି । ଗୋଟିଏ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟାଳୟ ଓ ଅନ୍ୟଟି ପ୍ରଧାନ ଶିକ୍ଷକଙ୍କ ବୈଠକଖାନା । କାର୍ଯ୍ୟାଳୟ ପରେ ବୈଠକଖାନା ଦୃଶ୍ୟ କ୍ରମନ୍ୱୟରେ ଏହି ନାଟକରେ ସଜ୍ଜିତ ହୋଇ ନାଟକୀୟ ସଂଗୀତ, ସଂଘର୍ଷ, ଉତ୍କଣ୍ଠାକୁ ନାଟ୍ୟକଳା ଦୃଷ୍ଟିରୁ ନାଟକକୁ ଶ୍ରେଷ୍ଠ ନାଟକ ଭାବରେ ପ୍ରତିଷ୍ଠିତ କରାଯାଇଛି । ପୂର୍ବରୁ କଟକ ଦୂରଦର୍ଶନ କେନ୍ଦ୍ରରେ ସମୁଦାୟ ଗୋଟିଏ ଦିନ ମଧ୍ୟରେ ଦୁଇଟି ସେଟ୍ ସଜ୍ଜା କରାଯାଇ ତାପରେ ଆଲୋକ ସଂଘାତ କରାଯାଇ ସନ୍ଧ୍ୟା ଛଅଟା ପୂର୍ବରୁ ନାଟକ ରେକର୍ଡିଂ ସାରିବାକୁ ହେଉଥିଲା। କାରଣ ସନ୍ଧ୍ୟା ୬ଟା ବେଳକୁ ଆଞ୍ଚଳିକ କାର୍ଯ୍ୟକ୍ରମ ତଥା ସମାଚାର ପାଇଁ ସେହି ଗୋଟିଏ ଷ୍ଟୁଡିଓ ହିଁ ବ୍ୟବହାର କରାଯାଉଥିଲା । ସେଥିପାଇଁ ଦୁଇଟି ସିଫ୍ଟ ସକାଳ ୭ଟାରୁ ଦିନ ଗୋଟାଏ ଏବଂ ଦିନ ଗୋଟାଏରୁ ସନ୍ଧ୍ୟା ୬ଟା ମଧ୍ୟରେ ଦୁଇଟି ମଞ୍ଚ ସଜ୍ଜାର ମଧ୍ୟରେ ନାଟକର ଦୃଶ୍ୟମାନ ବେଳେ ବେଳେ କଷ୍ଟସାଧ ମଧ୍ୟ ହେଉଥିଲା । ଅଭିଜ୍ଞ ବୈଷୟିକ କର୍ମଚାରୀମାନଙ୍କର କର୍ତ୍ତବ୍ୟ ନିଷ୍ଠତା ହିଁ ଏପରି କାର୍ଯ୍ୟକ୍ରମ ଦୃଶ୍ୟାୟନ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

'ଅନ୍ଧଦିଗନ୍ତ' ନାଟକରେ ଜଣେ ଆଦର୍ଶବାଦୀ ପ୍ରଧାନଶିକ୍ଷକଙ୍କର ଆଦର୍ଶ, ସଚ୍ଚୋଟତା ପାଠ ପଢି ମଣିଷ କରେଇବା ଚିନ୍ତାଧାରାକୁ ସାଂପ୍ରତିକ ସମାଜର ବଡପଣ୍ଡା- ବିଦ୍ୟାଳୟର ସଭାପତି, ପୋଲିସ ଅଧିକାରୀ, ଅସମାଜିକ ଛାତ୍ର, ଲାଞ୍ଚଖୋର କିରାଣୀ ସହି ପାରିନାହାନ୍ତି । ସମସ୍ତଙ୍କର ପୁଅ ଝିଅମାନେ ପାଠ ନପଢି ପରବର୍ତ୍ତୀ ପରୀକ୍ଷା ପାଇଁ ଉତ୍ତୀର୍ଣ୍ଣ ହୋଇ ନପାରିବାରୁ ସମସ୍ତେ ଏକାଠି ହୋଇ ବିଦ୍ୟାଳୟର ପବିତ୍ର ପରିବେଶରେ ପ୍ରଧାନଶିକ୍ଷକ ତଥା ଅନ୍ଧ ଦିଗନ୍ତ ନାଟକର ମୁଖ୍ୟ ଚରିତ୍ର ରଣବୀରଙ୍କୁ ହତ୍ୟା କରିଛନ୍ତି ।

ଶିକ୍ଷକ ରଣବୀରଙ୍କ ବଡପୁଅ ହିଁ ବାପାଙ୍କ ପ୍ରଦତ୍ତ ଶିକ୍ଷାର ମୂଲ୍ୟକୁ ବୁଝିଛି । ରେଳବାଇରେ କିରାଣୀ ଚାକିରି ପାଇ ସାନ ଭଉଣୀ ବଡ ମାଆ ଶାନ୍ତିକୁ ନିଜ ପାଖକୁ ନେବାକୁ ଚାହୁଁଛି। ଅସମାଜିକ ଛାତ୍ର ଅଜୟ ଏବଂ ପ୍ରଧାନଶିକ୍ଷକ ରଣବୀରଙ୍କ କନ୍ୟା ଶାନ୍ତି ମଧ୍ୟରେ ପ୍ରେମ ସଂପର୍କ କାହାଣୀରେ ସଂଘର୍ଷ ସୃଷ୍ଟି କରିଛି । ଅଜୟ ଶିକ୍ଷକ ରଣବୀରଙ୍କ ଦ୍ୱାରା ଉପହସିତ ହେଲେ ମଧ୍ୟ ଶିକ୍ଷକଙ୍କ ପତ୍ନୀଙ୍କ ସାହାଯ୍ୟ ନେଇ ତାଙ୍କ କନ୍ୟା ସହିତ ପ୍ରେମ ସଂପର୍କ ରକ୍ଷା କରିଛି । ଅଜୟ ନାଟକର ଶେଷରେ ଶାନ୍ତି ଆଗରେ ହତ୍ୟାକରୀମାନଙ୍କ ସଂପର୍କରେ ପ୍ରକାଶ କରିବା ଏବଂ ନିଜେ ମଧ୍ୟ ପ୍ରଧାନ ଶିକ୍ଷକଙ୍କ ହତ୍ୟାରେ ସଂପୃକ୍ତ ବୋଲି କହିବା ଅସଂଗତ ମନେହୁଏ । ନିଜର ଗୁରୁଙ୍କୁ ଅର୍ଥାତ ନ୍ୟାୟକୁ ହତ୍ୟାକରିବା ଫଳରେ ତାର ମାନସିକ ଚେତନାର ଅଧୋଗତି ଏବଂ ବିଶ୍ଳେଷଣ ସଂପର୍କୀତ ଦୃଶ୍ୟ ସଂଯୋଜନା କରିଥିଲେ ତାଙ୍କ ଅଧିକ ବାସ୍ତବଧର୍ମୀ ହୋଇ ପାରିଥାନ୍ତା । ଆହୁରି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି-ନିଜ ଶିକ୍ଷକଙ୍କ ସମ୍ମୁଖରେ ତାଙ୍କ କନ୍ୟାକୁ ଗର୍ଭବତୀ କରାଇବାର ଘୋଷଣା- ଅଜୟ ଚରିତ୍ରର ସାହାସିକତାକୁ ପ୍ରକାଶ କଲାବେଳେ-ଶିକ୍ଷକ ରଣବୀରଙ୍କ ମାନସିକତା ବିଶ୍ଳେଷଣ ନାଟ୍ୟକାର ନକରି କେବଳ ଅଜୟ ୟୁ ସ୍କାଉଣ୍ଡ୍ରାଲ ସଂଳାପ ମାଧ୍ୟମରେ କ୍ଷୋଭ ପ୍ରକାଶ କରିବା ସଂପୂର୍ଣ୍ଣ ଅସ୍ୱାଭାବିକ ମନେହୁଏ । ଜଣେ ସତ୍ୟନିଷ୍ଠ ଆଦର୍ଶବାଦୀ ଧର୍ମ ନ୍ୟାୟର ପ୍ରତୀକ -ଶିକ୍ଷକ ରଣବୀର ନିଜ ଝିଅ ସଂପକ୭ରେ ଏପରି ମନ୍ତବ୍ୟ ଶୁଣି ଯେପରି ପ୍ରତିକ୍ରିୟା ନେବା କଥା ତାହା ନାଟ୍ୟକାରଙ୍କ ନାଟ୍ୟ ନିର୍ଦ୍ଦେଶରେ ଆଦୌ ଉଲ୍ଲେଖ ନାହିଁ । ତା ସହିତ ଏ ଘଟନା ରଣବୀରଙ୍କ ପତ୍ନୀ ଶୁଣିବା ପରେ ତାଙ୍କର ମଧ୍ୟ କୌଣସି ପ୍ରତିକ୍ରିୟ ନାଟ୍ୟକାର ପ୍ରଦାନ କରିନାହାନ୍ତି କି ସେ ସଂପର୍କରେ ସୂଚନା ମଧ୍ୟ ଦେଇ ନାହାନ୍ତି । ଏହାକୁ ନାଟ୍ୟକାରଙ୍କ ନାଟକୀୟ ଚରିତ୍ର ଚିତଣ ଅନ୍ୟତମ ଦୁର୍ବଳତା ବୋଲି ମାନିବାକୁ ହେବ । ବରଂ ମାନସିକ ଅସ୍ଥିରତା-ମାନସିକ ଭାରସାମ୍ୟ ହରାଇ ରଣବୀର ଦୁର୍ବଳ ଥିବାବେଳେ ଖଳନାୟକଙ୍କର ଆପତ୍ତି ଅଭିଯୋଗରେ ମ୍ରିୟମାଣ ହେବ ଏବଂ ସେମାନେ ତାଙ୍କର ହତ୍ୟା କରିବା ଦୃଶ୍ୟ ସଂଯୋଜିତ ହୋଇଥିଲେ ଅନ୍ଧଦିଗନ୍ତର କାହାଣୀ ଓ ଚରିତ୍ର ଆହୁରି ବଳିଷ୍ଠ ହୋଇପାରିଥାନ୍ତା ।

ନାରାୟଣ ସାହୁଙ୍କର ଅନ୍ୟତମ ଦୂରଦର୍ଶନ ପ୍ରଯୋଜିତ ଧାରାବାହିକ ହେଉଛି ଶିକ୍ଷାମୂଳକ ସାବଧାନ । ମୁଖ୍ୟତଃ ବାରଗୋଟି ଅଧ୍ୟାୟ ରେ ବିଭିନ୍ନ ପ୍ରକାର କର୍କଟ ରୋଗର କାରଣ, ତାର ନିରାକରଣ ସଂପର୍କରେ ଏହି ଧାରାବାହିକ ସୂଚନା ପ୍ରଦାନ କରାଯାଇଛି। ପ୍ରତ୍ୟେକ ଅଧ୍ୟାୟରେ ଏକ ପାରିବାରିକ କାହାଣୀ ରହିଛି । କାହାଣୀର ଗତିଶିଳତା ଓ

ଚରିତ୍ର ଚିତ୍ରଣ ମଧ୍ୟରେ କର୍କଟ ରୋଗର ବିଭିନ୍ନ ତଥ୍ୟ, ଚିକିତ୍ସା ସଂପର୍କରେ ଡାକ୍ତରଙ୍କର ପରାମର୍ଶକୁ କାହାଣୀ ସହିତ ସଂଯୋଜନା କରାଯାଇଛି ପ୍ରାରମ୍ଭରୁ ଚିକିତ୍ସା କଲେ କର୍କଟ ରୋଗରୁ ମୁକ୍ତି ମିଳିପାରିବ ବୋଲି ବାର୍ତ୍ତା ଦିଆ ଯାଇଛି । ଏହି ଧାରାବାହିକର ଚିତ୍ରନାଟ୍ୟ..... ଏହାର ନାଟ୍ୟ ନିର୍ଦ୍ଦେଶକ ଏବଂ ନାଟ୍ୟକାର ଶ୍ରୀ ସାହୁଙ୍କ ଆଲୋଚନା ମାଧ୍ୟମରେ ପ୍ରସ୍ତୁତ କରାଯାଇଛି । କାହାଣୀ ଚୟନ ପରେ ତାର ବିକାଶ, ଅନ୍ତ ସଂପର୍କରେ କିପରି ବୃତ୍ତଚିତ୍ରକୁ ସଂପର୍କ ରଖି ସଂଲଗ୍ନ କରାଯିବ ସେ ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି କରାଯାଇଛି । ଫଳରେ ଧାରାବାହିକ ଏକ ସଫଳ ଧାରାବାହିକର ମାନ୍ୟତା ପାଇଛି ।

ସାବଧାନ ଧାରାବାହିକ ମୁଖ୍ୟଙ୍କ ଅଭିଜ୍ଞ ବୈଷୟିକ କର୍ମଚାରୀଙ୍କ ଜ୍ଞାନ କୌଶଳ ସହାୟତାରେ ନିର୍ମିତ । ଗୋଟିଏ କ୍ୟାମେରା ଦ୍ୱାରା ଚଳଚିତ୍ରର ଦୃଶ୍ୟାୟନ ପରି ଏହାର ଚିତ୍ରଗ୍ରହଣ କରାଯାଇଛି ଚଳଚିତ୍ର ନିର୍ଦ୍ଦେଶକ ବସନ୍ତ ସାହୁ ଏବଂ ଅଭିଜ୍ଞ ଟୁକୁ ମିଶ୍ରଙ୍କ ନିର୍ଦ୍ଦେଶନା ଏହି ଧାରାବାହିକକୁ ସଫଳ କରିଛି । ସାବଧାନ ଧାରାବାହିକ ଆରମ୍ଭରେ ଗୋଟିଏ ଗୀତ ଦ୍ୱାରା ସୂଚନା ପ୍ରଦାନ କରାଯାଇଛି । ଏହା ପରେ କାହାଣୀ ଆରମ୍ଭ ହୋଇ ମଝିରେ ରୋଗ ସଂପର୍କୀତ ବୃତ୍ତଚିତ୍ର ଏବଂ ଶେଷରେ କାହାଣୀର ସମାପ୍ତି କରାଯାଇଛି ।

ସାବଧାନ ଧାରାବାହିକରେ ମୁଖ୍ୟତଃ ପାକସ୍ଥଳୀ କର୍କଟ, ଜରାୟୁ କର୍କଟ ଚର୍ମକର୍କଟ, ଲାସାଗ୍ରନ୍ଥି କର୍କଟ, ଅନ୍ତନାଳୀ କର୍କଟ, ଫୁସ୍ଫୁସ୍ କର୍କଟ, ମୁଖ ଗହ୍ୱର କର୍କଟ, ଥାଇରାଏଡ୍ କର୍କଟ, ଯକୃତ କର୍କଟ, ସ୍ତନକର୍କଟ ସଂପର୍କରେ ସମସ୍ତ ଆବଶ୍ୟକୀୟ ସୂଚନା ପ୍ରଦାନ କରାଯାଇଛି । ଡାକ୍ତରଖାନା, ଅପରେସନ୍ ଥିଏଟର, ଘରର ବୈଠକଖାନା ଶୟନ କକ୍ଷ, ଡାକ୍ତରଙ୍କ କକ୍ଷକୁ ହିଁ ଏହି ଧାରାବାହିକର ମୁଖ୍ୟ ସେଟ୍ ଭାବରେ ଗ୍ରହଣ କରାଯାଇଛି । ଆବଶ୍ୟକତା ଅନୁଯାୟୀ ୭/୮ଟି ଚରିତ୍ର ମାଧ୍ୟମରେ ହିଁ କାହାଣୀ ଗୁଡିକ ନାଟ୍ୟକାର ବୁହାଇଛନ୍ତି । କେତେକ ସ୍ଥଳରେ ଅତୀତ କଥନ ଶୈଳୀ ମାଧ୍ୟମରେ ନାଟ୍ୟକାର କାହାଣୀର ଅବତାରଣା କରାଇଛନ୍ତି । ସାବଧାନ ଧାରାବାହିକର ଶେଷ ଅଧ୍ୟାୟରେ କେବଳ ଚରିତ୍ରର ମୃତ୍ୟୁ ନାଟ୍ୟକାର ଦର୍ଶାଇଛନ୍ତି । ପ୍ରାରମ୍ଭିକ ଅବସ୍ଥାରେ ଏହି ରୋଗ ଚିହ୍ନିତ ହେଲେ ଔଷଧ, ଅପରେସନ୍ ସମୟରେ ଚିକିତ୍ସା ଦ୍ୱାରା ଏହି ରୋଗରୁ ମୁକ୍ତି ମିଳେ ।

କର୍କଟ ଆକ୍ରାନ୍ତ ରୋଗୀ ପାଇଁ ଚିକିତ୍ସା ଏବଂ ଔଷଧର ଆବଶ୍ୟକତା ଯେତିକି ରହିଛି-ସେପରି ରହିଛି ତା ପ୍ରତି ସ୍ନେହ, ଭଲପାଇବା, ଯତ୍ନ, ମମତା, ସ୍ନେହ ମିଶ୍ରିତ ସେବା । ଏହାହିଁ କର୍କଟ ରୋଗୀର ଯନ୍ତନାକୁ ଲାଘବ କରିଥାଏ । ସାବଧାନ ଧାରାବାହିକର ଶେଷ ଅଧ୍ୟାୟରେ ଜଣେ ବୃଦ୍ଧ ପିତାର କର୍କଟ ରୋଗ ଜନିତ ଯନ୍ତଣା, ଚିତ୍କାର, ବେଦନା

ହିଁ ରୂପ ପାଇଛି । ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । ତଥାପି ଶାନ୍ତି ପାଇଁ ସୁଖ ପାଇଁ ସମସ୍ତଙ୍କୁ କର୍କଟ ବା କ୍ୟାନସର ସହିତ ଲଢ଼ିବାକୁ ପଡିବ । ପାରିବାରିକ ଜଞ୍ଜାଳ ମଧ୍ୟରେ ଜଣେ କର୍ମଜୀବୀ ଶରତ ନିଜ ପିତାଙ୍କୁ ଏହି ରୋଗରେ ଆକ୍ରାନ୍ତ ଶୁଣି ବ୍ୟତିବ୍ୟସ୍ତ ହୋଇଛନ୍ତି । ବିଳମ୍ବରେ ଏହି ରୋଗର ଚିକିତ୍ସା ହେବାରୁ ଶରତ ତାଙ୍କର ବାପାଙ୍କ ମୃତ୍ୟୁ ସଂପର୍କରେ ଜାଣିପାରିଛନ୍ତି । ତଥାପି ପତ୍ନୀ ଏବଂ ପୁଅଙ୍କର ତାଙ୍କ ବାପାଙ୍କ ରୋଗ ପ୍ରତି ଏବଂ ତାଙ୍କ ପ୍ରତି ତାତ୍ସଲ୍ୟ ଶରତଙ୍କୁ ବିଚଳିତ କରିଛି । ଏକ ନାଟକୀୟ ଦୃଶ୍ୟ ନାଟକୀୟ ପରିବେଶ- ଭାଗବତ ପାଠ ଗମ୍ଭୀର ନୀରବତା, ପ୍ରାଣପକ୍ଷୀ ଉଡିଯିବା ପରେ ଦୀପ ଲିଭିଯିବା ସମସ୍ତଙ୍କର ଆକୁଳ କ୍ରନ୍ଦନ ଧାରାବାହିକକୁ କେବଳ ପାଠକୀୟ ନାଟକୀୟତା ପ୍ରଦାନ କରିବାହିଁ ବରଂ ସିନେମାଟିକ୍ ଶୈଳୀରେ ତାହା ଦୃଶ୍ୟାୟିତ ହୋଇ ଉପଯୁକ୍ତ ଚଳଚ୍ଚିତ୍ର ଧର୍ମ ରକ୍ଷା କରିଛି। ଗୋଟିଏ କ୍ୟାମେରା ମାଧ୍ୟମରେ ଏହି ଧାରାବାହିକକୁ ଦୂରଦର୍ଶନ ନାଟକ ଅପେକ୍ଷା ବରଂ ଟେଲିଫିଲିମ୍ ବା ଦୂରଦର୍ଶନ ଚଳଚ୍ଚିତ୍ର କହିଲେ ଅଧିକ ଠିକ ହେବ ।

୨୦୦୮ ମସିହାରେ ନାରାୟଣ ସାହୁଙ୍କ ଅନ୍ୟତମ ଦୂରଦର୍ଶନ ଚଳଚ୍ଚିତ୍ର 'ପାଶ' ପ୍ରସାରିତ । ଲୋକପ୍ରିୟ ଗାଳ୍ପିକା ଜୟନ୍ତୀ ରଥଙ୍କ ମୂଳ କାହାଣୀ ଅବଲମ୍ବନରେ ଏହାର ଚିତ୍ରନାଟ୍ୟ ଓ ସଂଳାପ ରଚନାର ଦାୟିତ୍ୱ ଡଃ ସାହୁ ଗ୍ରହଣ କରିଛନ୍ତି ଏହି ଟେଲି ଚଳଚ୍ଚିତ୍ରର ନିର୍ଦ୍ଦେଶନାର ଭାର ଗ୍ରହଣ କରିଥିଲେ ବର୍ତ୍ତମାନ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରର ନିର୍ଦ୍ଦେଶିକା ଶ୍ରୀମତୀ ଜୟନ୍ତୀ ମଂଜରୀ ରଥ । ପ୍ରାରମ୍ଭରୁ ମୂଳ କାହାଣୀର ମୌଳିକତା ଯେପରି ନଷ୍ଟ ନ ହୁଏ ସେଥିପ୍ରତି ଦୃଷ୍ଟି ଦିଆ ଯାଇଛି । ଟେଲି ଚଳଚ୍ଚିତ୍ରର ନିର୍ଦ୍ଦେଶିକାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହାର ଦୃଶ୍ୟର ସଜ୍ଜୀକରଣ ତଥା ଆଲୋଚନା ମାଧ୍ୟମରେ କିପରି ଭଲ ଦୃଶ୍ୟ ସଂଯୋଜନା କରାଯାଇପାରିବ ତାହା ସ୍ଥିରୀକୃତ ହୋଇଥିଲେ । ସେଥିପାଇଁ ସଂଗୀତ ନିର୍ଦ୍ଦେଶକ ତଥା ଗୀତିକାର ମନ୍ମଥ ମିଶ୍ର ଏହାର କାହାଣୀକୁ ଆଖି ଆଗରେ ରଖି ଏକ ଗୀତ ଏହି ଟେଲି ଚଳଚ୍ଚିତ୍ରରେ ସଂଯୋଜିତ କରିଛନ୍ତି ।

ଝିଅ ଜନମ ତୁଠ ପଡର ଲୋ,
ପଡିପଡି ହୁଏ ଶେଷ ।
ଲୁହ ବୋହୁଥିବ, ପୋଛି ହଉଥିବ,
ଚୋଟ ଖାଉଥିବ, ପୁଣି ବଢୁଥିବ
ଭାଂଗି ଦେଉ ସବୁ ରୋଗ
ଅଣ୍ଟା ଭିଡିଦେଇ ବାଟ ଚାଲେ ସିଏ
ମନରେ ବାନ୍ଧି ସାହସ ।

ସଂସାର ଭିତରେ ଘର କରିଥିଲେ
ମିଳେ ନିନ୍ଦା ଅବା ଯଶ ।
ଏ ତ ସଂସାର ପାଶ ।

ନାରୀ ଜୀବନର ସ୍ୱପ୍ନ-ସୁଖ, ଦୁଃଖ ଯନ୍ତ୍ରଣା-ଶେଷରେ ମୁକ୍ତି ପାଇଁ ଆକୁଳତା ଏବଂ ତାର ମାନସିକ ଅସ୍ଥିରତା ହିଁ ପାଶର ମୁଖ୍ୟ କଥାବସ୍ତୁ ଭାଗବତର ତତ୍ତ୍ୱ-ନାରୀ ସ୍ୱଭାବେ ମୁହିଁ ମନ୍ଦ, ନଜାଣେ ଆତ୍ମ ଭଲ ମନ୍ଦ ଅନୁସାରେ ଏହି କାହାଣୀର ମୁଖ୍ୟ ଚରିତ୍ର ମାଳତୀ ରୂପାୟିତ । କେତେ ଆଶା ସ୍ୱପ୍ନ ନେଇ ବିବାହ କରିଛି ଜଣେ ମିଲିଟାରୀ ଚାକିରୀ ଫେରନ୍ତା ଯୁବକକୁ । ମାତ୍ର ବାସର ରାତିରେ ହିଁ ତାର ସବୁ ସ୍ୱପ୍ନ ଭାଂଗି ଯାଉଛି । ମାନସିକ ବିକୃତି ଥିବା ଅର୍ଦ୍ଧପାଗଳ ଭାସିଆର, ଅତ୍ୟାଚାରରେ ମାଳତୀ ଚିତ୍କାର କରି ଉଠିଛି । ପ୍ରତ୍ୟେକ ଦିନର ରାତି ହିଁ ତାପାଇଁ ଯନ୍ତ୍ରଣା ଅତ୍ୟାଚାରର ରାତି ପାଲଟି ଯାଇଛି । ତାର ଏପରି ଦୁଃଖ ସମୟରେ ସୁଖ-ସ୍ନେହ, ପ୍ରେମର ହାତ ବଢେଇଛି ରତନା-ତା ଦିଅର । ଅଜାଣତରେ ହେଉ କି ଜାଣତରେ ହେଉ ରତନା ସହ ସଂପର୍କ ତାଙ୍କୁ ବଂଚିବାର ରାସ୍ତା ଦେଖେଇଛି । ଦିନେ ଗାଁ ଲୋକେ ଭାସିଆର ଅତ୍ୟାଚାର ଦେଖିବା ପରେ ଅପମାନିତ-ବୋଧ କରି ସେ ନିରୁଦ୍ଦିଷ୍ଟ ହୋଇଛି । କିଛି ମାସ ପରେ ମାଳତୀ ରତନା ଦ୍ୱାରା ପାପଗର୍ଭ ହେବା ପରେ ଶାଶୁଙ୍କର ଦ୍ୱାରା ଅତ୍ୟାଚାରିତା ହୋଇଛି । । ସମସ୍ତଙ୍କ ସମ୍ମୁଖରେ ମାଳତୀ ଘୋଷଣା କରିଛି ଯେ ତା ପେଟର ଛୁଆ-ରତିନାର । ଶାଶୁ ମାଳତୀକୁ ଘରୁ ତଡି ଦେବା ପରେ ସେ ନିଜ ବାପ ଘରେ ଆଶ୍ରୟ ନେଇଛି ଏବଂ ତାର ପୁଅଟିଏ ବି ହୋଇଛି। ଭାଇ ପୁଅକୁ ଅଧିକ ସ୍ନେହ କରିବାରୁ ସେ ଭଉଜ ଦ୍ୱାରା ନିନ୍ଦିତ ବି ହୋଇଛି । ମାତ୍ର ହଠାତ୍ ଭାସିଆ ନାଁରେ କିଛି ଟଙ୍କା ତା ଚାକିରୀ ଜାଗାରୁ ଆସିବାରୁ ତାକୁ ଆଣିବା ପାଇଁ ସେ ପୁଣି ଶାଶୁ ଘରକୁ ଯାଇଛି । ପ୍ରତ୍ୟେକ ମୁହୂର୍ତ୍ତରେ ରତନା ଓ ତା ସ୍ତ୍ରୀକୁ ସେ ମାଡ ଦେଉଥିଲେ ମଧ୍ୟ ତାର ପରିବର୍ତ୍ତନ ହୋଇଛି । ସେଥିପାଇଁ ଠାକୁରଙ୍କ ପାଖରେ କ୍ଷମା ପ୍ରାର୍ଥନା କରି ସମସ୍ତଙ୍କୁ ଠାକୁରେ ଭଲରେ ରଖିବେ ବୋଲି ପ୍ରାର୍ଥନା କରିଛି । ନିଜ ପୁଅର ଭବିଷ୍ୟତ ଚିନ୍ତା ହିଁ ତାକୁ ମାନସିକ ଶାନ୍ତି ପ୍ରଦାନ କରିଛି । ନାରୀ ମନର ଗଭୀର ଆତ୍ମ ଦହନ, ଜ୍ୱଳନ, ମାନସିକ ଅସନ୍ତୁଳନ ନାଟ୍ୟକାରଙ୍କ ଲେଖନୀରେ ଜୀବନ୍ତ ହୋଇଛି । ସ୍ୱପ୍ନ-ସ୍ୱପ୍ନଭଂଗ, ବାସ୍ତବତା କଳ୍ପନା ମଧ୍ୟରେ ସଂଘର୍ଷ ଜୀବନ୍ତ ହୋଇଛି । ସ୍ୱପ୍ନ-ସ୍ୱପ୍ନ ଭଂଗ, ବାସ୍ତବତା-କଳ୍ପନା ମଧ୍ୟରେ ସଂଘର୍ଷ ହିଁ ପାଶର ମୁଖ୍ୟ କାହାଣୀ । ମାଳତୀର ମାନସିକତାକୁ ପ୍ରକାଶ କରିବାକୁ ଯାଇ ସଂଳାପକାର ଲେଖିଛନ୍ତି-ମାଲୋ ରତନା ମାଇପକୁ ଆଣ୍ଠୁକୁଡି କରି ଦେଲୋ ମାଆ । ସେ ସବାଖାଇ ବଢଁଶ ଜଳି ପୋଡି ପାଉଁଶ ହେଇଯାଉ । ମୋ ଇଜ୍ଜତ ମହତ ସେ

ଦି କଡାର କରିଚି ତାକୁ ଅନ୍ନ ପାଣି ନ ଜୁଟୁ । ସେ ଅରକ୍ଷିତ ହଉ ନିଜ ପୁଅ ପାଇଁ ସେ କିଛି ମାଗିନି କି ନିଜ ସିନ୍ଦୂର ଫେରେଇବାକୁ ସେ ଠାକୁରଙ୍କ ପାଖରେ ଗୁହାରୀ କରିବ । ପ୍ରକୃତିସ୍ଥ ହୋଇ ସେ କହିଛି-ପୋଡି ଯାଆନ୍ତା କି ସେ ନିଆଁଲଗା ମନ ମୋର । ଦଇବ ସିନା ମୋ କରମ ପୋଡିଲା । ମୁଁ ହୀନିମାନୀ ହେଉଛି । ମଝି ଦରିଆରେ ଭାସୁଛି । ରତନା ତ ଅଣ୍ଡିରୀପୁଅ ତା'ର ବା ଦୋଷ କଣ । ସହଜେ ତ ମୁଁ ନିଆଁଲଗା ମାଇପି ଜନମ ପାଇଛି। ଚୋଟ ଖାଉଥିବ-ପୁଣି ହୁ ହୁ ହେଇ ବଢୁଥିବ । ଶେଷରେ କହିଛି, "ମା ରତନାକୁ ଭଲରେ ରଖ୍‌ଥା, ମାଆ ସେ ମୋ ଗିରସ୍ତ ନୁହଁ- ତା ବୋହୁ ମୋ ସଉତୁଣୀ ନୁହଁ, ମୋ ଜାଆ ମୋ ନିଶ୍ୱାସ ତାଠି ନ ପଡୁ ମାଆ ତାକୁ କୁଶଳରେ ରଖିଥା ।" ନାରୀ ମନର ବିଭିନ୍ନ ସମୟର ଅସ୍ଥିର ଚିତ୍ରକୁ ସଂଳାପକାର ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

'ପାଶ' ଟେଲି ଚଳଚ୍ଚିତ୍ରରେ ପ୍ରାୟ ଚଉଦଟି ଚରିତ୍ର ରହିଛି । ମୁଖ୍ୟତଃ ମାଳତୀର ଶାଶୁଘର, ଘରର ଭିତରପାଖ ବାରଣ୍ଡା, ଦାଣ୍ଡ ଦୁଆର, ଗାଁ ରାସ୍ତା, ଗ୍ରାମ ଦେବତୀ, ବାପ ଘର, ବାପଘର ଦୁଆର, ନଈକୂଳ, ଗାଁର ଜନୈକ ସ୍ତ୍ରୀ ଲୋକର ଘର(ବାରିପଟ) , ମାଳତୀର ଶୋଇବା ଘର, ଇତ୍ୟାଦିର ଦୃଶ୍ୟ ଏହି ଟେଲି ଚଳଚ୍ଚିତ୍ରରେ ରହିଛି । ମୁଖ୍ୟତଃ ଘର ବାହାର, ଘର ଭିତର, ଗାଆଁର ବିଭିନ୍ନ ପରିବେଶ ହିଁ ଏହି ଟେଲିଚଳଚ୍ଚିତ୍ରର ମୁଖ୍ୟ ସେଟ୍ । ମାଳତୀ ଭାତହାଣ୍ଡି ବସାଇବା ଦୃଶ୍ୟରୁ ଅତୀତ କଥନ ଶୈଳୀ ଆରମ୍ଭ ହୋଇ ସଜେଇବା ଦୃଶ୍ୟରେ ଭାଉଜର ଚିତ୍କାର ତଥା ଭାର ପେଜ ଉତୁରି ଚୁଲୀରେ ପଶିବା ଦୃଶ୍ୟରେ ଏହି ଶୈଳୀର ସମାପ୍ତି-ଯାରି ମଧ୍ୟରେ ପାଶ କାହାଣୀ କୁହାଯାଇଛି । ଏହି ପରିବେଶର ଦୃଶ୍ୟଗ୍ରହଣ ମଧ୍ୟ ନିର୍ଦ୍ଦେଶିକା ସୂକ୍ଷ୍ମ ତଥା ସୁନ୍ଦର ଭାବରେ କରି ନାଟକୀୟତାକୁ ରକ୍ଷା କରିଛନ୍ତି । ଷଷ୍ଠ ଦୃଶ୍ୟରେ ମାଳତୀର ପିଲାବେଳର ବିଭିନ୍ନ କାର୍ଯ୍ୟ ଘରେ କରିବା ଦୃଶ୍ୟରୁ ଅତୀତ କଥନ ଶୈଳୀର ଆରମ୍ଭ ହୋଇଛି । ତାପରେ ବାହାଘର ଭାଇ ସହିତ ରାଗ ଛଳରେ ବାସି ଶାଶୁଘରକୁ ଆସିବା, ବାସର ରାତିରୁ ଶାଶୁଘରେ ମାଳତୀ ଉପରେ ଅତ୍ୟାଚାର ଘଟଣା ସ୍ଥାନ ପାଇଛି । ପନ୍ଦର ନମ୍ବର ଦୃଶ୍ୟରେ ଶାଶୁବୁଢୀର ଦେହ ଖରାପ ଥିବାରୁ ତାଙ୍କ ପାଇଁ ମିଶିରି ପାଣି ତିଆରି କରିବା ବେଳେ ପିଲାଦିନେ ନିଜ ବାପାର ଦେହ ଖରାପ ହେବା ଏବଂ ତାଙ୍କ ପାଇଁ ମିଶିରି ପାଣି କରିବା ଦୃଶ୍ୟ ପୁନର୍ବାର ଅତୀତ କଥନ ଶୈଳୀ ମାଧ୍ୟମରେ ଦୃଶ୍ୟାୟିତ ହୋଇଛି । ବୁଢୀର ଡାକ ସେହି ଦୃଶ୍ୟରେ ତାର ଅତୀତରୁ ତାକୁ ଫେରି ଆଣିଛି । ତା ପରବର୍ତ୍ତୀ ଦୃଶ୍ୟରେ ମାଳତୀ ଶାଶୁଘର ବିଭିନ୍ନ କାର୍ଯ୍ୟ କରିବାର ଚିତ୍ରର ଦୃଶ୍ୟାଙ୍କନ କରାଯାଇଛି ଶାଶୁଘରେ କିଛି ଦିନ ଅତିବାହିତ ହେବାର ସୂଚନା ଏହା ମାଧ୍ୟମରେ ପ୍ରକାଶିତ ହେବା ସହିତ ରତିକା ସହିତ ବିଭିନ୍ନ ସ୍ଥାନରେ ମାଳତୀର ସାକ୍ଷାତ ଓ

ସେମାନଙ୍କର ମିଳାମିଶାକୁ ଦର୍ଶାଯାଇଛି । ଭାସିଆର ଶୋଇବା ଘରେ ରତନା ଓ ମାଳତୀର ଏକ ଅନ୍ତରଂଗ ଦୃଶ୍ୟ ମଧ୍ୟ ସଂପୂର୍ଣ୍ଣ ନୀରବତା ମଧ୍ୟରେ ବିନା ସଂଳାପରେ କ୍ୟାମେରାର ଅବସ୍ଥିତି ତଥା ବିଭିନ୍ନ ସଟ୍ ଦ୍ୱାରା ସେମାନଙ୍କର ପ୍ରତିକ୍ରିୟକୁ ପ୍ରକାଶ କରିଛନ୍ତି ନିର୍ଦ୍ଦେଶିକା । ଚତୁରତାର ସହିତ କ୍ୟାମେରାର ସମ୍ମୁଖରୁ ସେମାନଙ୍କୁ ଦୂରେଇ କେବଳ ଲଣ୍ଠନର ଶିଖାକୁ ଦେଖାଇ ଏକ ପ୍ରତୀକାତ୍ମକ ଚିତ୍ରକଳ୍ପର ଦୃଶ୍ୟାୟନ ଏହି ନିର୍ଦ୍ଦେଶିକା କରିଛନ୍ତି । ଏହା ବ୍ୟତୀତ ଭାସିଆର ଟଙ୍କା ଆସିବା ଖବର ନିଜର ବାନ୍ଧବୀ ଠାରୁ ମାଳତୀ ପାଇ ନଦୀକୂଳର ଘରକୁ ଆସିବା ବେଳେ ତାର ମାନସିକତାକୁ ଚିତ୍ରନାଟ୍ୟ ଲେଖ ଏବଂ ନିର୍ଦ୍ଦେଶିକା ଚମତ୍କାର ଭାବରେ କରିଛନ୍ତି । ଏହି ଦୃଶ୍ୟରେ ପୁଣିଥରେ ଅତୀତ ସ୍ମୃତିଚାରଣ ଶୈଳୀ ମାଧ୍ୟମରେ ତାର ଅତୀତର କିଛି ସ୍ମୃତିଚିତ୍ର କଳାଧଳା ଚିତ୍ର ମାଧ୍ୟମରେ ପ୍ରକାଶିତ ହୋଇଛି । ଝୁଣ୍ଟି ପଡ଼ିବାରୁ ଏହି ସ୍ମୃତି ତାର ଭାସିଯାଇଛି ଓ ସେ ବର୍ତ୍ତମାନକୁ ଫେରିଆସିଛି ।

ଉପଯୁକ୍ତ କାହାଣୀ, ଚିତ୍ରନାଟ୍ୟ, ସଂଳାପ କଳାକାର ମାନଙ୍କର ଅଭିନୟ, ବୈଷୟିକ କର୍ମଚାରୀଙ୍କ ସହଯୋଗ ଏବଂ ସର୍ବୋପରି ସୁସଂପାଦନା ହିଁ ଯେ କୌଣସି କାର୍ଯ୍ୟକ୍ରମକୁ ସଫଳ କରିଥାଏ । ସଂପାଦନା-ସଂପାଦକ ଏବଂ ନିର୍ଦ୍ଦେଶକଙ୍କର ଆଲୋଚନା ମାଧ୍ୟମରେ ହିଁ କରାଯାଇଥାଏ । ତେଇଶି ନମ୍ବର ଦୃଶ୍ୟକୁ ଭାସିଆ ଘର ବାରଣ୍ଡା, ମାଳତୀ ବସି ଖାଉଥିବା ବେଳେ ଶାଶୁ ବୁଢୀର ଗଂଜଣା ଯୋଗୁ ଅଧା ଖାଇ ଉଠି ଯାଇଛି । ପରବର୍ତ୍ତୀ ଦୃଶ୍ୟ ମାଳତୀର ଶୋଇବା ଘର ସମୟ ରାତି-ରତନା ସହିତ ଅନ୍ତରଂଗ ଦୃଶ୍ୟ ଏହି ଦୃଶ୍ୟ ମଧ୍ୟରେ ମାଳତୀର ଘରକାମ ଏବଂ ରତନା ସହିତ ସାକ୍ଷାତ ମିଳାମିଶାର ଦୃଶ୍ୟ କ୍ରମାନ୍ୱୟରେ ଦେଖାଯାଇ-ସେମାନଙ୍କର ସଂପର୍କର କ୍ରମବିକାଶକୁ ଦେଖାଯାଇଛି ଏବଂ ସମୟ ଅତିବାହିତ ହେବା ଦର୍ଶଯାଇଛି । ଚିତ୍ରନାଟ୍ୟରେ ଏହି ନୂତନ ନୀରବ ଦୃଶ୍ୟପଟ ସଂପର୍କରେ ଚିତ୍ରନାଟ୍ୟ ଲେଖ କୌଣସି ସୂଚନା ଦେଇନାହାନ୍ତି । ଟେଲି ଚଳଚ୍ଚିତ୍ରର ଦୃଶ୍ୟାୟନ ସମୟରେ ଏପରି କିଛି ନୀରବଦୃଶ୍ୟପଟ ବା ମୋନ୍‌ଟାଜ୍ ର ଆବଶ୍ୟକତା ଅନୁଭୂତ ହୋଇଥିଲା ଏବଂ ତାର ଦୃଶ୍ୟାୟନ କରାଯାଇଥିଲା ଉପଯୁକ୍ତ ସ୍ଥାନରେ ସ୍ଥାନୀତ କରାଯାଇ କାହାଣୀର ଗତିଶୀଳତାକୁ ଅଧିକ ତୀବ୍ରରେ କରାଯାଇଛି । ଭାଗବତ ତତ୍ତ୍ୱର ସଂଯୋଜନା ମାଳତୀ ଚରିତ୍ରକୁ ଅଧିକ ବଳିଷ୍ଠ କରିଛି । ମୂଳ କାହାଣୀକାରଙ୍କ ଏହି ଚିନ୍ତାଧାରାକୁ ଅକ୍ଷତ ରଖାଯାଇଛି ଏହି ଚଳଚ୍ଚିତ୍ରରେ । ମୋଟ ଉପରେ ଚଳଚ୍ଚିତ୍ରର ବୈଷୟିକ ଜ୍ଞାନ କୌଶଳର ପ୍ରୟୋଗ ସୁପ୍ରଯୋଜନା, ସୁନିର୍ଦ୍ଦେଶନା, ସୁସଂପାଦନା ଏବଂ ବଳିଷ୍ଠ କାହାଣୀ ଚିତ୍ରନାଟ୍ୟର ସୁସଂଯୋଜନା ପାଶ ଦୂରଦର୍ଶନ ଚଳଚ୍ଚିତ୍ରକୁ ସଫଳତାର ଶୀର୍ଷରେ ପହଂଚାଇଛି।

ନାଟ୍ୟକାର ଡଃ ନାରାୟଣ ସାହୁଙ୍କର ପରବର୍ତ୍ତୀ ନାଟକ ଏ ଦୌଡ଼ର କଣ ଶେଷ ନାହିଁ ? ଏହା ୨୦୧୩ ମସିହା ଅଗଷ୍ଟମାସ ଏଗାର ତାରିଖରେ ଦୂରଦର୍ଶନରୁ ପ୍ରସାରିତ ହୋଇଥିଲା । ଏହି ନାଟକର ସମୟ ସୀମା ଥିଲା ଏକଘଣ୍ଟା- ବାର ମିନିଟ୍ । କନ୍ୟାଭ୍ରୂଣ ହତ୍ୟାକୁ ନେଇ ଏହି ନାଟକ ରଚିତ ହୋଇଛି । ଦଶଗୋଟି ଦୃଶ୍ୟ ଏବଂ ଦଶ ଗୋଟି ଚରିତ୍ର ମାଧ୍ୟମରେ ନାଟ୍ୟକାର ତାଙ୍କ ବକ୍ତବ୍ୟ ରଖିଛନ୍ତି । ଡାକ୍ତର କକ୍ଷ ଏବଂ ମୁଖ୍ୟ ଚରିତ୍ର ଜଗନ୍ନାଥଙ୍କ ଘରର ବୈଠକଖାନା ଏଇ ଦୁଇଟି ମଂଚସଜ୍ଜା ହିଁ ନାଟକର ମୁଖ୍ୟ ମଂଚ । ଗୋଟିଏ ଦୃଶ୍ୟ ପରେ ଆଉ ଗୋଟିଏ ଦୃଶ୍ୟର ସଂଯୋଜନା ଓ ଦୃଶ୍ୟାୟନ ମାଧ୍ୟମରେ ଏହି ନାଟକ ଅଗ୍ରଗତି କରିଛି । ଦୃଶ୍ୟଗୁଡ଼ିକର ସମୟ ଅବଧି ମଧ୍ୟ ଅଧିକ ସମୟର ନୁହେଁ । ପ୍ରତ୍ୟେକ ଦୃଶ୍ୟରେ ସର୍ବାଧିକ ଚାରିଗୋଟି ଚରିତ୍ରର ସଂଯୋଜନା ନାଟ୍ୟକାର କରିଛନ୍ତି । ଏହି ନାଟକରେ ନାଟ୍ୟକାରଙ୍କ ସଂଳାପ ସଂଯୋଜନା ବେଶ୍ ଚତୁରତାର ସହିତ କରିଛନ୍ତି । "କୂଅରେ ପାଣିଥାଏ-କୂଅ କଣ କେବେ କହେ ସବୁ ପାଣି ମୋର । ମୁଁ କାହାକୁ ଦେବିନି । ବୃକ୍ଷ କଣ କେବେ କହିପାରିବ ସବୁ ଫୁଲ ମୋର-ମୁଁ କାହାରିକୁ ଦେବିନି ।" ନାଟକର ମୁଖ୍ୟ ଚରିତ୍ର ଜଗନ୍ନାଥଙ୍କ ତିନିଝିଅ । ପୁଅ ପାଇଁ ଆଶା କରି ଚତୁର୍ଥ ସନ୍ତାନ ଝିଅ ହେବା ଜାଣି ତାକୁ ନଷ୍ଟ କରିଦେଇଛନ୍ତି ଜଗନ୍ନାଥ ଓ ତାଙ୍କ ସ୍ତ୍ରୀ ଏବଂ ଡାକ୍ତ । ସରକାରୀ ନିୟମ ଅନୁସାରେ ଲିଙ୍ଗ ନିରୂପଣ ଆଇନ ବିରୁଦ୍ଧ ହେଲେ ସୁଦ୍ଧା ପଇସାଲୋଭୀ ଡାକ୍ତର ହିଁ ଏହି ନିୟମକୁ ଭାଙ୍ଗିଦେଇଛନ୍ତି । କୋଡ଼ିଏ ବର୍ଷ ତଳର ଏପରି ଏକ ଘଟଣା ଏବଂ ନଷ୍ଟ ହୋଇଯାଇଥିବା ଭ୍ରୂଣ-ଅନାମିକା ଚରିତ୍ର ମାଧ୍ୟମରେ ଡାକ୍ତର ତଥା ଜଗନ୍ନାଥଙ୍କ ପରିବାରର ମାନସିକ ଚେତନା ମଧ୍ୟକୁ ଆସିଛି ଏବଂ ପୂର୍ବ ଘଟଣାକୁ ପ୍ରକାଶ କରିଛି । ସେମାନଙ୍କର ମୁଖା ଖୋଲିବାରେ ସାହାଯ୍ୟ କରିଛି । ଅନାମିକା ଡାକ୍ତରଙ୍କୁ ତାର ମୃତ୍ୟୁ ପାଇଁ ଦାୟୀ କରିଛି । ଭ୍ରୂଣ ହତ୍ୟାକୁ ପେଷା ଭାବରେ ଗ୍ରହଣ କରିଥିବାରୁ ଡାକ୍ତର ପିତା ହୋଇପାରି ନାହାନ୍ତି । ଡାକ୍ତର ମାନସିକ ସ୍ତରରେ ଆଘାତ ପାଇ ଅନୁତପ୍ତ ହୋଇଛନ୍ତି । ଜଗନ୍ନାଥଙ୍କୁ ମଧ୍ୟ ତାର ହତ୍ୟା ପାଇଁ ଦାୟୀ କରି ତାଙ୍କ ସଂପତ୍ତିରୁ ଭାଗ ଚାହିଛି ଅନାମିକା । ଜଗନ୍ନାଥ ଅନାମିକା ପାଖରେ ଶେଷରେ ହାର ମାନି କ୍ଷମା ଭିକ୍ଷା କରିଛନ୍ତି । ସଂପ୍ରତିକ ସମାଜର ଏକ ବାସ୍ତବ କାହାଣୀକୁ ନାଟ୍ୟକାର ସୁନ୍ଦର ଭାବରେ ଏହି ନାଟକରେ ପ୍ରଦାନ କରି ସାମାଜିକ ସଚେତନତା ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି। ମୁଖ୍ୟତଃ ଡାକ୍ତର ଏବଂ ଜଗନ୍ନାଥଙ୍କ ମାନସିକତାକୁ ଆଲୋକ ସଂପତ୍ର ନୀରବତା ମଧ୍ୟରେ, ଘଣ୍ଟାର ଟିକ୍ ଟିକ୍ ଶବ୍ଦ ମାଧ୍ୟମରେ ପ୍ରକାଶ କରିଛନ୍ତି ନାଟ୍ୟକାର । ନାଟକର ଶେଷରେ ଗୋଟିଏ ଛୋଟ ପିଲା ଜଗନ୍ନାଥ ଓ ମିତାଙ୍କ ପଛରେ ଦଉଡ଼ିବାର ଚିତ୍ର ସାଂକେତିକ ପ୍ରଭାବରେ ପ୍ରଦାନ

କରି ଏପରି ଘଟଣାର କଣ ଶେଷ ହେବ ନାହିଁ ସଂଳାପ ମାଧ୍ୟମରେ ନାଟ୍ୟକାର ପ୍ରକାଶ କରିଛନ୍ତି।

ନାଟ୍ୟକାର ଶ୍ରୀ ସାହୁ ନାଟକ ତଥା ଓଡ଼ିଆ ସାହିତ୍ୟର ଛାତ୍ର ଭାବରେ ନାଟ୍ୟକଳା ଏବଂ ମଂଚକଳା ସହିତ ବେଶ ପରିଚିତ । ଅପୂର୍ଣ୍ଣା ରଂଗମଂଚ ସହିତ ଏବଂ ବିଭିନ୍ନ ନାଟ୍ୟ ସଂସ୍ଥା ତଥା ଉଚ୍ଚ ପ୍ରତିଷ୍ଠିତ ନିର୍ଦ୍ଦେଶିକମାନଙ୍କ ସହିତ ଏ ତାଙ୍କର ସଂପର୍କ ତାଙ୍କ ନାଟ୍ୟଜୀବନରେ ଗଭୀର ପ୍ରଭାବ ପକାଇଛି । ମଣିଷର ଦୁଃଖ, ଯନ୍ତ୍ରଣା, ସୁଖ, ସ୍ୱପ୍ନ, ସଂଘର୍ଷ-ସଂଘାତ, ସର୍ବୋପରି କର୍କଟ ରୋଗରେ ରୋଗୀର ଅବସ୍ଥା, ଯନ୍ତ୍ରଣା ପରିଚିତ । ସମୟର ପରିବର୍ତ୍ତନରେ ସହିତ ନାଟକ, ନାଟକର କାହାଣୀ, ଚରିତ୍ର ଚିତ୍ରଣ, ପରିପାଟୀ, ମଂଚ ପରିବର୍ତ୍ତନର ଧାରା ଦେଇ ଗତି କରିଆସିଛି । ବହୁ ମଞ୍ଚ ପରିବର୍ତ୍ତେ ଏକ ମଂଚ ବିଶିଷ୍ଟ ନାଟକ କ୍ରମେ ଅଧିକ ଆଦୃତ ହୋଇଛି । ମଞ୍ଚକଳା, ମଞ୍ଚ ନାଟକ ପ୍ରାରମ୍ଭିକ ଅବସ୍ଥାରେ ଦୂରଦର୍ଶନରେ ଦୃଶ୍ୟାୟନ ହୋଇ ପ୍ରସାରିତ ହେଉଥିବା ବେଳେ କ୍ରମେ ନାଟ୍ୟକାରଗଣ ଦୂରଦର୍ଶନ ମଂଚର ବିଭିନ୍ନ ବୈଷୟିକ କଳା କୌଶଳ ସହିତ ପରିଚିତ ହୋଇ କେବଳ ଦୂରଦର୍ଶନ ପାଇଁ ନାଟକ ରଚନା କରୁଛନ୍ତି । ସାଂପ୍ରତିକ ଅବସ୍ଥାରେ ଚଳଚ୍ଚିତ୍ର ଏକ ଲୋକପ୍ରିୟ ମାଧ୍ୟମ ହୋଇଥିବା ବେଳେ ଚଳଚ୍ଚିତ୍ରରେ ଜ୍ଞାନ କୌଶଳ ଦୂରଦର୍ଶନର ଆବଦ୍ଧ କକ୍ଷ ମଧ୍ୟରେ ତାଙ୍କର ଦୃଶ୍ୟାଙ୍କନ କରାଯାଇ ଏବେ ନାଟକର ଦର୍ଶକଙ୍କୁ ପୁଣି ଉଦ୍ ଜୀବିତ କରିବାର ଚେଷ୍ଟା କରାଯାଉଛି । ଚଳଚିତ୍ରର ଟେକ୍‌ନିକ୍ ପ୍ରୟୋଗ ଫଳରେ ଅବଶ୍ୟ ଏହି ନାଟକ ଗୁଡ଼ିକ ଅଧିକ ପ୍ରଭାବଶାଳୀ ହୋଇପାରୁଛି, ବହୁ କ୍ୟାମେରା ପରିବର୍ତ୍ତେ ଗୋଟିଏ କ୍ୟାମେରା ତଥା ବାସ୍ତବଧର୍ମୀ ସେଟ୍ ବା ଲୋକେସନ୍‌ରେ ଏହି ନାଟକମାନ ଦୃଶ୍ୟାୟନ ହେବାରୁ ଏହାକୁ ବରଂ ଦୂରଦର୍ଶନ ଚଳଚିତ୍ର କହିଲେ ସୁନ୍ଦର ହେବ ।

ଦୂରଦର୍ଶନ ପାଇଁ ନାଟକ ଲେଖୁଥିବା ନାଟ୍ୟକାରମାନେ ସଂପ୍ରତି ଉଭୟ ଦୂରଦର୍ଶନ ତଥା ଚଳଚ୍ଚିତ୍ରର ଧର୍ମ-ନିୟମ ଅନୁଯାୟୀ ପାଣ୍ଡୁଲିପି ପ୍ରସ୍ତୁତ କରି ସୁନାମ ଅର୍ଜନ କରୁଛନ୍ତି । ସବୁ କଳାର ଗୋଟିଏ ଉଦ୍ଦେଶ୍ୟ - ଦର୍ଶକକୁ ମନୋରଂଜନ ସହିତ ଭଲମଣିଷ ସୃଷ୍ଟିରେ ସହାୟ ହୋଇ ସଚେତନତା, ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା କରିବା । ଏହି ଚିନ୍ତାଧାରା ଡ.ନାରାୟଣ ସାହୁ ଗ୍ରହଣ କରି ତାଙ୍କ ଲେଖକ ଜୀବନରେ ଆଗେଇ ଚାଲିଛନ୍ତି ।

ଜନସମ୍ପର୍କ ବିଭାଗ<br>ଭୁବନେଶ୍ୱର

●●●

# ପ୍ରତିବାଦର ଅନ୍ୟନାମ ନାରାୟଣ ସାହୁ

ହେମନ୍ତ କୁମାର ଦାସ

ଶ୍ରୀ ନାରାୟଣ ସାହୁ ନାଟକ ରଚନା କ୍ଷେତ୍ରରେ ପାଦ ରଖନ୍ତି ଗତ ଶତକର ଅଷ୍ଟମ ଦଶକର ଆଦ୍ୟ ଭାବରେ। ଏଇ ଚଉଠ ଶତାବ୍ଦୀ ମଧ୍ୟରେ ସେ ଅନେକ ନାଟକ ଲେଖିଲେଣି। ନାଟକ ଜଗତ୍‌କୁ ସେ ଆସିଥିଲେ-ବେତାର ହାତ ଧରି। ଏବେ ତାଙ୍କର ନାଟକ ଦୂରଦର୍ଶନ, ରଙ୍ଗମଞ୍ଚ, ଏବଂ ବେତାର-ଅର୍ଥାତ୍ ଗଣମାଧ୍ୟମର ସବୁ ବିଭାଗରେ କ୍ରୀୟାଶୀଳ। ସମ୍ଭବତଃ ନାଟ୍ୟରସିକମାନଙ୍କ ନିକଟରେ ସେ ନିଜର ସ୍ୱତନ୍ତ୍ର ପରିଚୟ ଏ ମଧ୍ୟରେ ପ୍ରସ୍ତୁତ କରିନେଇଥିବେ। ତଳେ ତାଙ୍କର ଉପଲବ୍ଧ କେତୋଟି ନାଟକ ସମ୍ପର୍କରେ ଆଲୋଚନା କରାଯାଉଛି।

ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର (୧୯୮୮): ତାଙ୍କ ବିଦ୍ରୋହ ଚେତନାର ନାଟ୍ୟ ରୂପ। ଚୌଦଟି ଦୃଶ୍ୟରେ ନାଟ୍ୟକାର ନିଜ ସୃଷ୍ଟି ନିକଟରେ ସ୍ରଷ୍ଟା କେଉଁଭଳି କ୍ରୀତଦାସ ହୋଇପଡ଼ନ୍ତି, ତାହା ଦେଖାଇଛନ୍ତି। ଧର୍ମ ନାମରେ ମଣିଷ ମଣିଷ ଭିତରେ ଆଜି ବିଭେଦର ପାଚେରି ଠିଆ ହୋଇଛି। ହିନ୍ଦୁ କହୁଛି ଈଶ୍ୱର କେବଳ ତା'ର, ମୁସଲମାନମାନେ ଦାବି କରୁଛନ୍ତି-ଈଶ୍ୱର ସେମାନଙ୍କର-ଖ୍ରୀଷ୍ଟିଆନ୍ କହେ-ଈଶ୍ୱର ଉପରେ କେବଳ ତା'ରି ଅଧିକାର। ହିନ୍ଦୁ ମନ୍ଦିର ଭିତରକୁ ମୁସଲମାନ କିମ୍ବା ଖ୍ରୀଷ୍ଟିଆନ୍ ଭକ୍ତ ପ୍ରବେଶ କରିପାରିବେ ନାହିଁ। ସ୍ୱୟଂ ଈଶ୍ୱର ଏହାର ପ୍ରତିବାଦ କଲେ ମଧ୍ୟ ତାଙ୍କ କଥା ଶୁଣାଯିବନାହିଁ। ମନ୍ଦିର ଛାଡ଼ି ଚାଲିଯିବାକୁ ତାଙ୍କୁ କୁହାଯିବ। ଭୋପାଳ –ଗ୍ୟାସ-ତ୍ରାସଦୀରେ ଆହତ ଯୋସେଫ୍ ଓ ମେରୀ ଈଶ୍ୱରଙ୍କୁ ଦର୍ଶନ କରିବାକୁ ଆସି ବାଧା ପାଉଛନ୍ତି। ମେରୀକୁ ଏକୁଟିଆ ଡାକିନେଇ ମହାସେବକ ତାଙ୍କୁ ପ୍ରଥମେ ଧର୍ଷଣ ଓ ତା'ପରେ ହତ୍ୟା କରୁଛି। ଦେବଦାସୀ ଲୀଳା ସହିତ ସୁଦ୍ଧା ତା'ର ସମ୍ପର୍କ ରହୁଛି। ଏହା ସତ୍ତ୍ୱେ ସେ ହିଁ ରହୁଛି ସର୍ବଶକ୍ତିମାନ୍। ତିନିଧର୍ମର ବୋଲି ଦାବି କରୁଛନ୍ତି। ବିଚରା ଈଶ୍ୱର ଆଶ୍ରାହୀନ ହୋଇ ଦ୍ୱାରେଦ୍ୱାରେ ବୁଲୁଛନ୍ତି। ଏହା ହିଁ ହେଉଛି ନାଟକର କଥାବସ୍ତୁ।

ଏହି ନାଟକ ନାଟ୍ୟକାରଙ୍କର ରୋମାଣ୍ଟିକ୍ କଳ୍ପନା ବିଳାସର ଏକ ଚମତ୍କାର ଦୃଷ୍ଟାନ୍ତ ହୋଇଥିବା ବେଳେ ସମସାମୟିକ ସମାଜର ଏକ ଉଜ୍ଜ୍ୱଳ ଚିତ୍ର ମଧ୍ୟ ଏଥିରଦେଖିବାକୁ ମିଳୁଛି। ବିଶେଷ କରି ଶେଷ ଦୃଶ୍ୟରେ ତିନିଧର୍ମର ପ୍ରତିନିଧି ଈଶ୍ୱରଙ୍କୁ

ସମ୍ମିଳିତ ଭାବେ ଆକ୍ରମଣ ତଥା ଆହତ କରିବା ଘଟଣାରେ ଧର୍ମ ନାମରେ, ଜାତି ନିମନ୍ତେ ମଣିଷ କେଉଁ ସ୍ତରକୁ ଚାଲି ଯାଇପାରେ ନାଟ୍ୟକାର ତାହା ଦେଖାଇ ସାମ୍ପ୍ରତିକ ସମାଜ ପାଇଁ ଏହାର ଅସାରତା ଏବଂ ଏହାର ସାମ୍ପ୍ରତିକ ସ୍ଥିତି ସମ୍ପର୍କରେ ସୂଚନା ଦେଇଛନ୍ତି। ଯୁଗ ଯୁଗ ଧରି ଯେଉଁ ଭଣ୍ଡାମି ଚାଲିଛି, ନାଟ୍ୟକାର ତାହା ବିରୋଧରେ ପ୍ରତିବାଦର ସ୍ୱର ଉଠାଇଛନ୍ତି। ରାଜତନ୍ତ୍ରରେ ପୁରୋହିତ ଗୋଷ୍ଠୀର ଯେଉଁ ପ୍ରଭାବ ଥିଲା ଏବଂ ସାଧାରଣ ଜନତା ତାହା ଯୋଗୁଁ କିଭଳି ପ୍ରତାରିତ ଏବଂ ଦୁର୍ଦ୍ଦଶାଗ୍ରସ୍ତ ହେଉଥିଲେ ଏଥିରେ ତାହା ଦେଖାଇ ଦିଆଯାଇ, ଶେଷ ଆଡ଼କୁ ଏହାକୁ ରାଜନୀତିକ ରୂପ ଦିଆଯାଇଛଇ। ପୁରୋହିତ ତନ୍ତ୍ର କବଳରୁ ଯେପର୍ଯ୍ୟନ୍ତ ସମାଜ ଉଧୁରି ନାହିଁ, ସେ ପର୍ଯ୍ୟନ୍ତ ତାହାର ମୁକ୍ତି ନାହିଁ । ସମ୍ଭବତଃ ଏହାହିଁ ହେଉଛି ନାଟ୍ୟକାରଙ୍କର ବକ୍ତବ୍ୟ।

ଉତ୍ତର ଆଧୁନିକବାଦୀ ମାନେ କାଳ୍ପନିକତାର ଅବଲମ୍ବନରେ ଏହିଭଳି ସ୍ୱପ୍ନଲୋକରେ ବିଚରଣ କରିପାରନ୍ତି। ଏହାକୁ ରୂପ ଦେବାପାଇଁ ନାଟ୍ୟକାର ରାଜା, ରାଣୀଙ୍କର 'ମିଥିଧର୍ମୀ' ପଟ୍ଟଭୂମିଟିଏ ସୃଷ୍ଟି କରିଛନ୍ତି। ସଂଳାପରେ ସ୍ୱଚ୍ଛନ୍ଦତା ଏବଂ ସ୍ୱାଭାବିକତା ଥିଲେ ମଧ୍ୟ ପ୍ରଥମାର୍ଦ୍ଧରେ ଏହାବକ୍ତୃତାଧର୍ମୀ ହୋଇପଡ଼ିଛଇ। ସମଗ୍ର ନାଟକଟି ଉପସ୍ଥାପକ ଅଥବା ସୂତ୍ରଧର ରୂପରେ ଆସିଛନ୍ତି ଓସ୍ତାଦ୍ ଏବଂ ତାଙ୍କା ଶିଷ୍ୟ ଈଶ୍ୱରା ଅଥବା ଈଶ୍ୱର ନିଜେ। ଅଯୋଧ୍ୟାରେ କୁହୁକ ଦେଖାଉ ଦେକାଉ ନିଜେ ହୋଇଯାଉଛନ୍ତି ନାଟକର ଏକ ଚରିତ୍ର । ମନ୍ଦିର-ମସ୍‌ଜିଦ୍ ବିବାଦରେ ଆହତ ହୋଇ ନିଜର ଅସହାୟତା ପ୍ରମାଣିତ କରୁଛନ୍ତି । ସାହୁଙ୍କର ପ୍ରାଥମିକ ପର୍ଯ୍ୟାୟର ସୃଷ୍ଟି ହିସାବରେ ଏହାର ବିଚାର କରାଯାଇପାରେ।

**ସୁବର୍ଣ୍ଣ ସକାଳ** (୧୯୯୨): ୧୯୯୩ ମସିହାରେ ପ୍ରଥମ ମଂଚସ୍ଥ ହୋଇଥିବା ବାରଟି ଦୃଶ୍ୟର ନାଟକ । ଏଥିରେ ହଜାରେ ବର୍ଷର ନଗର-କଟକର ଐତିହାସିକ, ରାଜନୀତିକ, ଆର୍ଥନୀତିକ, ସାଂସ୍କୃତିକ ଏବଂ ସାମାଜିକ ସ୍ଥିତିର ବିଶ୍ଳେଷଣ କରାଯାଇଛି ସାମ୍ପ୍ରତିକ ଦୃଷ୍ଟିରେ। ରାଜା ମର୍କତକେଶରୀ ଏବଂ ବାଇମୁଣ୍ଡି ନଗର ପରିକ୍ରମାରେ ବାହାରି ଏହାର ବର୍ତ୍ତମାନର ଅବସ୍ଥା ଦେଖି ର୍ମାହତ ହୋଇପଡ଼ିଛନ୍ତି । ଏଥିରେ ନଗରର ବିଚାର ବ୍ୟବସ୍ଥା, ସ୍ୱାସ୍ଥ୍ୟ ଅବସ୍ଥା, ପୁଲିସ୍ ପ୍ରଶାସନ, ଶିକ୍ଷା ବ୍ୟବସ୍ଥା, ରାଜନୀତିକ ଚାଲବାଜି, ଚାନ୍ଦାବାଜୀ, ମ୍ୟୁନିସ୍‌ପାଲିଟି, ଦାଦାଗିରି, ନାଗରିକ ପ୍ରକୃତି, ସଭାସମିତି, ଶ୍ରମିକ ଗୋଷ୍ଠୀର ଦିନଚର୍ଯ୍ୟାଳ ମଦମୃତ୍ୟୁ ପ୍ରଭୃତି ନାନା କଥାର ବିଶ୍ଳେଷଣ କରାଯାଇଛି ଶାଣିତ ବ୍ୟଙ୍ଗାତ୍ମକ ଦୃଷ୍ଟିରେ। ନିଜର ପ୍ରିୟ ନଗରୀର ସାମ୍ପ୍ରତିକ ଦୁର୍ଗତି ଦେଖି ବାିମୁଣ୍ଡି କହିଛନ୍ତି, 'ବନ୍ଧଟାକୁ ଭାଙ୍ଗି ଦିଅନ୍ତୁ । କଟକ ନଗରୀଟା ଭାସିଯାଉ ।' ତାଙ୍କୁ ସାନ୍ତ୍ୱନା ଦେଇ ମର୍କତ କେଶରୀ

କହୁଛନ୍ତି "ଅମାବାସ୍ୟା ପରେ ନିଶ୍ଚୟ ଜହ୍ନରାତି ଆସିବ, ତେଣୁ ଆଉ ଏକ ସୁବର୍ଣ୍ଣ ସକାଳକୁ ପ୍ରତୀକ୍ଷା କରିବାରେ କ୍ଷତି କ'ଣ ?" ନାଟକ ଶେଷ ହେଉଛି।

ଶ୍ରୀ ସାହୁ ତାଙ୍କର ଲେଖକୀୟ ଦୃଷ୍ଟିରେ କଟକ ନଗରୀର ଆତ୍ମାକୁ ଟିକିନିଖି କରି ପରୀକ୍ଷା କରିଛନ୍ତି। ଲୋକ ଚରିତ୍ରର ଯେଉଁ ଅଧୋଗତି ହୋଇଛି, ତାହାହିଁ ତାଙ୍କ ଆଖିରେ ଧରା ପଡ଼ିଛି ସ୍ପଷ୍ଟ ରୂପରେ। ଏଠି ଦିନ ଦି'ପହରେ ଶହଶହ ଲୋକଙ୍କ ଆଖି ଆଗରେ ନରହତ୍ୟା ହୁଏ । ଦୋକାନୀ, ପଥଚାରୀ ଆଦିଙ୍କ କଥା ବାଦ୍ ଦିଆଗଲେ ମଧ୍ୟ ଏ ନଗରୀର ସମ୍ମାନନୀୟ ନାଗରିକ ବିଚାରପତି, ଛାତ୍ରବତ୍ସଳ ପ୍ରଫେସର ଜଳଜଳ ହୋଇ ମାନବିକତାର ଏ ଅପମାନକୁ ନିଜ ଆଖିରେ ଦେଖନ୍ତି । ମାତ୍ର ସାକ୍ଷୀ ଦେବାକୁ ଡାକିବାରୁ କେହି ଆଗକୁ ଆସନ୍ତି ନାହିଁ । ସାହି ବସ୍ତିର ଦାଦା ନିର୍ଦ୍ୱନ୍ଦ୍ୱରେ ବଟି ଆଦାୟ କରନ୍ତି। ସେମିତି ବିଭିନ୍ନ ଅନୁଷ୍ଠାନ ନାମରେ ଚାନ୍ଦା ଆଦାୟ ମଧ୍ୟ ନାଗରିକ ମାନଙ୍କୁ ନିର୍ବିଘ୍ନରେ ଶୋଷଣ କରିଚାଲେ । ନାଗରିକ-ସ୍ୱାସ୍ଥ୍ୟର ତତ୍ତ୍ୱାବଧାରକମାନେ ରୋଗୀ ସ୍ୱାସ୍ଥ୍ୟରକ୍ଷା ବଦଳରେ ନିଜ ପକେଟ୍‌ର ସୁରକ୍ଷା ଦିଗରେ ବେଶୀ ଧ୍ୟାନ ଦିଅନ୍ତି। ସୁରକ୍ଷାକର୍ମୀମାନେ ନିର୍ଲଜ୍ଜ ଭାବରେ ପଥଚାରୀମାନଙ୍କର ପକେଟ୍‌କୁ ହାଲୁକା କରିବାରେ ଲାଗିଥାନ୍ତି । ନାଗରିକ ମାନଙ୍କୁ ଉତ୍ତେଜିତ କରାଇ ରାଜନୀତିକ ବ୍ୟକ୍ତିମାନେ ନିଜର କ୍ୟାରିଅର୍ ଗଢିବାରେ ବ୍ୟସ୍ତ ଥାଆନ୍ତି। ଏସବୁ ଦେଖିବା ପରେ ଦିନେ କଟକ ସହରର ସୁରକ୍ଷା ଜୀବନ ପଣ କରି ଦେଇଥିବା ବାଇମୁଣ୍ଡି କୁହନ୍ତି-'ବରଂ ନଗରୀଟା ଭାସିଯାଉ ।'

'ସୁବର୍ଣ୍ଣ ସକାଳ' ପ୍ରଚଳିତ ଅର୍ଥରେ ଠିକ୍ ନାଟକ ନୁହେଁ । କେତୋଟି ବିଚ୍ଛିନ୍ନ ଘଟଣାର ସମାହାର ମାତ୍ର। ଘଟଣାବଳୀ ମଧ୍ୟରେ କୌଣସି ଯୋଗସୂତ୍ର ନାହିଁ। କେବଳ କଟକ ସହର ଏ ସବୁ ଘଟଣାର ସାଧାରଣ କ୍ଷେତ୍ର ରୂପରେ ଗୃହୀତ ହୋଇଛି। ବାଇମୁଣ୍ଡି ଏବଂ ମର୍କତକେଶରୀ ଏହାର ନୀରବ ଦର୍ଶକ ହୋଇଛନ୍ତି। ସହରର ଥ୍ୱବନ୍-ଶୃଙ୍ଖଳା ପରିସ୍ଥିତି ସମ୍ପର୍କରେ ନାଟ୍ୟକାରଙ୍କର ତୀର୍ଯ୍ୟକ ଅଭିମତ ଏହି ଡକୁମେଣ୍ଟେସନ୍‌ର ବିଷୟବସ୍ତୁ ହୋଇଛି। ନାଟକର ବିଧିବଦ୍ଧ କୌଣସି କାହାଣୀ ନ ଥିବାରୁ ଏହାର ଅଗ୍ରଗତି ସମ୍ପର୍କରେ ଦର୍ଶକମାନଙ୍କର ଉତ୍କଣ୍ଠା ସୃଷ୍ଟି ହୁଏ ନାହିଁ । ନାଟକ ଟି ଦ୍ୱନ୍ଦ୍ୱହୀନ। ଏହାର ଭାଷା ଦୈନନ୍ଦିନ ଜୀବନର ଭାଷା।

କଟକ ସହରର ସାମ୍ପ୍ରତିକ ଦୁର୍ଗତି ବର୍ଣ୍ଣନା କଲାବେଳେ ନାଳ-ନର୍ଦ୍ଦମା ଏବଂ ଝୁମ୍ପୁଡ଼ି ବସ୍ତିରେ ପୂର୍ଣ୍ଣ ମଶାମାଛି, ଓଡ଼ଶ ବୁଲାଷଣ୍ଢ, କୁକୁର ମାନଙ୍କର ସ୍ୱେଚ୍ଛାବିହାର କ୍ଷେତ୍ର ଏଇ ମୁମୂର୍ଷ ଜନପଦ ପାଇଁ ନାଟ୍ୟକାରଙ୍କର ମନରେ ଯେଉଁ ଶ୍ରଦ୍ଧା ରହିଛି, ତାହା କିନ୍ତୁ ଲୁଚି ରହିନାହିଁ । ଏହି ଭଲପାଇବା ହିଁ ନାଟ୍ୟକାରଙ୍କୁ ସହରର ସୁରକ୍ଷା ନିମନ୍ତେ ଉଦ୍‌ବିଗ୍ନ କରାଇଛି ଏବଂ ତାହାହିଁ ହେଉଛି ଏଇ ନାଟକର ପ୍ରଧାନ ସମ୍ପଦ।

**ଉପାସନା (୧୯୯୦):** ବିଜିଗୁପ୍ତ-ଚିତ୍ରଲେଖା-କୁମାରଗିରି-ଶ୍ୱେତାଙ୍କ ଏବଂ ବିଶାଳ ଦେବ ପ୍ରଭୃତି କିମ୍ବଦନ୍ତୀୟ ଚରିତ୍ରକୁ ନେଇ ପାପପୁଣ୍ୟର ସ୍ୱରୂପ ଉଦ୍‌ଘାଟନ ନିମନ୍ତେ ପ୍ରଖ୍ୟାତ ହିନ୍ଦୀ ଔପନ୍ୟାସିକ ଭଗବତୀ ବର୍ମା ଯେଉଁ ଚେଷ୍ଟା ତାଙ୍କର ବହୁ ଚର୍ଚ୍ଚିତ ଉପନ୍ୟାସ ଚିତ୍ରଲେଖା (୧୯୩୪)ରେ କରିଛନ୍ତି ଏବଂ ଯାହାର ମୁଖ୍ୟାଂଶକୁ ଶ୍ରୀ ଗୋବିନ୍ଦ ଦାସ ତାଙ୍କର ଉପନ୍ୟାସ 'ଅମାବାସ୍ୟାର ଚନ୍ଦ୍ର' (୧୯୬୩)ର ମୁଖବନ୍ଧ ରୂପରେ ବ୍ୟବହାର କରିଛନ୍ତି, ନାଟ୍ୟକାର ଏଠାରେ ତାହାର ନାଟ୍ୟରୂପ ପ୍ରଦାନ କରିଛନ୍ତି। ଉପନ୍ୟାସରେ ପାଟଳିପୁତ୍ରର ସାମନ୍ତ ବିଜିଗୁପ୍ତଙ୍କର ତ୍ୟାଗ, ଜୀବନ ପ୍ରତି ନିର୍ଲିପ୍ତ ଭାବ ଯୋଗୀ କୁମାରଗିରିଙ୍କର କାମଚକତା, ଜୀବନର ରହସ୍ୟ ଉଦ୍‌ଘାଟନ ନିମନ୍ତେ ନଗରବଧୂ ଚିତ୍ରଲେଖାର ବ୍ୟାକୁଳତା, ନିଜର ଅନୁଗତ ସେବକ ଶ୍ୱେତାଙ୍କ ନିମନ୍ତେ ବିଜିଗୁପ୍ତଙ୍କର ତ୍ୟାଗ, ଯଶୋଧାରା ସହିତ ତା'ର ବିବାହ ନିମନ୍ତେ ବ୍ୟବସ୍ଥା, ଚିତ୍ରଲେଖା ସହିତ ତାଙ୍କର ସଂସାର ତ୍ୟାଗ ପ୍ରଭୃତି ଘଟଣା ବର୍ଣ୍ଣନା ମାଧ୍ୟମରେ ବର୍ମା ପ୍ରମାଣ କରିବାକୁ ଚାହିଁଛନ୍ତି ସଂସାରରେ ପାପପୁଣ୍ୟର କୌଣସି ସର୍ବମାନ୍ୟ ସଂଜ୍ଞା ନାହିଁ । ମଣିଷ ସେଇଆ କରେ, ଯାହା ତାକୁ କରିବାକୁ ପଡ଼େ । ତାକୁ ପାପ କୁହାଯାଇପାରେ, ଅବା ପୁଣ୍ୟ ମଧ୍ୟ କୁହାଯାଇପାରେ । ପ୍ରକୃତରେ ତେଣୁ ଏଠି ପାପୀ ବା ପୁଣ୍ୟବନ୍ତ କେହି ନଥାନ୍ତି । ପାପୀର ଖୋଳପା ଫଟାଇ ଜଗତର ଶ୍ରେଷ୍ଠ ପୁଣ୍ୟବାନ୍ ଲୋକଟି ବାହାରି ଆସିପାରେ । ଦସ୍ୟୁ ରତ୍ନାକର ଭିତରୁ ମହର୍ଷି ବାଲ୍ମୀକି ବାହାରନ୍ତି । ନାଟ୍ୟକାର ଯଥାସମ୍ଭବ ମୂଳ କାହାଣୀ ପ୍ରତି ବିଶ୍ୱସ୍ତ ରହି ଏହାର ନାଟ୍ୟରୂପ ଦେଇଛନ୍ତି। ସଂଳାପ ଯଥାସମ୍ଭବ ପାତ୍ରୋପଯୁକ୍ତ ହୋଇଛି।

**ମୂକ (୧୯୯୬):** ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ସମ୍ବାଦ ପତ୍ରର କାର୍ଯ୍ୟକାରିତାକୁ ନେଇ ନାଟକ 'ମୂକ'ର ପରିକଳ୍ପନା । ଏଥିରେ କେବଳ ସମସ୍ୟାର ମୂଳ ଖୋଜିବାପାଇଁ ଚେଷ୍ଟା କରାଯାଇଛି। ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଶାସକ ଦଳର ସ୍ୱେଚ୍ଛାଚାର ବିରୋଧରେ ସ୍ୱର ଉଠାଇବା ନିମନ୍ତେ ବିରୋଧୀ ଦଳର ସୃଷ୍ଟି। ତେବେ ପ୍ରକାଶ୍ୟ ଦିବାଲୋକରେ ଏମାନେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହେଲେ ମଧ୍ୟ ରାତ୍ରିର ଗୋପନତାରେ କାନ୍ଧକୁ କାନ୍ଧ ମିଳାଇ ଦେଶକୁ ଲୁଟିବାରେ ବ୍ୟସ୍ତ । ବିଜ୍ଞାପନର ଜାଲରେ ବାନ୍ଧି ତାକୁ ନିଜ ପକେଟ୍‌ରେ ରଖି ଦେଉଛନ୍ତି। ବଂଶଗତ ଶାସନ ବ୍ୟବସ୍ଥାର ପ୍ରଚଳନ କରୁଛନ୍ତି । କେବେ କେବେ ଅଭିଜିତ୍ ଭଳି ସାମ୍ବାଦିକ କିମ୍ବା ଇନ୍ସପେକ୍ଟର ଭଳି ଅରଣା ପୁଲିସ୍ ଅଫିସର୍ ଏମାନଙ୍କ ପାଇଁ ସମସ୍ୟା ସୃଷ୍ଟି କଲେ, ଅର୍ଥ ଦ୍ୱାରା ସେମାନଙ୍କୁ ପ୍ରଥମେ ବାଟକୁ ଆଣିବାକୁ ଉଦ୍ୟମ କରାଯାଏ। ସେଥିରେ ସେମାନେ ପୋଷା ନମାନିଲେ, ଅଭିଜିତ୍‌ର ପତ୍ନୀ ଅଳକା ଭଳି ସେମାନଙ୍କୁ ଚିରକାଳ ଚୁପ୍ କରାଇ ଦିଆଯାଏ। ନ ହେଲେ ଦୂରବର୍ତ୍ତୀ ଅଗମ୍ୟ ଇଲାକାକୁ

ବଦଳି କରି ଦିଆଯାଇ ସେମାନଙ୍କର ପକ୍ଷଛେଦନ କରି ଦିଆଯାଏ। ଶାସନ ତା'ବାଟରେ ଚାଲେ । ସମାଜ ଏଥିରୁ ମୁକ୍ତି ପାଇବାର ସମ୍ଭାବନା ନାହିଁ।

ନାଟ୍ୟକାର ସାମ୍ପ୍ରତିକ ସ୍ଥିତିର ବିଶ୍ଲେଷଣ କରିଛନ୍ତି କଳାତ୍ମକ ରୀତିରେ। ପୂର୍ବର ଅନ୍ୟ ନାଟକ ଠାରୁ ଏଇଟି ପ୍ରକୃତରେ ରସୋତ୍ତୀର୍ଣ୍ଣ ହୋଇଛି ବୋଲି କୁହାଯାଇପାରିବ। ନାଟକଟି ହିନ୍ଦୀ ଚଳଚ୍ଚିତ୍ରର ଅନୁରୂପ ହୋଇଥିଲେ ମଧ୍ୟ ଦର୍ଶକଙ୍କୁ ଭଲ ଲାଗିବ।

**ପୁନଶ୍ଚ ସଂଗ୍ରାମ (୧୯୯୭):** ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ପ୍ରକୃତ ସ୍ଥିତି ସମ୍ପର୍କରେ ଏକ ବାସ୍ତବଧର୍ମୀ ବିଶ୍ଲେଷଣ । ଆଜି ଭାରତର ସର୍ବତ୍ର ବିଦେଶୀ ଶକ୍ତିର ଯେଉଁ ବିଜୟ ରଥ ଚାଲିଛି ଭୋଗବାଦୀ ସଂସ୍କୃତିର ତାହା ହେଉଛି ଏକ ପ୍ରଳୟଙ୍କରୀ ଅବଦାନ। ପ୍ରଥମେ ଏମାନେ ନିଜ ଶକ୍ତିର ପ୍ରୟୋଗ କରୁଛନ୍ତି, ନିରୀହ ଜନତା ଉପରେ। ଦିନ ଆସିବ, ଯେତେବେଳେ ଏଇ ଶକ୍ତିର ପ୍ରୟୋଗ କରାଯିବ ନିଜ ନିଜ ମଧ୍ୟରେ ଏବଂ ସେଦିନ-ଯାହା ଦେଖା ଯାଉଛି ଆସି ମଧ୍ୟ ଗଲାଣି। ବଂଚିବାର ଏଭଳି ସହଜ ଉପାୟ ମଧ୍ୟ ଆଉ ନାହିଁ । ଏମାନଙ୍କ ପୃଷ୍ଠପୋଷକ ସାଜିଛନ୍ତି ଏ ଦେଶର ଭ୍ରଷ୍ଟ ରାଜନୀତିଜ୍ଞ ଦଳ। ଶତ୍ରୁନାଶ ପାଇଁ ଏଇମାନେ ହିଁ ସେମାନଙ୍କ ବାହୁଛାୟା ତଳେ ଆଶ୍ରୟ ଲୋଡୁଛନ୍ତି। ଯେତେବେଳେ କ୍ଷମତା ନ ଥିବ, ସେତେବେଳେ ଶତ୍ରୁ ମଧ୍ୟ ସେମାନଙ୍କୁ ଆଶ୍ରୟ କରି ରହିଥିବା ଏଇ ଅସାମାଜିକ ତତ୍ତ୍ୱର ଗତି କ'ଣ ହେବ ? ଏମାନେ ତାଙ୍କୁ ଛାଡ଼ିବାକୁ ଚାହିଁଲେ ବି ସେମାନେ ତ ଛାଡ଼ିବେ ନାହିଁ । ଶତ୍ରୁ ବିନାଶ ପାଇଁ ଗଙ୍ଗଦତ୍ତ ମଣ୍ଡୂକ କୃଷ୍ଣସର୍ପଟିକୁ ନିମନ୍ତ୍ରଣ କରି ଆଣି ଯେଉଁ ଦୁର୍ଦ୍ଦଶା ଭୋଗିଲା ଏମାନଙ୍କ ଅବସ୍ଥା ସେହିଭଳି ହେବ ନାହିଁ ତ ?

ନୈତିକତା ବିଲୁପ୍ତି, ମୂଲ୍ୟବୋଧର ଅବକ୍ଷୟ, ଆଦର୍ଶବୋଧର ଅଭାବ, ରାଜନୀତିର ଭ୍ରଷ୍ଟ ରୂପ ଏବଂ ଶେଷରେ ସାମାଜିକ ସୁରକ୍ଷାର ଅଭାବ ପ୍ରଭୃତି ବହୁ କାରଣ – ଏହି ଅବସ୍ଥା ସୃଷ୍ଟି ପଛରେ ରହିଛି।

ନୀତିହୀନ ରାଜନୀତିର ସ୍ୱାର୍ଥସର୍ବସ୍ୱ ବୀଭତ୍ସ ରୂପଟିକୁ ଏହି ନାଟକରେ ବିଶେଷ ଭାବରେ ଦେଖାଇ ଦିଆଯାଇଛି। କାହାଣୀ ଭାଗଟି ଏହିପରି। ଗାନ୍ଧୀବାଦୀ ନେତାଙ୍କର ଦୁର୍ଘଟଣାଜନିତ ମୃତ୍ୟୁ ସମ୍ବାଦ ପ୍ରଚାରିତ ହେବା ମାତ୍ରେ ଲୋକପ୍ରିୟ ସରକାର ତାଙ୍କର ସ୍ମୃତି ରକ୍ଷା ମାଧ୍ୟମରେ ନିଜର ରାଜନୀତିକ ଭାବମୂର୍ତ୍ତିକୁ ଉଜ୍ଜ୍ୱଳ କରିବାପାଇଁ ସକ୍ରିୟ ହୋଇଉଠନ୍ତି। ରାଷ୍ଟ୍ରୀୟ ଶୋକର ଆୟୋଜନ କରାଯାଏ। ତାଙ୍କ ନାମରେ ରାସ୍ତା ଖୋଲାଯାଏ, ପାର୍କ ବସାଯାଏ। ହଠାତ୍ ଦିନେ ସେଇ ନେତା ନିତାଇ ରାମ ଆତ୍ମପ୍ରକାଶ କରି ପ୍ରଶାସନକୁ ଅଡୁଆରେ ପକାଇ ଦିଅନ୍ତି। ତାଙ୍କୁ ଆତ୍ମ ଗୋପନ କରିବାକୁ ବାଧ୍ୟ କରାଯାଏ। ଛକରୁ ଗାନ୍ଧିମୂର୍ତ୍ତି ଉଠାଇ ନେଇ ସେଠାରେ ମଦଦୋକାନ ଖୋଲାଯାଏ।

ଅସହାୟା ଭାରତୀର ଦୋକାନକୁ ଭାଙ୍ଗି ଦିଆଯାଇ ଅକାରଣରେ ତା'ର ପଙ୍ଗୁ ପୁତ୍ରକୁ ବନ୍ଦୀ କରାଯାଏ। ଏହିଭଳି ରାଜ୍ୟରେ ନିର୍ଯ୍ୟାତନାର ସ୍ରୋତ ଛୁଟିଚାଲେ । ମୂକ ଜନତା ନୀରବରେ ରାଜନୀତିର ଏହି ଉଦ୍ଦଣ୍ଡ ତାଣ୍ଡବ ଦେଖୁଥାନ୍ତି । ଗଣବିପ୍ଳବର ସୂଚନା ଦିଆଯାଇ ନାଟକ ଶେଷ ହୁଏ। ଏହି ନାଟକର କାହାଣୀ ସୁବିନ୍ୟସ୍ତ ହୋଇଛି ସତ୍ୟ, ତେବେ ଏ ଧରଣର ବିଷୟକୁ ନେଇ ଓଡ଼ିଆରେ ପୂର୍ବରୁ ମଧ୍ୟ ନାଟକ ରଚିତ ହୋଇଛି । ଏହି ନାଟକର ପ୍ରଶଂସନୀୟ ଦିଗ ହେଉଛି ନାଟ୍ୟକାରଙ୍କ ଉପସ୍ଥାପନ କୌଶଳ ଏବଂ ଏହାର ଜୀବନଧର୍ମୀ ସଂଳାପ । 'ପୁନଶ୍ଚ ସଂଗ୍ରାମ' ଓଡ଼ିଆ ନାଟକ ଇତିହାସରେ ଏକ ସାଧାରଣ ସଂଯୋଗ।

**ଅଧା ଦେଖା- ସ୍ୱପ୍ନ (୧୯୯୮) ଏବଂ ପ୍ରାୟଶ୍ଚିତ (୨୦୦୧):** ଏ ଦୁଇ ନାଟକକୁ ଯୁଗ୍ମ ନାଟକ କୁହାଯିବା ଉଚିତ- ଏହି କାରଣରୁ ଯେ ଭାବବସ୍ତୁ ଦୃଷ୍ଟିରୁ ଏ ଉଭୟ ପରସ୍ପର ସହିତ ସଂପୃକ୍ତ ଠିକ ଗୋଟାଏ ମୁଦ୍ରାର ଦୁଇ ପାର୍ଶ୍ୱଭଳି। 'ପ୍ରାୟଶ୍ଚିତ' ନାଟକରେ ଏକ ରଙ୍ଗହୀନ ସମାଜର ରୂପ ଦର୍ଶକ ମାନଙ୍କୁ ଦେଖାଇ ଦିଆଯାଇଥିଲା ବେଳେ 'ଅଧା ଦେଖା ସ୍ୱପ୍ନ'ର ଲକ୍ଷ୍ୟ ମଧ୍ୟ ସେଇଆ। ନାରୀ ନିର୍ଯ୍ୟାତନାକୁ କେନ୍ଦ୍ରକରି ସୀତା-ସାବିତ୍ରୀର ଦେଶ ଭାରତବର୍ଷରେ ଯେଉଁ ଜଘନ୍ୟ ଅପରାଧମାନ ଘଟିଚାଲିଛି ତାହାର ବିଶ୍ଳେଷଣ ହେଉଛି ଉଭୟ ନାଟକର ଉଦ୍ଦେଶ୍ୟ । 'ପ୍ରାୟଶ୍ଚିତ'ରେ ସୀତା କିମ୍ବା ସାବିତ୍ରୀ ଥିଲା ବେଳେ 'ଅଧା ଦେଖା ସ୍ୱପ୍ନ'ରେ ଅଛନ୍ତି ଦ୍ରୌପଦୀ । ସେଠାରେ ଅଛନ୍ତି ଜଣେ ଅଧ୍ୟାପକ-ମୂଲ୍ୟବୋଧର ପ୍ରତିନିଧି ରୂପେ। ଏଠାରେ ଅଛନ୍ତି ଜଣେ ସ୍ୱାଧୀନତା ସଂଗ୍ରାମୀ- ସେଇ ଭୂମିକାରେ। ଉଭୟଙ୍କର ବ୍ୟର୍ଥ ଏବଂ କଣ୍ଟକିତ ଜୀବନ-ସଂଗ୍ରାମର ଚିତ୍ର ନାଟକ ଦୁଇଟିରେ ବର୍ଣ୍ଣିତ ହୋଇଛି। ସେଠି ଅଛନ୍ତି ଅଧ୍ୟାପକଙ୍କ ଜୀବନର ରାହୁ ଭାବେ ଜଣେ ଏମ୍.ପି., ଏଠି ତା'ବଦଳରେ ଜଣେ ମନ୍ତ୍ରୀ-ଅର୍ଥାତ୍ କ୍ଷମତା ରାଜନୀତିରେ ଥିବା କଳା ମେଷମାନେ। ଉଭୟ କ୍ଷେତ୍ରରେ ସେମାନଙ୍କୁ ସହାୟତା ମିଳିଯାଉଛି ଆଇନ୍‌ର ରକ୍ଷକ ପୁଲିସ୍ ବିଭାଗ ଠାରୁ। ନ୍ୟାୟର ସୁରକ୍ଷା ନିମନ୍ତେ ବିଚାର ବିଭାଗ କେତେ ଅସହାୟ ତାହା ମଧ୍ୟ ଦୁଇ ନାଟକରେ ଦେଖିବାକୁ ମିଳୁଛି । 'ପ୍ରାୟଶ୍ଚିତ'ରେ ତଥାପି ରହିଛି, ଜୀବନ ପାଇଁ ଶେଷ ଆଶାର କ୍ଷୀଣ କିରଣରୁ ଝଲକାଏ । 'ଅଧା ଦେଖା ସ୍ୱପ୍ନ'ରେ ସେତକ ମଧ୍ୟ ନାହିଁ । ଅପରାଧ ଦୃଢଭିତ୍ତି ଉପରେ ଠିଆ ହୋଇଥିବା ଅନ୍ଧକାରର ଏଇ ବିଶାଳ ସାମ୍ରାଜ୍ୟର ପତନର ବେଳ ସମ୍ଭବତଃ ଆଉ କେବେବି ଆସିବ ନାହିଁ। ଜୀବନ ପାଇଁ ଆଉ ମୂଲ୍ୟବୋଧ, ନୈତିକତା,ମାନବିକତା, ସତ୍ୟ, ନ୍ୟାୟ, ପୁଣ୍ୟ ଏବଂ ଆଦର୍ଶ ଭୂମିକା ସମ୍ଭବତଃ କିଛି ନାହିଁ। ତଥାପି ମଣିଷ ବଂଚିବ କିମ୍ବା ବଂଚିବାର ଅଭିନୟ କରି ଚାଲିଥିବ ଠିକ୍ 'ଅଧା

ଦେଖା ସ୍ୱପ୍ନ' ନାଟକର ଅଭିନେତା ରାଜୁ ପାଢ଼ୀଙ୍କ ଭଳି। ପେଶୀ ଏବଂ ଅର୍ଥ ଏ ଦୁଇଟି ମିଶି ହେବ ସମାଜ ନିୟନ୍ତା । ଏହାହିଁ ହେଉଛି ଏ ଦୁଇ ନାଟକର ବାର୍ତ୍ତା।

ଗଣତନ୍ତ୍ର ଶାସନରେ ଜନତା ନାମରେ କିଛି ଧୂର୍ତ୍ତ ରାଜନୀତିର ଆଟୋପରେ ସମଗ୍ର ଦେଶକୁ କିଭଳି ଅପରାଧର ଜଗତ୍ ଆଡ଼କୁ ପାଦ ବଢ଼ାଇବା ନିମନ୍ତେ ବାଧ୍ୟ କରୁଛନ୍ତି ଏବଂ କ୍ଷମତାର କେନ୍ଦ୍ରରେ ଥାଇ ମୂଲ୍ୟବୋଧ, ନୈତିକତା ଏବଂ ଆଦର୍ଶକୁ କିଭଳି ତିଳେ ତିଳେ ହତ୍ୟା କରି ଚାଲିଛନ୍ତି, ତାହାର ଏକ ବାସ୍ତବଧର୍ମୀ ଚିତ୍ର ଦୁଇ ନାଟକରେ ପ୍ରତିଫଳିତ ହୋଇଛି। 'ପ୍ରାୟଶ୍ଚିତ' ନାଟକର ନିରୀହ ଅଧ୍ୟାପକ ଅନ୍ୟାୟ ବିରୋଧରେ ଏକାକୀ ସଂଗ୍ରାମ କରୁକରୁ ଶେଷରେ ପାଗଳ ସାବ୍ୟସ୍ତ ହୋଇ ଯାଉଛନ୍ତି। ଯେଉଁ ନାରୀଟିର ସମ୍ଭ୍ରମ ରକ୍ଷା କରିବା ପାଇଁ ତାଙ୍କର ଏଇ ଏକକ ସଂଗ୍ରାମ- ସେଇ ନାରୀ ତାଙ୍କୁ ତାଙ୍କ ବାଟରେ ଛାଡ଼ି ଦେଇ ନିଜ ମନର ମଣିଷ ପାଖକୁ ଚାଲି ଯାଉଛି। ତେବେ ସେଇ ପ୍ରେମିକ ଦ୍ୱାରା ପ୍ରତ୍ୟାଖ୍ୟାତା ହୋଇ ଅନନ୍ୟୋପାୟ ହୋଇ ଶେଷରେ ପ୍ରାୟଶ୍ଚିତ କରିବା ପାଇଁ ଫେରି ଆସୁଛି ପାଗଳ ଅଧ୍ୟାପକଙ୍କ ନିକଟକୁ। ଅବଶିଷ୍ଟ ଜୀବନ ପାଇଁ ତଥାପି ଆଶା ଭରସାର ଶେଷ କୋମଳ-କିରଣଟିକକ ଯେ ଲୋପ ପାଇଯାଇ ନାହିଁ, ଏହି ଘଟଣା ଦ୍ୱାରା ତାହା ଦେଖାଇ ଦିଆଯାଇଛି। ଆଶାହତ ମଣିଷର ସଦା ଅସ୍ଥିର ପ୍ରାଣରେ ଏହା ଦ୍ୱାରା ଜିଜୀବିଷାର ପ୍ରଚଣ୍ଡ ପ୍ରତ୍ୟୟ ସୃଷ୍ଟି ହେବ, ଏହାହିଁ ହେଉଛି ନାଟ୍ୟକାରଙ୍କର ବିଶ୍ୱାସ।

'ଅଧାଦେଖା-ସ୍ୱପ୍ନ' ପରାଜିତ ମାନବାତ୍ମାର କାରୁଣ୍ୟ ମର୍ମରିତ ବିକଳବିଳାପ- ଯେଉଁଠି ଜୀବନ ପାଇଁ କୌଣସି ଆଶା ଭରସାର ସମ୍ଭାବନା ବା ସୂଚନା ଟିକିଏ ବି ଦିଆଯାଇ ନାହିଁ । ଅବଶ୍ୟ ଶେଷ ଦୃଶ୍ୟରେ ସ୍ୱାଧୀନତା ସଂଗ୍ରାମୀ ଜନତାକୁ ସମ୍ବୋଧନ କରି କହିଛନ୍ତ-ମୁହଁ ଖୋଲ... 'ତମେ ମାନେ ଥରେ ମୁହଁ ଖୋଲିଲେ ଅତ୍ୟାଚାରୀର ସିଂହାସନ ଟଳି ଯିବ' ଅରାଜକତାର ଇତି ଘଟିବ – 'ଅର୍ଥାତ୍ ପୁଣି ସେଇ ବିପ୍ଳବ ନିମନ୍ତେ ଆହ୍ୱାନ... ସମାଜର ପରିବର୍ତ୍ତନ ନିମନ୍ତେ ଉଦ୍‌ବୋଧନ । ଗାନ୍ଧିବାଦୀ ମଣିଭଦ୍ର ମେଡ଼ିକାଲ୍ କଲେଜ୍‌ରେ କପି ହେଉଥିବା ଦେଖି ବିଶ୍ୱବିଦ୍ୟାଳୟକୁ ପରୀକ୍ଷା ବାତିଲ୍ କରିବା ନିମନ୍ତେ ଲେଖି ଦେବାରୁ କ୍ରୁଦ୍ଧ ଛାତ୍ରନେତା ମନ୍ତ୍ରୀ ନନ୍ଦନ ତାଙ୍କ କନ୍ୟାକୁ ବିଚବଜାରରେ ଉଲଗ୍ନ କରିଦିଏ। ମଣିଭଦ୍ର କେସ୍‌କରନ୍ତି । ଓକିଲ ପ୍ରମାଣ କରନ୍ତି ଦୀପୀକା ବିବାହିତା, ଅଭିନେତା ଜଣେ ତାଙ୍କର ସ୍ୱାମୀ ସେ ବିବାହର ନିମନ୍ତ୍ରଣ ପତ୍ର, ବିବାହ ଭୋଜିରେ ଯୋଗ ଦେଇଥିବା ଅତିଥି, ବିବାହର ଫଟୋ-ଏସବୁ ଦାଖଲ କରି ନିଜ ଯୁକ୍ତିକୁ ପ୍ରତିଷ୍ଠା କରିଦିଅନ୍ତି । ବିଚାରପତି ଅଭିଯୁକ୍ତକୁ ମୁକ୍ତ ବୋଲି ଘୋଷଣା କରି କେସ୍ ଖାରିଜ୍ କରିଦିଅନ୍ତି। ମନ୍ତ୍ରୀ ଶିବିରରେ ଉଲ୍ଲାସର ବାତାବରଣ ଏବଂ ପ୍ରକୃତ ସ୍ଥିତିର ବିଶ୍ଳେଷଣ, ସ୍ୱୀକାରୋକ୍ତି ପ୍ରଭୃତି ଚାଲିଥିବା ବେଳେ ବିପ୍ଳବ ଏ ସବୁର ଫଟୋ ଉଠାଇନିଏ। ଦୀପିକା ଆତ୍ମହତ୍ୟା

କରେ ଏବଂ ବିପ୍ଳବକୁ ହତ୍ୟା କରି ଦିଆଯାଏ । ବିପ୍ଳବର ଆହ୍ୱାନ ଦିଆଯାଇ ନାଟକ ଶେଷ ହୁଏ। କ୍ଷମତା ରାଜନୀତି ସ୍ୱାଧୀନ ଭାରତ ବର୍ଷରେ କିଭଳି ଅପରାଧଭିତ୍ତିକ ହୋଇଉଠିଛ, ତାହାରି ବଳରେ କିଭଳି ଅନ୍ୟାୟକୁ ନ୍ୟାୟ, ଦୁର୍ନୀତକୁ ନୀତି ଏବଂ ମିଥ୍ୟାକୁ ସତ୍ୟରେ ରୂପାନ୍ତରିତ କରାଯାଇ ପାରୁଛି, ନାଟ୍ୟକାର ଦୁଇଟିଯାକ ନାଟକରେ ତାହା ଦେଖାଇବାକୁ ଚେଷ୍ଟା କରିଛନ୍ତି । ଉଭୟ ନାଟକ କାହାଣୀ ସୁପରିକଳ୍ପିତ ଏବଂ ଚରିତ୍ର, ସଂଳାପ ଇତ୍ୟାଦି ମଧ୍ୟ ଏହାର ଉପଯୋଗୀ ହୋଇଛି। ଆଜିକାଲି ଦୂରଦର୍ଶନ ଧାରାବାହିକରେ ପ୍ରାୟ ଏହିଭଳି କାହାଣୀ ଦେଖିବାକୁ ମିଳୁଛି।

**ଅପରାହ୍ନର ଅବଶୋଷ (୨୦୦୧):** ପ୍ରଥମେ 'ଅସ୍ତରାଗ' ଏବଂ ତାହାପରେ 'ଅସ୍ତରାଗର ଏଲିଜି' ନାମରେ ମଂଚସ୍ଥ ହୋଇଥିବା ଭିନ୍ନ ସ୍ୱାଦର ନାଟକ । ରାଜତନ୍ତ୍ରର ଲୋପ ହେବାପରେ ରାଜା ଭାନୁ ପ୍ରତାପ, ବିଗତ ଦିନର ରାଜକୀୟ ଆଡ଼ମ୍ବରକୁ ବିସ୍ମୃତ ହୋଇ ନପାରି ଜୀର୍ଣ୍ଣରାଜପ୍ରାସାଦ, ଅଳନ୍ଧୁଭର୍ତ୍ତି ସିଂହାସନ, କଳଙ୍କିଲଗା ତରବାରି, ପୁରୁଣା ବନ୍ଧୁକକୁ ସମ୍ବଳ କରି ତଥାପି କିଭଳି ରାଜତ୍ୱର ଆଡ଼ମ୍ବର ମଧ୍ୟରେ ବଂଚିବାର ଅଭିନୟ କରୁଥାଆନ୍ତି ମିଥ୍ୟା ଅହମିକାର ଏକ କୁହେଳି ସୃଷ୍ଟି କରି ଅତୀତ ରାଜାଙ୍କର ପ୍ରେତ ତଥାପି କିଭଳି ବର୍ତ୍ତମାନକୁ ଅସ୍ୱୀକାର କରି ଅତୀତର ସେଇ ଆଡ଼ମ୍ବର ମଧ୍ୟରେ ଶେଷହୀନ କରୁଣ ରାଗିଣୀର ଏକ ଛାତିଥରା ମୂର୍ଚ୍ଛନା ଭଳି ଘୂରି ବୁଲୁଥାଆନ୍ତି ନାଟକରେ ତାହା ଦେଖାଇ ଦିଆଯାଇଛି।

ରାଜାର କ୍ଷମତା ନାହିଁ । ରାଜାମାନଙ୍କୁ ଦିଆଯାଉଥିବା ସରକାରୀ ଭତ୍ତା ବନ୍ଦ କରି ଦିଆଯାଇଛି ସେଇ ୧୯୭୨ ମସିହାରୁ। ବଂଚିବା ପାଇଁ ସର୍ବନିମ୍ନ ଆବଶ୍ୟକତାର ପୂରଣ କରିବା ପାଇଁ ରାଜାଙ୍କୁ ନିଜର ସ୍ଥାବର ସମ୍ପତ୍ତି ହସ୍ତାନ୍ତର କରି ଅର୍ଥର ବ୍ୟବସ୍ଥା କରିବାକୁ ପଡୁଛି । ଧୀରେ ଧୀରେ ପତ୍ନୀ, ପୁତ୍ର ସମସ୍ତେ ଦୂରେଇ ଯାଇଛନ୍ତି । ତଥାପି ରାଜା ନିଜର ଅହଙ୍କାରକୁ ନେଇ ରାଜତନ୍ତ୍ରର ମିଥ୍ୟା ଆଟୋପରେ କ୍ଳାନ୍ତ କପୋତର ଉଦାସ କାରୁଣ୍ୟ ମଧ୍ୟରେ ଘୂରି ବୁଲନ୍ତି, ଗୋଟାଏ କୋଠରିରୁ ଆଉ ଗୋଟାଏ କୋଠରିକୁ। ଭାନୁପ୍ରତାପ ସବୁ ବୁଝନ୍ତି, ମାତ୍ର ବର୍ତ୍ତମାନ ସହିତ ସାଲିସ କରିପାରନ୍ତି ନାହିଁ । ଅର୍ଥ ନାହିଁ, କ୍ଷମତା ନାହିଁ, ପ୍ରତିପତ୍ତି ନାହିଁ-ତଥାପି ଏହି 'ନାହିଁ' 'ନାହିଁ' ଭିତରେ 'ସବୁ ଅଛି'ର କଳ୍ପନା କରୁ କରୁ ତାଙ୍କର ସମୟ କଟିଯାଏ। ପୁଅ କୁମାର ତାଙ୍କୁ ବର୍ତ୍ତମାନକୁ ଫେରାଇ ଆଣିବା ପାଇଁ ଚେଷ୍ଟା କରେ। ତାଙ୍କର କର୍ମଚାରୀ ପୁଅ କଲେକ୍ଟର ବୁଲୁ ତାଙ୍କୁ ବର୍ତ୍ତମାନ ସହିତ ସାଲିସ୍ କରି ନେବାକୁ ବୁଝାଏ। ମାତ୍ର ଭାନୁ ପ୍ରତାପ ତାକୁ ସ୍ପଷ୍ଟ ଜଣାଇ ଦିଅନ୍ତି-ସେ ରାଜା ଥିଲେ ରାଜା ଅଛନ୍ତି ଏବଂ ଶେଷ ପର୍ଯ୍ୟନ୍ତ ରାଜାହିଁ ରହିବେ। ଶାସନର କୌଣସି ନିୟମ କାନୁନ୍ ତାଙ୍କ ଉପରେ ଲାଗୁ ହେବ ନାହିଁ । ସେ ନିଜେ ଯେମିତି ଥିଲେ, ସେମିତି ରହିବେ।

ରାଜା କେବଳ ଅନ୍ୟକୁ ଆଦେଶ ଦେଇପାରେ । ଅନ୍ୟର ନିର୍ଦ୍ଦେଶରେ ଚାଲେ ନାହିଁ। ତାଙ୍କର ଏଇ ମୋହ ଭାଙ୍ଗିବାକୁ ବେଶି ବିଳମ୍ବ ହୁଏ ନାହିଁ । କୁମାରର ତାଙ୍କ ଇଚ୍ଛା ବିରୋଧରେ ବିବାହ, ପତ୍ନୀ ସୁଭଦ୍ରାଙ୍କର ମୃତ୍ୟୁ ସମ୍ବାଦ ତାଙ୍କର ଏ ପର୍ଯ୍ୟନ୍ତ ଥିବା ଆତ୍ମ ବିଶ୍ୱାସକୁ ଦୋହଲାଇ ଦିଏ। ଏ ପର୍ଯ୍ୟନ୍ତ ଯେ ସେ ସୁଭଦ୍ରା ପଠାଉଥିବା ଟଙ୍କାରେ ଚଳୁଥିଲେ, ଏଇ ଖବର ତାଙ୍କୁ ବିହ୍ୱଳ କରି ପକାଏ। ଏ ଆଘାତ ସେ ସହି ପାରନ୍ତି ନାହିଁ । ତାଙ୍କର ପକ୍ଷାଘାତ ହୁଏ। ଶେଷରେ ରାଜା ନିଜର ପ୍ରିୟ ସିଂହାସନ, ବନ୍ଧୁକ, ତରବାରି, ବଂଶୀ ଏବଂ ସୁଭଦ୍ରାଙ୍କୁ ଭାବୁ ଭାବୁ ଚିରଦିନ ପାଇଁ ଶୋଇ ପଡ଼ନ୍ତି। ଗୋଟିଏ ପରାଜିତ ଏବଂ ଯନ୍ତ୍ରଣା ଜର୍ଜରିତ ଆତ୍ମା ମୃତ୍ୟୁର କୋଳରେ ଶାନ୍ତି ପାଏ ହୁଏତ। ରାଜକୀୟ ଆଡ଼ମ୍ବରର ସମସ୍ତ ମର୍ଯ୍ୟାଦାକୁ ନେଇ ଭାନୁପ୍ରତାପ ଶେଷ ଯାତ୍ରାରେ ବାହାରି ପଡ଼ନ୍ତି । ବନ୍ଧୁ ବିକ୍ରମ ତାଙ୍କୁ କୁହନ୍ତି, "ତୁ ଜିତିଗଲୁରେ ଭାନୁ... ରାଜା ଥିଲୁ ରାଜା ହେଇକି ରହିଗଲୁ । * * ଶେଷଥର ପାଇଁ ମୁଁ ତୋତେ ସାଲ୍ୟୁଟ୍ କରୁଛି।"ବିକ୍ରମ ତାଙ୍କୁ ସାଲ୍ୟୁଟ୍ କରନ୍ତି, ଠିକ୍ ବକ୍ସି ଜଗବନ୍ଧୁଙ୍କ ମୃତଦେହକୁ ଇଂରେଜ୍ ସେନାନାୟକ ସାଲ୍ୟୁଟ୍ ଜଣାଇଲା ପରି।

ଯେଉଁମାନେ ସମୟର ସ୍ୱର ସହିତ ଖାପ୍ ଖୁଆଇ ନିଜକୁ ସେଇ ଅନୁସାରେ ପ୍ରସ୍ତୁତ କରିପାରନ୍ତି ନାହିଁ, ସେମାନେ ଜୀବନ ଯୁଦ୍ଧରେ ହାରିଯାଆନ୍ତି, ଠିକ୍ ଭାନୁପ୍ରତାପଙ୍କ ଭଳି। ସମ୍ଭବତଃ, ଏହାହିଁ ହେଉଛି ଏଇ ନାଟକର ବାର୍ତ୍ତା। ଏ ନାଟକ ନାଟ୍ୟକାରଙ୍କ ଅନ୍ୟ ନାଟକଗୁଡ଼ିକଠାରୁ ନିଆରା।

ଶ୍ରୀ ସାହୁ ନାଟ୍ୟକାର ରୂପରେ ପ୍ରଥମେ ଆତ୍ମପ୍ରକାଶ କରିଥିଲେ ଗତ ଶତକର ଶେଷ ପାଦରେ। ଇତି ମଧ୍ୟରେ ପ୍ରାୟ ଦୁଇଟି ଦଶନ୍ଧି ବିତିଗଲାଣି । ଏହାରି ଭିତରେ ତାଙ୍କ ସୃଷ୍ଟି ପରିମାଣ ଦୃଷ୍ଟିରୁ ବେଶ୍ ଉଲ୍ଲେଖଯୋଗ୍ୟ ହୋଇଛି। ଏହାର ଗୋଟିଏ ବଡ଼ ଦୁର୍ବଳତା ହେଉଛି ଯେ, ଏଥିରେ ପୁନରାବୃତ୍ତି ଆସିଯାଏ। ଅନ୍ୟ କେତେକ ପ୍ରତିଷ୍ଠିତ ନାଟ୍ୟକାରଙ୍କ କ୍ଷେତ୍ରରେ ମଧ୍ୟ ଏହି ଦୁର୍ବଳତାଟି ଦେଖାଯାଏ।

ନାଟ୍ୟକାର ପରମ୍ପରାର ଭକ୍ତ, ଅନ୍ତତଃ ତାଙ୍କ ନାଟକ ଶୈଳୀରୁ ଏହାହିଁ ପ୍ରମାଣିତ ହେଉଛି। ସାମ୍ପ୍ରତିକ ସମାଜର ଯନ୍ତ୍ରଣା ହିଁ ତାଙ୍କର ନାଟକ ଗୁଡ଼ିକରେ ପ୍ରତିବାଦର ସ୍ୱର ହୋଇ ଆତ୍ମପ୍ରକାଶ କରୁଛି । ସମାଜକୁ ବିପ୍ଳବ ମାଧ୍ୟମରେ ବଦଳାଇଦେବା ନିମନ୍ତେ ଆହ୍ୱାନ ଦେଉଛି। ନୂଆ ସମାଜ ଗଢିବାର ସ୍ୱପ୍ନ ଦେଖୁଛି। ସେ ଅକପଟ ସତ୍ୟ ଉଚ୍ଚାରଣ ଦ୍ୱାରା ସମାଜକୁ ସତର୍କ କରାଇଛନ୍ତି । ପରିବର୍ତ୍ତନ ଏକାନ୍ତ କାମ୍ୟ, ଏହା ଯେଉଁଭଳି ସତ୍ୟ ସେଥିପାଇଁ ମାର୍ଗ ନିର୍ଦ୍ଦେଶ ହେଉଛି ତାହା ଅପେକ୍ଷା ଆହୁରି ଅଧିକ ପ୍ରୟୋଜନ। କାର୍ଲମାକ୍ସ, ମହାତ୍ମାଗାନ୍ଧି, ଏଭଳିକି ଫ୍ରଏଡ୍‌ଙ୍କ ଭଳି ଚିନ୍ତାନାୟକମାନେ କେବଳ ସମସ୍ୟାର ଗମ୍ଭୀର ରୂପ ଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି ନିଜର କର୍ତ୍ତବ୍ୟ ଶେଷ କରିନଥିଲେ। ତହିଁରୁ ମୁକୁଳିବାର

ବାଟ ମଧ୍ୟ ଖୋଜିଥିଲେ । ଚକ୍ରବ୍ୟୁହ ମଧ୍ୟରୁ ବାହାରକୁ ବାହାରିବାର ବାଟ ଜଣା ନ ଥିଲେ ଶେଷରେ ଶେଷରେ ମୃତ୍ୟୁହିଁ ସାର ହୁଏ। ନାଟ୍ୟକାର ସମସ୍ୟା କଥାକହି ଅବଶ୍ୟ କେତେକ ନାଟକରେ ବିପ୍ଳବର କଥା ମଧ୍ୟ କହିଛନ୍ତି। ତାଙ୍କ ମତରେ ସମାଜ ନବଦଳିଲେ, ଆଉ ଏହି ଭୟଙ୍କର ସ୍ଥିତିର ପରିବର୍ତ୍ତନ ସମ୍ଭବ ନୁହେଁ। ପରିବର୍ତ୍ତନ ପାଇଁ ବିପ୍ଳବହିଁ ହେଉଛି ଏକମାତ୍ର ପନ୍ଥା। ଏ ପର୍ଯ୍ୟନ୍ତ ଠିକ୍ ଅଛି। ମାତ୍ର ସେ ବିପ୍ଳବର ରୂପରେଖ ପ୍ରଦାନ କରିବା ମଧ୍ୟ ହେଉଛି ସ୍ରଷ୍ଟାର ଦାୟିତ୍ୱ। ତହିଁରେ ତାଙ୍କର ଚିନ୍ତାର ଗଭୀରତା ତଥା ଜୀବନ ପ୍ରତି ସକରାତ୍ମକ ମନୋଭାବର ପରିଚୟ ମିଳେ। ଗଢିବାର ଚିନ୍ତାଧାରା ନଥାଇ କେବଳ ଭାଙ୍ଗିବାର କଥା କହି ଚାଲିଲେ, ତାହା ହୋଇଯାଏ ଏକ ପ୍ରକାର ରୋମାଣ୍ଟିକ୍ ଆବେଗ। ଏଭଳି ଶସ୍ତା ଭାବପ୍ରବଣତାରେ କୌଣସି ସର୍ଜନାତ୍ମକ ଚିନ୍ତା ପ୍ରକାଶ ପାଏ ନାହିଁ। ଆଜିକାଲିର କେତେକ ନାଟ୍ୟକାର ଲୋକପ୍ରିୟତା ଆଉ ହାତତାଳି ପାଇବା ପାଇଁ ଏହି ସୁବିଧା ବାଟଟିକୁ ଧରିଛନ୍ତି। ତାହା ଦ୍ୱାରା ହୁଏତ ସାମୟିକ ସଫଳତା ମିଳିପାରେ। ଆବେଗ ତାଡ଼ିତ ଦର୍ଶକ ଦୁଇ ଚାରିଟା ତାଳି ମାରି ନାଟ୍ୟକାରଙ୍କର ସଫଳତା ଉପରେ ମୋହର ବସାଇ ଦେଇ ପାରନ୍ତି। ମାତ୍ର ପ୍ରେକ୍ଷାଳୟର ଏରୁଣ୍ଡି ଡେଇଁବା ମାତ୍ରେ ନାଟକ କଥା ଭୁଲି ଯାଆନ୍ତି। ସେ ଯୁଗର ନାଟ୍ୟକାରମାନେ ପ୍ରାୟ ଏହିଭଳି ଅବସ୍ଥାର ସମ୍ମୁଖୀନ ହେଉଥିଲେ। 'ନାଟକ ଦେଖି ପେଟେ ହସିବେଳ ବୁହେ କାନ୍ଦିବେ, ତା'ପରେ ହସି ହସି ଘରକୁ ଯିବେ।' ଯାହା ସେ କହି ନାହାନ୍ତି, ତାହା ହେଉଛି ଏହି ଯେ, ନାଟକ ତା'ର ପ୍ରେକ୍ଷାଳୟରେ ହିଁ ରହିଯିବ। ଯେ କୌଣସି ସ୍ରଷ୍ଟା ପାଇଁ ଏହା ଗୌରବର କଥା ନୁହେଁ । ଆଜିଠାରୁ ଛବିଶ ଶହ ବର୍ଷ ପୂର୍ବେ ନାଟ୍ୟକାର ସୋଫୋକ୍‌ଲିସ୍ ଲେଖିଥିଲେ ମାତ୍ର ତିନିଖଣ୍ଡି ନାଟକ । ସେ ଗୁଡ଼ିକ ହେଉଛି (୧) କିଙ୍ଗ୍ ଇଡ଼ିପସ୍ (୨)ଇଡ଼ିପସ୍ ଆଟ୍ କୋଲୋନସ୍ (୩)ଆଣ୍ଟିଗୋନ୍। ଶତାବ୍ଦୀ ଶତାବ୍ଦୀର ବ୍ୟବଧାନରେ ଆଜି ମଧ୍ୟ ଏହି ନାଟକ କାଳଜୟୀ ସୃଷ୍ଟିର ଗୌରବରେ ମଣ୍ଡିତ ହୋଇ ରହିଛି। ସେହିପରି ତା'ର ପ୍ରାୟ ହଜାର ବର୍ଷ ବ୍ୟବଧାନରେ ଭାରତୀୟ ନାଟ୍ୟକାର କାଳିଦାସ ଲେଖିଲେ ତିନିଖଣ୍ଡ ନାଟକ। ତହିଁରୁ 'ଅଭିଜ୍ଞାନ ଶକୁନ୍ତଳା' ନାଟକର ମାନବୀୟ ଆବେଦନ ଏବେ ମଧ୍ୟ ସମଗ୍ର ବିଶ୍ୱର ନାଟ୍ୟପ୍ରେମୀ-ଦର୍ଶକଙ୍କ ହୃଦୟରେ ପଥରଗାର ଭଳି ଉତ୍କୀର୍ଣ୍ଣ ହୋଇ ରହିଛି। କହିବାର କଥା ହେଉଛି ଯେ, ପ୍ରକୃତ ସ୍ରଷ୍ଟା କ୍ଷଣକାଳୀନ ସଫଳତା ପଛରେ ନ ଧାଇଁ ଏଭଳି କିଛି ଚିନ୍ତା କରିବା ଉଚିତ, ଯାହା ତାକୁ ଶାଶ୍ୱତ ଗୌରବର ସିଂହାସନରେ ନେଇ ବସାଇଦେବ।

ନାଟ୍ୟକାର ସାହୁ ସାମ୍ପ୍ରତିକ ଜୀବନର ରୂପକାର। ଜୀବନର ଯେଉଁ ରୂପ ସେ ନିଜର ପରିପାର୍ଶ୍ୱିକ ଦେଖୁଛନ୍ତି ତାକୁହିଁ ସେ ବିଶ୍ୱସ୍ତ ଭାବରେ ନିଜ ସୃଷ୍ଟିରେ ରୂପ ଦେଉଛନ୍ତି। ଜୀବନର ଯଥାର୍ଥ ସ୍ୱରୂପକୁ ହୃଦୟଙ୍ଗମ କରିବାକୁ ହେଲେ ଏହାର ଆହୁରି ଗଭୀରତାକୁ

ଯିବାକୁ ହୁଏ। 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଆମେ ଯେଉଁ ନାଟ୍ୟକାରଙ୍କୁ ଦେଖୁଥିଲୁ 'ପୁନଶ୍ଚ ସଂଗ୍ରାମ' ନାଟକରେ ତାଙ୍କର ପରିବର୍ତ୍ତିତ ରୂପ ଅନେକ ସମ୍ଭାବନାର ପ୍ରତିଶ୍ରୁତି ଅବଶ୍ୟ ଦିଏ। ହୁଏତ ଏହି କାରଣରୁ ତାଙ୍କ ନାଟକ ଗୁଡ଼ିକରେ ଦୃଶ୍ୟଧର୍ମିତା ଅପେକ୍ଷା ଶ୍ରାବ୍ୟଗୁଣ ଅଧିକା ରହିଯାଉଛି। ଏହା ଦ୍ୱାରା ନାଟକର ଗତି ମନ୍ଥର ହୁଏ, ଯାହା ଆଜିର ଦର୍ଶକଙ୍କ ପାଇଁ ବିରକ୍ତିକର। ସାସାମ୍ପ୍ରତିକ ନାଟ୍ୟକାର ଫିଜିକାଲ୍-ଥିଏଟର ପାଖରେ ପହଞ୍ଚି ଗଲେଣି, ଏହି ଦିଗଟି ପ୍ରତି ଦୃଷ୍ଟି ଦେଲେ ଶ୍ରୀ ସାହୁଙ୍କର ସୃଷ୍ଟି ଅଧିକ ପ୍ରଭାବଶାଳୀ ହେବ।

ନାଟକ ପ୍ରତି ନାଟ୍ୟକାରଙ୍କର ପ୍ରତିବଦ୍ଧତା ସନ୍ଦେହାତୀତ। ତାଙ୍କ ସଂଳାପରେ କାବ୍ୟିକତା ଅଛି, ଦାର୍ଶନିକତା ଆସିବ ଅନୁଭବରୁ । ଘଟଣା ବିଶ୍ଳେଷଣ କୌଶଳରୁ ଜଣାପଡ଼େ ଯେ, ସେ ଆଖି ଖୋଲି ବାଟ ଚାଲନ୍ତି। ଗୋଟିଏ କଥା ଏ ସମ୍ପର୍କରେ କହିବା ଉଚିତ। କଳ୍ପନାକୁ ଲଗାମ୍‌ଛଡ଼ା କରିଦେଲେ, ସ୍ରଷ୍ଟା ତା'ଉପରୁ ନିଜର କର୍ତ୍ତୃତ୍ୱ ହରାଇଦିଏ। ଗୁଡ଼ି ଆକାଶରେ ଉଡୁଥାଏ, ମାତ୍ର ତା'ର ସୂତା ଥାଏ, ତଳେ ଉଡ଼ାଳିର ହାତରେ । ସୂତା ଛିଡ଼ିଗଲେ, ଗୁଡ଼ି ହଜିଯାଏ। ସେହିପରି କଳ୍ପନା ମାଟିର ଯୋଗସୂତ୍ର ହରାଇଲେ, ତାହା ହୋଇଯାଏ ନିଛକ ଏକ ବିଳାସ। ଶ୍ରୀ ସାହୁଙ୍କ ଆଗରେ ଦୀର୍ଘ ପଥ। ଓଡ଼ିଆ ନାଟକ ତାଙ୍କ ଠାରୁ ଅନେକ କିଛି ଆଶା କରୁଛି।

ପ୍ରଶାନ୍ତି ଆପାର୍ଟମେଣ୍ଟ
ଭୁବନେଶ୍ୱର

●●●

# ନାରାୟଣ ସାହୁଙ୍କ ନାଟ୍ୟଯାତ୍ରା

### ଡ. ରମାକାନ୍ତ ସାମନ୍ତରାୟ

"ଉତ୍ତରଅଶୀ ସମୟରେ ଜଣେ ପ୍ରତିଭାବାନ୍ ନାଟ୍ୟକାର ହେଉଛନ୍ତି ଡ. ନାରାୟଣ ସାହୁ। ପାରମ୍ପରିକତା ସହିତ ପରୀକ୍ଷାଧର୍ମୀତାର ଏକ ସମନ୍ୱୟ ଘଟାଇ ନାଟ୍ୟକାର ନିଜ ନାଟ୍ୟଶୈଳୀ ପ୍ରସ୍ତୁତ କରନ୍ତି। ତାଙ୍କ ନାଟକର ସଂଳାପ ମଧ୍ୟ ଖୁବ୍ ବେଶ୍ ମନଛୁଆଁ। ସାମାଜିକ ସମସ୍ୟାର ବିଶ୍ଳେଷଣ ହେଉଛି ତାଙ୍କ ନାଟ୍ୟ ଦର୍ଶନର ମୁଖ୍ୟ ଉଦ୍ଦେଶ୍ୟ"

ଏହି ମନ୍ତବ୍ୟଟି ଡ ହେମନ୍ତ କୁମାର ଦାସ,ଡ ନାରାୟଣ ସାହୁଙ୍କ ନାଟ୍ୟ ପ୍ରତିଭା ସମ୍ପର୍କରେ ଦେଇଥିଲେ। ଏ ସମୟରେ ଡ ସାହୁଙ୍କର ଖଣ୍ଡିଏ ବି ନାଟକ ପ୍ରକାଶିତ ହୋଇନଥିଲା। କିନ୍ତୁ କିଛି ନାଟକ ମଂଚସ୍ଥ ହୋଇସାରିଥିଲା। ୧୯୮୩ ମସିହାରେ 'ତାମସୀ ତୃଷ୍ଣା' ନାଟକ ମଂଚସ୍ଥ ହୁଏ। ଜଣେ ସାମ୍ବାଦିକ ଉପରେ ଶାସକଦଳ ଜୋର୍‌କରି ଗାଡ଼ି ଚଢ଼ାଇ ଦିନ ଦ୍ୱିପହରେ ହତ୍ୟା କରେ। ଏଠି ମଣିଷ ମରେନା, ମରେ ଗଣତାନ୍ତ୍ରିକ ମୂଲ୍ୟବୋଧ। ଜିତିଯାଏ ଦୁର୍ନୀତିଖୋର ଶାସକ। ମାନବିକ ମୂଲ୍ୟବୋଧ ବିପନ୍ନ ହୁଏ। କିନ୍ତୁ ୧୯୯୧ରେ ପ୍ରକାଶିତ ହୁଏ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'। ନାଟକଟି ସେହି ବର୍ଷ କଟକ ଆକାଶବାଣୀ କେନ୍ଦ୍ରରୁ ପ୍ରଚାରିତ ହୋଇ ବିତର୍କର ସୂତ୍ରପାତ କରିଥିଲା। ସାମ୍ପ୍ରଦାୟିକତା ସହ ଧାର୍ମିକ ବଡ଼ ପଣ୍ଡାଙ୍କ ନୀତିରହିତ କାର୍ଯ୍ୟକଳାପ ହିଁ ନାଟକର ବିଷୟବସ୍ତୁ ହୋଇଥିବାରୁ ବିତର୍କର ପରିସରକୁ ଟାଣି ହୋଇଯାଇଥିଲା। ନାଟକଟି ଆହଲ୍ଲାବାଦ୍, ଭୁବନେଶ୍ୱର,ବୁର୍ଲା ଓ ଅନ୍ୟାନ୍ୟସସ୍ଥାନରେ ପରାଜିତ ଈଶ୍ୱର, ଅସହାୟ ଈଶ୍ୱର, ଆଶ୍ରାହୀନ ଈଶ୍ୱର, ହାରିଯାଇଥିବା ଈଶ୍ୱରଙ୍କ ଆଦି ନାମରେ ମଂଚରେ ମଂଚସସ୍ଥ କରାଇବା କାରଣ କଣ ବୁଝା ପଡ଼େନି, ଅଙ୍କ ବିହୀନ ଭେଦଟି ଦୃଶ୍ୟ ସମ୍ବଳିତ ଏହି ନାଟକଟି ଡ ସାହୁଙ୍କ ନାଟ୍ୟ ପ୍ରତିଭାରେ ଏକ ବଳିଷ୍ଠ ସଂଯୋଗ। ନାଟ୍ୟକାର ଡଃ ସାହୁଙ୍କ ପୂର୍ବରୁ ରଚିତ ଅନେକ ନାଟ୍ୟକାରଙ୍କ ନାଟ୍ୟ ସୃଷ୍ଟି ଏପରିକି ସ୍ୱୀୟ ରଚନାଧାରା ଠାରୁ ସତେ ଯେମିତି ଅଲଗା ହୋଇଯାଇଛନ୍ତି। ଅନ୍ତତଃ ଏହି ଅର୍ଥରେ ଯେ ସେ ମଣିଷର ଧର୍ମ ଓ ଜୀବିକାକୁ ନେଇ ମୁଣ୍ଡ ଟେକି ଉଠୁଥିବା ସାମ୍ପ୍ରଦାୟିକ୍‌ବାଦ, ହିଂସାକାଣ୍ଡ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତୋଳନ କରିଛନ୍ତି ଶାଣିତ ବ୍ୟଙ୍ଗ ମାଧ୍ୟମରେ। ଭୋପାଳ ଗ୍ୟାସ ଦୁର୍ଘଟଣା,ଦକ୍ଷିଣ ଭାରତର ଏକ ମନ୍ଦିର ଭିତରେ ପୂଜକଙ୍କ ଦ୍ୱାରା ନାରୀ ଧର୍ଷଣ ଓ ବାବ୍ରି ମସ୍‌ଜିଦ୍ ଭାଙ୍ଗିବାକୁ ଉପଜୀବ୍ୟ

କରି ନାଟକ ରଚନା କରାଯାଇଛି । ଯେଉଁଥିରେ ଈଶ୍ୱରଙ୍କୁ ଏକ ଚରିତ୍ର ଭାବରେ ବ୍ୟବହାର କରାଯାଇଛି । ସ୍ପଷ୍ଟ ତଥା ଶାଣିତ ଭାବରେ ନାଟକରେ ଆମ ଧାର୍ମିକ ବ୍ୟବସ୍ଥା ଓ ଧର୍ମକୁ ନେଇ ରାଜନୀତି ଓ ତତ୍‌ଜନିତ ସାମ୍ପ୍ରଦାୟିକ ଦଙ୍ଗାକୁ ନାଟକରେ ସ୍ଥାନିତ କରାଯାଇଛି । ନାଟକ 'ସବାଶେଷ ଲୋକ'ରେ ଯୁଗଯୁଗର ସାମାଜିକ ବ୍ୟବସ୍ଥାକୁ ରୂପ ଦେବାକୁ ଯାଇ ମଂଚରେ ତିନୋଟି ପାହାଚ ରଖାଯାଇଛି । ସବା ଉପର ପାହାଚରେ ଅବଲୋକିତେଶ୍ୱର ମୁଦ୍ରାରେ ଧ୍ୟାନମଗ୍ନ ପକ୍ୱକେଶୀ ବୃଦ୍ଧ ମହାଲୋକ ଥିବା ବେଳେ ଶେଷ ପାହାଚରେ ଅର୍ଥାତ୍ ତୃତୀୟ ପାହାଚରେ ଗୋଟିଏ ପାର୍ଶ୍ୱରେ ହସ୍ତପଦ ବନ୍ଧନଯୁକ୍ତ ହୋଇ ସବାଶେଷ ଲୋକ । ତିନି ପାହାଚରେ ଦୁଇପାର୍ଶ୍ୱରେ ଫ୍ରିଜ ଅବସ୍ଥାରେ ମଦ୍ୟପାନ ଭଙ୍ଗୀରେ ଆଗଲୋକ, ହତ୍ୟା କରିବା ଭଙ୍ଗୀରେ ନିଜଲୋକ, ଧର୍ଷଣ ଭଙ୍ଗୀରେ ପାଖଲୋକ ଏବଂ ପ୍ରହାର କରିବା ଭଙ୍ଗୀରେ ମଝିଲୋକ । ସବାଶେଷ ଲୋକ ହେଉଛି ସମାଜର ଦଳିତ ନିଷ୍ପେଷିତ ଜନତାର ପ୍ରତିନିଧି । ସବାଶେଷ ଲୋକ ସମ୍ପର୍କରେ ଡ. ସାହୁ ନାଟକର ପ୍ରାରମ୍ଭରେ କହିଛନ୍ତି । ସେମାନଙ୍କ ନାଁରେ ସ୍ୱାଧୀନତା ଆସେ, ହେଲେ ସ୍ୱାଧୀନତାର ସ୍ୱାଦ ସେମାନେ ଚାଖିପାରନ୍ତି ନାହିଁ । ସେମାନଙ୍କ କାନ୍ଧ ଉପରେ ଗଣତନ୍ତ୍ରର ଖମ୍ବ ସ୍ଥାପନ ହୁଏ, ହେଲେ ଇତିହାସରେ ସେମାନଙ୍କୁ କେହି ପଚାରନ୍ତି ନାହିଁ । ଏହି ଅପାଙ୍‌କ୍ତେୟ ମଣିଷଙ୍କ କାହାଣୀ ହେଉଛି ସବାଶେଷ ଲୋକର କାହାଣୀ । ମହାଭାରତ ଯୁଗରେ ଏକଲବ୍ୟ, କୋଣାର୍କ ଯୁଗରେ ଧରମା ଓ ସାମ୍ପ୍ରତିକ ଯୁଗରେ ରାମପ୍ରଧାନ ସବାଶେଷ ଲୋକଙ୍କ ପ୍ରତିନିଧି । ମାନବିକ ସମ୍ବେଦନ ଦୃଷ୍ଟିକୋଣରୁ ଏହି ନାଟକକୁ ବିଚାର କରାଯାଇପାରେ । ନାଟକର ମହାଲୋକ ଚରିତ୍ର ମହାତ୍ମାଗାନ୍ଧୀଙ୍କୁ ମନେ ପକେଇଦିଏ । ନାଟକ ଶେଷରେ ମହାଲୋକ ସବାଶେଷ ଲୋକଙ୍କୁ ବିଦ୍ରୋହ ମନ୍ତ୍ରରେ ଦୀକ୍ଷିତ କରନ୍ତି । ଡଃ ସାହୁଙ୍କ ପରବର୍ତୀ ନାଟକ 'ସୁବର୍ଣ୍ଣ ସକାଳ' ହଜାର ବର୍ଷର ସହର କଟକ ନଗରୀ ଉପରେ ଲିଖିତ । ବାଇମୁଣ୍ଡି ଓ ରାଜା ମର୍କତ କେଶରୀଙ୍କ ଦ୍ୱାରା ଚାକ୍ଷୁଷ ହୋଇଥିବା ଘଟଣାବଳୀ ହିଁ । 'ସୁବର୍ଣ୍ଣ ସକାଳ' ନାଟକର କଥାବସ୍ତୁ । ନାଟକରେ ବିଧିବଦ୍ଧ ଭାବରେ କୌଣସି କାହାଣୀ ନଥିଲେ ମଧ୍ୟ କଟକ ନଗରର ବହୁବିଧ ସମସ୍ୟା ଓ କଟକବାସୀଙ୍କ ନୈତିକ ସ୍ଖଳନକୁ ହିଁ ଲକ୍ଷ୍ୟ କରି ନାଟକ ରଚିତ ହୋଇଛି । । ବେତାର ମାଧ୍ୟମରେ ଏହି ନାଟକଟି କଟକ ଆକାଶକେନ୍ଦ୍ରରୁ ପ୍ରସାରିତ ହୋଇ ବେଶ୍ । ଲୋକପ୍ରିୟତା ଲାଭ କରିଥିଲା । କୋଲାଜ୍ ଶୈଳୀର ଏହି ନାଟକଟି ଡଃ ସାହୁଙ୍କ ପୂର୍ବବର୍ତୀ ନାଟକମାନଙ୍କ ଠାରୁ ଖୁବ୍ ସହଜ ଓ ସାବଲୀଳ ହୋଇଛି । ନାଟକ 'ମୂକ' ରାଜନୈତିକ ଘଟଣା ଦୁର୍ଘଟଣାକୁ ନେଇ ହିଁ ଲେଖାଯାଇଛି । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ନାଟ୍ୟକାର ସ୍ପଷ୍ଟ ଭାବରେ ଯେପରି ଧର୍ମ ବ୍ୟବସ୍ଥାକୁ ସମାଲୋଚନା କରିଥିଲେ ଠିକ୍ ସେହି ସ୍ୱରରେ ସାମ୍ପ୍ରତିକ ନୀତିରହିତ ରାଜନୀତିକୁ 'ମୂକ'

ନାଟକରେ ସମାଲୋଚନା କରିଛନ୍ତି । ନାଟକର ଦୁଇଟି କଥା କୁହାଯାଇଛି । ପ୍ରଥମ ସବୁ ଘଟଣା ଦୁର୍ଘଟଣା ପଛରେ ରାଜନୈତିକ ନେତାମାନେ ଦାୟୀ ରହୁଛନ୍ତି । ସେମାନେ ଶାସକ ଦଳର ହୁଅନ୍ତୁ କି ବିରୋଧୀ ଦଳର ହୁଅନ୍ତୁ । ଦୁଇରେ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ କୁହାଯାଉଥିବା ଖବରକାଗଜ ଆଜି ନିଜ ସ୍ୱାଧୀନତାକୁ ସାମାନ୍ୟ ସ୍ୱାର୍ଥ ପାଇଁ ଶାସକ ଦଳକୁ ବିକ୍ରି କରିଦିଅନ୍ତି । ନାଟକର ପ୍ରୋଟାଗୋନିଷ୍ଟ ପେଶାରେ ସାମ୍ବାଦିକ । ସତ୍ୟକୁ ପ୍ରକାଶ କରିବାକୁ ଯାଇ ସେ କିପରି ନିଜର ସର୍ବସ୍ୱ ହରାଇଛି ତାହା ହିଁ ନାଟକର କଥାବସ୍ତୁ ହୋଇଛି । ଅଶୀ ପରବର୍ତ୍ତୀ ନାଟକରେ ଭାରତୀୟ ପୋଲିସ୍‌ଙ୍କୁ ପ୍ରାୟତଃ ଦୁର୍ନୀତିପରାୟଣ ଭାବରେ ଚିତ୍ରିତ କରାଯାଇଥିଲେ ମଧ୍ୟ ଡ. ସାହୁ ତାଙ୍କର ଏହି ନାଟକରେ ପୋଲିସ୍‌କୁ ସଚ୍ଚୋଟ ଅଫିସର ଭାବରେ କିନ୍ତୁ ଉପସସ୍ଥାପିତ କରିଛନ୍ତି ।

ସା ମ୍ପ୍ରତିକ ରାଜନୀତିର ଅବକ୍ଷୟକୁ ନେଇ ଡଃ ସାହୁଙ୍କ ଅନ୍ୟ ଏକ ନାଟକ 'ପୁନଶ୍ଚ ସଂଗ୍ରାମ' ରଚିତ ହୋଇଛି । ନାଟକର କାହାଣୀ ସ୍ୱାଧୀନତା ସଂଗ୍ରାମୀ ଗାନ୍ଧିବାଦୀ ନେତା ନିତାଇରାମ୍‌ଙ୍କୁ କେନ୍ଦ୍ର କରି ଗଢ଼ିଉଠିଛି । ଅର୍ଥ, କ୍ଷମତା ଓ ମାଂସପେଶୀ ଦଳରେ ବଳୀୟାନ୍ ରାଜନୈତିକ ନେତା ଓ ସେମାନଙ୍କ ପୋଷା ଗୁଣ୍ଡାମାନଙ୍କ କାର୍ଯ୍ୟକଳାପ ପ୍ରମାଣିତ କରିଛି ଯେ ଭାରତୀ ପରି ସାଧାରଣ ମଣିଷଙ୍କ ଜୀବନ ଆଜି କେତେ ମାତ୍ରାରେ ବିପନ୍ନ । ସତୁରି ଦଶକରେ ଭାରତୀୟ ରାଜନୈତିକ ଅବକ୍ଷୟର ପରିପ୍ରେକ୍ଷୀରେ ଜୟପ୍ରକାଶ ନାରାୟଣ ଦେଇଥିବା ଡାକରା ବୃଦ୍ଧ ନିତାଇରାମ୍ ନାଟକ ପୁନଶ୍ଚ ସଂଗ୍ରାମରେ ଦେଇଛନ୍ତି । ଧର୍ମ ରାଜନୀତି, ସମାଜ ବ୍ୟବସ୍ଥା ଓ କିଛି ପାରିବାରିକ କାହାଣୀ ଆଶ୍ରିତ ନାଟକ ଲେଖିଲାପରେ ନାଟ୍ୟକାର ଡଃ ସାହୁ ରଚନା କରନ୍ତି ବୌଦ୍ଧ ଯୁଗର ସମୟକୁ ନେଇ ନାଟକ 'ଉପାସନା' । ବିଜୟ ମିଶ୍ରଙ୍କ 'ତଟନିରଞ୍ଜନା' ନାଟକ ସହ 'ଉପାସନା'ର ସାମ୍ୟ ଲକ୍ଷ୍ୟ କରାଯାଏ । ନାଟକର ସଂଳାପ କାବ୍ୟିକ ହେବା ସହ ଜୀବନର କିଛି ମୂର୍ତ୍ତି ଓ କିଛି ମୂର୍ତ୍ତ ଦର୍ଶନକୁ ରୂପ ଦେଇଛି । ନାଟକ 'ଅପରାହ୍ନର ଅବଶୋଷ'ରେ ବୃଥା ଅହମିକାରେ ଜୀବନ ବଂଚୁଥିବା ଜଣେ ରାଜାଙ୍କ କାହାଣୀ ରହିଛି । ରାଜ୍ୟ ଓ କ୍ଷମତା ଚାଲିଯାଇଥିବା ଜଣେ ରାଜା କିପରି ମିଛ ଅହଂକାର ଭିତରେ ବଂଚିଛନ୍ତି ତାହାହିଁ ନାଟକର କଥାବସ୍ତୁ । କିଛି ଲୋକ ଥାଆନ୍ତି ଯେଉଁମାନେ ପରିବର୍ତ୍ତନକୁ ସ୍ୱୀକାର କରନ୍ତିନି । ସେହିପରି ଜଣେ ଚରିତ୍ର ହେଲେ ନାଟକର ରାଜା ଭାନୁପ୍ରତାପ ।

'ଅଧା ଦେଖା ସ୍ୱପ୍ନ' ନାଟକରେ ସ୍ୱାଧୀନା ପ୍ରାପ୍ତି ପରର ଅବସ୍ଥା ଚିତ୍ରିତ । ସଂଗ୍ରାମ ମରିଯାଏ । ଦେଶ ସ୍ୱାଧୀନ ହୁଏ ଗଣତନ୍ତ୍ର ଆସେ ଅନେକ ସ୍ୱପ୍ନକୁ ସାଥୀରେ ଧରି । ହେଲେ ସଂଗ୍ରାମ ଝୁରେ ମୂଲ୍ୟବୋଧକୁ । ନୂଆ ଶାସନରେ ସତ୍ୟ ଅହିଂସା ସମାଧି ନିଏ । ପ୍ରକୃତ ସଂଗ୍ରାମୀ ଏହାକୁ ସହିପାରେନି । ପ୍ରତିବାଦ କରେ । ମାତ୍ର ତା'ର ସ୍ୱର ଶାସନକଳରେ

ବିପ୍ଳବ ସୃଷଷ୍ଟି କରିପାରେନା। ତାହା ଗଣତନ୍ତ୍ରର କାନନ୍ଥରେ ଧକ୍କାଖାଇ ଫେରିଆସେ। ପୁଣିଥରେ ବିପ୍ଳବର ଆହ୍ୱାନ ସେ ଉଠାଇପାରେନା। ତା'ର ସବୁ ସ୍ୱପ୍ନ ଯେପରି ଅଧା ରହିଯାଏ। ପ୍ରାପ୍ତି-ଅପ୍ରାପ୍ତିର ଅନୁଶୋଚନା ମଧ୍ୟରେ ନାଟକ 'ଅଧା ଦେଖା ସ୍ୱପ୍ନ' ବି ଅଧା ରହିଯାଏ। ଆଉ ସେଇଥିପାଇଁ ଯାହାବି କଲେ ପାପ ନୁହେଁ। ଏହି କଥାକୁ ନେଇ ରଚିତ 'ପ୍ରାୟଶ୍ଚିତ'। ମୁହୂର୍ତ୍ତର ଭୁଲ୍ ଭାବି ସବୁକିଛି ଭୁଲିଯାଅ। ଅତୀତକୁ ଘାଂଟି ବସିଲେ ଅନୁତାପ ଛଡ଼ା ଆଉ କିଛି ମିଳିବନି। ଖିଆଲର ଖୋଳପାଟାକୁ ଫିଙ୍ଗି ଦେଇ ରଙ୍ଗୀନ୍ ଦୁନିଆକୁ ଚାଲିଆସ। ଜୀବନର ଅଖ-ଚକ ସବୁ ବଦଳିଯିବ। ଏହି ଦର୍ଶନ ପରେ ଆଦାର କରି ଡଃ ସାହୁଙ୍କ ରଚିତ ନାଟକ 'ପ୍ରାୟଶ୍ଚିତ'। ବିଳମ୍ୱ ହେଉପଛେ ନାଟକର ଶେଷରେ ସତ୍ୟର ହିଁ ବିଜୟ ଘଟେ। ସହରୀ ସଭ୍ୟତାର ନଗ୍ନ ବାସ୍ତବତା ହିଁ ନାଟକର ମୁଖ୍ୟ ବିଷୟବସ୍ତୁ। ଡ. ସାହୁଙ୍କ ନାଟକ ଉପାସନାରେ ଜୀବନ,ପ୍ରେମ,ସ୍ୱପ୍ନ ଓ ସମ୍ଭାବନାକୁ ନେଇ ଅନେକ ପ୍ରଶ୍ନ ଚିତ୍ରଲେଖା ଇତିହାସ ହେଉ ବା କିମ୍ବଦନ୍ତୀ ହେଉ, ଏହା ଘଟଣାପ୍ରବାହର ଏକ ଚିରନ୍ତନୀ ବେଗବତୀ ସ୍ରୋତ। ଏହି ପ୍ରବାହକୁ ହିଁ ଧରି ରଖିବାକୁ ଚେଷ୍ଟା କରାଯାଇଛି। ସମଗ୍ର ନାଟକରେ।

ଆଦିବାସୀମାନଙ୍କ ଉପରେ ଚାଲିଥିବା ଜୁଲମ୍ ଆତ୍ୟାଚାରର ପ୍ରତିବାଦରେ ଦାନା ବାନ୍ଧିଥିବା ଜନ ଅସନ୍ତୋଷ କିପରି ଏକ ବିସ୍ଫୋରଣରେ ରୂପାନ୍ତରିତ ହେଉଛି ତାର ଏକ ସଫଳ ନମୁନା ହେଉଛି 'କ୍ରାନ୍ତି'। ଏହି ବିପ୍ଳବ,ସୃଷ୍ଟିର ଆଦିକାଳରୁ ଚାଲିଆସିଛି ଏବଂ ଚାଲିଥିବ ମଧ୍ୟ। ସେଇଥିପାଇଁ ନାଟକ ନାମ ହୋଇଛି 'କ୍ରାନ୍ତି'। ନକ୍ସଲ ଆନ୍ଦୋଳନର ହିଁ ସାର ହେବ। ଏହାହିଁ ସରକାର ତଥା ସମାଜ ପାଇଁ କ୍ରାନ୍ତିର ଏକ ଚେତାବନୀ।ବ୍ୟବସାୟିକ ରଙ୍ଗମଂଚରେ ପତନ ପାଇଁ ଦାୟୀ କେତେକ ସମସ୍ୟାକୁ ଜୀବନ୍ତଭାବେ ଉପସ୍ଥାପନକରିଛି ନାଟକ 'ନିଷିଦଦ୍ଧ ସଂଳାପ'। ହଜିଲା ଅତୀତର କେତୋଟି ନିଷିଦ୍ଧ ଦିଗପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିଛି ନାଟକ। ନାଟକ ମଧ୍ୟରେ ଆଉ ଏକ ନାଟକ ସୃଷ୍ଟି ।ହୋଇଛି। ଏହା କେବଳ କଳାକାର ଜୀବନର ଅକୁହା କଥା କହିନାହିଁ। କହିଛି ବ୍ୟବସାୟିକ ମଂଚର ଅନେକ ଗୁମର କଥା। ରାଜନୀତିର ଛକାପଞ୍ଝା ଭିତରେ ଆଦର୍ଶର ଆତ୍ମହତ୍ୟା ହେଉଛି ନାଟକ। ଦୂର ଆକାଶର ତାରା'ର ଅନ୍ତଃସ୍ୱର ନୀତି ନିଷ୍ଠ ଜଣେ ସଚ୍ଚୋଟ ଶିକ୍ଷକଙ୍କ ଜୀବନରେ ହା-ହୁତାଶ ସାଙ୍ଗକୁ ଆଗାମୀ ପିଢୀର ପଥଭ୍ରଷ୍ଟ ଆଚରଣ ଯେମିତି ନାଟକୀୟ ସେତିକି ହୃଦ୍ୟ ମଣିଷର ଅନ୍ତଃସ୍ୱରୂପକୁ ଉଦ୍‌ଘାଟନ କରିବାରେ ସମୟ ହୁଏତ ସଫଳ ହୋଇଛି। ହେଲେ ସେତେବେଳକୁ ଘଟଣାଗୁଡ଼ିକ ଦୁର୍ଘଟଣାରେ ପରିବର୍ତ୍ତିତ ହୋଇସାରିଛନ୍ତି କାଶ୍ମୀର ପ୍ରସଙ୍ଗର ଘଟଘଟା ନାଟକକୁ କରୁଣାର୍ଦ୍ରକରି ଗଢ଼ିତୋଳିଛି। ଯାତ୍ରାଦୁନିଆର କିଛି ଅକୁହା କଥାର କଳାତ୍ମକ ରୂପାୟନ ହେଉଛି ନାଟକ 'ଶେଷକଥା'। ମାତ୍ର ଶେଷକଥାର

ସିଦ୍ଧାନ୍ତ ଶେଷସିଦ୍ଧାନ୍ତ ନୁହେଁ। ସମାଧାନ କେବଳ ସମୟ ହିଁ କରିପାରିବ। ସମାଧାନ ସହଜରେ ହୋଇଗଲେ ସମାଜ ସସ୍ଥାଣୁ ହୋଇଯିବ, ଗତି ବାଧାପ୍ରାପ୍ତ ହେବ। ତେଣୁ ସମସ୍ୟା ସାଥିରେ ବଂଚିନାହିଁ ଜୀବନରନୂତନ ସ୍ୱାଦକୁ ମହକିତ କରେ। ଏହା ନାଟକର କଥା ମାତ୍ର ଶେଷକଥା ନୁହେଁ। ନାଟକର କଥାବସ୍ତୁ ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ। ନାଟ୍ୟକାର ତା'ର ବକ୍ତବ୍ୟକୁ ପ୍ରକାଶ କରିବା ପାଇଁ ଉପଯୁକ୍ତ କଥାବସ୍ତୁ ଖୋଜେ।

୧୯୮୦ ବେଳକୁ ଓଡ଼ିଆ ନାଟକରେ ଯେଉଁ ପରିବର୍ତ୍ତନର ସ୍ୱର ଶୁଭିଲା ତାହା ଆଦୌ ଆକସ୍ମିକ ନଥିଲା। ଏହା ପଛରେ କିଛି ସଚେତନ ନାଟ୍ୟପ୍ରେମୀଙ୍କ ଅନ୍ତରିକ ପ୍ରଚେଷ୍ଟା ଥିଲା। ଏହି ଅବଧିର ନାଟ୍ୟକାରମାନେ ପୁଣିଥରେ ଦର୍ଶକଙ୍କୁ ମଂଚ ପାଖକୁ ଫେରେଇ ଆଣିବା ପାଇଁ ଯତ୍ନ ଆରମ୍ଭ କଲେ। ବ୍ୟବସାୟିକ ମଂଚରେ ଶେଷ ପ୍ରଦୀପ ଲିଭିଯିବା ପରେ ସୌଖୀନ ମଂଚର କର୍ମକର୍ତାମାନେ ବହୁ କଷ୍ଟରେ ଅର୍ଥ ଯୋଗାଡ଼ କରି ବର୍ଷକୁ ଦୁଇ ତିନୋଟି ନାଟକ ଫାଙ୍କା ପ୍ରେକ୍ଷାଳୟରେ ମଂଚସ୍ଥ କଲେ।

ପ୍ରକୃତ କଥା ଦେଲା ୧୯୮୦ ବେଳକୁ ନାଟକାରମାନେ ସେମାନଙ୍କ ସାମାଜିକ ଅଙ୍ଗୀକାର ପ୍ରତି ଖୁବ୍ ସଚେତନ ହୋଇଉଠିଲେ। ଏଇଠି Art for art Saks ର ପ୍ରାସଙ୍ଗିକତା ବଦଳିଗଲା ପୂର୍ବରୁ ଚାଲିଥିବା ମନ ଗହୀରର ଚାଷ ପଦାକୁ ସ୍ପଷ୍ଟ ଦିଶିଲା। ଶିକ୍ଷାର ପ୍ରସାର, ଯୋଗାଯୋଗର ସୁବିଧା,ସମ୍ବାଦ ପରିବେଷଣରେ ବୈପ୍ଳବିକ ପରିବତ୍ତନ ମାନବାଧିକାର ସମ୍ବନ୍ଧୀୟ ଜ୍ଞାନ ମଣିଷକୁ ରାଜନୈତିକ ସଚେତନତା ଆଣିଦେଇଛି। ସ୍ୱାଧୀନ ଭାରତର ରାଜନୈତିକ ଦଳ ଓ ରାଜନୈତିକ ନେତାମାନଙ୍କର କାର୍ଯ୍ୟକଳାପ ସାଧାରଣ ମଣିଷକୁ ରାଜନୀତି ପ୍ରତି କୌତୂହଳୀ କରାଇଛି। ତେଣୁ ଚଳନ୍ତି ଚେତନାର ନାଟକ ରାଜନୈତିକ (political) କିମ୍ବା ରାଜନୈତିକ-ସାମାଜିକ (social political) କଥାବସ୍ତୁ ଚୟନ କରିବାକୁ ବାଧ୍ୟ ହୋଇଛି।

ଡ. ନାରାୟଣ ସାହୁଙ୍କ ନାଟକ 'ମୂକ'ର କଥାବସ୍ତୁ ସଂପୂର୍ଣ୍ଣ ଭାବରେ ରାଜନୀତିକୁ ଆଶ୍ରାକରି ଗଠିତ ହୋଇଛି। ନାଟକର କଥାବସ୍ତୁ କାହାଣୀଧର୍ମୀ। ରାଜନୀତିର ପଶାପାଲିରେ ଅଭିଜିତ୍ ପରି ନିର୍ଭୀକ ସାମ୍ବାଦିକ କିପରି ବଳି ପଡ଼େ ତାର ମାର୍ମିକ ଚିତ୍ର ଉପସସ୍ଥାପନା ହୋଇଛି। ମୁଖ୍ୟମନ୍ତ୍ରୀ ମହୀପାଳ ଓ ବିରୋଧୀଦଳ ନେତା ବାଇମନ ବାହାରକୁ ଅଲଗା କଥା କହୁଥିଲେ ମଧ୍ୟ ଭିତରକୁ ଏକା। ଦିନ ଦିପ୍ରହରରେ ଜଳଗହଳି ଛକରେ ମୁଖ୍ୟମନ୍ତ୍ରୀଙ୍କ ପାଳିତ ଗୁଣ୍ଡା ସଲିମ୍ ବିରୋଧୀଦଳର ଜଣେ କର୍ମୀକୁ ହତ୍ୟାକଲେ। ଏହି ସତ୍ୟ କଥାକୁ ପ୍ରକାଶ କରିବାକୁଯାଇ ଅଭିଜିତ ଓ ତା ପତ୍ନୀ ଅଳକା ସତ୍ୟବଚନ ଖବର କାଗଜରୁଚାକିରି ହରେଇଛନ୍ତି। ସାକ୍ଷୀ ଦେଇ ପାରିବନି ବୋଲି ଅଳକାର ଜିଭ କାଟି ଦିଆଯାଇଛି। ନର୍ସିଂହୋମ୍‌ରେ ଅଳକା ମରିବା ପୂର୍ବରୁ ଏକ ମୂକ ପିଲା ଜନ୍ମ କରେ। ଘଟଣାକୁ ଅର୍ଥ କରି

ପୋଲିସ୍ ଇନ୍‌ସ୍‌ପେକ୍ଟର କୁହନ୍ତି, "ଯେଉଁଠି ପ୍ରତିବାଦର ସ୍ୱର ଲୋପପାଏ,ସେଠି ଏହିଭଳି ମୂକମାନେ ଜନ୍ମନିଅନ୍ତି।"

୧୯୯୭ରେ ଅଭିନୀତ ଡ. ନାରାୟଣ ସାହୁଙ୍କ 'ପୁନଶ୍ଚ ସଂଗ୍ରାମ'ର କଥା ବସ୍ତୁ ସ୍ୱାଧୀନତା ପରବର୍ତ୍ତୀ ଭାତରବର୍ଷର କାହାଣୀ। ବଗୁଲି ଦାସ ଓ ଗାଲମାଧବଙ୍କ ପରି ରାଜନୀତିଆ କ୍ଷମତା ବଳରେ ଯହା କିଛି ବି କରିପାରନ୍ତି ଓ ଗାନ୍ଧୀଜୟନ୍ତୀ ଦିନ ଗାନ୍ଧୀଛକରେ ବିଦେଶୀମଦ ଦୋକାନର ଉଦ୍‌ଘାଟନ ପାଇଁ ନିତାଇରାମ ସମାଧାନର ରାସ୍ତା ଦେଖାଇ କୁହନ୍ତି, "ବିଦ୍ରୋହ। ଗଣ ବିଦ୍ରୋହ। ଏ ଦେଶକୁ ଦୁର୍ନୀତି ରାକ୍ଷସ କବଳରୁ ମୁକ୍ତ କରିବାକୁ ହେଲେ ବିପ୍ଳବ ଦରକାର। ଆଉ ସେ ବିପ୍ଳବ ହେଉଛି ସଂପୂର୍ଣ୍ଣ ବିପ୍ଳବ। ଗୋଟେ ଟୋଟାଲ୍ ରିଭୋଲ୍ୟୁସନ ଦରକାର।"

ଡ. ନାରାୟଣ ସାହୁଙ୍କ 'ଓ ସବାଶେଷ ଲୋକ' ଓ 'ସୁବର୍ଣ୍ଣ ସକାଳ' ନାଟକର କଥାବସ୍ତୁ ସାମାଜିକ ଘଟଣାଶ୍ରିତ। ସମାଜର ନିମ୍ନ ଧାଡ଼ିରେ ଠିଆ ହୋଇ ଉପର ଧାଡ଼ିର ଲୋକମାନଙ୍କ ଦ୍ୱାରା ନିଷ୍ପେସିତ ଓ ପୀଡ଼ିତ ହେଉଥିବା ମଣିଷମାନଙ୍କର କାହାଣୀ ହେଉଛି କାହାଣୀ ସବାଶେଷ ଲୋକର। ସେହିପରି ସୁବର୍ଣ୍ଣ ସକାଳର କଥାବସ୍ତୁ କୋଲାଜ୍ ଶୈଳୀରେ ସମାଜର ବିଭିନ୍ନ ସମସ୍ୟାକୁ ଉପସସ୍ଥାପିତ କରିଛି। ହଜାର ବର୍ଷର ସହର କଟକକୁ ଦେଖିବା ପାଇଁ ଦିନେ ଦୀପାବଳୀ ଅମାବାସ୍ୟାରେ ରାଜା ମର୍କତ କେଶରୀ ଓ ବାଇମୁଣ୍ଡି ଆସିଛନ୍ତି। ସେମାନଙ୍କ ଆଖିରେ ହିଁ ନାଟ୍ୟକାର ଆଜିର କଟକ ସହରକୁ ଦେଖାଇଦେଇଛନ୍ତି। ୧୯୮୦ ପରବର୍ତ୍ତୀ ନାଟ୍ୟଧାରାରେ ଧର୍ମ ଓ ରାଜୀନତିକୁ ଯେଉଁଭାବରେ ଉପସସ୍ଥାପିତ କରାଯାଇଛି ତାହା ପୂର୍ବରୁ କେବେବି ସମ୍ଭବ ନଥିଲା। ଡଃ ନାରାୟଣ ସାହୁଙ୍କ ଆଶ୍ରା ଖୋଜିବୁଲୁଥିବା ଈଶ୍ୱର ନାଟକରେ ଧର୍ମୀୟ ରାଜନୀତି ଓ ଧାର୍ମିକ ବଡ଼ପଣ୍ଡାମାନଙ୍କ ବିରୋଧରେ ସିଧାସଳଖ ସ୍ୱର ଉତ୍ତୋଳନ କରାଯାଇଛି। ପରିବର୍ତ୍ତିତ ସମୟ ଓ ପରିବର୍ତ୍ତିତ ପରିବେଶରେ ଧର୍ମ, ଖୋଳପା ମାତ୍ର ପାଲଟିଯାଇଛି। ଧର୍ମ ସଂପ୍ରଦାୟ ନାମରେ ଦଙ୍ଗା ଆଜି ନିତିଦିନିଆ ଘଟଣା ପାଲଟିଛି। ନାଟକରେ ଖବର ପ୍ରଚାର ଶୈଳୀରେ ବାବ୍ରୀ ମସ୍‌ଜିଦ୍ ଭାଙ୍ଗିବା ଘଟଣା ଏବଂ ତତ୍‌ଜନିତ ପରିସସ୍ଥିତିକୁ ସିଧାସଳଖ ଉପସସ୍ଥାପନା କରାଯାଇଛି। ଭୋପାଳ ଗ୍ୟାସ ଦୁର୍ଘଟଣାରୁ ବର୍ତ୍ତିଯାଇଥିବା ମେରୀ, ମନ୍ଦିରର ମହାସେବକଙ୍କ ଦ୍ୱାରା ଧର୍ଷିତା ହୋଇ ମୃତ୍ୟୁବରଣ କରେ, ଅଥଚ ଖୋଦ୍ ଈଶ୍ୱରଙ୍କୁ ଏଥିପାଇଁ ଧର୍ଷଣକାରୀ ଓ ହାତ୍ୟାକରୀ କହି କାଠ ଗଡ଼ାରେ ଠିଆକରାଯାଏ। ଏହି ଘଟଣାରୁ ରାଜନୈତିକ ଫାଇଦା ଉଠାଇବାକୁ ସୁଲେମାନ୍ ମେରୀର ସ୍ୱାମୀ ଯୋସେଫ୍‌ଙ୍କୁ ବ୍ୟବହାର କରେ। ନାଟକର କଥାବସ୍ତୁର ଏକ ସୁସଂହତ କାହାଣୀର ଧାରାନାହିଁ। ଏପରି ନାଟକର କଥାବସ୍ତୁ କାହାଣୀ ପ୍ରଧାନ ନୁହେଁ, ବକ୍ତବ୍ୟ ପ୍ରଧାନ।

ଡ. ନାରାୟଣ ସାହୁଙ୍କ ଓସବାଶେଷ ଲୋକ ରେ ନିର୍ଦ୍ଦିଷ୍ଟ ଜଣେ ନାୟକ ନାହିଁ। ସମାଜର ତଳସ୍ତରରେ ଥିବା ସବୁ ମଣିଷଙ୍କୁ ସବାଶେଷ ଲୋକ ଭାବରେ ଚିହ୍ନଟ କରାଯାଇଛି। ସେହିମାନେ ହିଁ ପ୍ରକୃତ ନାୟକ କିନ୍ତୁ ସେହିମାନେ ହିଁ ସବୁବେଳେ ନିଷ୍ପେଷିତ। 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱରଙ୍କୁ ଚରିତ୍ର କରାଯାଇଥିଲେ ମଧ୍ୟ ଈଶ୍ୱର କିନ୍ତୁ ନାୟକ ନୁହଁନ୍ତି ଅନେକ ଚରିତ୍ର ଅନେକ ଘଟଣା ଦେଖିବାକୁ ମିଳେ ନାଟକରେ। କିନ୍ତୁ ନାଟକରେ ଗୋଟିଏ ଧରାବନ୍ଧା କାହାଣୀ ନାହିଁ। କୋଲାଜ୍ ଶୈଳୀରେ ଲିଖିତ ଏହି ନାଟକରେ ଏକକାଳୀନ ଅନେକ କାହାଣୀର ଅବତାରଣା କରାଯାଇଛି। ବାଇମୁଣ୍ଡି ଓ ରାଜା ନାଟକର ମୁଖ୍ୟ ଚରିତ୍ର ହୋଇଥିଲେ ମଧ୍ୟ ନାଟକରେ ନିର୍ଦ୍ଦିଷ୍ଟ ଭାବରେ କୌଣସି ଏକ ନାୟକ ଉପରେ ଗୁରୁତ୍ୱ ଦିଆଯାଇନି। ଡଃ ସାହୁଙ୍କ ପୁନଶ୍ଚ ସଂଗ୍ରାମର ସ୍ୱାଧୀନତା ସଂଗ୍ରାମୀ ଗାନ୍ଧୀବାଦୀ ନିତାଇରାମ ହିଁ ନାୟକ। ନାଟକ ମୂକରେ ଅଭିଜିତ୍ ଜଣେ ବିଦ୍ରୋହୀ ଚରିତ୍ର। ସାମ୍ବାଦିକ ଅଭିଜିତ୍ ସତ୍ୟକୁ ପ୍ରକାଶ କରିବାକୁ ଯାଇ ସାମ୍ନା କରିଥିବା କଷ୍ଟକୁ ନାଟକରେ ଚିତ୍ରାୟିତ କରାଯାଇଛି। ନୈତିକ ସାହସ ସହ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଅଂଟାଭିଡ଼ି ଛିଡ଼ା ହୋଇଥିବା ଅଭିଜିତ୍ ହିଁ ନାଟକର ନାୟକ।

ନାଟକର ମୁଖ୍ୟ ଚରିତ୍ରକୁ ଗୁରୁତ୍ୱ ଦେବାକୁ ଖଳନାୟକ ଚରିତ୍ରକୁ ଅଣାଯାଇଥାଏ। ନାୟକ ସୁଗୁଣର ଅଧିକାରୀ ହୋଇଥିବା ବେଳେ ଖଳନାୟକ ଦୁର୍ଗୁଣର ଅଧିକାରୀ।ଡଃ ନାରାୟଣ ସାହୁଙ୍କ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱରଙ୍କ ପୂଜକ ମହାସେବକ ନିଜର କୁକର୍ମ ପାଇଁ ଓଡ଼ିଆ ନାଟ୍ୟସାହିତ୍ୟରେ ନିଶ୍ଚୟ ମନେରହିବ। ମନ୍ଦିରରେ ଧର୍ଷଣ ସହ ଈଶ୍ୱରଙ୍କୁ ପଦଚ୍ୟୁତ କରିବାକୁ ଧମକ ଦେଇପାରୁଥିବା ମହାସେବକର ଆଉ ବିକଳ୍ପ ନାହିଁ। ଶ୍ରୀଯୁକ୍ତ ସାହୁଙ୍କ 'ମୂକ' ଓ 'ପୁନଶ୍ଚ ସଂଗ୍ରାମ' ନାଟକରେ ରାଜନୈତିକ ନେତାମାନଙ୍କୁ ଖଳନାୟକ ରୂପେ ଚିତ୍ରିତ କରାଯାଇଛି। 'ମୂକ' ନାଟକରେ ସାମ୍ବାଦିକ ଖଳନାୟକ ରୂପେ ଚିତ୍ରିତ କରାଯାଇଛି। 'ମୂକ' ନାଟକରେ ସାମ୍ବାଦିକ ସମ୍ପ୍ରତି ଭୋଗୁଥିବା ଦୁଃଖ ଯନ୍ତଣାର କାରଣ ହେଉଛନ୍ତି ରାଜ୍ୟର ଖୋଦ୍ ମୁଖ୍ୟମନ୍ତ୍ରୀ। 'ସୁବର୍ଣ୍ଣ ସକାଳ' ନାଟକରେ ଆମର ଚଳନ୍ତି ସମୟକୁ ଚିତ୍ରିତ କରାଯାଇଛି।

ନାଟକରେ ନାୟକ,ପ୍ରତିନାୟକ ଓ ନାୟିକା ଆଦିଙ୍କୁ ଛାଡ଼ିଦେଇ ଆହୁରି ଅନେକ ମୁଖ୍ୟ ଓ ଗୌଣ ଚରିତ୍ରଙ୍କ ସମାଗମ ହୋଇଥାଏ। ସେଥିମଧ୍ୟରୁ କିଛି ଟାଇପ୍ ଚରିତ୍ର ମଧ୍ୟ ଥାଆନ୍ତି। ଅନେକ ସମୟରେ ବିଶେଷ ପ୍ରୟୋଜକ ଉପଲକ୍ଷ୍ୟେ ମୁଖ୍ୟ ଚରିତ୍ର ମଧ୍ୟ ଟାଇପ୍ ଚରିତ୍ର ରୂପରେ ଉଭା ହୋଇଥାଏ। ନାଟକରେ ଗୌଣ ବା ପାର୍ଶ୍ୱ ଚରିତ୍ରମାନଙ୍କ ଅବସ୍ଥିତି ହିଁ ଅନ୍ୟ ମୁଖ୍ୟ ଚରିତ୍ରମାନଙ୍କୁ ସହାୟତା କରିବା ସହ ନାଟକର ଅଗ୍ରଗତି ଓ ପ୍ରକାଶ କ୍ଷମତାକୁ ତ୍ୱରାନ୍ୱିତ କରନ୍ତି।

ଡ. ନାରାୟଣ ସାହୁଙ୍କ ଓସବାଶେଷ ଲୋକର ନାଟକରେ ଭିନ୍ନ ସମୟର କଥା କୁହାଯାଇଥିଲେ ମଧ୍ୟ ନଅଟି ଚରିତ୍ର ସେ ସମୟର ପ୍ରତିନିଧିତ୍ୱ କରନ୍ତି।'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱର ଓ ସମୟକୁ ରୂପ ପ୍ରଦାନକରାଯାଇଛି । ମହାଦେବଙ୍କର ଅତ୍ୟାଚାର ଓ ମନମୁଖୀ କାର୍ଯ୍ୟକଳାପରେ ଅନ୍ୟ ଚରିତ୍ରମାନେ ବ୍ୟତିବ୍ୟସ୍ତ । ଡ. ସାହୁଙ୍କ 'ପୁନଶ୍ଚ ସଂଗ୍ରାମ' ନାଟକରେ ପୋଲିସ୍ ଇନିସ୍‌ପେକ୍‌ଟର ପରମଗୁରୁ ଓ କନେଷ୍ଟବଳ ମାଳପାଣି ଭାରତୀୟ ପୋଲିସର ନଗ୍ନରୂପ ପ୍ରକାଶ କରନ୍ତି। ସେହିପରି ଭାରତୀୟ ରାଜନୈତିକ ନେତାମାନେ ଅସଲ ସ୍ୱରୂପ ଜଣାପଡ଼େ ନାଟକ 'ମୂକ'ରେ। ନାଟକରେ ମୁଖ୍ୟ ପ୍ରୋଟାଗୋନିଷ୍ଟ ସାମ୍ବାଦିକ ଅଭିଜିତ୍ ସତ୍ୟକୁ ସହାୟତା କରିବାକୁ ଯାଇ ବେଶ୍ ମୂଲ୍ୟ ଦିଏ। ଗଣତନ୍ତ୍ରର ଚତୁର୍ଥସ୍ତମ୍ଭ କୁହାଯାଉଥିବା ସମ୍ବାଦପତ୍ର ସତ୍ୟବଚନର ସଂପାଦକ ପରମଗୁରୁ ଏଠାରେ ଜଣେ ସୁବିଧାବାଦୀ ଦୁର୍ବଳ ଚରିତ୍ର। ସ୍ୱାର୍ଥସାଧନ ପାଇଁ ସେ ନିଜର ନିଜତ୍ୱ ମଧ୍ୟ ବିକିଦେଇ ପାରନ୍ତି। ନାଟକ 'ଉପାସନା'ରେ ବିଜିଗୁପ୍ତ ଓ ଚିତ୍ରଲେଖା ହିଁ ମୁଖ୍ୟ ଚରିତ୍ର। ନାଟକରେ କମାରଗିରି ଜଣେ ସ୍ଖଳିତ ଯୋଗୀ ଭାବରେ ଉପସ୍ଥାପିତ ହୋଇଛନ୍ତି। ଯେଉଁ ଚିତ୍ରଲେଖାକୁ ସେ ଶିଷ୍ୟା ଭାବରେ ଗ୍ରହଣ କରିବାକୁ କୁଣ୍ଠିତ ଥିଲେ ସେହି ଚିତ୍ରଲେଖା ପ୍ରତି ଆସକ୍ତ ହୋଇ ତପଭ୍ରଷ୍ଟ ହୋଇଛନ୍ତି।

ନାଟକର ଏକ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହେଉଛି ଭାଷା। ଭାଷା ବିନା ଭାବପ୍ରକାଶ ଅସମ୍ଭବ। ନାଟକର ଭାବ ସଂଳାପ ମାଧ୍ୟମରେ ପରିପ୍ରକାଶ ହୋଇଥିବା ବେଳେ ସଂଳାପ ଭାଷା ମାଧ୍ୟମରେ ହିଁ ପ୍ରକାଶକ୍ଷମ ହୋଇଥାଏ। ନାଟକର ଚରିତ୍ରମାନେ କହୁଥିବା ଭାଷା ହେଉଛି ନାଟକର ଭାଷା। ଇଂରାଜୀ ନାଟକର ଚରିତ୍ର ଇଂରାଜୀ ଭାଷାରେ କଥା ହେଉଥିବା ବେଳେ ସଂସ୍କୃତ ନାଟକର ଚରିତ୍ରମାନେ ସଂସ୍କୃତଭାଷାରେ ସଂଳାପ କହିଥାନ୍ତି। ସେହିପରି ଓଡ଼ିଆ ଭାଷାରେ ଓଡ଼ିଆ ନାଟକର ଚରିତ୍ରମାନେ କଥା ହୋଇଥାନ୍ତି। କିନ୍ତୁ ଏ ସୂତ୍ରଟି ଭାଷା ସମ୍ପର୍କରେ ଏକ ସ୍ଥୁଳ ଧାରଣା ମାତ୍ର।

ଡ. ନାରାୟଣ ସାହୁଙ୍କ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକର ପ୍ରାରମ୍ଭରେ ମଦାରି ଭାଷା ବ୍ୟବହୃତ। ହଜାର ବର୍ଷର ସହର କଟକ ନଗରୀ ଉପରେ ଲିଖିତ ନାଟକ 'ସୁବର୍ଣ୍ଣ ସକାଳ'ରେ କଟକୀ ଭାଷା ବ୍ୟବହାର କରାଯାଇଛି। ତେବେ ଡ. ସାହୁ ତାଙ୍କର ବୌଦ୍ଧଯୁଗ ଉପରେ ଲିଖିତ ନାଟକ 'ଉପାସନା'ରେ ପୁରୁଣା ସମୟର ପରିବେଶ ସୃଷ୍ଟି କରିବା ପାଇଁ ଚରିତ୍ରମାନଙ୍କ ମୁହଁରେ ତତ୍‌ସମବହୁଳ ଶବ୍ଦଥିବା ଭାଷା ଦେଇଛନ୍ତି।

ଶୈଳୀ ଶବ୍ଦଟିର ଅର୍ଥ ବ୍ୟାପକ। ଭାଷା ପ୍ରସଙ୍ଗରେ ଶୈଳୀ ଭାଷା ପ୍ରୟୋଗର ନିର୍ଦ୍ଦିଷ୍ଟ ଭଙ୍ଗୀ ବା ରୀତିକୁ ବୁଝାଉଥିବାବେଳେ ନାଟକ କ୍ଷେତ୍ରରେ ମଧ୍ୟ ପ୍ରୟୋଗ ଓ ପ୍ରକାଶର ନିର୍ଦ୍ଦିଷ୍ଟ ଭଙ୍ଗୀ ବା ରୀତି କୁ ହିଁ ବୁଝାଏ।

'ଓ ସବାଶେଷ ଲୋକ' ନାଟକରେ କୋଲାଜ୍ ଶୈଳୀ ବ୍ୟବହୃତ ହୋଇଛି। ବିଭିନ୍ନ ଯୁଗରେ ସବାଶେଷ ଲୋକକୁ କିପରି ନିଷ୍ପେଷିତ କରାଯାଇଛି ତାର ଉପସ୍ଥାପନ ପାଇଁ ନାଟ୍ୟକାର ମହାଭାରତ ଯୁଗରୁ ସାମ୍ପ୍ରତିକ ଯୁଗ ପର୍ଯ୍ୟନ୍ତ ଆସିଛନ୍ତି। 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକର ପ୍ରାରମ୍ଭରେ ମଦାରି ଭାଷା ବ୍ୟବହୃତ ହୋଇଛି। ଓସ୍ତାଦ୍ ବିଷୟ ପ୍ରବେଶ କରାଇଛି। ନାଟକରେ ଈଶ୍ୱର ଓ ସମୟକୁ ବ୍ୟକ୍ତିରୂପ ପ୍ରଦାନ କରାଯାଇଛି। ତେବେ ଡ. ସାହୁଙ୍କ ସଫଳ ନାଟକ 'ସୁବର୍ଣ୍ଣ ସକାଳ'ସଂପୂର୍ଣ୍ଣ ଭାବରେ କୋଲାଜ୍ ଶୈଳୀକୁ ଅନୁସରଣ କରିଛି। ଚରିତ୍ରମାନେ ବିଭିନ୍ନ ଘଟଣା ଓ ବିଭିନ୍ନ ସମୟରେ ଭିନ୍ନଭିନ୍ନ ଅଭିନେତା ଭାବରେ ଅଭିନୟ କରିଛନ୍ତି। କଟକ ସହରର ନିତିଦିନିଆ ଜୀବନକୁ ଏତେ କମ୍ ସମୟ ମଧ୍ୟରେ ଉପସସ୍ଥାପନ କରିବାପାଇଁ ଏପରି ଶୈଳୀ ନାଟ୍ୟକାରଙ୍କୁ ଖୁବ୍ ସାହାଯ୍ୟ କରିଛି। ନାଟକ 'ପୁନଶ୍ଚ ସଂଗ୍ରାମ' ଓ 'ମୂକ'ରେ ସେପରି କିଛି ଆଖିଦୃଶିଆ ଶୈଳୀର ପରୀକ୍ଷା କରାଯାଇନି। ତେବେ 'ମୂକ' ନାଟକରେ flash back ଟେକ୍‌ନିକ୍ ବ୍ୟବହୃତ ହୋଇଛି। ନାଟକର ନାୟିକା ଅଳକାର ପ୍ରେତାତ୍ମା ଶିବଭକ୍ତମାନଙ୍କ ଆଗରେ ତା'ର କାହାଣୀ ବର୍ଣ୍ଣନା କରିଛି। ସଂଳାପ ମାଧ୍ୟମରେ ଦର୍ଶକ ଓ ଅଭିନେତାଙ୍କ ମଧ୍ୟରେ ସଂଯୋଗ ସ୍ଥାପିତହୁଏ। "ସଂଳାପ କେବଳ ତୁଣ୍ଡର କଥା କିମ୍ବା ସାଧାରଣ କଥୋପକଥନ ନୁହେଁ। ଏହା ନାଟକର ଚରିତ୍ରଗୁଡ଼ିକୁ ଅଭିବ୍ୟକ୍ତ କରେ କାହାଣୀରେ ଗଣିତ ଚମତ୍କାରିତା ସୃଷ୍ଟି କରେ ନାଟ୍ୟକାରଙ୍କ ଦୃଷ୍ଟିକୋଣ ବା ଜୀବନ ଦର୍ଶନ ଉଦ୍‌ଘାଟିତ କରେ।

'ଓ ସବାଶେଷ ଲୋକ' ଓ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର'ରେ ଯେଉଁ ସଂଳାପ ବ୍ୟବହାର କରାଯାଇଛି ତାହା ଆହୁରି ସରଳ ଓ ତୀକ୍ଷ୍ଣ ହୋଇଛି ନାଟକ 'ସୁବର୍ଣ୍ଣ ସକାଳ'ରେ। କଟକ ସହରର ସ୍ୱତନ୍ତ୍ର ଭାଷାକୁ ନେଇ ଚରିତ୍ରଙ୍କ ସମାଗମ ହୋଇଛି। ସିଧାସଳଖ ସମାଜର ଦୁର୍ଗୁଣତକ ପଦାରେ ଆଣି ଥୋଇଦିଆଯାଇଛି। ମିଛ ଅନ୍ଧ ଭିକାରୀ ଧରା ପଡ଼ିଗଲା ପରେ କୁହେ, ଏଡ଼େ ଏଡ଼େ ମନ୍ତ୍ରୀ ପ୍ରଧାନ ମନ୍ତ୍ରୀ, ହାୱାଲାରେ ଦେଶଟାକୁ ଟିକିଟିକି କରି ଖାଇଗଲେ,ତାଙ୍କୁ ତ କିଛି କହି ପାରିଲାନି ? ଆଉ ଏଇ ନକଲି ଭିକାରୀଟା ଉପରେ ମୁହଁ ତୋଡ଼। କୁଷ୍ଠ ରୋଗୀମାନଙ୍କ ଦଳ ଚାନ୍ଦା ମାଗିବାକୁ ଆସି ଧମକ ଦିଅନ୍ତି।

କଟକ ସହରର ଅବସ୍ଥା ଦେଖି ରାଜା ମର୍କତ କେଶରୀ ଓ ବାଇମୁଣ୍ଡିଙ୍କର କଥାବାର୍ତ୍ତାରେ ଅସରନ୍ତି କ୍ଷୋଭ ଓ ଯନ୍ତ୍ରଣା ଫୁଟି ଉଠିଛି। ହାଇକୋର୍ଟ ଛକରେ ଦିନ ଦ୍ୱିପ୍ରହରରେ ହତ୍ୟାକାଣ୍ଡ ଦେଖି ବାଇମୁଣ୍ଡିଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ରାଜା କହିଛନ୍ତି, "ନର୍ଦ୍ଦମାର ପାଣି ଓ ମଶାର ଚୁମ୍ବନ ଏ ନଗରୀର ସବୁ ମଣିଷଙ୍କୁ ଅଥର୍ବ କରିଦେଇଛି। ସେମାନେ ମେରୁଦଣ୍ଡବିହୀନ ପ୍ରାଣୀ ପାଲଟି ଯାଇଛନ୍ତି।" ରାଜନୈତିକ ପରିସ୍ଥିତି ଓ ସମସ୍ୟାକୁ ନେଇ ଡଃ ସାହୁଙ୍କ ଲିଖିତ 'ମୂକ' ନାଟକରେ ନାଟ୍ୟକାର ପ୍ରୋଟାଗୋନିଷ୍ଟ ଅଭିଜିତ୍‌ର ମୁଖରେ ଯେପରି ବିଦ୍ରୋହାତ୍ମକ ନିର୍ଭୀକ ସଂଳାପ ଦେଇଛନ୍ତି ଶାସକ ଦଳର

ନେତା ମହୀପାଳ ଓ ବିରୋଧୀ ଦଳର ନେତା ବାଇମନ ମୁହଁରେ ସେପରି ଭାରତୀୟ ଜନନେତାଙ୍କ ପ୍ରକୃତ ସ୍ୱରୂପ ଦେଖାଇ ଦେଇଛନ୍ତି । ନାଟ୍ୟକାରଙ୍କ ବୌଦଦ୍ଧଯୁଗର କାହାଣୀକୁ ନେଇ ଲିଖିତ ନାଟକ 'ଉପାସନା'ର ସଂଳାପ ଗୁଡ଼ିକ ବେଶ୍ କାବ୍ୟିକ । ପ୍ରେମ, ବିଶ୍ୱାସ, ଅବିଶ୍ୱାସ ଓ ଦର୍ଶନକୁ ନେଇ ନାଟକଟି ରଚିତ ହୋଇଛି । ଚିତ୍ରଲେଖା ଓ କୁମାରଗିରିଙ୍କ କଥୋପକଥନ ଉଦାହରଣ ସ୍ୱରୂପ ନିଆଯାଉ ।

କୁମାରଗିରି – ଚିତ୍ରଲେଖା ତୁମେ !

ଚିତ୍ରଲେଖା – ମୁଁ ଜାଣେ ଆପଣଙ୍କ ଭିତରେ ସନ୍ଦେହ ଜମାଟ ବାନ୍ଧୁଛି । ମୋତେ ବିଶ୍ୱାସ କରନ୍ତୁ । ପ୍ରାଚୁର୍ଯ୍ୟ ପୟୋଧି ବାସନାର ବାରିଧି ଭିତରେ ବୁଡ଼ି ରହିଥିବା ଏକ ନର୍ତକୀ କାହିଁକି ଆଜି ଘନଜଙ୍ଗଲ ଭରା ଆଶ୍ରମକୁ ଦଉଡ଼ି ଆସିଥାନ୍ତା ? ମୋ ଭିତରେ ତରଙ୍ଗକୁ କ'ଣ ଆପଣ ଦେଖିପାରୁ ନାହାଁନ୍ତି ?

ଚିତ୍ରଲେଖା – ନା' ଗୁରୁଦେବ ! ଆପଣ ସାଗର । ସାଗରକୁ କେବଳ ଦୂରରୁ ରହି ପ୍ରଣାମ କରିବାହିଁ ନଦୀର ଧର୍ମ । ଆପଣଙ୍କୁ ପରଖିବା । ଶକ୍ତି ମୋର ନାହିଁ ।

୧୯୮୦ ପରବର୍ତୀ ସମୟରେ ମଂଚନାଟକ ପ୍ରାୟତଃ କେବଳ ବିଭିନ୍ନ ପ୍ରତିଯୋଗିତାରେ ହିଁ ମଂଚସ୍ଥ ହେଉଛି । ସୌଖୀନ୍ ନାଟ୍ୟସଂସ୍ଥାମାନେ ଅନ୍ୟସମୟରେ ପ୍ରାୟତଃ ନାଟକ ମଂଚସ୍ଥ କରୁନାହାଁନ୍ତି ଯଦି ବା କରୁଛନ୍ତି କ୍ୱଚିତ୍ କାଁ ଭାଁ । ନାଟକ ଗୁଡ଼ିକ ମୁଖ୍ୟତଃ ବିଭିନ୍ନ ପ୍ରତିଯୋଗିତାକୁ ଲକ୍ଷ୍ୟକରି ପ୍ରସ୍ତୁତ ହେଉଥିବାରୁ ମଂଚପାଇଁ ବହନୀୟ (portable) ମଂଚସମ୍ପଦ Stage Property ନିର୍ଦ୍ଦେଶକମାନେ ପସନ୍ଦ କଲେ । ନିର୍ଦ୍ଦେଶକମାନେ ପସନ୍ଦ କଲେ । ଫଳରେ ଯାତାୟତରେ ସୁବିଧା ହେଲା । ତେବେ ଏହା ମଧ୍ୟ ଏକ ସୂଚନା ଯେ ୧୯୮୦ ପରବର୍ତୀ ନାଟକ ପ୍ରଯୋଜନାରେ ନିର୍ଦ୍ଦେଶକମାନେ ଧରାବନ୍ଧା ଭାବରେ କୌଣସି ନିର୍ଦ୍ଦିଷ୍ଟ ଶୈଳୀ କିମ୍ବା ନିୟମଗୁଡ଼ିକ ଧରି ନାଟକ ପ୍ରଯୋଜନା କରୁନାହାନ୍ତି । ତେଣୁ ୧୯୮୦ ପରବର୍ତୀ ନାଟକ ମଂଚାୟନରେ ଅମୁକପ୍ରକାର ମଂଚଶୈଳୀ ବ୍ୟବହାର କରାଯାଇଛି ବୋଲି ନିର୍ଦ୍ଦିଷ୍ଟ ଭାବରେ କୁହାଯାଇପାରିବନି ।

'ଓ ସବାଶେଷ ଲୋକ'ର ମଂଚ ପରିକଳ୍ପନାରେ ଏହିପରି କୁହାଯାଇଛି "ମଂଚରେ ଆଲୋକ ଆସିବାମାତ୍ରେ ଦେଖାଗଲା ଧଳାପରଦା ଉପରେ ଅଙ୍କିତ ହୋଇଛି ଭାରତବର୍ଷର ମାନଚିତ୍ର । ମାନଚିତ୍ରର ମଧ୍ୟଭାଗରେ ସୁଦୃଶ୍ୟମାନ ଜାତୀୟ ପତାକା । ମାନଚିତ୍ରର ନିମ୍ନଦେଶକୁ ଅର୍ଥାତ୍ ପରଦାକୁ ଲାଗି ଲମ୍ବି ଆସିଛି ତିନୋଟି ପାହାଚ । ନାଟକର ପରବର୍ତୀ ଦୃଶ୍ୟଙ୍କର ଅଲଗା ଅଲଗା ମଂଚସଜ୍ଜା କରାଯାଇଛି । ଡ. ସାହୁଙ୍କ 'ସୁବର୍ଣ୍ଣ ସକାଳ' ନାଟକର ପ୍ରତିଟି ଦୃଶ୍ୟରେ ଅଲଗା ଅଲଗା ସ୍ଥାନର ସୂଚନା ଥିବାରୁ ନାଟକଟିକୁ ବାସ୍ତବାବଦୀ ମଂଚଶୈଳୀ ଅପେକ୍ଷା ମଂଚରେ ମଂଚସ୍ଥ କରିବା ସୁବିଧାଜନକ ହୋଇଛି । ନାଟ୍ୟକାରଙ୍କ ନାଟକ 'ମୂକ' ଓ 'ପୁନଶ୍ଚ ସଂଗ୍ରାମ' ନାଟକର ମଂଚ ଯେଉଁ ପ୍ରକାର ହେଲେ ମଧ୍ୟ

ଅଭିନୀତ ହୋଇପାରିବ କିନ୍ତୁ ନାଟକ 'ଉପାସନା' ଯାହାକି ବୌଦ୍ଧ ଯୁଗର ସମୟ କାହାଣୀକୁ ନେଇ ରଚିତ, ସେଥିରେ realistic set ଅପେକ୍ଷା ପ୍ରତୀକାତ୍ମକ suggestive ମଂଚରେ ବରଂ କମ୍ ଖର୍ଚ୍ଚରେ ନାଟକ ମଂଚସ୍ଥ କରାଯାଇପାରିବ ।

ସେହି ନାଟକ ସଫଳ ଯେଉଁଥିରେ ମଂଚମୂଲ୍ୟ ଓ ସାହିତ୍ୟିକ ସୌନ୍ଦର୍ଯ୍ୟ ଉଭୟ ଥାଏ । ସାହିତ୍ୟିକ ମୂଲ୍ୟ ନାଟକଟିକୁ ପାଠକ ସ୍ମୃତିରେ ବଂଚାଇ ରଖେ । ଏହାର କାରଣ ହେଲା ନାଟକକୁ ମଂଚସ୍ଥ କରିବାକୁ ହେଲେ ଅନେକ କଷ୍ଟ ସ୍ୱୀକାର କରିବାକୁ ହୁଏ ଯେହେତୁ ଏହା ଏକ ଯୌଗିକ କର୍ମ । କିନ୍ତୁ ନାଟକଟି ଛାପା ବହି ଆକାରରେ ଯେ କୌଣସି ସମୟରେ ସୁଲଭ ହୋଇଥାଏ । କେବଳ ଖୁବ୍ ଉଚ୍ଚକୋଟୀର ମଂଚମୂଲ୍ୟ ଥିବା ନାଟକ ଯେପରି ସଫଳ ନାଟକ ନୁହେଁ ଠିକ୍ ସେହିପରି କେବଳ ସାହିତ୍ୟିକ ମୂଲ୍ୟ ଥିବା ନାଟକ ବି ସଫଳ ନାଟକ ନୁହେଁ । ଡ.ନାରାୟଣ ସାହୁଙ୍କର ଉପାସନା ନାଟକର ସଂଳାପଗୁଡ଼ିକର ସାହିତ୍ୟିକ ସୌନ୍ଦର୍ଯ୍ୟ ପାଠକକୁ ମୁଗ୍ଧ କରିପାରିବାର କ୍ଷମତା ରଖେ । ବିଜିଗୁପ୍ତ ଓ ଚିତ୍ରଲେଖାଙ୍କ ମଧ୍ୟରେ ବାକ୍ୟାଳାପ ଅନେକ ସମୟରେ ସାହିତ୍ୟିକ ସୌନ୍ଦର୍ଯ୍ୟ ସହ ଆତ୍ମପ୍ରକାଶ କରିଛନ୍ତି । କାବ୍ୟିକ ସଂଳାପର ହିଁ ସିଧାସଳଖ ସାହିତ୍ୟିକ ସୌନ୍ଦର୍ଯ୍ୟ ଥାଏ ।

ଚିତ୍ରଲେଖା– ମୁଁ ଜାଣେନା । କେବେ ବି ଜାଣିବାକୁ ଚେଷ୍ଟା କରି ନାହିଁ । ସେ ଜାଣିବାଟା ମୋ ପାଇଁ ନିରର୍ଥକ ନୁହେଁ ତ ଆଉ କ'ଣ ?

ବିଜିଗୁପ୍ତ– ହଁ (ଦୀର୍ଘଶ୍ୱାସ) ! ସବୁ ଅର୍ଥ ଅନର୍ଥର କେନ୍ଦ୍ର 'ତୃଷଷ୍ଣା' ତୃଷଷ୍ଣାର ନିର୍ବାଣ ନାହିଁ । ବିଜିଗୁପ୍ତର ବି !

ଚିତ୍ରଲେଖା– ତୃଷ୍ଣାର ଅନ୍ୟନାମ ବିଜିଗୁପ୍ତ !

ବିଜିଗୁପ୍ତ– ବିଜିଗୁପ୍ତର ବିକଳ୍ପ ତୃଷଷ୍ଣା ।

ପ୍ରତିଟି ସ୍ରଷ୍ଟା ତାର ସୃଷ୍ଟି ମାଧ୍ୟମରେ ଏକ ବୃହତର ସମାଜ ପାଇଁ କିଛି ବାର୍ତ୍ତା ରଖିଯାଇଥାଏ । ତାହାହିଁ ସନ୍ଦେଶ । ଭଲ ହେଉ କି ଖରାପ ହେଉ ନିଜ ବ୍ୟକ୍ତିଗତ ଅବବୋଧରେ ସେ ଯାହା ବୁଝିଥାଏ ପୁଣି ଯାହା ଅନୁଭବ କରିଥାଏ, ସେଇଥିରୁ ତାର ଏକ ନିଜସ୍ୱ ଦର୍ଶନ ଜନ୍ମନିଏ । ସେଥିରେ କେତେବେଳେ ସାଲିସ୍‌ର କଥା ଥାଏ ତ କେତେବେଳେ ବିଦ୍ରୋହର ଅଗ୍ନିସ୍ଫୁଲିଙ୍ଗ ସଂଗୁପ୍ତ ହୋଇରହିଥାଏ ।

ନିଜ ଦାବୀ ନିଜେ ଉପସ୍ଥାପିତ ନକଲେ କିମ୍ବା ନିଜ ଅଧିକାର ନିଜେ ଜାହିର ନକଲେ କେହି ଯାଚିକରି ଦିଅନ୍ତିନି । ଅର୍ଥାତ୍ ନାଟକରେ ଏକ ବିପ୍ଲବର । ବିଦ୍ରୋହର ବାର୍ତ୍ତା ପ୍ରକାଶ କରାଯାଇଛି ।

ଡ. ନାରାୟଣ ସାହୁଙ୍କ କାହାଣୀ ସବାଶେଷ ଲୋକର ନାଟକରେ ମଧ୍ୟ ଅନୁରୂପ କଥା ମହାଲୋକ ସବାଶେଷ ଲୋକକୁ କୁହେ । ଯୁଗଯୁଗ ଧରି ମଝିଲୋକମାନେ

ସବାଶେଷଲୋକ ଉପରେ କରିଥିବା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ନ ଉଠିଲେ ପିରିସ୍ଥିତିର କୌଣସି ସମାଧାନ ରାସ୍ତା ଫିଟିବନି। ଡ.ସାହୁଙ୍କ ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର ନାଟକରେ ସିଧାସଳଖ କୌଣସି ସନ୍ଦେଶ ଉପସ୍ଥାପିତ ନ ହୋଇଥିଲେ ମଧ୍ୟ ପ୍ରକୃତ ମାନବଧର୍ମର ସସ୍ଥାପନା ହିଁ ସାମ୍ପ୍ରଦାୟିକତା କବଳରୁ ମୁକ୍ତିଦେବା ପରି କଥାଟି ପ୍ରଚ୍ଛନ୍ନ ଭାବରେ ରହିଛି। ନାଟକ 'ପୁନଶ୍ଚ ସଂଗ୍ରାମ'ରେ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ନିତାଇରାମଙ୍କ ସଂଳାପ ମାଧମରେ ନାଟ୍ୟକାର ଡଃ ସାହୁ ନିଜର ବକ୍ତବ୍ୟ ଉପସସ୍ଥାପିତ କରିଛନ୍ତି।

ଭାରତୀ- ଏ ଅନ୍ୟାୟର କ'ଣ କିଛି ପ୍ରତିକାର ନାହିଁ।

ବୃଦ୍ଧ- ଅଛି।

ଭାରତୀ- କ'ଣ ?

ବୃଦ୍ଧ- ବିଦ୍ରୋହୀ। ଗଣବିଦ୍ରୋହ। ଏ ଦେଶକୁ ଦୁର୍ନୀତି ରାକ୍ଷସ କବଳରୁ ମୁକ୍ତ କରିବାକୁ ହେଲେ ବିପ୍ଳବ ଦରକାର। ଆଉ ସେ ବିପ୍ଳବ ହେଉଛି ସମ୍ପୂର୍ଣ୍ଣ ବିପ୍ଳବ। ଗୋଟାଏ ଟୋଟାଲ୍ ରିଭୋଲ୍ୟୁସନ ଦରକାର।

ନାଟକର ସନ୍ଦେଶ ହେଉଛି ବିଦ୍ରୋହ। ଏକ ସଂପୂର୍ଣ୍ଣ ବିଦ୍ରୋହ। ନାଟକ 'ଅପରାହ୍ନର ଅବଶୋଷ'ରେ ରୂଢ଼ିବାଦୀ ସମୟକୁ ଅସ୍ୱୀକାର କରୁଥିବା ରାଜତନ୍ତ୍ରବାଦୀ ଭାନୁପ୍ରତାପଙ୍କ ମାଧମରେ ନାଟ୍ୟକାର ସମୟକୁ ସ୍ୱୀକାର କରିବାକୁ ଆହ୍ୱାନ ଜଣାଇଛନ୍ତି।

ଅଶୀଦଶକ ବେଳକୁ ନାଟ୍ୟକାରମାନେ ନିଜର ସାମାଜିକ ଦାୟିତ୍ୱ ଯୋଗୁଁ ନିଜକୁ ବିଭିନ୍ନ ସମସ୍ୟା ପ୍ରତି ଉନ୍ମୁଖ ରଖିଲେ। ତେଣୁ ଏହି ସମୟରେ ଆମେ ନାଟକଗୁଡ଼ିକ ପ୍ରାୟତଃ ସମସ୍ୟା ବହୁଳ ନାଟକ ଭାବରେ ଦେଖିବାକୁ ପାଉ। ଏସବୁ ସମସ୍ୟା ପାରିବାରିକ, ସାମାଜିକ, ରାଜନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଡ. ସାହୁଙ୍କ 'ମୂକ' ଏକ ସଂପୂର୍ଣ୍ଣ ରାଜନୈତିକ ସମସ୍ୟା ଆଧାରିତ ନାଟକ। ବିରୋଧୀଦଳ ଓ କ୍ଷମତାରେ ଥିବା ଦଳ ବାହାରକୁ ଅଲଗା ଦିଶୁଥିଲେ ମଧ୍ୟ ଭିତରେ ଏକାଠି ଥାଆନ୍ତି। ରାଜନୀତିର ପାଣି ପବନରେ ପ୍ରତିପାଳିତ ରାଜନୈତିକ ଗୁଣ୍ଡାମାନେ ବିଚ୍‌ବଜାରରେ ହତ୍ୟା କରନ୍ତି। ରାଜନୀତି ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ସମ୍ବାଦପତ୍ରର କଣ୍ଠରୋଧ କରେ। ନାଟକରେ ସାମ୍ବାଦିକ ଅଭିଜିତ୍ ସାମ୍ନା କରୁଥିବା ସମସ୍ୟା ସଂପୂର୍ଣ୍ଣ ରାଜନୈତିକ। ନେତାମାନେ ଉପରେ ଦେଖାପଣିଆ ଦେଶର ଉଡଉନ୍ନତି ତଥା କହୁଥିଲେ ମଧ୍ୟ ଅନ୍ତଃକରଣରରେ ଚାହାଁନ୍ତି ଦେଶରେ ଦାରିଦ୍ର୍ୟ ଓ ଅଶିକ୍ଷାର କଳାବାଦଲ ସେମିତି ରହିଥାଉ।

ଡ. ନାରାୟଣ ସାହୁଙ୍କ ନାଟକ 'ଓ ସବାଂଶେଷ ଲୋକ'ର ନାଟକରେ ସମାଜର ସେହି ସବାତଳ ଧାଡ଼ିରେ ଠିଆ ହୋଇଥିବା ମଣିଷର ଚିରନ୍ତନ ସମସ୍ୟା ସମ୍ପର୍କରେ କୁହାଯାଇଛି। ଦିଲ୍ଲୀଶ୍ୱର ମହାରଣାଙ୍କର 'ଉତ୍ତର ପୁରୁଷ' ନାଟକ ଆଜି ସାମାଜିକ ଜୀବନ

କେତେ ବିପନ୍ନ ସେ ବିଷୟରେ ଧାରଣା ଦିଆଯାଇଛି । ରାଜନୈତିକ ନେତା, ସାହି ଗୁଣ୍ଡାମାନେ ଆମ ପରିବାରର ଚଉହଦି ଭିତରକୁ ପାଦ ବଢ଼ାଇ ସାରିଲେଣି । ଆଜିଠାରୁ ସଚେତନ ନହେଲେ ଆମ ଉତର ପୁରୁଷଙ୍କ ସମାଜ ଜୀବନ ଆହୁରି ବିପନ୍ନ ହୋଇପଡ଼ିବ । ଡଃ ନାରାୟଣ ସାହୁଙ୍କ 'ମୂକ' ନାଟକରେ ଉତ୍ତମ ପୁରୁଷ ଜନ୍ମ ନେଇଛି ମୂକ ଭାବରେ ।

ଜଣେ ସଚେତନ ନାଗରିକ ସବୁ ସମୟରେ ସମାଜ ଓ ଚଳଣିର ସସ୍ଥିତାବସ୍ଥା ବିରୁଦ୍ଧରେ ସ୍ୱର ଉତୋଳନ କରେ । ଏହି ବିଦ୍ରୋହର ରୂପ କିନ୍ତୁ ଭିନ୍ନଭିନ୍ନ । ହାତରେ ପତାକା ଓ ପ୍ଲାକାର୍ଡ ଧରି କିଏ ରାଜରାସ୍ତାକୁ ଓହ୍ଲେଇ ଆସେ ତ କିଏ ଆଉ କିଛି ପନ୍ଥା ଧରେ । କିନ୍ତୁ ସ୍ରଷ୍ଟା ତାର ସୃଷ୍ଟି ମାଧମରେ ହିଁ ସ୍ଥିତାବସସ୍ଥା/ଦୁର୍ନୀତି/ ଅତ୍ୟାଚାରକୁ ବିରୋଧକରି ବିଦ୍ରୋହର ସ୍ୱର ଶୁଣାଏ । ଅସୀଠାରୁ ମସୀର ମହନୀୟତା ସେତେବୋଳ ପ୍ରତିଷ୍ଠିତ ହୁଏ । ଡ. ନାରାୟଣ ସାହୁଙ୍କ 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର', 'ସବାଶେଷ ଲୋକ', 'ପୁନଶ୍ଚ ସଂଗ୍ରାମ', 'ସୁବର୍ଣ୍ଣ ସକାଳ', 'ଅଧାଦେଖା ସ୍ୱପ୍ନ', 'ଅପରାହ୍ନର ଅବଶୋଷ' ଆଦି ନାଟକରେ ବିଦ୍ରୋହର ସ୍ପଷ୍ଟ ଉଚ୍ଚାରଣ କରାଯାଇଛି ।

ପରମ୍ପରା ଭିତରେ ବନ୍ଦୀମଣିଷ ଏକଦା ପରମ୍ପରାକୁ ପ୍ରଶ୍ନ ପଚାରି ପାରୁନଥିଲା । ଧର୍ମୀୟ ପରମ୍ପରା ଓ ସାମାଜିକ ପରମ୍ପରା ଦ୍ୱାରା ନିର୍ଣ୍ଣିତ ପଥରେ ସେ ବାଟ ଚାଲଥିଲା । ମଝିରେ ମଝିରେ କେହି କେହି ଧର୍ମ ପ୍ରଚାରକ,ସମାଜ ସଂସ୍କାରକ ନିସ୍ତରଙ୍ଗ ହ୍ରଦର ସ୍ଥିର ଜଳରାଶିରେ କିଯତକାଳ ବ୍ୟାପୀ ତରଙ୍ଗ ସୃଷଷ୍ଟି କରୁଥିଲେ ଓ କ୍ରମେ ଇତିହାସ ହୋଇଯାଉଥିଲେ । କିନ୍ତୁ ବିଂଶ ଶତକର ସଂକୁଚିତ ପୃଥିବୀର ମଣିଷମାନେ ହଠାତ୍ ଯୁଗଯୁଗର ସ୍ଥିତାବସ୍ଥା ବିରୁଦ୍ଧରେ ବିଦ୍ରୋହ କଲେ ପରମ୍ପରା, ଧର୍ମ ଓ ସମାଜକୁ ପ୍ରଶ୍ନ କରିବାର ସାହସ ସଂଚୟ କରିପାରିଲେ ।

ଡ. ନାରାୟଣ ସାହୁଙ୍କ 'ଓ ସବାଶେଷ ଲୋକ' ଓ 'ଆଶ୍ରା ଖୋଜୁଥିବା ଈଶ୍ୱର' ନାଟକ ଦୁଇଟିରେ ପରମ୍ପରା ପ୍ରତି କିଛି ବ୍ୟଙ୍ଗବିଦ୍ରୂପ ରୂପପାଇନି । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ମଣିଷର ଆଧାତ୍ମିକ ଆଶ୍ରୟ ଈଶ୍ୱର ବାସ୍ତୁହରା ପାଲଟି ଯାଇଛନ୍ତି । ତାଙ୍କ ନାମରେ ପୁଣି ଧର୍ଷଣ ଓ ହତ୍ୟାକାଣ୍ଡ ଭଳି ଅପରାଧ । ନାଟକରେ ଈଶ୍ୱରଙ୍କ ସ୍ଥିତିପ୍ରତି ଯେଉଁ ସନ୍ଦିଗ୍ଧତା ଦେଖାଦେଉଛି ତାହା ସାମାଜିକ ସନ୍ଦିଗ୍ଧତାର ପରିପ୍ରକାଶ ମାତ୍ର । ଈଶ୍ୱରଙ୍କ ଐଶ୍ୱରିକ ଶକ୍ତି ସମ୍ପନ୍ଧରେ ବ୍ୟଙ୍ଗାତ୍ମକ ସଂଶୟ ସହ ପ୍ରଶ୍ନ କରେ ମହାସେବକ ।

ବିଜ୍ଞାନର ଅଗ୍ରଗତି ଫଳରେ ଯୁକ୍ତିବାଦୀ ମଣିଷ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ସନ୍ଧାନ ହୋଇପଡ଼ିଛି । ତେଣୁ ତା ପାଖରୁ ପାପ ଓ ପୁଣ୍ୟ ଭିତରେ ଥିବା ବିଭେଦକାମୀ ରେଖା ଉଠିଯାଇଛି । ସମାଜଜୀବନରୁ ଆଧାତ୍ମିକତାର ଗୁରୁତ୍ୱ ବେଶ ହ୍ରାସ ପାଇଛି । ସଫଳ ଜୀବନର ଲମ୍ବ ଘୋଡ଼ା ଦୌଡ଼ରେ ଆଜି ଜିତିବା ହିଁ ସବୁଠାରୁ ବଡ଼ ମନ୍ତ୍ର ପାଲଟିଛି । ସମାଜର ବଡ଼ପଣ୍ଡାମାନେ ଧର୍ମକୁ ସେମାନଙ୍କ ସ୍ୱାର୍ଥପୂରଣର ମୁଖ୍ୟ ଆୟୁଧ କରିଛନ୍ତି । ଈଶ୍ୱର ସେମାନଙ୍କୁ

ରକ୍ଷା କରୁନାହାଁନ୍ତି ବୋଲି ନିଷ୍ପେଷିତଙ୍କ ଆଶା ଓ ବିଶ୍ୱାସର ଭିତ୍ତି ଦୋହଲି ଯାଉଛି । ଡ.ନାରାୟଣସାହୁଙ୍କ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱରଙ୍କ ସତ୍ତାକୁ ନେଇ ପ୍ରଶ୍ନ କରାଯାଇଛି । ନିଜକୁ ଈଶ୍ୱରଙ୍କ ପ୍ରତିନିଧି ଭାବରେ ଉପସ୍ଥାପିତାକରି ମନ୍ଦିରର ମହାସେବକ ସବୁପ୍ରକାର କୁକର୍ମରେ ଲିପ୍ତ । ଛଳନା ଓ କପଟତାର ଆଶ୍ରୟ ନେଇ ସେ ଈଶ୍ୱରଙ୍କୁ ଧର୍ଷଣକାରୀ ଓ ହତ୍ୟାକାରୀ ଭାବରେ ଛିଡ଼ାଇ ଦେଇଛି ଓ ଈଶ୍ୱରଙ୍କୁ କହିଛି "ଘଙ୍ଘଙ୍ଘ ଆସନ୍ତା କାଲି ସର୍ବସମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ ତମର ଆବଶ୍ୟକତା ଶେଷ ହୋଇଯାଇଛି । ଆମକୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ହେବ ।"

ଉତ୍ତର ଅଶୀ କାଳରେ ଓଡ଼ିଶା ନାଟକରେ ଯେଉଁ social commitment ର ସ୍ୱର ଶୁଣାଗଲା ସେଥିରେ ସମାଜ ଜୀବନର ସମସ୍ତ ଅପକର୍ଷ ପାଇଁ ରାଜନୀତିକୁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେର ଦାୟୀ କରାଯାଇଛି । ତେଣୁ ଅଶୀ ପରବର୍ତୀ ନାଟ୍ୟଧାରାରେ ରାଜନୀତି ଓ ରାଜନୈତିକ ନେତାଙ୍କୁ ତୀବ୍ର ବ୍ୟଙ୍ଗ କରାଯାଇ ଖଳନାୟକର ଆସନରେ ବସାଇଦିଆଗଲା ।

ଡ. ନାରାୟଣ ସାହୁଙ୍କ 'ଓ ସବାଶେଷ ଲୋକ', 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ଓ 'ସୁବର୍ଣ୍ଣ ସକାଳ'ନାଟକରେ ରାଜନୈତିକ ଅବକ୍ଷୟତାର ଚିତ୍ର ଥିଲେ ମଧ୍ୟ ତାହା ଅଧିକ ସ୍ପଷ୍ଟ ଭାବରେ 'ପୁନଶ୍ଚ ସଂଗ୍ରାମ' ଓ 'ମୂକ' ନାଟକରେ ଦୃଶ୍ୟମାନ ହୁଏ । 'ପୁନଶ୍ଚ ସଂଗ୍ରାମ' ନାଟକରେ ଗାଲମାଧବ, ବଗୁଲି ଦାସ ପରି ନେତାଙ୍କ ଚରିତ୍ର ଦର୍ଶାଇଦିଏ ଯେ ରାଜନୀତିର ନେତା କେତେ ତଳକୁ ଖସି ଯାଇପାରନ୍ତି । ଗାନ୍ଧୀ ଜୟନ୍ତୀରେ ଗାନ୍ଧୀ ଛକରେ ବିଦେଶୀ ମଦ ଦୋକାନର ଉଦ୍‌ଘାଟନ ଉତ୍ସବ ପାଳିତ ହୁଏ । ମଦ ଦୋକାନର ମାଲିକ ହେଉଛନ୍ତି ସହରର ଚେୟାରମ୍ୟାନ୍, ଆଉ ଉଦ୍‌ଘାଟନ କରିବେ ରାଜ୍ୟର ମୁଖ୍ୟମନ୍ତ୍ରୀ । ଡଃ ସାହୁଙ୍କ ମୂକ ନାଟକରେ ସତ୍ୟ ପ୍ରକାଶ କରିବାକୁ ଯାଇ ସାମ୍ବାଦିକ ପତିପତ୍ନୀଙ୍କୁ କିପରି ରାଜନୀତିର ଚକ୍ରବ୍ୟୁହରେ ପଡ଼ିବାକୁ ହୋଇଛି, ତାହା ବର୍ଣ୍ଣିତ ହୋଇଛି । ମୁଖ୍ୟମନ୍ତ୍ରୀ ମହାପାଳ ଓ ବିରୋଧୀଦଳ ନେତା ବାଇମନଙ୍କ ଭିତିରି ସମ୍ପର୍କ ଓ ଉପରକୁ ଶତ୍ରୁତା ସ୍ପଷ୍ଟ କରିଦେଇଛି ସବୁ ନେତା ସମାନ ସବୁଦଳ ସମାନ । ସମସ୍ତେ କ୍ଷମତାନ୍ଧ ସମସ୍ତେ ଶୋଷକଗୋଷ୍ଠୀ ।

୧୯୮୦ ପରବର୍ତୀ ନାଟକରେ ଯେଉଁ ଲୋକନାଟକର ଫର୍ମକୁ ବ୍ୟାପକ ଭାବରେ ବ୍ୟବହାର କରାଗଲା । ସେ ସବୁରେ ସଙ୍ଗୀତର ପ୍ରାବଲ୍ୟ ଦେଖାଦେଲା । ଫଳରେ ଅନେକ ନାଟକର ସ୍ୱର କାବ୍ୟିକ ଶୁଭିଲା । ୧୯୮୦ ପରବର୍ତୀ ଚଳନ୍ତିଚେତନାକୁ ଧରି ରଖିଥିବା ପ୍ରାୟ ସମସ୍ତ ନାଟକରେ ଅଳ୍ପ ବହୁତ କାବ୍ୟିକ ସ୍ୱର ଅନୁରଣିତ ହୁଏ ।

ଡଃ ନାରାୟଣ ସାହୁଙ୍କ 'ଉପାସନା' ନାଟକ ବୌଦ୍ଧ ଯୁଗର କାହାଣୀକୁ ଅବଲମ୍ବନ କରି ରଚିତ ହୋଇଛି। ଶ୍ରେଷ୍ଠୀ ସାମନ୍ତ ବିଜିଗୁପ୍ତ, ବାରବଧୂ ଚିତ୍ରଲେଖା ଓ ଅନ୍ୟାନ୍ୟ ଚରିତ୍ରଙ୍କ ସ୍ୱର କାବ୍ୟିକ। 'ଉପାସନା'ର ସ୍ୱର ବିଜୟ ମିଶ୍ରଙ୍କ 'ତଟନିରଞ୍ଜନା'ର ସ୍ମୃତିକୁ ମନେପକାଇଦିଏ। ବିଳମ୍ବିତ ରାତ୍ରୀରେ ଚିତ୍ରଲେଖାର କେଳି ମନ୍ଦିରରେ ଚିତ୍ରଲେଖା ଓ ବିଜିଗୁପ୍ତ କଥା ହୁଅନ୍ତି।

ଚିତ୍ରଲେଖା- ବିଜିଗୁପ୍ତ, ତମେ କ୍ଳାନ୍ତ ମନେ ହେଉଛ। କିଛି ପାନୀୟ ?

ବିଜିଗୁପ୍ତ- ନା ! ବାରମ୍ବାର ପାନ ପରେ ମଧ୍ୟ ପିପାସାର ପରିସମାପ୍ତି ଘଟୁନାହିଁ। ଚିତ୍ରଲେଖା ଏ ତୃଷ୍ଣାର କ'ଣ ଅନ୍ତ ନାହିଁ ?

ଚିତ୍ରଲେଖା- ମୁଁ ଜାଣେନା। କେବେବି ଜାଣିବାକୁ ଚେଷ୍ଟା କରିନାହିଁ। ସେ ଜାଣିବାଟା ମୋପାଇଁ ନିରର୍ଥକ ନୁହେଁତ ଆଉ କ'ଣ ?

ବିଜିଗୁପ୍ତ- ହଁ (ଦୀର୍ଘଶ୍ୱାସ) : ସବୁ ଅର୍ଥ ଅନର୍ଥର କେନ୍ଦ୍ର ତୃଷ୍ଣା। ତୃଷ୍ଣାର ନିର୍ବାଣ ନାହିଁ। ବିଜିଗୁପ୍ତର ବି।

୧୯୮୦ ପରବର୍ତ୍ତୀ ସମୟର ଯୁବ ନାଟ୍ୟକାରମାନେ ଓଡ଼ିଆ ନାଟକକୁ ଯେଉଁ ଉଲ୍ଲେଖଯୋଗ୍ୟ ମୋଡ଼ ଦେଲେ ସେଥିରେ ସେମାନେ ଦର୍ଶକକୁ ହତାଶା ଅପେକ୍ଷା ଆଶାର କଥା ଶୁଣାଇଲେ। ନିଜର ସାମାଜିକ ଦାୟିତ୍ୱ ତୁଲାଇବାକୁ ଯାଇ ନାଟ୍ୟକାରମାନେ ସାଧାରଣ ମେହେନତି ମଣିଷକୁ ଆତ୍ମବିଶ୍ୱାସର ସହ ଅଂଟାସଳଖି ସିଧା ଠିଆହେବା ପାଇଁ ସେମାନଙ୍କ ନାଟକରେ ଆଶାବାଦର ସ୍ୱର ଶୁଣାଇଲେ।

ଡ.ନାରାୟଣ ସାହୁଙ୍କ ହଜାର ବର୍ଷର ସହର କଟକ ଉପରେ ଲିଖିତ ନାଟକ ସୁବର୍ଣ୍ଣ ସକାଳ ଆଜିର ଘୁଣଖିଆ ସମାଜ ଜୀବନର ସାର୍ଥକ ଚିତ୍ର ପ୍ରଦାନ କରେ। ଗୋଟିଗୋଟି କରି କଟକ ସହରବାସୀଙ୍କ ଯାବତୀୟ କୁକର୍ମ ଦେଖିଲା ପରେ ବାଇମୁଣ୍ଡି ଓ ମର୍କତକେଶରୀ ମନଦୁଃଖ କରିଛନ୍ତି, କିନ୍ତୁ ତଥାପି ଅଶା କରିଛନ୍ତି ହୁଏତ ଦିନେ ପୁଣି ସୁଦିନ ଆସିବ। "ଆଶା ରଖିବା ଛଡ଼ା ଆମର ଅନ୍ୟଗତି ନାହିଁ। ଆଗାମୀ ଅମାବାସ୍ୟାରେ ଆସିବା। ଅମାବାସ୍ୟା ପରେ ନିଶ୍ଚୟ ଜହ୍ନରାତି ଆସିବ। ତେଣୁ ଆଉ ଏକ ସୁବର୍ଣ୍ଣ ସକାଳକୁ ପ୍ରତୀକ୍ଷା କରିବାରେ କ୍ଷତି କ'ଣ ?"

ଅସଫଳତାକୁ ଭବିତବ୍ୟ ବୋଲି ମାନି ନ ନେଇ ନାଟ୍ୟକାର ନାଟ୍ୟ ଚରିତ୍ର ଦ୍ୱାରା ଆଶାବାଦର ସ୍ୱର ଶୁଣାଇଛନ୍ତି। ବୁଝାଇ ଦିଆଯାଇଛି ଜୀବନଯାତ୍ରା ଛୋଟ ବଡ଼ ଘଟଣା-ଅଘଟଣା-ଦୁର୍ଘଟଣାରେ ଅଟକି ଯାଏନି, ଅବାରିତ ସେ ଯାତ୍ରା, ଅସରନ୍ତି ସେ ଯାତ୍ରାର ପଥ।

ଭୁବନେଶ୍ୱର

●●●

# ଉତ୍ତର ଅଶୀର ଓଡ଼ିଆ ନାଟକ ଓ ନାଟ୍ୟକାର ନାରାୟଣ ସାହୁ

ଗୀତାରାଣୀ ନାୟକ

ସମାଜର ରୁଚି ଓ ଯୁଗରୁଚି ଅନୁଯାୟୀ ନାଟକ ପରିବର୍ତ୍ତିତ ହେଉଥାଏ। ନାଟ୍ୟକଳା କ୍ଷେତ୍ରରେ ବିଭିନ୍ନ ପ୍ରକାର ବୈପ୍ଲବିକ ଚେତନା ନାଟକକୁ ପରିବର୍ତ୍ତିତ ରୂପେ ଦେଇଥାନ୍ତି। ସ୍ୱାଧୀନତା ପରବର୍ତ୍ତୀ ନାଟକରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଲା। ଏହା ମଣିଷର ବାହ୍ୟରୂପସତା ପରିବର୍ତ୍ତେ ମଣିଷର ଆନ୍ତାରୀଣ ରୂପସତାକୁ ଟିକିନିଖି କରି ଦେଖାଇଦେଲା। ନାଟକ ସାମାଜିକ ମଣିଷର ରୂପ ନ ଦେଖି ବ୍ୟକ୍ତିମଣିଷକୁ ବିଶ୍ଳେଷଣ କରି ଦେଖେଇ ଦେଲା। ମଣିଷର ଯନ୍ତ୍ରଣା, ନିଃସଙ୍ଗତା, ପ୍ରବଂଚନା,ଅସହାୟତା ସର୍ବୋପରି ବ୍ୟକ୍ତିର ଖଣ୍ଡିତ ରୂପକୁ ବିଭିନ୍ନ ପ୍ରତୀକ ମାଧମରେ ପରିବେଷଣ କରାଯାଇ ପାରିଲା। ମାତ୍ର ନାଟକ ହେଉଛି ଏକ ମିଶ୍ରକଳା। ଏହା ସଫଳତା କେବଳ ନାଟକର କାହାଣୀ ଉପରେ ପର୍ଯ୍ୟବସିତ ନୁହେଁ। ଏ ଅଭିନେତାଙ୍କର ଅଭିନୟ କୁଶଳତା, ମଂଚକୌଶଳ ଓ ଦର୍ଶକମାନଙ୍କର ସହଯୋଗ ଉପରେ ନାଟକର ସଫଳତା ନିର୍ଭର କରେ। ସେଥିପାଇଁ ପରୀକ୍ଷାଧର୍ମୀ ନାଟକଗୁଡ଼ିକ ଆରମ୍ଭରୁ ସଫଳ ହୋଇଥିଲେ ମଧ୍ୟ ସମୟକ୍ରମେ ଦର୍ଶକମାନେ ଏହାଠାରୁ ଦୂରେଇଗଲେ। କାରଣ ନାଟକର ମୂଳ ଆଧାର ହେଉଛି ମନୋରଞ୍ଜନ। ସାଧାରଣ ଦର୍ଶକ ନାଟକରେ ବୌଦ୍ଧିକତା ଅପେକ୍ଷା ମନୋରଞ୍ଜନକୁ ଅଧିକ ପସନ୍ଦ କରନ୍ତି।

ଅଶୀଦଶକ ପରବର୍ତ୍ତୀ ସମୟରେ ବା ବିଂଶଶତକର ଶେଷ ଦୁଇଦଶକରେ ଯେଉଁ ନାଟକ ସବୁ ରଚିତ ହେଲା ସେଥିରେ ପରୀକ୍ଷାଧର୍ମୀ ତା ସହ ପରମ୍ପରାର ସୁନ୍ଦର ସମନ୍ୱୟ ରହିଥିବାର ଲକ୍ଷ୍ୟ କରାଯାଏ। ଏହ ଦଶକରେ ନାଟ୍ୟକାରମାନେ ପରମ୍ପରାକୁ ସମ୍ମାନ ଦେଇ ଆଧୁନିକ ଚିନ୍ତାଧାରାକୁ ପରମ୍ପରା ସହ ମିଶାଇ ଦେଇଛନ୍ତି। ଏମାନେ ନାଟକରେ ସାମ୍ପ୍ରତିକ ସମାଜର ଚିତ୍ର ଅତ୍ୟନ୍ତ ବିଶ୍ୱସ୍ତ ଭାବରେ ଦେଖାଇଦେବା ସହ ଏହା ବିରୁଦ୍ଧରେ ଖୋଲାଖୋଲି ବିଦ୍ରୋହ ଘୋଷଣା କଲେ। ଅନ୍ୟାୟ,ଅନୀତି ଅନ୍ଧକାର ତଥା ସ୍ଥାଣୁତା ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ। ହତାଶାର ଓ ଗ୍ଲାନିର ଉର୍ଦ୍ଧ୍ୱରେ ଏକ ଉଜ୍ଜ୍ୱଳ ଆଲୋକର ସମ୍ଭାବନା ସୃଷ୍ଟି କରିଗଲେ, ଅଥଚ ପ୍ରକାଶନରେ କୌଣସି ଜଟିଳତା ବ୍ୟବହାର କଲେନାହିଁ।

ଏହି ସମୟରେ ଯେଉଁ ସ୍ରଷ୍ଟାଗଣ ନିଜ ନିଜର ବୈଶିଷ୍ଟ୍ୟ ସହିତ ଅଗ୍ରସର ହୋଇଛନ୍ତି, ସେମାନେ ହେଲେ ସୁବୋଧ ପଟ୍ଟନାୟକ, ରଣଜିତ ପଟ୍ଟନାୟକ, ପ୍ରମୋଦ ତ୍ରିପାଠୀ, ଶଙ୍କର ତ୍ରିପାଠୀ, ବିଜୟ ଶତପଥୀ, ପ୍ରସନ୍ନ ଦାସ ଓ ନାରାୟଣ ସାହୁ ପ୍ରମୁଖ।
ପ୍ରମୋଦ ତ୍ରିପାଠୀଙ୍କର 'ଶୁଣ ପରୀକ୍ଷ ଦଣ୍ଡଧାରୀ'ରେ ତୋଷାମଦ ସର୍ବସ୍ୱ ରାଜନୀତି ଓ ନଷ୍ଟ ହୋଇଯାଇଥିବା ମୂଲ୍ୟବୋଧ ମଧ୍ୟରେ ପୀଡ଼ିତ ସାଧାରଣ ମଣିଷର କରୁଣ ଚିତ୍ର ପ୍ରତିଫଳିତ। ଏହି ନାଟକରେ ରିକ୍‌ସାବାଲା ପରିକ୍ଷିତ ତା ସ୍ତ୍ରୀ ଲଳିତାକୁ ଯାହା କହିଛି, ସେଥିରେ ସର୍ବହରା ମଣିଷର କରୁଣ ଆର୍ତ୍ତନାଦ ଫୁଟି ଉଠିଛି- "କାନ୍ଦନା ପାଗଳୀ! ଆଲୋ ଆମ ପୁଅକୁ ମାରିଦେଲେ ବୋଲି କାନ୍ଦୁଛୁ? ଛି...ତୁ ମୋର ଲକ୍ଷ୍ମୀ ମୋର ଠାକୁରାଣୀ...କାନ୍ଦନା...ଏଇମିତି ସବୁବେଳେ ହେବା ଆରବର୍ଷକୁ ପୁଣି ମନ୍ତ୍ରୀ ଆସିବେ, ସେମାନେ ପୁଣି ଛ'ସାତ ଜଣ ମିଶି ତତେ...ତୁ କ'ଣ ସବୁ ବର୍ଷ ଏମିତି କାନ୍ଦୁଥିବ। କାନ୍ଦିକାନ୍ଦି କେତେ ବା କାନ୍ଦିବୁ? ଲୁହ ସରିଯିବ। ଜମା ରଖିଥା...। ଏ ମଣିଷମାନଙ୍କ ଆଗରେ ଲୁହ ଝରାନା।"(ପୃ-୯୭) ଏଥିରେ ଦୁର୍ନୀତିଗ୍ରସ୍ତ, ଶାସକ ଓ ସମାଜ ପ୍ରତି ଯେଉଁ କଟାକ୍ଷ ରହିଛି, ତାହା ଅତ୍ୟନ୍ତ ଶାଣିତ ଓ ତୀବ୍ର।

ସେହିପରି ନାଟ୍ୟକାର ରତି ମିଶ୍ରଙ୍କ ନାଟକରେ ଗତାନୁଗତିକ ପ୍ରେମ ଓ ବିରହ ବା ଖଳନାୟକକୁ ନେଇ କୌଣସି କାହାଣୀ ନାହିଁ,ବରଂ ସାମ୍ପ୍ରତିକ ସମାଜ ଜୀବନରେ ଘଟିଯାଉଥିବା ପରିଚିତ ଘଟଣାବଳୀର ନାଟକୀୟ ରୂପ ଦେଖିବାକୁ ମିଳେ। ଦେଖ ବର୍ଷା ଆସୁଛି, ସତର୍କ ସଂଘମିତ୍ରା, ଶୀତଳ ହୁଅନା ସୂର୍ଯ୍ୟ, ସୀତା ପ୍ରଭୃତି ନାଟକରେ ନୂତନ ଚେତନା ଓ ନୂତନ ଶୈଳୀର ପ୍ରକାଶ ଘଟିଛି। ରତି ମିଶ୍ରଙ୍କ 'ସୀତା' ନାଟକରେ ଶିକ୍ଷିତ ଯୁବସମ୍ପ୍ରଦାୟର ସମସ୍ତ ଅସନ୍ତୋଷ ପ୍ରକାଶ ପାଇଛି। ପ୍ରଚଳିତ ପାଠ୍ୟକ୍ରମ ଓ ତଥାକଥିତ ଡ଼ିଗ୍ରୀ ହାସଲକୁ ନେଇ ସେ କୁହନ୍ତି... "ସେଇ ଡିଗ୍ରୀକୁ ଦେଖେଇଦେଲେ ଖାଇବାକୁ ମିଳେନା, ଚାକିରୀ ମିଳେନା, ପେଟ ପୋଷିବାର କିଛି ଉପାୟ ବି ମିଳେନା,ତେଣୁ ସାଧୁଗଣ,ସେଇ ଡିଗ୍ରୀର ମୂଲ୍ୟ କ'ଣ? ସେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ଅର୍ଥ କ'ଣ?"

(ସୀତା, ପୃ-୮)

ଏହିସବୁ ନାଟକ ମାନଙ୍କରେ ଆଧୁନିକ ଜୀବନ ସମସ୍ୟାର କଥା କୁହାଯାଇଛି। ପାରମ୍ପରିକ ଶୈଳୀର ବାଦ୍ୟ ସଂଗୀତ ତଥା କୋରସ ମଧ୍ୟ ସ୍ଥାନ ପାଇଛି। ଏ ନାଟକ ସବୁ ଯେକୌଣସି ମଂଚରେ ଅଭିନୀତ ହୋଇପାରେ। ଏହିସବୁ ନାଟକରେ ଚରିତ୍ରମାନେ ସମୟ ଓ ମଣିଷର ପ୍ରତିନିଧିତ୍ୱ କରିଥାନ୍ତି। ଏଥିରେ ବ୍ୟବହୃତ ପ୍ରତୀକ ସବୁ ଦୁର୍ବୋଧ ନ ହୋଇ ସର୍ବଜନବୋଧ୍ୟ ହୋଇଥାଏ। ଦ୍ୱିତୀୟରେ ସଂଳାପସବୁକୁ ଅତିହ୍ରସ୍ୱ

(Monosyllabic) ନକରି ଅତ୍ୟନ୍ତ ଗଣଧର୍ମୀ କରିଦେଲେ। ତୃତୀୟରେ ଏଥିରେ ଯେଉଁ ସଂଗୀତ ରହିଥାଏ ତାହା ଲୋକସଙ୍ଗୀତ କିମ୍ବା କୋରସ୍ ମାଧ୍ୟମରେ ଗାନ କରାଯାଏ।

ସମାଜର ସମସ୍ୟାଗୁଡ଼ିକ ପ୍ରତିବିମ୍ବିତ କରିବା ସଙ୍ଗେସଙ୍ଗେ ଜନସଚେତନତା ସୃଷ୍ଟି କରିବା ହେଉଛି ଏସବୁ ନାଟକର ମୁଖ୍ୟ ଉଦ୍ଦେଶ୍ୟ। ଏହିସବୁ ନାଟକରେ ଆଶା ଓ ସମ୍ଭବନାର ସ୍ୱର ଖୁବ୍ ତୀବ୍ର। ରତି ମିଶ୍ରଙ୍କ ନାଟକ 'ଦେଖବର୍ଷା ଆସୁଛି' ନାଟକରେ-

ଲୋକ-୫--"ତାହାହେଲେ ଆଉ ଡେ଼ରି କାହିଁକି ବନ୍ଧୁଗଣ। ଆସ ବର୍ତ୍ତମାନ କାମ ଆରମ୍ଭ କରିଦେବା। ଏକଯୁଟ ହୋଇ, ହାତମୁଠାକୁ ଟାଣକର। ବିଜୁଳ, ଘଡ଼ଘଡ଼ିକୁ ଭୟନକରି ସମସ୍ତ ଶକ୍ତି ଦେଇ...(ସେ ନିଜେ କୋଦାଳ ଉଠାଇଛି) ଏଇ ମାଟି ଭିତରୁ ମଳିଯିବ ଏକ ସ୍ରୋତ। ଉପରକୁ ଉହୁଁକି ଆସିବ ଉତ୍ସକୂପ।"

ଦ୍ୱିତୀୟତଃ ଏହିସବୁ ନାଟକ ବିଶେଷକରି ମାନବିକ ସମ୍ବେଦନା ଭିତ୍ତିରେ ପ୍ରତିଷ୍ଠିତ। କୌଣସି ନିର୍ଦ୍ଦିଷ୍ଟ ଧର୍ମଧାରା ଏହାର ଭିତ୍ତି ନୁହେଁ ବରଂ ଏହା ସମସ୍ତ ଧର୍ମଧାରାର ଊର୍ଦ୍ଧ୍ୱରେ। 'ଗୋଟିଏ ବୃତ୍ତ ଆଙ୍କିବାର ସହଜ ପ୍ରଣାଳୀ' ନାଟକରେ ଜଗନ୍ନାଥ ନିଜେ ଗୋଟିଏ ଅଳନ୍ଧୁ ଝାଡୁଥିବା ଚରିତ୍ରଟିଏ, 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଈଶ୍ୱର ଏକ ସମ୍ପୂର୍ଣ୍ଣ ଅସହାୟ ଚରିତ୍ର।

ଏହିସବୁ ନାଟକରେ ସାମ୍ପ୍ରତିକ ସମସ୍ୟାବଳୀର ସିଧାସଳଖ ରୂପାୟନ ଯୋଗୁ ନାଟକରେ କଳାପକ୍ଷ ନିଷ୍ପ୍ରଭ ହୋଇଯିବାର ଆଶଙ୍କା ଅନେକ ମାତ୍ରାରେ ରହିଥିବାରୁ ହାସ୍ୟରସ, ବ୍ୟଙ୍ଗ ଓ ଲୋକନାଟକର ବିଭିନ୍ନ ଛାଂଚ ଗ୍ରହଣ କରାଯାଉଛି।

ଏହି ଲୋକନାଟକଶୈଳୀର ପାରମ୍ପାରିକ ଫାର୍ସ, ଲୋକଗୀତ, ଲୋକଗୀତର ଛନ୍ଦ ଓ ଶୈଳୀର ବ୍ୟବହାର କରାଯାଉଛି। ଏହି ଧାରା ପ୍ରାୟତଃ ନାଟ୍ୟକାର ରମେଶ ପ୍ରାଣିଗ୍ରାହୀଙ୍କ ନାଟ୍ୟକୃତିର ବହୁଳ ବ୍ୟବହାର କରାଯାଇଛି। ନାଟ୍ୟକାର ରମେଶ ପାଣିଗ୍ରାହୀଙ୍କ 'ମହାନାଟକ'ରେ ବିଦୂଷକଦ୍ୱୟ ଦାସକାଠିଆ ସ୍ୱରରେ 'ରାମ ଯେ ରାମ ରାମ' ସହିତ ଗାଇ ଉଠନ୍ତି। ଡ. ରତ୍ନାକର ଚଇନି ଏ ପ୍ରସଙ୍ଗରେ ନିଜସ୍ୱ ସଂଳାପରେ କହନ୍ତି- "ପାରମ୍ପରିକ ନାଟକ ପୁଣି ଯେଉଁ ହତାଶା ଦର୍ଶକମାନଙ୍କୁ ପରୀକ୍ଷାଧର୍ମୀ ନାଟକ ପାଖକୁ ଟାଣିଆଣିଥିଲା, ସେଇ ହତାଶା ପୁଣି ଅତ୍ୟଧିକ ପରୀକ୍ଷାଧର୍ମୀ ନାଟକ ପାଖରୁ ସେମାନଙ୍କୁ ଭିଡ଼ିନେଲା ଲୋକନାଟ୍ୟଶୈଳୀ ପାଖକୁ।" (ଓଡ଼ିଆ ନାଟକର ସଙ୍କଟ ଓ ସମ୍ଭାବନା)

ବୌଦ୍ଧିକ ନାଟ୍ୟ ଶୈଳୀ ସହିତ ଲୋକନାଟ୍ୟ ଶୈଳୀ ସମନ୍ୱୟ ଘଟାଇବାର ପ୍ରଚେଷ୍ଟା ଆଜିର ନାଟ୍ୟକାର କରୁଛି। ଏହି ନାଟକରେ ଭାଷା ଆଭିଜାତ ସମ୍ପନ୍ନ ନହୋଇ ଲୋକ ମୁଖର ବା ବାସ୍ତବବାଦୀ ହୋଇଥାଏ।

ଉଦାହରଣ:-

ଅଭିଜିତ୍- ମୋ ନୀତି ! ମୋ ଆଦର୍ଶ ଏସବୁର କର କିଛି ଦାମ୍ ନାହିଁ ?

ପରମଗୁରୁ- ଭୋକ ଏମିତି ଏକ ଜିନିଷ, ଯାହା ଦାମ୍‌ରେ କୌଣସି ଧାର ଧରେନା। ଓଦାପେଟ କେବେ ବିପ୍ଳବ କରି ପାରେନା....(ମୂକ)

ନାଟ୍ୟକାର ମନୋରଞ୍ଜନ ଦାସ, ରମେଶ ପାଣିଗ୍ରାହୀ ପ୍ରଭୃତି ନାଟ୍ୟକାରଙ୍କ ନାଟକରେ ଏହି ଭାବଧାରା ଓ ଶୈଳୀ ଆରମ୍ଭ ହୋଇ ଅଶୀଦଶକର ପ୍ରମୋଦ ତ୍ରିପାଠୀ, ରତି ମିଶ୍ର, ବିଜୟ ଶତପଥୀ, ଶଙ୍କର ତ୍ରିପାଠୀ ପ୍ରଭୃତିଙ୍କ ରଚିତ ନାଟକରେ ସମୃଦ୍ଧ ରୂପଗ୍ରହଣ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

ଏହି ଦଶକର ଅନ୍ୟତମ ନାଟ୍ୟକାର ହେଲେ ନାରାୟଣ ସାହୁ ସେ ଏକାଧାରାରେ ନାଟ୍ୟକାର, ଅଧ୍ୟାପକ ଓ ସାହିତ୍ୟ ସମାଲୋଚକ।

ନାଟ୍ୟକାର ତାଙ୍କର ନାଟ୍ୟକୃତିରେ ଜନତାଙ୍କୁ 'ମୂକ' ଭାବରେ ପ୍ରତିପାଦିତ କରିଛନ୍ତି। ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଶେଷହୀନ ସଂଗ୍ରାମ ଜାରି ରଖିବାକୁ 'କାହାଣୀ ସବାଶେଷ ଲୋକର'ରେ ବଜ୍ରବାଣୀ ଶୁଣାଇଛନ୍ତି ତ ଆଉ କେଉଁଠି ଏକ ପବମାନ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ 'ପୁନଶ୍ଚ ସଂଗ୍ରାମ' ଜାରିରଖି ଏକ 'ସୁବର୍ଣ୍ଣ ସକାଳ' ର ପ୍ରତୀକ୍ଷା କରିବାକୁ ଉପଦେଶ ଦେଇଛନ୍ତି।

ତାଙ୍କର ନାଟ୍ୟସୃଷ୍ଟିରେ ଉଚ୍ଚକୋଟୀର ଚରିତ୍ର ସୃଷ୍ଟି, ସମାଜତାତ୍ତ୍ୱିକ ମୂଲ୍ୟବୋଧ, ନାରୀ ଚରିତ୍ର ସୃଷ୍ଟିରେ ସ୍ୱାତନ୍ତ୍ୟ(ଭାରତୀ ଓ ଅଳକା ପ୍ରଭୃତି), ସାମାଜିକ ଦୂରବସ୍ଥା, ବୁଦ୍ଧିଜୀବୀ ଓ ରାଜନୈତିକ ନେତାମାନଙ୍କର ପ୍ରବଂଚନା, ତଥାକଥିତ ଲୋକ ଦେଖାଣିଆ ଈଶ୍ୱରଭକ୍ତି ଓ ଧର୍ମକୁ ବେପାର କରି ବଂଚୁଥିବା ମଣିଷମାନଙ୍କ ବିରୁଦ୍ଧରେ ବିଦ୍ରୋହର ସ୍ୱଷ୍ଟ ଭାବଧାରା ପ୍ରତିଫଳିତ। 'ମୂକ' ନାଟକଟି ସାମସମୟିକ ଘଟଣା ଉପରେ ରଚିତ ହୋଇଛି। ସାମ୍ପ୍ରତିକ ସମାଜ ପାଇଁ ଏହା ଏକ ଜ୍ୱଳନ୍ତ ଚେତାବନୀ। ଗୋଟିଏ ସାମ୍ବାଦିକ ପରିବାରର ହାହୁତାଶମୟ ଯନ୍ତ୍ରଣାକ୍ଲିଷ୍ଟ ଜୀବନର ଚିତ୍ର ଏଥିରେ ଦେଖିବାକୁ ମିଳେ। ଆଜିର ସମାଜରେ ପ୍ରତିବାଦ ବା ପ୍ରତିରୋଧର ସ୍ୱର ଅବଲୁପ୍ତ। ସେଥିପାଇଁ ଦିବାଲୋକରେ ମୁଖ୍ୟସଡ଼କରେ ହତ୍ୟା, ଅପହରଣ, ନାରୀର ଇଜ୍ଜତ ଲୁଟିନେବା ଆଦି ବଭତ୍ସ ଅମାନୁଷିକ ଘଟଣାଗୁଡ଼ିକ ଘଟୁଛି କିନ୍ତୁ କେହି ଏପ୍ରକାର ଅନ୍ୟାୟ ବିରୁଦ୍ଧରେ ମୁହଁ ଖୋଲନ୍ତି ନାହିଁ ଏବଂ ବୁଝି ପାରନ୍ତିନି ଯେ, ସେ ବିପଦ ଯେ ଦିନେ ତାଙ୍କ ଉପରକୁ ଆସିପାରେ। ଆଉ ଯିଏ ଅନ୍ୟାୟ ଅନୀତିକୁ ପ୍ରତିରୋଧ କଲା ବା ତାହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲା ସେ ହେଲା ହିଂସାର ଶିକାର। ସ୍ୱାର୍ଥପର ଶାସକ ଦଳର ନେତା ଓ ବିରୋଧୀ ଦଳର ନେତାମାନେ

ହାତ ମିଳାଇଥାନ୍ତି । କ୍ଷମତାରେ ଥିବା ଦଳର ଲୋକମାନେ ଅନ୍ୟଦଳର ଲୋକଙ୍କୁ ମାରିଦେଲେ ଦଳମୁଖ୍ୟଙ୍କର କିଛି ଯାଏ ଆସେନା । ସେ କେବଳ ନିଜର ସ୍ୱାର୍ଥକୁ ହିଁ ଜାଣନ୍ତି । ସେମାନେ ସାମ୍ବାଦିକମାନଙ୍କୁ ଅର୍ଥବଳରେ କିଣିନିଅନ୍ତି । ସମ୍ବାଦପତ୍ର ଅଫିସରେ କାମ କରୁଥିବା ସଚ୍ଚୋଟ ସାମ୍ବାଦିକଜଣକ ବିତାଡ଼ିତ ହୋଇଛି । ସମ୍ବାଦ ଅଫିସର ମାଲିକ ପରମଗୁରୁ ନେତାମାନଙ୍କଠାରୁ ଲାଂଚନେଇ ନୀତି ଆଦର୍ଶକୁ ତାଚ୍ଛଲ୍ୟ କରି କହିଛି- "ଭୋକ ଏମିତି ଏକ ଜିନିଷ, ଯାହା ଦାମ୍‌ରେ କୌଣସି ଧାର ଧାରେନା । ଓଦାପେଟ କେବେ ବିପ୍ଳବ କରିପାରେନା । ଆଦର୍ଶ....ବିପ୍ଳବ...ଏଗୁଡ଼ାକ ସବୁ ଫମ୍ପା ଆଓ୍ୱାଜ । ରାତ୍ରୀର ରଙ୍ଗପରି ମୂଲ୍ୟହୀନ । ଦିବସର ଉଷ୍ଣତା ପରି ବର୍ଣ୍ଣହୀନ ।"

ଅଳକା କୌଣସି ଧମକକୁ ନଡରି ସତ୍ୟପଥରେ ଆଗେଇ ଯାଇଛି । କୋର୍ଟରେ ସାକ୍ଷୀଦେବାକୁ ବାହରିଲାବେଳେ ଶାସକଦଳର ନେତା ସବୁ ପ୍ରମାଣ ଲୋପ କରିଦେବା ପାଇଁ ତା'ର ଜିଭ କାଟି ଦେଇଛନ୍ତି ।

ନାଟ୍ୟକାର ଶାଣିତ ସ୍ୱରରେ ପୋଲିସ ଇନ୍‌ସ୍‌ପେକ୍ଟରଙ୍କ ମୁଖରେ କୁହାଇଛନ୍ତି, "ଯେଉଁଠି ପ୍ରତିବାଦର ସ୍ୱର ଲୋପ ପାଏ, ସେଠି ଏହିଭଳି ମୂକମାନେ ଜନ୍ମନିଅନ୍ତି । ଯେତେଦିନ ଯାଏ ଏ ଦେଶର ଜନତା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତୋଳନ ନ କରିଛନ୍ତି । ସେତେଦିନ ଯାଏ ଏମିତି ଘଟି ଚାଲିଥିବ ।"

ରାଜନୈତିକ ନେତାମାନଙ୍କର ଅତ୍ୟାଚାର ଓ ଜନତାଙ୍କର ନିଶ୍ଚେଷ୍ଟଭାବ, ପ୍ରବଂଚକ ଧାର୍ମିକଗୁରୁମାନଙ୍କର ସାମ୍ପ୍ରଦାୟିକତା, ଜାତିଜାତି ମଧ୍ୟରେ ବିଭେଦର ପ୍ରଚାର ଆଜିର ପୃଥିବୀରେ ଅରାଜକତା ସୃଷ୍ଟିକରିଛି । 'ଈଶ୍ୱର ଆଜି ସ୍ଥାନ ପାଉ ନାହାନ୍ତି କେଉଁଠାରେ ରହିବାକୁ । ନାଟ୍ୟକାରଙ୍କର 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ଏଭାବକୁ ସଫଳ ଭାବରେ ରୂପାୟନ କରିପାରିଛି । ଈଶ୍ୱର ସବୁଧର୍ମର ସବୁଜାତିର ଦେବତା । ମାତ୍ର ପଣ୍ଡା, ପୁରୋହିତ, ଧର୍ମଯାଜକ ଓ ମୌଲାବୀମାନେ ସେ ମହାନ ଉଦାରତାର ଦ୍ୱାରକୁ ସବୁ ସମୟ ପାଇଁ ବନ୍ଦକରି ଅରାଜକତା ସୃଷ୍ଟିକରି ଲୋକଙ୍କୁ ଶୋଷଣ କରନ୍ତି ।

ନାଟ୍ୟକାରଙ୍କ ଭାଷାରେ-

ଈଶ୍ୱର- ମୋ ଦୃଷ୍ଟିରେ ସବୁ ଧର୍ମ ସମାନ । ମୁଁ ସବୁ ଧର୍ମର ସମନ୍ୱୟର ଦେବତା ।

ମହାସେବକ- ସେସବୁ ପୋଥିର ପାଠ । ଅଳନ୍ଧୁ ଲଗାପାଠ, ମୂଲ୍ୟହୀନ, ଅଦରକାରୀ

(ମୂକ , ପୃ-୫୬)

ଧର୍ମ ନାମରେ ସେମାନେ ସବୁ ପାପ କରିପାରନ୍ତି । ଲୋକଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧିଦେଇ ନିଜକୁ ଈଶ୍ୱରଙ୍କର 'ଚଳନ୍ତି ପ୍ରତିମା' ବୋଲି ଘୋଷଣା କରନ୍ତି । ସେମାନଙ୍କ

କଥାକୁ ଲୋକମାନେ ସହଜରେ ବିଶ୍ୱାସ କରିଯାନ୍ତି। ଏହା ତ ଯୁଗେଯୁଗେ ଘଟିଥାଏ। ସାମ୍ପ୍ରଦାୟିକତା ଭେଦଭାବ ଓ ଜାତି ଅଜାତି ସୃଷ୍ଟି କରିବା ସେମାନଙ୍କର ବଡ଼ କୃତିତ୍ୱ।

ଏହି ବ୍ୟାପାର ସତେ ଯେପରି ଏକ ପ୍ରହସନ ସଦୃଶ। ତେଣୁ ନାଟ୍ୟକାର ଏକ ମ୍ୟାଜିକ୍ ବା ଯାଦୁକରୀ ଦେଖାଇବାର ମାଧ୍ୟମରେ ଧର୍ମ ନାମରେ ହେଉଥିବା ପ୍ରବଂଚନାକୁ ବ୍ୟଙ୍ଗ କରିଛନ୍ତି। ନାଟକର ଆରମ୍ଭ ହୋଇଛି ମ୍ୟାଜିକର ଓସ୍ତାଦ ଦେଖାଇବାକୁ ଈଶ୍ୱରଙ୍କୁ ଆଦେଶ ଦେଇଛି।

ଈଶ୍ୱର ସତେଯେମିତି ଏକ ଅସହାୟ ସତାରେ ପରିଣତ ହୋଇ ଯାଇଛନ୍ତି। ପଣ୍ଡା, ପୂଜାରୀ, ମୌଲା ବା ଧର୍ମଯାଜକମାନଙ୍କର ଜୀବନ ଜୀବିକା ପାଇଁ ଏକ ମାଧ୍ୟମରେ ପରିଣତ ହୋଇଯାଇଛନ୍ତି। ସେମାନେ ଈଶ୍ୱରଙ୍କର ପାଖଲୋକ ବୋଲି ତାଙ୍କର ଆଦେଶ ନିର୍ଦ୍ଦେଶକୁ ଜନସାଧାରଣ ବେଦର ଗାର ବୋଲି ମନେ କରନ୍ତି। ଠାକୁରଙ୍କର ସେବିକା ଦେବଦାସୀକୁ ଉପଭୋଗ କରିବା ସହ ନାନାଦି ଅପକର୍ମରେ ଜଡ଼ିତ ଥାଆନ୍ତି। ଏସବୁର ଏକ ଏକ ନିଛକ ଚିତ୍ର ନାଟ୍ୟକାର ପ୍ରଦାନ କରିଛନ୍ତି।

ଭୋପାଳ ଗ୍ୟାସ୍ ଦୁର୍ଘଟଣାରୁ ବର୍ତିଥିବା ଏକ ଖ୍ରୀଷ୍ଟିଆନ୍ ଦମ୍ପତି (ଯୋଶେଫ୍ ଓ ମେରୀ) ଈଶ୍ୱରଙ୍କର ଦର୍ଶନ ପାଇଁ ବଡ଼ ଅଭିଳାଷ ନେଇ ଶ୍ରୀକ୍ଷେତ୍ର ଧାମକୁ ଆସିଥିଲେ। ବଡ଼ ଆଶା କରିଥିଲେ ଭଗବାନଙ୍କୁ ଦର୍ଶନ କରି ସେମାନଙ୍କର ଗାଁ'କୁ ଫେରିଯିବ। ହେଲେ କ'ଣ ହେଲା ? ଯୋଶେଫ୍ ତ ଦର୍ଶନ ପାଇଲା ନାହିଁ ବରଂ ନିଜର ସ୍ତ୍ରୀ ମେରୀକୁ ହରାଇଲା। ସରଳ ବିଶ୍ୱାସୀ ମେରୀ ମହାସେବକର ପ୍ରତାରଣା ବୁଝିନପାରି ଧର୍ଷିତା ହୋଇ ମୃତ୍ୟୁବରଣ କଲା। ନାଟ୍ୟକାରଙ୍କର ବ୍ୟଙ୍ଗର ସ୍ୱର ଏଇଠାରେ ଖୁବ୍ ତୀବ୍ର ହୋଇଛି।

ଯୋଶେଫ୍: ଧର୍ମ ନାମରେ କାହିଁକି ତାହେଲେ ଯେ ପ୍ରହେଳିକା ? କାହିଁକି ପ୍ରଚାର କରୁଛ। ଈଶ୍ୱର ବିଶ୍ୱର ଠାକୁର। ବିଶ୍ୱର ନିୟନ୍ତା। ବିଶ୍ୱନାୟକ ? ଧର୍ମ ନାମରେ କେତେଦିନ ଏ ଭଣ୍ଡାମି ?

ମହାସେବକ: ହଇବେ, ମତେ ତତ୍ତ୍ୱ ଶିଖେଇବୁ ? ମୋ ବାପା ଅଜା ଚଉଦ ପୁରୁଷରୁ ଆମେ ଈଶ୍ୱରଙ୍କ ସେବାପୂଜା କରିଆସିଛୁ। ଆମେ ତତ୍ତ୍ୱ ଜାଣିନୁ ? ହେ ଯୀଶୁଚେଲା, ବାହାର ଏଠୁ, ଆବେ ଜଲଦି ବାହାର। (ପୃ: ୩୬-୩୭)

ସ୍ୱୟଂ ଈଶ୍ୱରଙ୍କର ନ୍ୟାୟ ଅନ୍ୟାୟ ପ୍ରଶ୍ନରେ ମହାସେବକ ତାଚ୍ଛଲ୍ୟର ସହିତ ଉତର ଦିଅନ୍ତି ଯେ ଈଶ୍ୱର ଯଦି ସର୍ବଶକ୍ତିମାନ ତେବେ ଧରାପୃଷ୍ଠରେ ଯେତେ ଅନ୍ୟାୟ ଅନୀତିର ଘଟଣା ଘଟୁଛି ତାହାକୁ ବାଧା ଦେଇ ବନ୍ଦ କରି ପାରୁନାହାନ୍ତି କାହିଁକି ? ସେତେବେଳେ କ'ଣ ତାଙ୍କର। ଶକ୍ତି କେଉଁଆଡେ ଚାଲିଯାଉଛି ? ଏ ଯୁଗରେ ଈଶ୍ୱରଙ୍କର ଅବତାର ଆଉ

କୌଣସି କାମ କରିବ ନାହିଁ ବୋଲି ମହାସେବକ ବିଦ୍ରୂପ କରି କହିଛି। କାରଣ ସେ ଭଲଭାବରେ ଜାଣେ ଯେ ଏ ଦେଶର ଜନସାଧାରଣ ଦେବତାଠାରୁ ସେବକ ବା ପୂଜକକୁ ଅଧିକ ବିଶ୍ୱାସ କରନ୍ତି। ଭଗବାନ ସେମାନଙ୍କୁ କେବଳ ଦର୍ଶନ ଦିଅନ୍ତି ବୋଲି ଜାଣନ୍ତି। ତେଣୁ ମହାସେବକ ନିଜକୁ ସର୍ବଶକ୍ତିମାନ ମନେକରନ୍ତି।

ମହାସେବକ: ଥାଉ ଈଶ୍ୱର। ଆଉ ସେ ନିର୍ମଳ ଭାବମୂର୍ତ୍ତିର ଅବତାରଣା କରିବା ଦରକାର ନାହିଁ। ଆସନ୍ତା କାଲି ସର୍ବ ସମ୍ମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ ତମର ଆବଶ୍ୟକତା ଶେଷ ହୋଇଯାଇଛି। ଆମକୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ହେବ...।

ଏହା ତ ବାସ୍ତବ କଥା ଆଜିର ଦୁନିଆରେ ଈଶ୍ୱରଙ୍କର ସ୍ଥାନ ନାହିଁ। ସେ ଏକ ନିରାଶ୍ରୟ ଅସହାୟ ସତ୍ତାଟିଏ କେବଳ ମାତ୍ର। ସମାଜରେ ସବୁଆଡ଼େ ଦୁର୍ନୀତି, ଭ୍ରଷ୍ଟାଚାର। ମନ୍ଦିର, ମଠ ଓ ଜାତିଆଣ ଦଙ୍ଗା ଈଶ୍ୱରଙ୍କୁ ଯଦି ପ୍ରକୃତରେ ଅନ୍ତରରେ ଉପଲବ୍ଧି କରିପାରନ୍ତେ, ତେବେ ଏପରି ଲଜ୍ଜାକର ପରିସ୍ଥିତି ଘଟନ୍ତା କି ?

ଏ ନାଟକ ମାଧ୍ୟମରେ ଏକ ବଳିଷ୍ଠଭାବ ଉଦ୍ରେକକାରୀ ଚେତନା ଜାଗ୍ରତ କରାଯାଇଛି। ଯଥାର୍ଥ ସଂଳାପ, ପାତ୍ରୋପଯୋଗୀ ଭାଷା ନାଟକଟିକୁ ସଫଳ କରିଛି। କୌଣସି ଜଟିଳ ସଂଳାପ ନାଟକଟିକୁ ଭାରାକ୍ରାନ୍ତ କରିନାହିଁ। ଦ୍ୱିତୀୟତଃ ଏହି ନାଟକଟି କୌଣସି ନିର୍ଦ୍ଦିଷ୍ଟ ଧର୍ମ ଉଦ୍ଦେଶ୍ୟରେ ଲେଖାଯାଇନାହିଁ। ଏଥିରେ ଜାତୀୟ ସଂହତିର ବାର୍ତ୍ତା ପ୍ରଚାରିତ। ଏକ ସାର୍ବଜନୀନ ଭାବବୋଧକୁ ନେଇ ଏ ନାଟକର ସୃଷ୍ଟି ହୋଇଥିବାରୁ ଏହା ପ୍ରଚାରମୂଳକ ନହୋଇ ଏକ ଶ୍ରେଷ୍ଠ ସଫଳ ନାଟକ ରୂପେ ବହୁ ଉଚ୍ଚ ପ୍ରଶଂସିତ ହୋଇପାରିଛି। 'ଓ ସବାଶେଷ ଲୋକ' ଏକ ପରୀକ୍ଷାମୂଳକ ନାଟକ। ଏହି ନାଟକରେ ଆଦିଲୋକ, ପାଖଲୋକ ଓ ଶେଷଲୋକ ଏହିପରି ପ୍ରତୀକ ମାଧ୍ୟମରେ ନାଟକଟି ନୂତନଭାବରେ ପ୍ରକାଶିତ ହୋଇଛି।

ଧରାପୃଷ୍ଠରେ ସତେଯେପରି ଦଳିତ ନିର୍ଯ୍ୟାସିତ ସାଧାରଣ ଲୋକ ହେଉଛନ୍ତି ସବାଶେଷଲୋକ। ସେମାନେ ଯେପରି ଶେଷପାହାଚ ତାଙ୍କୁ ସିଡ଼ି ବା ମାଧ୍ୟମ କରି ସମସ୍ତେ ଉପରକୁ ଉଠନ୍ତି। ଅଥଚ ସେମାନେ ସେମିତି ଅବହେଳିତ ହୋଇରହିଯାଆନ୍ତି। ସେମାନେ ବିପ୍ଳବ କରନ୍ତି। କିନ୍ତୁ ସ୍ୱାଧୀନତାର ସବୁଯାକ ଫଳ ଅନ୍ୟ ସୁବିଧାବାଦୀ ଗୋଷ୍ଠୀ ନେଇଯାଆନ୍ତି। ଶାସନ ଗଣତନ୍ତ୍ର ହେଉ ବା ରାଜତନ୍ତ୍ର ହେଉ; ସବୁ ସେମାନଙ୍କ କାନ୍ଧ ଉପରେ ଆସେ। ଅଥଚ ସେମାନେ ସବୁ ଯୁଗରେ ଅବହେଳିତ ଓ ଅତ୍ୟାଚାରିତ। ସମାଜର ତଳ ପାହାଚରେ ରହିବା ସତେ ଯେପରି ସେମାନଙ୍କର ଭାଗ୍ୟରେ ଲେଖା ହୋଇଥାଏ। ଦେଶ ପାଇଁ ଜାତିପାଇଁ ଏମାନେ ନିଜର ଲହୁଲୁହ ଢାଳିଦିଅନ୍ତି କିନ୍ତୁ ଇତିହାସରେ ସେମାନଙ୍କର ନାମ ରହେନାହିଁ। କୋଣାର୍କ ହେଉ ବା ତାଜମହଲ ହେଉ ସେମାନେ

ଶିଳାରେ କେବଳ ଶିଳା ହୋଇରହିଗଲେ ମାତ୍ର ଗୌରବତକ ରାଜାମାନଙ୍କ ନାମରେ ଗଲା। ନାଟ୍ୟକାର ମୁଖବନ୍ଧରେ କୁହନ୍ତି- "ସେମାନଙ୍କ ନାମରେ ସ୍ୱାଧୀନତା ଆସେ,ହେଲେ ସେମାନେ ସ୍ୱାଧୀନତାର ସ୍ୱାଦ ଚାଖିପାରନ୍ତି ନାହିଁ। ସେମାନଙ୍କ କାନ୍ଧ ଉପରେ ଗଣତନ୍ତ୍ରର ଖମ୍ବ ସ୍ଥାପନ ହୁଏ। ହେଲେ ଇତିହାସରେ ସେମାନଙ୍କୁ କେହି ପଚାରନ୍ତି ନାହିଁ। ଏହି ଅପାଙ୍‌କ୍ତେୟ ମଣିଷମାନଙ୍କର କାହାଣୀ ହେଉଛି, ସବାଶେଷ ଲୋକର କାହାଣୀ। ଇତିହାସର ବିଭିନ୍ନ ଯୁଗ ତଥା ଆଧୁନିକ ଗଣତନ୍ତ୍ରର ଯୁଗରେ ମଧ୍ୟ ସାଧାରଣ ଲୋକ ବାରମ୍ବାର ପ୍ରବଂଚିତ ହୋଇଛି ଓ ହେଉଥିବ ମଧ୍ୟ।

ନାଟ୍ୟକାର ଶେଷଲୋକ ମୁହଁରେ କୁହାଇଛନ୍ତି ଯେ ଗୁରୁଦ୍ରୋଣଙ୍କ ବିଶ୍ୱାସଘାତକତା ପାଇଁ ପୃଥିବୀର ପ୍ରତିକୋଣରେ ଏକଲବ୍ୟମାନେ ଆଜି କ୍ଷତାକ୍ତ। ଏପରିକି ରାମରାଜ୍ୟରେ ମଧ୍ୟ ସବାଶେଷଲୋକକୁ ନ୍ୟାୟ ମିଳିନି। କାରଣ ରାମ ଥିଲେ ଜଣେ ରାଜାମାତ୍ର ଯେକି ବ୍ରାହ୍ମଣ ସମାଜ ହାତରେ ଥିଲେ ଏକ କ୍ରୀଡ଼ନକ।

ଆଧୁନିକ ଯୁଗରେ ମଧ୍ୟ ସବାଶେଷଲୋକ ପ୍ରତାରିତ ହୋଇଛି। ସେମାନଙ୍କ ଭଦ୍ରରୂପରେ ଭୁଲି ସେ ଭୁଲ୍ କରିଛି। ଭୋଟଦେଇ ସେମାନଙ୍କ ଦ୍ୱାରା ଶାସିତ ହେବାକୁ ଅଧିକାରଟିଏ ଦେଇଦେଇଛି। ଏସବୁର ଚମତ୍କାର ବର୍ଣ୍ଣନା ହୋଇଛି-

ସମସ୍ତେ: ଆମେ ସମସ୍ତେ ଭଦ୍ରଲୋକ
ଆମେ ସମସ୍ତେ ଜ୍ଞାନୀଲୋକ
ଆମେ ସମସେତ ଉର୍ଦ୍ଧ୍ୱଲୋକ

ସବାଶେଷଲୋକ : ନା...! ତମେମାନେ ଦେଶଦ୍ରୋହୀ...ବିଶ୍ୱାସଘାତକ, ତମେମାନେ ମଣିଷ ଜାତିକୁ ଧୋକ୍କା ଦେଇଛ! ଏ ପବିତ୍ର ମାଟିର କର୍ଣ୍ଣଧାରା ହେବାକୁ ତମେମାନେ ଅଯୋଗ୍ୟ।

ସବାଶେଷ ଲୋକର ସରଳ ନିର୍ବୋଧତା ଯୋଗୁ ସେ ସବୁ ସମୟରେ ନିର୍ଯ୍ୟାତିତ ହେଉଛି। ସେ ତାର ଅଧିକାର ସମ୍ପର୍କରେ କେବେବି ସଚେତନ ହେଇନି। ଅନ୍ୟମାନଙ୍କୁ ସହଜରେ ବିଶ୍ୱାସ କରିଯାଉଛି। ନିଜ ହାତମୁଠାକୁ ଟାଣକରି ସୁବିଧାବାଦୀ ଗୋଷ୍ଠୀମାନଙ୍କୁ ଆଦୌ ସୁଯୋଗ ଦେବା ଉଚିତ ନୁହେଁ।

ନାଟକର ଉପସଂହାରରେ ଶେଷଲୋକର ପ୍ରଶ୍ନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ।

ଶେଷଲୋକ: ସବାଶେଷ ଲୋକ ପାଇଁ ତମର ଶେଷବାର୍ତ୍ତା?

ମହାଲୋକ: ଅହିଂସାର ଅନ୍ୟନାମ ବିପ୍ଳବ! ବାସ୍...ଏତିକି ନାଟକଟି ବିଭିନ୍ନ ପ୍ରତୀକ, ଲୋକ ସଙ୍ଗୀତ ମାଧ୍ୟମରେ ଜୀବନର ବିଭିନ୍ନ ସମସ୍ୟାକୁ ରୂପାୟିତ କରାଯାଇଛି ବା ଶାସନ ବ୍ୟବସ୍ଥାକୁ ବ୍ୟଙ୍ଗ କରାଯାଇଛି।

ଏ ନାଟକ ସମ୍ପର୍କରେ ରମେଶ ପାଣିଗ୍ରାହୀଙ୍କ ମନ୍ତବ୍ୟ- " The story of the lastman is much reviewed play. It has no stylistic innovations but its content centres round the most ordinary man of contemporary society, one who walks endlessly facing the sun, the man who lifts the burden of others without being conscious that he is doing a great job".ବେଶ୍ ପ୍ରଣିଧାନ୍ୟଯୋଗ୍ୟ, 'ପୁନଶ୍ଚ ସଂଗ୍ରାମ' ନାଟକରେ ନାଟ୍ୟକାର କାଳର ପ୍ରତୀକ ରୂପେ ସମୟକୁ ନେଇ ଚେତାବନୀ ଶୁଣାଉଛନ୍ତି ଯେ କେତେ ଯୁଗ, କେତେଶାସନ, କେତେ ରାଷ୍ଟ୍ରର ଉତ୍‌ଥାନ ପତନ ସମୟ ବକ୍ଷରେ ଘଟିଯାଇଛି, କିନ୍ତୁ ସେସବୁର ଦିନେ ବିଲୟ ଘଟିଛି।

ଏ ପରିବର୍ତ୍ତନଶୀଳ ସମାଜରେ ପ୍ରତିଯୁଗରେ ପ୍ରତିମୁହୂର୍ତ୍ତରେ ବିବେକ ବଳି ପଡୁଛି। ସତ୍ୟକୁ ସମାଧି ଦିଆଯାଉଛି। ନ୍ୟାୟର ନଥିପତ୍ର ନଷ୍ଟ କରାଯାଇଛି। ସେଇଠି ସ୍ନେହ ମମତା ମୂଲ୍ୟହୀନ। ଏ ନାଟକରେ ନେତା ଓ ସେମାନଙ୍କର ଚାମଚା ପ୍ରଭୃତିଙ୍କର ଦୁର୍ନୀତିକୁ ରୂପଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଉପଲବ୍ଧି କରାଇଦେଇଛନ୍ତି, ଯେତେଦିନ ଯାଏ ଏ ଅରାଜକତା ଶେଷ ହୋଇନାହିଁ ସେତେଦିନ ଯାଏ ସଂଗ୍ରାମ ଜାରିରଖିବାକୁ ପଡ଼ିବ। ସ୍ୱାଧୀନତା ସଂଗ୍ରାମୀ ବୃଦ୍ଧ ନିତାଇରାମ ମୁଖରେ ନାଟ୍ୟକାର କୁହାଇଛନ୍ତି ଯେ-

> "ଯେତେଦିନ ଯାଏ ଜନତାର ନିଦ ନ ଭାଙ୍ଗିଛି, ଯେତେଦିନ ଯାଏ ଜନଗଣ ଆତ୍ମସଚେତନ ନ ହୋଇଛନ୍ତି। ସେତେଦିନ ପର୍ଯ୍ୟନ୍ତ ଏ ଅରାଜକତା ଲାଗି ରହିଥିବ। ଏ ଅନ୍ୟାୟର ପ୍ରତିରୋଧ କରିବାକୁ ହେଲେ ଗଣବିଦ୍ରୋହ ଦରକାର।"

'ସୁବର୍ଣ୍ଣ ସକାଳ' ନାଟକଟି ସାମ୍ପ୍ରତିକ ସମାଜ ଓ ସହରୀ ଜୀବନ ଯାତ୍ରାର ରୂପାୟନ କରିବା ସହ ବ୍ୟଙ୍ଗ ଓ ପ୍ରତିବାଦର ମାନସିକତାକୁ ଯଥାର୍ଥ ଭାବରେ ଚିତ୍ରଣ କରିପାରିଛି। ଏ ନାଟକଟିରେ କଟକ ମହାନଗରୀ ତାର ହଜାର ବର୍ଷ ପୂର୍ତ୍ତିପାଳନ କରୁଛି। ଅଥଚ ପ୍ରତିଦିନ ସେଠି ଜନସାଧାରଣ ନାନାଦି ଅଭାବ, ଅସୁବିଧା, ଗୁଣ୍ଡାରାଜର ସମ୍ମୁଖୀନ ହେଉଛନ୍ତି। ଏ ନାଟକରେ କଟକ ସତେ ଯେପରି ଏ ଦେଶର ସମସ୍ତ ସହରକୁ ପ୍ରତିନିଧିତ୍ୱ କରୁଛି। ଆଜି ସମସ୍ତ ସହରମାନଙ୍କରେ ଏ ଅବସ୍ଥା ଲାଗି ରହିଛି। ଅତୀତରେ ଦିନେ କଟକ ନଗରୀକୁ ବନ୍ୟାବିପତ୍ତିରୁ ରକ୍ଷା କରିବାପାଇଁ ସାଧାରଣ ପ୍ରଜା ବାଇମୁଣ୍ଡି ରାଜାଙ୍କୁ ଚେତାଇ ଦେଇଥିଲା। ଅଥଚ ଆଜି କଟକରୁ ରକ୍ଷା କରିବାତ ଦୂରର କଥା ଏସବୁ ବିଷୟରେ କେହି ମୁଣ୍ଡ ଖେଳାନ୍ତି ନାହିଁ। ସତେ ଯେପରି ସେମାନଙ୍କ ଆତ୍ମା ଫେରିଆସିଛି। ସେମାନଙ୍କର ପ୍ରିୟ କଟକ ନଗରୀର ଅବସ୍ଥା ଦେଖିବାକୁ। ସେମାନେ ବୁଲିବୁଲି ସବୁଆଡ଼େ କଟକର ବିଡ଼ମ୍ବିତ ରୂପକୁ ଦେଖୁଛନ୍ତି।

କଟକ ଜନସାଧାରଣ ପ୍ରତିବର୍ଷ ଚାନ୍ଦା ଆଦାୟ ଜୁଲମର ଶିକାର ହୁଅନ୍ତି। ସାହି ଦାଦାମାନଙ୍କର ଚାନ୍ଦା, ପୂଜା ଦୋକାନମାନଙ୍କଠାରୁ ପୋଲିସର ଚାନ୍ଦା ଜନସାଧାରଣଙ୍କ ଜୀବନକୁ ବିପର୍ଯ୍ୟସ୍ତ କରିଦିଏ। ଚାନ୍ଦା ଦେଲେ ମଲେ, ନଦେଲେ ମଧ ମରିବେ। ନାଟ୍ୟକାରଙ୍କ ଭାଷାରେ-

"ଆଜ୍ଞା ଥାନାବାବୁ ନେବେ। ଆପଣ ନେବେ। ସାହି ଦାଦା ନେବେ। ମ୍ୟୁନ୍‌ସିପାଲିଟି ନେବେ। କେତେ ରୋଜଗାର ହେବ ଯେ, ଏତେ ଲୋକଙ୍କୁ ବଟିଦେବୁ।" କଟକ ବଡ଼ ଡାକ୍ତରଖାନା କଥା ନକହିଲେ ଭଲ। ଏଠି ବିନା ଲାଂଚରେ ବେଡ୍‌ଟିଏ ମିଳେନି। ଚିକିତ୍ସା ଅଭାବରେଲୋକ ମରିଗଲେ ସେମାନଙ୍କର କ'ଣ ଯାଏ ଆସେ। କଟକ ନଗରୀ ସବୁବେଳେ ନାଳନର୍ଦ୍ଦମାରେ ପରିପୂର୍ଣ୍ଣ ଥାଏ। ମଶା ମାଛି ସହିତ ସେମାନଙ୍କର ଭାଇବନ୍ଧୁ ଭାବରେ ଚଳନ୍ତି। ଅଥଚ କଟକ ନଗରୀର ମ୍ୟୁନ୍‌ସିପାଲଟି ତା'ର ସୁବର୍ଣ୍ଣ ଜୟନ୍ତୀ ପାଳନ କରେ।

ବିଷାକ୍ତ ମଦ ପିଇ ଏତେ ଲୋକ ମଲେ ଅଥଚ ନେତା ଅଫିସର ସମସ୍ତେ ଏହାକୁ ମିଥ୍ୟାବୋଲି ପ୍ରମାଣିତ କରିବାକୁ ତତ୍ପର ହେଲେ। ଦିନ ଦ୍ୱିପ୍ରହରରେ ଗୋଟିଏ ହତ୍ୟାକାଣ୍ଡ ଘଟିଲା। ଏତେ ଲୋକ ଦେଖିଥିଲେ କିନ୍ତୁ ପୋଲିସ ଜେରା କଲାବେଳେ କେହି କିଛି କହିଲେନି। ନାଟ୍ୟକାର ବୁଦ୍ଧିଜୀବୀମାନଙ୍କର ଅଦ୍ଭୁତ ପ୍ରବଂଚନାକୁ ବ୍ୟଙ୍ଗ କରିଛନ୍ତି। କନେଷ୍ଟବଳ ଜଣେ ପ୍ରଫେସରଙ୍କୁ ହତ୍ୟାକାଣ୍ଡ ବିଷୟରେ ପଚାରିଲା ବେଳେ ପ୍ରଫେସର ଉତ୍ତର ଦିଅନ୍ତି-

"ତିରିଶ ବର୍ଷ ମୋର କଟି ଗଲାଣି, ଏକ ଜଗନ୍ନାଥତତ୍ତ୍ୱ ଅଧ୍ୟାପନା କରିକରି। ମୁଁ ଦେଖିନି ? ନ ଦେଖିଥିଲେ ଏତେ ପିଲାଙ୍କୁ ପଢ଼ାନ୍ତି କିପରି ? ଜାଣିଲେ ଇନସ୍‌ପେକ୍ଟର, ଏବେ ବି ସମୟ ଅଛି। ଆସାମୀକୁ ଯଦି ଧରିବାକୁ ଚାହୁଁଛ,ଜଗନ୍ନାଥ ପଢ଼। ମୋ ବହିରେ ସବୁ ଅଛି।"

କଟକ ସହର ଜୀବନଯାତ୍ରାରର ଏଭଳି ବିଡ଼ମ୍ବିତ ରୂପକୁ ଦେଖି ବିବ୍ରତ ହେଉଥିଲା ବେଳେ ରାଜାଙ୍କର ଆଶ୍ୱାସନା ମାଧ୍ୟମରେ ନାଟ୍ୟକାର ଚେତାଇ ଦେଇଛନ୍ତି ଯେ ମନ୍ଦ ପରେ ଭଲ ଆସେ। ଅମାବାସ୍ୟା ପରେ ନିଶ୍ଚିତ ଭାବରେ ପୂର୍ଣ୍ଣିମା ଆସିବ। ସେଥିପାଇଁ ଆଉ ଏକ ସୁବର୍ଣ୍ଣ ସକାଳକୁ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି।

ରାଜଧାନୀ କଲେଜ
ଭୁବନେଶ୍ୱର

●●●

# ମୁଁ ଓ ମୋ ନାଟକ

**ନାରାୟଣ ସାହୁ**

ଆମମାନଙ୍କ ଭଳି ସେମାନଙ୍କର ମଧ୍ୟ ନିଜସ୍ୱ ଦୁନିଆ ଅଛି। ସେମାନେ ଯଦି ତାଙ୍କ କଥା ସ୍ୱଚ୍ଛନ୍ଦରେ କହି ପାରିବେ, ତେବେ ଆମର ଆବଶ୍ୟକତା ଅନୁଭୂତ ହେବନି । ସେମାନଙ୍କ କଥା ହେଉଛି, ଏଇ ସମାଜରେ ଘଟୁଥିବା କିଛି କଥା। ମୋର ଭୂମିକା ଏଠି ନିମିତ୍ତ ମାତ୍ର । ସେମାନେ ଯେତେବେଳେ ଚାହାଁନ୍ତି, ମୋ ମାଧ୍ୟମରେ ନିଜ କଥା ଲେଖେଇ ନିଅନ୍ତି। ମୁଁ କେବଳ ଜଣେ ରାଇଟର ହୋଇଯାଏ। ଘରଟା ଶୂନ୍‌ଶାନ୍ ହୋଇଗଲେ, ସେମାନେ ମୋ ପାଖକୁ ଆସନ୍ତି, କଥାବାର୍ତ୍ତା କରନ୍ତି । ସେ ସମୟ ରାତି ବାରଟା କିମ୍ୱା ରାତି ଦୁଇଟା ହୋଇପାରେ । ତେବେ ଘରେ କେହି ନଥିବା ବେଳେ ମୋ ସହିତ ସେମାନଙ୍କ ବାର୍ତ୍ତାଳାପ ବେଶ୍ ଜମିଯାଏ। ସେମାନଙ୍କ କଥା ଭିତରେ ମୋ କଥା ମିଶିଯାଏ। ତା'ପରେ ପୂର୍ଣ୍ଣାଙ୍ଗ ରୂପ ନିଏ ସେଇକଥା ଅର୍ଥାତ୍ ନାଟକ କଥା।

ଆଜି ତା'କଥା କହୁଛି, ଯିଏ ମୋ ପାଖରେ ନାହିଁ। ତା' ନାଁ ହେଉଛି 'ତାମସୀ ତୃଷ୍ଣା'। ଏହାର ନିର୍ଦ୍ଦେଶକ ଥିଲେ ହର ପଟ୍ଟନାୟକ। ବଲାଙ୍ଗୀର ଠାରେ ଶତପଥୀ ନାମକ ଜଣେ ସାମ୍ବାଦିକଙ୍କ ଉପରେ ଗାଡ଼ି ଚଢ଼ାଇ ତାକୁ ମାରି ଦିଆଯାଇଥିଲା । କାରଣ ସିଏ ତାଙ୍କ ଲେଖାରେ ସରକାରଙ୍କ କଳାଧନ୍ଦାକୁ ଲୋକଲୋଚନକୁ ଆଣିଥିଲେ। ଧରିତ୍ରୀ ଖବରକାଗଜରୁ ଘଟଣାଟି ସଂଗ୍ରହ କରିଥିଲି। ନାଟକ ମଂଚସ୍ଥ ହେଲା ବକ୍ସିବଜାର ସ୍ଥିତ ଝୁନ୍‌ଝୁନ୍‌ୱାଲା ଭବନ ଭିତରେ ଥିବା ପଡ଼ିଆରେ। ଅନାଦି ସାହୁ ଆଇ.ପି.ଏସ୍. ତାକୁ ଉଦ୍‌ଘାଟନ କରିଥିଲେ । କେଶ୍‌ଟି ସବ୍‌ଜୁଡ଼ିସ୍ ଥିବାରୁ କାହିଁକି ଏଭଳି କାମରେ ହାତ ଦେଲି ବୋଲି ପ୍ରଶ୍ନ ଉଠାଇଥିଲେ। ସେ ବିଷୟରେ ମୋର ଧାରଣା ନଥିବା କଥା ଜଣେଇଥିଲି। ନାଟକଟି ଆଶାତୀତ ସଫଳତା ଲାଭ କରିଥିଲା। ଏସବୁ ପ୍ରାପ୍ୟ ହରର। ନାଟକର ସଫଳତା କଥା ଶୁଣି ଉଦଳାର ହେମନ୍ତ ଦାସ ପାଣ୍ଡୁଲିପିଟି ମାଗିନେଇ ମଂଚସ୍ଥ କରାଇଥିଲେ । ଏବେବି ମଧ୍ୟ ମୁଁ ସେଇ ପ୍ରଥମ ନାଟକର ଅପେକ୍ଷାରେ। ଏ ଘଟଣା ୧୯୮୩-୮୪ର।

୧୯୮୪ ଶେଷ ଆଡ଼କୁ ଆସିଲା 'ସଂଘର୍ଷ' । ସଂଘର୍ଷର କାହାଣୀ ଥିଲା ମୋ ଜୀବନଯନ୍ତ୍ରଣା ଏବଂ ସଂଘର୍ଷର କାହାଣୀ। କେତେଟା କଲେଜ୍‌ରେ ଇଣ୍ଟରଭିଉ ଦେଲି । ସବୁଠି ଥିଲା ସ୍ୱାର୍ଥର ଗନ୍ଧ । କିଛି ପାଇବାକୁ ହେଲେ କିଛି ଦବାକୁ ପଡ଼ିବ। ସେତେବେଳେ

ମନରେ ପ୍ରଶ୍ନ ଉଠିଥିଲା, ଯେଉଁ ମାନଙ୍କର ବ୍ୟାକିଙ୍ଗ କିମ୍ବା ବ୍ୟାଙ୍କିଙ୍ଗ ନାହିଁ, ସେମାନେ ତାହେଲେ କ'ଣ ସବୁଥିରୁ ବଂଚିତ? ଏହାର ଉତ୍ତର ଖୋଜି ଖୋଜି ମୁଁ ପଶିଥିଲି ପୁରାଣ, ଇତିହାସ ଆଉ ସାଂପ୍ରତିକ ସମାଜରେ । ସବୁ ସମାଜର ବଡ଼ପଣ୍ଡାମାନଙ୍କୁ ଭେଟିଥିଲି। ପ୍ରଶ୍ନ ବି କରିଥିଲି। ସେଇ ଗୋଟିଏ ଉତ୍ତର ମିଳିଥିଲା, ତଳସ୍ତରର ମଣିଷର ପାଇବାର କିଛି ହକ୍ ନାହିଁ । ଅର୍ଥାତ୍ ଦଳିତ ମଣିଷଟି ସବୁଯୁଗରେ ଦଳିତ। ସିଏ ଏକଲବ୍ୟ ହଉ, ଶମ୍ବୁକ ହଉ, ତାଜମହଲ ଶିଳ୍ପୀ ହଉ କି ସାଂପ୍ରତିକ କାଳର କୃଷକଟିଏ ହଉ। ନାଟକଟି ମାତ୍ର ତିନିଦିନ ରିହର୍ସଲରେ ଉତ୍ତୁରୁଥିଲା। ଦିନକୁ ୮ରୁ୧୦ଥର ରିହର୍ସଲ ହର କରାଉଥିଲା। ହରର ତାଡ଼ନା ଆଉ ତାଗିଦ୍ ନାଟକଟିକୁ ସଫଳତା ଆଣି ଦେଇଥିଲା। ଢେଙ୍କାନାଳ 'ଶିଳ୍ପୀ' ପ୍ରତିଯୋଗିତାକୁ ଯାଇ ହର ଏବଂ ଆମ କଳାକାରଗଣ ବାଟରେ ଟ୍ରେକର ଦୁର୍ଘଟଣାର ଶିକାର ହେଲେ। ସେ ଅନୁଭୂତିକୁ କେବେ ଭୁଲିହବ ନାହିଁ।

ତା'ପରେ ୧୯୮୨ ବେଳକୁ ଆସିଲା 'ଶିଥିଳ ଦୁକୂଳ'। କାହାଣୀଟିକୁ ଅନାଦି ବାବୁ ସଂଗ୍ରହ କରିଥିଲେ ଜଗତସିଂହପୁରରୁ। ବାପଭାଇଙ୍କୁ ପୋଷିବାକୁ ଯାଇ ଝିଅଟି କିପରି ବେଶ୍ୟାବୃତ୍ତି କରିବାକୁ ବାଧ୍ୟ ହୋଇଥିଲା, ତାରି କାହାଣୀ ସହିତ କିଛିଟା କଳ୍ପନା ମିଶାଇ ଗଢ଼ିଲି ନାଟକ 'ଶିଥିଳଦୂକୁଳ', ଯାହା କଳାବିକାଶ କେନ୍ଦ୍ରରେ ତିନିଦିନ ମଂଚସ୍ଥ ହୋଇଥିଲା ଏବଂ ଶେଷଦିନ ଟିକେଟ୍ ବ୍ଲାକ୍ ହୋଇଥିଲା। ଏ ନାଟକର ନିର୍ଦ୍ଦେଶକ ଥିଲେ ହରିଶ ମହାନ୍ତି ଏବଂ ନାଟ୍ୟ ସଂସ୍ଥା ଥିଲା 'ସ୍ମୃତି' । ଏଥିରେ ଅଂଶଗ୍ରହଣ କରିଥିବା କଳାକାରଗଣ ଆଜି ସିନେମାରେ ଆଗଧାଡ଼ିର କଳାକାର। ମିହିର, ବିରେନ୍, ରବି ସମସ୍ତେ ସିନେମା ତଥା ଟେଲି ସିରିଏଲ୍ ସହିତ ଭଲଭାବରେ ପ୍ରତିଷ୍ଠିତ।

୧୯୮୯ରେ ଆସିଲା ରାମମନ୍ଦିର-ବାବ୍ରି ମସ୍‌ଜିଦ୍ ଭଂଗା ଘଟଣା । ହିନ୍ଦୁ ମୁସଲମାନ୍ ସଂପର୍କ। ଧର୍ମ ନାମରେ ଚାଲିଲା ଅତ୍ୟାଚାର। ପୁରୀ ମନ୍ଦିରକୁ ଅନ୍ୟ ଧର୍ମର ଲୋକ ଯାଇ ପାରିଲେ ନାହିଁ। ପଞ୍ଜାବର ହିନ୍ଦୁ ମନ୍ଦିରରେ କଟା ଗୋରୁମୁଣ୍ଡ ଫିଙ୍ଗାଗଲା। ଭାରତର ସାମାଜିକ ଜୀବନ ଏଇ ଘଟଣାରେ ବେଶ୍ ପ୍ରଭାବିତ ହୋଇଥିଲା। ସରକାର ମଧ୍ୟ ଦେଖି ନ ଦେଖିଲା ଭଳି ରହିଗଲେ। ଏଇଠି ମନକୁ ପ୍ରଶ୍ନ ଆସିଲା । ଈଶ୍ୱର ଯଦି ସର୍ବଶକ୍ତିମାନ, ତା'ହେଲେ ନିଜକୁ ରକ୍ଷା କରିବାକୁ ଅସମର୍ଥ କାହିଁକି? ଜନ୍ମ ନେଲା ନାଟକ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର', ଯାହା ୧୯୯୧ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପୁରସ୍କାର ପାଇଥିଲା। ସେତେବେଳେ ମଧ୍ୟ ପ୍ରଶ୍ନ ଉଠିଲା, ମୁଁ ଜଗତର ନାଥ ଜଗନ୍ନାଥଙ୍କୁ ନିନ୍ଦିତ କରିଛି ଜଗନ୍ନାଥଙ୍କୁ ପୁରୀ ପଣ୍ଡାମାନଙ୍କର ନାଥ ବୋଲି କହିଛି । ସତ କହିବାକୁ ଗଲେ ସବୁ ଧର୍ମ ସଂପ୍ରଦାୟରେ ବ୍ୟଭିଚାର ଥିଲା। ତାକୁ ହିଁ ଲକ୍ଷ୍ୟ କରି ମୁଁ ବ୍ୟଙ୍ଗ କରିଥିଲି । ସିଧାସଳଖ ଈଶ୍ୱରଙ୍କୁ ଏବଂ ତାଙ୍କ ମହାସେବକଙ୍କୁ ଆକ୍ରମଣ କରିଥିଲି। ଧର୍ମ ସଂପ୍ରଦାୟଟି ହିନ୍ଦୁ, ଇସଲାମ୍ ବା ଇସାଇ ହୋଇପାରେ । ସାମସମୟିକ କେତେକ ଘଟଣାକୁ

ଏହା ସହିତ ଯୋଡ଼ି ଦେଇଥିଲି। ଯେମିତିକି ଭୋପାଳ ଗ୍ୟାସ ଦୁର୍ଘଟଣା । ଏ ଘଟଣାର ଦଶବର୍ଷ ପରେ ଲିଙ୍ଗରାଜଙ୍କ ଅଳଂକାର ଚୋରିହେଲା । ଏବଂ ଅନ୍ୟ କେତେକ ମନ୍ଦିରରୁ ସୁନା ଅଳଙ୍କାର ହରିଲୁଟ୍ ହେଲା । ନା'ନିଜେ ଠାକୁର ନା' ତାଙ୍କ ସେବକ କେହି ତାକୁ ଉଦ୍ଧାର କରିପାରିଲେ ନାହିଁ। ଆଜି ବି ସେହି ଘଟଣା ବାରମ୍ବାର ବିଭିନ୍ନ ସ୍ଥାନରେ ଘଟିଚାଲିଛି।

୧୯୯୨ ବେଳକୁ 'ସଂଘର୍ଷ'ର ନବୀକରଣ ହେଲା । 'ସବାଶେଷଲୋକ' ନାମ ଧାରଣ କରି ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ ମଂଚସ୍ଥ ହେଲା । ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ଅଜିତ୍ ଦାସ, ଜର୍ଜ ତିଆଡ଼ି, ସନ୍ତୋଷ ମହାନ୍ତି. ବନବିହାରୀ ମହାପାତ୍ର ପ୍ରମୁଖ। ଏଯାବତ୍ ଏହି ନାଟକ ଓଡ଼ିଶା ତଥା ଓଡ଼ିଶା ବାହାରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଭାଷାରେ ମଂଚସ୍ଥ ହୋଇ ଚାଲିଛି। ପରବର୍ତ୍ତୀ କାଳରେ ଏଥିରେ ନାରୀ ଚରିତ୍ର ସଂଯୋଜିତ ହୋଇଛି। ବିଶେଷ କରି ଉତ୍କଳ ସଂଗୀତ ମହାବିଦ୍ୟାଳୟର ନାଟକ ବିଭାଗର ଛାତ୍ରଛାତ୍ରୀଗଣ ଏହାର ଚରମ ଉତ୍କର୍ଷ ସାଧନ କରିଛନ୍ତି।

ଦୁର୍ନୀତି ଆଉ ଅତ୍ୟାଚାରକୁ ବିରୋଧ କରିବାର ଆଉ ଏକ ପ୍ରୟାସ ଆରମ୍ଭ ହୁଏ ୧୯୯୬ ମସିହାରେ । ସେ ସମୟରେ ରାଜଧାନୀରେ ଜଣେ ସଚ୍ଚୋଟ ସାମ୍ବାଦିକ ପରିବାର କିପରି ତଳିତଳାନ୍ତ ହୋଇଛନ୍ତି ତା'ର ଏକ ନଗ୍ନ ପ୍ରତିଛବି 'ମୂକ' । ନାଟକଟି 'ଆମେ କ୍ରାନ୍ତି' ଉଦଳା ପକ୍ଷରୁ ଅନୁଗୁଳ ସଭାଘର ମଂଚରେ ୧୯୯୬ ଡିସେମ୍ବର ୨୧ ତାରିଖରେ ମଂଚସ୍ଥ ହୁଏ। ରାମଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶିତ ଏହି ନାଟକର ସଂଗୀତ ପରିଚାଳନା କରିଥିଲେ ଜୟକୃଷ୍ଣ ପୃଷ୍ଟି 'ନାଟ୍ୟମ୍'ର ଚତୁର୍ଥ ନାଟ୍ୟ ପ୍ରତିଯୋଗିତାରେ ନାଟକଟି ସର୍ବଶ୍ରେଷ୍ଠ ନିର୍ଦ୍ଦେଶନା, ସର୍ବଶ୍ରେଷ୍ଠ ଅଭିନେତ୍ରୀ, ଦୁଇଟି ସ୍ୱତନ୍ତ୍ର ଜୁରୀ ପୁରସ୍କାର ପାଇଥିଲା। ବିଭିନ୍ନ ଭୂମିକାରେ ଥିଲେ ରତିକାନ୍ତ ବେହେରା, ପ୍ରଦ୍ୟୁମ୍ନ ଦାସ, ଅଖିଳ ସ୍ୱାଇଁ, ରତ୍ନାକର ଦାସ, କ୍ଷୀରୋଦ ମହାନ୍ତି. ପଙ୍କଜ ଖୁଣ୍ଟିଆ, ସୁଦର୍ଶନ ନାୟକ, ମହେଶ୍ୱର ସାହୁ, ଆଶିଷ ମହାନ୍ତି, ପ୍ରଦୀପ ପଣ୍ଡା, ଦୀନେଶ କବାଟ, ଦେବେନ୍ଦ୍ର ମହାନ୍ତି, ସିତୁନ୍ (ଶିଶୁ) ଏବଂ ଶ୍ୟାମା କର୍ମକାର।

ପ୍ରତିଟି ଯୁଗରେ ସତ୍ୟର କଣ୍ଠରୋଧ କରାଯାଇଛି। ଗୋଟିଏ ଶାସନ ପରେ ଆଉ ଗୋଟିଏ ଶାସନ ଅଛି। ରାଜତନ୍ତ୍ରଠାରୁ ଗଣତନ୍ତ୍ର ପର୍ଯ୍ୟନ୍ତ ସବୁଠି ସତ୍ୟ ଉପରେ ଅତ୍ୟାଚାର କରାଯାଇଛି। ସର୍ବସାଧାରଣ ସ୍ଥାନରେ ଘଟିଯାଇଥିବା ଏକ ହତ୍ୟାକାଣ୍ଡକୁ କେନ୍ଦ୍ର କରି ଗୋଟିଏ ହସଖୁସିଭରା ସାମ୍ବାଦିକ ପରିବାର ତଳିତଳାନ୍ତ ହୋଇଛି। ସେମାନଙ୍କର ଏକମାତ୍ର ଭୁଲ ହେଲା ସେମାନେ ଯାହା ସତ୍ୟ ତାହାକୁ ପ୍ରକାଶ କରିଥିଲେ। ସାମ୍ବାଦିକ ଏବଂ ତାଙ୍କ ପତ୍ନୀ ଉଭୟ ସମ୍ବାଦପତ୍ରରୁ ବିତାଡ଼ିତ ହୋଇଛନ୍ତି। ପତ୍ନୀଙ୍କର ଜିଭ କାଟି ଦିଆଯାଇଛି ଏବଂ ହାତ ଦୁଇଟାକୁ ଜଖମ୍ କରିଦିଆଯାଇଛି। ସାମ୍ବାଦିକଙ୍କ ପତ୍ନୀ ନର୍ସିଂହୋମ୍‌ରେ ପ୍ରାଣତ୍ୟାଗ କରିବା ପୂର୍ବରୁ ଏକ ମୂକ ଶିଶୁକୁ ଜନ୍ମ ଦେଇଛନ୍ତି । ଏହି ଶିଶୁଟି ଏକ ପ୍ରକାର ଉପହାର। ଏ ଦେଶର ମୂକ ଜନସାଧାରଣଙ୍କ ପାଇଁ ଯେଉଁମାନେ ଅଥର୍ବ ଏବଂ ନପୁଂସକ

କିଛି ନ କହି ମଧ୍ୟ ଏକ ବିରାଟ ପ୍ରଶ୍ନବାଚୀ ଉତ୍ତୋଳନ କରିଛି'ମୂକ' । ଏ ପ୍ରଶ୍ନ ଶାସନ ଏବଂ ବିରୋଧୀ ଦଳ ପାଇଁ,କୋଟି କୋଟି ବୁଦ୍ଧିଜୀବୀଙ୍କ ପାଇଁ।

"ହଁ, ଗୋଟାଏ ଅନୁରୋଧ, ଏ ଉପନ୍ୟାସ ଯେହିଦିନ ପୂର୍ଣ୍ଣାଙ୍ଗ ହେବ ଯେଉଁଦିନ ଆପଣମାନେ ବୁଲିଆସିବେ ମାଲିସାହିର ଅଳିଆଗଦା ଭିତରକୁ ନୁହେଁ, ଅଳକାଶ୍ରମକୁ । ଅଳକାନନ୍ଦାର ତୀରରେ ଗଢିଉଠିବ ଆହୁରି ଅନେକ କିଛି। ଆସିବେ...ନିଶ୍ଚୟ ଆସିବେ। ଅଳକାନନ୍ଦା ଏବେବି ଆପଣଙ୍କ ପ୍ରତୀକ୍ଷାରେ।" କାସାଣ୍ଡ୍ରା କ୍ଲବ୍ ଆୟୋଜିତ ନାଟକ ପ୍ରତିଯୋଗିତାରେ 'ଆମେ କ୍ରାନ୍ତି', ଉଦଳାର ନାଟକ 'ଉପନ୍ୟା' ଅଂଶଗ୍ରହଣ କଲା। ରାମଚନ୍ଦ୍ର ମହାପାତ୍ରଙ୍କ ନିର୍ଦ୍ଦେଶନାରେ ଏହି ନାଟକ କେନ୍ଦୁଝର ଟାଉନ୍ ହଲ୍‌ଠାରେ ଡିସେମ୍ବର ୧ ତାରିଖ ୧୯୯୬ରେ ମଂଚସ୍ଥ ହୋଇଥିଲା। କଳା ନିର୍ଦ୍ଦେଶକ ଥିଲେ ରଂଜନ ପରିଡ଼ା ଏବଂ ସଂଗୀତ ନିର୍ଦ୍ଦେଶକ ଥିଲେ ଜୟକୃଷ୍ଣ ପୁଷ୍ଟି। ଲେଖକ ଭୂମିକାରେ ରଣଲାଲ ପ୍ରଧାନ, ଏବଂ ଅନ୍ୟାନ୍ୟ ଭୂମିକାରେ ରଙ୍ଗା-ଆଶିଷ, ଜଗନ-ପ୍ରଦୀପ, ପପୁ-ସନ୍ତୋଷବାହିନୀ, ଅଭିଜିତ୍-ରତିକାନ୍ତ, ମୁକୁନ୍ଦ-କ୍ଷୀରୋଦ, କନେଷ୍ଟବଲ୍-ପ୍ରଦ୍ୟୁମ୍ନ, ଅଳକା-ଶ୍ୟାମା କର୍ମକାର ଅଭିନୟ କରିଥିଲେ।

ସବୁଝିଅଙ୍କ ପରି ତା' ଆଖିରେ ଥିଲା ଅନେକ ସ୍ୱପ୍ନ । ସ୍ୱାମୀ, ସନ୍ତାନ ନେଇ ସେ ମଧ୍ୟ ସୁନେଲୀ ସଂସାରଟିଏ କରିପାରିଥାନ୍ତା। କିନ୍ତୁ ବିଧିର ବିଧାନ ବିଚିତ୍ର। ତାକୁ ଫେରିଯିବାକୁ ପଡ଼ିଲା ଅଳିଆ ଆବର୍ଜନା ଭିତରକୁ । ପଛରେ ପଡ଼ିରହିଲା ତା'ର ଅତୀତ। ସେ ଏକଦା କଲେଜ୍ କୁଇନ୍ ଥିଲା। ଜଣେ ମେଧାବୀ ଛାତ୍ରୀଭାବେ ସମସ୍ତେ ତାକୁ ଜାଣିଥିଲେ। ହେଲେ କଲେଜର ସେହି ନିନ୍ଦନୀୟ ଘଟଣା ତା' ଜୀବନର ଗତିପଥ ବଦଳାଇ ଦେଲା। ସେ ହେଲା ଅଳକାରୁ ଅଳକାନନ୍ଦା। ସମୟ ତା'ଠିଁ ନୂଆ ମୋହର ଲଗାଇ ଦେଲା। କେହି ତା'ର ଖୋଜ ଖବର ରଖିଲେନି। ପଙ୍କରୁ ଜାତ ହୋଇଥିଲେ ବି ପଦ୍ମଭଳି ସେ ସୁଗନ୍ଧ ବିତରିବାରେ ଲାଗିଲା। ଅଳକାନନ୍ଦାର ଦାନରେ ଗଢ଼ି ଉଠିଲା ଅଳକାଶ୍ରମ, ଅଳକା ବିଦ୍ୟାଳୟ ଆଉ ଅଳକା ସେବାସଦନ। ଦିନେ ତା'କୁ ଭଲ ପାଇଥିବା ଶିଳ୍ପୀ ତା'ର ବୃତ୍ତି ପାଇଁ ତା'ଠୁ ଦୂରେଇଗଲା। ସେଥିପାଇଁ ଶିଳ୍ପୀ ଦୀର୍ଘଦିନ ପର୍ଯ୍ୟନ୍ତ ତା'ର ଚିତ୍ରଟିକୁ ଉଲଗ୍ନ ଅବସ୍ଥାରେ ରଖିଥିଲା। ହେଲେ ସେହିଦିନ ଶିଳ୍ପୀର ଏହି ଚିତ୍ର ସମ୍ପୂର୍ଣ୍ଣ ହେଲା, ଅର୍ଥାତ୍ ନାରୀଟି ଶାଢ଼ୀ ପିନ୍ଧିଲା, ଯେଉଁଦିନ ଶିଳ୍ପୀ ଅଳକା ଭିତରେ ପାଇଥିଲା ଏକ ନୂତନତା ସନ୍ଧାନ...ନାରୀତ୍ୱର...ମାତୃତ୍ୱର...। ବାସ୍ତବରେ ଲେଖକଙ୍କ ଅସଂପୂର୍ଣ୍ଣ ଉପନ୍ୟାସଟି ସେହିଦିନ ସମ୍ପୂର୍ଣ୍ଣ ହୋଇଥିଲା।

ଏଇ କାହାଣୀର ଖିଅଟିର ସୂଚନା ଦେଇଥିଲେ ଏକ କୋରିଆନ ଗଳ୍ପରୁ ଖ୍ରୀଷ୍ଟିଆନ୍ ଦମ୍ପତି ସେନଗୁପ୍ତଙ୍କ ଜ୍ୱାଇଁ ପରମାଣିକ ବାବୁ ଯେ କି ଜଣେ ଇଂରାଜୀ ଅଧ୍ୟାପକ। ଚିତ୍ର ଭିତରେ ଯେ ଅନେକ କଥା କୁହାଯାଇପାରେ ସେହିଦିନ ମୋର ହୃଦ୍‌ବୋଧ ହୋଇଥିଲା।

୧୯୯୭ ମସିହା ନଭେମ୍ବର ୨୬ ତାରିଖରେ ବ୍ରହ୍ମପୁର ଟାଉନ୍ ହଲ୍‌ଠାରେ ଶାଶ୍ୱତୀ'ର ଦ୍ୱିତୀୟ ରାଜ୍ୟସ୍ତରୀୟ ନାଟକ ଉତ୍ସବରେ ଭାଗନେଲା ଭୁବନେଶ୍ୱର ସୈନିକ ନାଟ୍ୟସଂସ୍ଥା ପ୍ରଯୋଜିତ ନାଟକ 'ଶେଷଦୃଶ୍ୟ'। ଏହି ନାଟକର ନିର୍ଦ୍ଦେଶକ ଥିଲେ ଡ.ସାର୍ଥକ ସାରଥୀ ସାମନ୍ତରାୟ। ମଂଚ ଆଲୋକ ପରିଚାଳନାରେ ଥିଲେ ସୁଶୀଳ ପ୍ରଧାନ ଓ ସଂଜୀବ ମିତ୍ର। କଳାକାରଗଣ ହେଲେ ସାର୍ଥକ, ଅମ୍ରିତା ମହାପାତ୍ର, ମନୋଜ ସାମନ୍ତରାୟ, ମାନସ ମହାପାତ୍ର ଓ ରାଜା। ଆସାମର ବୋଡ଼ୋ ଉଗ୍ରପନ୍ଥୀ ସମସ୍ୟା ଉପରେ ନାଟକଟି ଆଧାରିତ। ଜଣେ ଦୁର୍ଦ୍ଦାନ୍ତ ଉଗ୍ରବାଦୀକୁ ସାଧାରଣ ଝିଅଟିଏ ନିଜର ସ୍ୱଭାବ ସୁଲଭ ଢଙ୍ଗରେ ବଦଳାଇ ଦେଇଛି। ପୋଲିସ୍ ଆଖିରୁ ବଞ୍ଚିବା ପାଇଁ ଉଗ୍ରପନ୍ଥୀଟି ଜଣେ ମଧ୍ୟବିତ୍ତ ପରିବାର ଭିତରକୁ ପଶିଆସିଛି ଏବଂ ପରିବାର ସଦସ୍ୟଗଣଙ୍କୁ ଡରାଇ ଧମକାଇ ରଖିଛି। ହେଲେ ଛୋଟ ଝିଅଟିର ସରଳ କଥାବାର୍ତ୍ତା ଉଗ୍ରପନ୍ଥୀର ହୃଦୟ ପରିବର୍ତ୍ତନ କରାଇବାରେ ସହାୟକ ହୋଇଛି । ମାତ୍ର ସମସ୍ତଙ୍କର ଅଲକ୍ଷ୍ୟରେ ଉଗ୍ରପନ୍ଥୀଟି ଘରୁ ଚମ୍ପଟ ମାରିବା ବେଳେ ପୋଲିସ୍ ଗୁଳିର ଶିକାର ହୋଇ ମୃତ୍ୟୁବରଣ କରିଛି। ଏହ ।ହିଁ ନାଟକ 'ଶେଷଦୃଶ୍ୟ'ର ଶେଷକଥା।

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଦେଶସାରା ପାଳିତ ହେବା ଅବସରରେ 'ଆମେ କ୍ରାନ୍ତି', ଉଦଳାର ପ୍ରାୟୋଜିତ ନାଟକ 'ବନ୍ଦେ ମାତରମ୍' ମଞ୍ଚସ୍ଥ ହୋଇଥିଲା ଅନୁଗୁଳର ସଭାଘର ମଞ୍ଚରେ 'ନାଟ୍ୟମ୍'ର ପଞ୍ଚମ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଡିସେମ୍ବର ୧୪ ତାରିଖ ୧୯୯୭ ମସିହାରେ।

ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଭାରତର ଗଳିକନ୍ଦିରେ ସୁବର୍ଣ୍ଣ ଜୟନ୍ତୀର ଅନାହତ ସ୍ୱର ଅନୁରଣିତ ହୋଇଥିଲା ବେଳେ ସାଧାରଣ ଖଟିଖିଆ ମେହେନତି ମଣିଷ ଅନାହାରରେ ଅନୁଭବ କରିବାକୁ ବାଧ୍ୟ ହୋଇଛି ସ୍ୱାଧୀନତାର ସ୍ୱାଦକୁ। ଇଚ୍ଛା ନଥିଲେ ବି ହସିବାକୁ ଚେଷ୍ଟା କରିଛି ସାଧାଣ ମଣିଷ। ସମୟ ଆସିଛି ପରଖିବାକୁ ନିଜକୁ ଓ ଅନ୍ୟକୁ। ପଚାଶ ବର୍ଷର ଲୁହଲହୁର ସ୍ୱାଧୀନତାକୁ। ପ୍ରଗତିକୁ ଆଉ ପରଶ୍ରୀକାତରତାକୁ। ଅତୀତ ହଜିଯାଇଛି। ସ୍ୱାଧୀନ ଭାରତ ଆଜି ସମସ୍ୟାଘେରରେ ବନ୍ଦୀ । ଏ ପଚାଶ ବର୍ଷ ମଧ୍ୟରେ ଆମେ ନିଜକୁ ଆଉ ଆମ ମାଟିକୁ ଚିହ୍ନିପାରିଲୁ ନାହିଁ । ସବୁଠି ଅରାଜକତାର ଆର୍ତ୍ତ ଚିତ୍କାର । ସ୍ୱାର୍ଥନ୍ୱେଷୀ ଗୋଷ୍ଠୀ ହାତରେ ସ୍ୱରାଜ ସନ୍ତାପିତ। ତ୍ରାହି ତ୍ରାହି ଡାକ ଛାଡୁଛି ଜନନୀ ଜନ୍ମଭୂମି। ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଜଣେ କେହି କିଛି କରିପାରିବ ନାହିଁ। ଦରକାର ସମ୍ମିଳିତ ଶକ୍ତି। ବନ୍ଦେ ମାତରମ୍ ଧ୍ୱନି ଦେଇ ଜନ୍ମଭୂମିକୁ ଅନାମୟ କରିବା ପାଇଁ ନାଟ୍ୟକାର ଆହ୍ୱାନ ଦେଇଛନ୍ତି। ପୁଣି ଥରେ ଦେଶକୁ ସ୍ୱାଧୀନ କରାଇବାର ଆହ୍ୱାନ ଦେଇଛନ୍ତି ଲେଖକ। ରାଜନୀତି ସ୍ୱାଧୀନତା ଆମକୁ ଯଥେଷ୍ଟ ଦେଇଛି । ହେଲେ ଆଜି ସମୟ ଆସିଛି ଆମର ଆର୍ଥନୀତିକ ସ୍ୱାଧୀନତା ଦରକାର । ନେତାଙ୍କୁ ସଂଗ୍ରାମୀ ନିତାଇରାମ

ଶୁଣାଇଛି- "ଗାଲମାଧବ, ଦେଶ ଶାସନ କରିବା ପୂର୍ବରୁ ପ୍ରଥମେ ମଣିଷ ହେବାକୁ ଚେଷ୍ଟା କର।"

କେନ୍ଦ୍ରାପଡ଼ାର 'ଆମେ କଳାକାର' ନାଟ୍ୟସଂସ୍ଥା ପକ୍ଷରୁ ୧୯୯୫ ମସିହା ନଭେମ୍ବର ମାସରେ କଟକର କଳାବିକାଶ କେନ୍ଦ୍ରଠାରେ ତୃତୀୟ ବହୁଭାଷୀ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରିଥିଲା ହାସ୍ୟ ରସାତ୍ମକ ନାଟକ 'ବାଜେ ନାଟକ' । ଉକ୍ତ ନାଟକଟି ତୃତୀୟ ସର୍ବଶ୍ରେଷ୍ଠ ହାସ୍ୟ ରସାତ୍ମକ ନାଟକର ଗୌରବ ଲାଭ କରିଥିଲା। ନିର୍ଦ୍ଦେଶନା ଦେଇଥିଲେ ଦିଲୀପ ସାହୁ। ବିଭିନ୍ନ ଭୂମିକାରେ ରସିକ ଶେଖର-ଦିଲୀପ ସାହୁ, ରସରାଜ-ଅଶୋକ ଦାସ, ରସପଂଚକ-ଗିରିଧାରୀ ସାହୁ, ରସିକ ଚୂଡ଼ାମଣି-ଦୁଷ୍ମନ୍ତ ପାତ୍ର, ରସଗ୍ରୀବ-ପ୍ରକାଶ ଜେନା ଏବଂ ରସିକାନନ୍ଦ-ସୌମ୍ୟରଞ୍ଜନ ପ୍ରଧାନ । ସଂଗୀତ ପରିଚାଳନା କରିଥିଲେ ପ୍ରେମାଞ୍ଜନ।

ଜେଲ୍‌ରୁ ଖସି ପଳେଇ ଆସିଥିବା କେତେଜଣ କଏଦୀ ଗୋଟିଏ ଅଡ଼ିଟୋରିଅମ୍ ଭିତରକୁ ହଠାତ୍ ପଶି ଆସିଛନ୍ତି। ସଭା ଆରମ୍ଭ ପୂର୍ବରୁ ସେମାନେ ଅତିଥିଗଣଙ୍କୁ କାବୁ କରି ଗୋଟିଏ ଘର ଭିତରେ ବନ୍ଦୀ କରି ରଖିଛନ୍ତି। ସଭା ଆରମ୍ଭ ହୋଇଛି । ମାତ୍ର ଭାଷଣ କଳା ସେମାନଙ୍କୁ ଜଣା ନଥିବାରୁ ଧରା ପଡ଼ିଯାଇଛନ୍ତି। ପୋଲିସ୍ ସେମାନେଙ୍କୁ ଗିରଫ କରିଛି। ପୁଣିଥରେ ଜେଲ୍ ଯିବା ପୂର୍ବରୁ ଦର୍ଶକମାନଙ୍କ ନିକଟରେ କଏଦୀଗଣ କ୍ଷମାପ୍ରାର୍ଥନା କରିଛନ୍ତି ଏବଂ ସେ ରାତିର ଘଟଣା ସବୁକୁ ଏକ ବାଜେ ନାଟକର ଡାଇଲଗ୍ ଭାବି ଭୁଲିଯିବାକୁ ଅନୁରୋଧ କରିଛନ୍ତି। ପରବର୍ତ୍ତୀ କାଳରେ ଏଇ ନାଟକର ନାମ ପରିବର୍ତ୍ତିତ ହୋଇ ରହିଛଇ 'ଏମିତି ବି ହୁଏ'।

"ସେ ଦିନ ମୁଁ ଆପଣଙ୍କୁ ଅନୁରୋଧ କରିଥିଲି ଏଇ କଟକ ନଗରୀକୁ ବଢ଼ିରୁ ରକ୍ଷା ପାଇବା ପାଇଁ । ସେଥିପାଇଁ ତିଆରି ହୋଇଥିଲା ପଥରବନ୍ଧ । ହେଲେ ମଣିମା, ମୁଁ ଆଉ ସହିପାରୁନି। ସେ ବନ୍ଧଟାକୁ ଭାଙ୍ଗିଦିଅନ୍ତୁ। କଟକ ନଗରୀଟା ଭାସିଯାଉ"-ଏହା ଥିଲା ବାଇମୁଣ୍ଡିର ସଂଳାପ ରାଜା ମର୍କତକେଶରୀଙ୍କ ପ୍ରତି। ଏହାଥିଲା ନାଟକ 'ସୁବର୍ଣ୍ଣ ସକାଳ'ର ସଂଳାପ। ନଟରାଜ କଳାପରିଷଦ ପକ୍ଷରୁ ଏହା ବନବିହାରୀ ମହାପାତ୍ରଙ୍କ ନିର୍ଦ୍ଦେଶନାରେ କଟକ କଳାବିକାଶ କେନ୍ଦ୍ରଠାରେ ତା୨.୧୦.୧୯୯୩ରେ ଅଭିନୀତ ହୋଇଥିଲା। ପରେପରେ ଏହି ନାଟକ 'ବଡ଼ବଡୁଆ ହୋ' ନାମ ଧାରଣ କରି ଜନ କଲ୍ୟାଣ କ୍ଲବ୍ (ଭୁବନେଶ୍ୱର) ଏବଂ ଷ୍ଟେଟ ବ୍ୟାଙ୍କ୍ ରିକ୍ରେସନ୍ କ୍ଲବ୍, ତୃତୀୟ ବହୁଭାଷୀ ନାଟକ ମେଳା, କଟକ; ବନାନୀ ସାଂସ୍କୃତିକ ସଂସଦ, ଉଦଳା ଦ୍ୱାରା ଅଭିନୀତ ହୋଇଛି। କଟକ ସହରର ବିଭିନ୍ନ ଦୁର୍ନୀତିର ଚିତ୍ର ଏହି ନାଟକରେ ପ୍ରଦର୍ଶିତ। ବାଇମୁଣ୍ଡି ଏବଂ ମର୍କତ କେଶରୀ ଦିନେ କଟକ ନଗରୀର ପଥରବନ୍ଧ ପାଇଁ ଚର୍ଚ୍ଚିତ ହୋଇଥିଲେ। ଅନେକ ଦିନପରେ ସେମାନେ ଦେଖିବାକୁ ଆସିଛନ୍ତି ସ୍ୱପ୍ନର ନଗରୀ କଟକକୁ। ମାତ୍ର କଟକର

ବ୍ୟଭିଚାର, ଅତ୍ୟାଚାରକୁ ସହିପାରି ନାହାନ୍ତି ଦୁଇ ଚରିତ୍ର। ଭାଙ୍ଗି ପଡ଼ିଛି ବାଇମୁଣ୍ଡି। ହେଲେ ଆଶା ହରେଇ ନାହାନ୍ତି ରାଜା ମର୍କତକେଶରୀ । ଆଉ ଏକ ସୁବର୍ଣ୍ଣ ସକାଳକୁ ଅପେକ୍ଷା କରିବାପାଇଁ ସେ ବାଇମୁଣ୍ଡିକୁ ବୁଝାଇଛନ୍ତି । ଏ ନାଟକର Character transformation ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ସାଜିଛି। ମର୍କତକେଶରୀ ଆଉ ବାଇମୁଣ୍ଡିକୁ ଛାଡ଼ି ଜଣେ ବ୍ୟକ୍ତି ଏକାଧିକ ଭୂମିକାରେ ଅଂଶଗ୍ରହଣ କରିବାରେ କୌଣସି ବାଧାନାହିଁ।

'ନାଟ୍ୟମ୍'ର ସପ୍ତମ ରାଜ୍ୟସ୍ତରୀୟ ନାଟ୍ୟମେଳାରେ ଡିସେମ୍ବର ୨୩ ତାରିଖ ୨୦୦୦ ମସିହାରେ ଅନୁଗୁଳର ସଭାଘର ମଞ୍ଚରେ ଅଭିନୀତ ହୁଏ 'ଆମେ କ୍ରାନ୍ତି', ଉଦଳାର ନାଟକ 'ଦର୍ପଣ' । ରାମଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶିତ ଏହି ନାଟକରେ ରତିକାନ୍ତ, କ୍ଷୀରୋଦ, ପ୍ରଦ୍ୟୁମ୍ନ, ଗୋଲକ, ଅମରେଶ, ସୁକାନ୍ତ, ସୂର୍ଯ୍ୟ, ରତି, ପ୍ରଦୀପ, ଚେତନ୍ୟ, ସୁମନ ଅଂଶଗ୍ରହଣ କରିଥିବା ବେଳେ ମଂଚରେ ନିରଞ୍ଜନ ସାହୁ ଓ ସଂଗୀତରେ ଥିଲେ ବିଶ୍ୱଜିତ ମହାନ୍ତି।

ସଳଖ ରାସ୍ତାରେ ଅଣନିଶ୍ୱାସୀ ହୋଇ ଦୌଡୁଥିବା ମଣିଷମାନେ ରାସ୍ତାର ମାହାତ୍ମ୍ୟ ବୁଝିପାରନ୍ତି ନାହିଁ। ସତ କହିବାକୁ ଗଲେ ରାସ୍ତାରେ ଖାଲଢିପ ନଥାଏ। ହେଲେ ଅଣନିଶ୍ୱାସୀ ହୋଇ ଦୌଡୁଥିବାରୁ ସେମାନେ କ୍ଷତାକ୍ତ ହୋଇଥାନ୍ତି। ଶେଷରେ ଦୋଷହୁଏ ରାସ୍ତାର। ରାସ୍ତା କ'ଣ କହିଥିଲା ଏମିତି ଦୌଡ଼ିବାକୁ ? ବାସ୍ତବରେ ରାସ୍ତା ହେଉଛି ଏକ ସ୍ୱଚ୍ଛଦର୍ପଣ। ଦର୍ପଣରେ ମୁହଁ ଦେଖିବାକୁ ଯାଇ ଯଦି ଜୀବନଯୁଦ୍ଧରେ ସେମାନେ ହାରିଯାଆନ୍ତି, ତେବେ ଦର୍ପଣର ଦୋଷ ରହିଲା କେଉଁଠି ?

କଲେଜ ନିର୍ବାଚନ ପରିପ୍ରେକ୍ଷୀରେ ଏକ ଦୁର୍ଘଟଣାର ଶିକାର ହୋଇଛି ଝିଅଟିଏ। ପରାଜିତ ପ୍ରାର୍ଥୀଗଣ ପ୍ରତିଶୋଧ ପରାୟଣ ହୋଇ ଛାତ୍ରୀଟିର ଇଜ୍ଜତ ଲୁଟିଛନ୍ତି । ଛାତ୍ରୀଟିର ସକଳ ଆଶା ସ୍ୱପ୍ନ ଧୂଳିସାତ୍ ହୋଇଛି। ସାମାଜିକ ସ୍ୱୀକୃତି ତା'ର ହଜିଯାଇଛି। ଜୀବନର ମୋଡ଼ ତା'ର ବଦଳିଯାଇଛି। ସାଧାରଣ ସ୍ତରରୁ ହଟିଯାଇ ସେ ପହଞ୍ଚିଛି ଏକ ଭିନ୍ନ ଇଲାକାରେ ଯେଉଁଠି ତା'କୁ ମିଳିଛି ଏକ ଗଣିକାର ପରିଚୟ । ଗଣିକା ହେଲେ ବି ତା' ଭିତରେ ଥିବା ନାରୀ ହୃଦୟଟି ବିଳପି ଉଠିବା ସହିତ ସକ୍ରିୟ ହୋଇ ଉଠିଛି। ଚଲାପଥରେ ସେ ଭେଟିଛି ସମାଜର ସେହି ଦୁଷ୍ଟ ଗ୍ରହମାନଙ୍କୁ ଯେଉଁମାନେ ଅନୁତାପ ଅନଳରେ ଦଗ୍ଧିଭୂତ ହୋଇଛନ୍ତି । କ୍ଷମା କରିଦେଇଛି ସେମାନଙ୍କୁ ଏବଂ ସମାଜର ସେହି ପଥରେ ପଥିକ ସାଜିଥିବା ମଣିଷମାନଙ୍କୁ। ବାସ୍ତବରେ ସେ ହିଁ ହେଉଛି ଏକ ସ୍ୱଚ୍ଛ ଦର୍ପଣ।

"ଜନତା! କୋଉ ଜନତା? ବିଚ୍ ବଜାର ଉପରେ ଅସହାୟା ଯୁବତୀ ଉପରେ ଗୁଣ୍ଡାମାନେ ଅତ୍ୟାଚାର କରୁଥିବା ବେଳେ ଯେଉଁମାନେ ତାମ୍‌ସା ଦେଖୁଥିଲେ"–ଏହା ଥିଲା ସହରରେ ଦାଦାମାନଙ୍କ ଆକ୍ରମଣରେ କ୍ଷତବିକ୍ଷତ ହୋଇଥିବା ଏକ ଅସହାୟା ଯୁବତୀର କରୁଣ ଜମାନବନ୍ଦୀ। ସହରର କୌଣସି ଏକ ଛକ ଉପରେ ଏକ ଯୁବତୀକୁ

ଜବରଦସ୍ତି ଉଠାଇ ନେବାକୁ ଚେଷ୍ଟା କରନ୍ତି କିଛି କଲେଜ ପଢୁଆ ଛାତ୍ର। ସେମାନଙ୍କ ଆକ୍ରମଣରୁ ଝିଅଟିକୁ ଉଦ୍ଧାର କରନ୍ତି ଜନୈକ ଅଧ୍ୟାପକ । ଘଟଣାଟି ସହରରେ ହଇଚଇ ସୃଷ୍ଟିକରେ। ଅଧ୍ୟାପକ ମହାଶୟ ନିଜର ବୀରୋଚିତ କାର୍ଯ୍ୟପାଇଁ ପ୍ରଶଂସିତ ହୁଅନ୍ତି।ଝିଅଟି ଅନ୍ୟର ବାଗ୍‌ଦତ୍ତା ହୋଇଥିବାରୁ ତା'ର ବିବାହ ନେଇ ଝଡ଼ର ସୂତ୍ରପାତ ହୁଏ। କୋର୍ଟରେ କେଶ୍ ଚାଲେ। ସଂପୃକ୍ତ ଛାତ୍ରଗଣ ପ୍ରଭାବଶାଳୀ ବ୍ୟକ୍ତିବିଶେଷଙ୍କର ପୁତ୍ର ହୋଇଥିବାରୁ ପାଣି ଗୋଳିଆ ହୁଏ। ପରିସ୍ଥିତିର ଚାପରେ କନ୍ୟା ଓ ତାଙ୍କ ପିତା କୋର୍ଟରୁ କେଶ୍ ଉଠାଇ ଆଣନ୍ତି। ଅଧ୍ୟାପକ ଜଣକ ଭାରସାମ୍ୟ ହରାଇ ବସନ୍ତି। ଗୋଟିଏ ଶିବିରରେ ଭୋଜିଭାତ ଉତ୍ସବ ଚାଲୁଥିବା ବେଳେ ଅନ୍ୟପଟେ ଦୁଃଖର ବାଦଲ ଘୋଟିଆସେ। ନିଜର ଭୁଲ୍ ନିମିତ୍ତ ଝିଅଟି ପ୍ରାୟଶ୍ଚିତ ପାଇଁ ଆଗେଇ ଆସେ । ମାନସିକ ଭାରସାମ୍ୟ ହରାଇଥିବା ଅଧ୍ୟାପକଙ୍କ ସହଧର୍ମିଣୀ ସାଜି ସେ ତାଙ୍କର ଯତ୍ନ ନିଏ।

'ନାଟ୍ୟମ୍'ର ନାଟ୍ୟମେଳାରେ ଅନୁଗୁଳର ସଭାଘର ମଞ୍ଚରେ ୨୦୦୦ ମସିହା ଡିସେମ୍ବର ୨୨ ତାରିଖ ଦିନ ମଞ୍ଚସ୍ଥ ହୁଏ 'ଆମେ କ୍ରାନ୍ତି'ର ନାଟକ ପ୍ରାୟଶ୍ଚିତ। ରାମଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶିତ ଏହି ନାଟକରେ ଅଂଶଗ୍ରହଣ କରିଥିଲେ ରତିକାନ୍ତ, ରତ୍ନାକର, କ୍ଷୀରୋଦ, ପ୍ରଦ୍ୟୁମ୍ନ, ଲରେନ୍ସ, ସୋମେନ୍ଦ୍ର, ସୁଶାନ୍ତ, ମହେଶ୍ୱର ଏବଂ ଜ୍ୟୋତ୍ସ୍ନା ମିଶ୍ର। ସଂଗୀତ ପରିଚାଳନା କରିଥିଲେ ଉପେନ୍ଦ୍ର ନାୟକ।

ସମୟର ଗତିପଥରେ ବଦଳିଯାଇଛି ଅନେକ ଶାସନ। ରାଜତନ୍ତ୍ର ଲୋପ ପାଇ ଗଣତନ୍ତ୍ର ଆସିଛି। ଅନେକ ଦିଗରୁ ରାଜତନ୍ତ୍ର ଲୋପ ପାଇଛି ସତ, ହେଲେ ଏବେବି ରହିଛି ତା'ର ଧ୍ୱଂସାବଶେଷର ଏକ ଦୃଷ୍ଟାନ୍ତ ରାଜା ଭାନୁପ୍ରତାପ। ରାଜଗାଦି, ରାଜତ୍ୱ ରାଜ୍ୟ ସବୁ ଚାଲିଯାଇଛି। କେବଳ ରାଜା ବଞ୍ଚିରହିଛି କେତେକ ସ୍ୱପ୍ନକୁ ନେଇ। "ଆଜି ପର୍ଯ୍ୟନ୍ତ ରାଜାକୁ କେହି ପ୍ରଶ୍ନ ପଚାରି ନାହାନ୍ତି । କେବଳ ରାଜା ହିଁ ପ୍ରଶ୍ନ କରିପାରେ, ହେଲେ ରାଜାକୁ ନୁହେଁ"-ଏହାଥିଲା ଧ୍ୱଂସପ୍ରାପ୍ତ ରାଜତନ୍ତ୍ରର ଶେଷ ପ୍ରତିନିଧି ରାଜା ଭାନୁ ପ୍ରତାପଙ୍କ ପ୍ରଳାପ। ଯଦିଓ ଗଣତନ୍ତ୍ରର ସେ ଅନ୍ୟମାନଙ୍କ ଭଳି ସାଧାରଣ ନାଗରିକ ଏକଥା ସେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି । ସେ ଚାହାନ୍ତି ପ୍ରତିଥର ଭଳି ତାଙ୍କର ଅଭିଷେକ ଉତ୍ସବ ପାଳିତ ହେଉ, ଲୋକ ଉପହାର ଧରି ଆସନ୍ତୁ, ନୃତ୍ୟଗୀତର ଆସର ଚାଲୁ, କିନ୍ତୁ କିଛି ହୁଏନା। ଯନ୍ତ୍ରଣାରେ ଛଟପଟ ହୁଅନ୍ତି ଭାନୁପ୍ରତାପ। ତଥାପି ନିଜର ଅହମିକାକୁ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । କାରଣ ସେ ରାଜା।

ଧ୍ୱଂସପ୍ରାପ୍ତ ଉଜୁଡ଼ା ରାଜତନ୍ତ୍ରର ଧୂସର କ୍ଷେତକୁ ନିଷ୍କପଟ ଭାବେ ଚିତ୍ରଣ କରିବାକୁ ଚେଷ୍ଟା କରିଛି ଇଣ୍ଟରନ୍ୟାସନାଲ ଥିଏଟର ପ୍ରାୟୋଜିତ ନାଟକ 'ଅପରାହ୍ଣର ଅବଶୋଷ' । ୨୦୦୧ ମସିହା ମାର୍ଚ୍ଚ ୨୭ ତାରିଖରେ ବିଶ୍ୱନାଟ୍ୟ ଦିବସ ଉପଲକ୍ଷେ ରବୀନ୍ଦ୍ର ମଣ୍ଡପଠାରେ ଅଭିନୀତ ଏହି ନାଟକକୁ ଉଦ୍‌ଘାଟନ କରିଥିଲେ ରାଜ୍ୟପାଳ ଏମ୍.ଏମ୍.ରାଜେନ୍ଦ୍ରନ୍ ।

ବିଭିନ୍ନ ଭୂମିକାରେ ଥିଲେ ବିରେନ୍ ରାଉତରାୟ, ଶଙ୍କର ବସୁମଲ୍ଲିକ, କାଶୀ ରଥ, ମୋନା, ସଂଜୀବ, ରୁବି ସେଠୀ, ମମତା ମହାନ୍ତି । ସଂଗୀତରେ ମଞ୍ଜୁ ମହାନ୍ତି ଏବଂ ନିର୍ଦ୍ଦେଶକ ଥିଲେ ମିହିର ମେହେର । ଏହି ନାଟକଟି ରାଜା ନାମଧାରୀ 'ଆମକ୍ରାନ୍ତି' ପକ୍ଷରୁ ସ୍ୱସ୍ତି ଝଙ୍କାର ଆୟୋଜିତ ନାଟକ ପ୍ରତିଯୋଗିତାରେ ରାଉରକେଲାଠାରେ ଅଭିନୀତ ହୋଇ ପାଞ୍ଚଟି ପୁରସ୍କାର ହାସଲ କରିଛି। ବାଲେଶ୍ୱର, ବାରିପଦା, ଏବଂ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପଠାରେ ମଧ୍ୟ ଅଭିନୀତ ହୋଇଛି।

ଶାଶ୍ୱତୀ ନାଟ୍ୟସମାରୋହର ସପ୍ତମ ପର୍ବରେ ବ୍ରହ୍ମପୁର ଟାଉନହଲ୍‌ଠାରେ କଳାକଞ୍ଚନା, ଭୁବନେଶ୍ୱର ପକ୍ଷରୁ ମଂଚସ୍ଥ ହୋଇଥିଲା ନାଟକ 'ସ୍ୱପ୍ନ' ଜାନୁଆରୀ ୫ ତାରିଖ ୨୦୦୩ ରବିବାର ଦିନ । ଗୀତନୃତ୍ୟରେ ଥିଲେ ଆନ୍‌ପା ମାରାଣ୍ଡି। ନିର୍ଦ୍ଦେଶନାରେ ଥିଲେ ସାର୍ଥକ ସାରଥୀ ସାମନ୍ତରାୟ । ବିଭିନ୍ନ ଭୂମିକାରେ ରହିଥିଲେ-ଆନ୍‌ପା, ଚିତ୍ତ ପଟ୍ଟନାୟକ, ଶରତ ମିଶ୍ର, ରବି ନାୟକ, ସର୍ବେଶ୍ୱର ବେହେରା, ସନ୍ତୋଷ ରଥ ଓ ଗିରିଜା ବେହେରା।

ଏ ଦୁନିଆରେ ବଂଚିବା ପାଇଁ କିଏ କେତେ ପ୍ରକାର ବିଜ୍‌ନେସ୍ କରୁଛି । ହେଲେ ସବୁଠାରୁ ଶସ୍ତା ଆଉ ସହଜ ବିଜିନେସ୍ ହେଉଛି ରାଜନୀତି କରିବା। ଖାଲି ରାଜନୀତି ନୁହେଁ, ଗାନ୍ଧୀ ନାଁରେ ରାଜନୀତି କଲେ ଫାଇଦାଟା ବେଶୀ । ଗାନ୍ଧୀ, ଗୋପବନ୍ଧୁ ନାଁରେ ତାଳି ପକାଇ ଏ ଦେଶର ଜନଗଣଙ୍କୁ ଭୁଆଁ ବୁଲେଇବା ଭାରି ସହଜ। ସତ କହିବାକୁ ଗଲେ ଗାନ୍ଧୀ ନାଁରେ ବିଜିନେସ୍ କଲେ ମୋଟା ଅଙ୍କର ପ୍ରଫିଟ୍ ମିଳେ । ଭିକାରୀଠାରୁ ଆରମ୍ଭ କରି ଭି.ଆଇ.ପି ପର୍ଯ୍ୟନ୍ତ ସମସ୍ତେ ଗାନ୍ଧୀଙ୍କୁ ଚଳୁ କରିବାରେ ବ୍ୟସ୍ତ । ଆମର କ'ଣ ଆଉ କିଛି କାମ ନାହିଁ? ଏଇ ଗାନ୍ଧୀ ନାମଟାକୁ ବେପାର କରୁଥିବା ? ଏବେବି ସମୟ ଅଛି ଆପଣମାନେ ଥରେ ଚିନ୍ତା କରନ୍ତୁ, ନିଜ ଭିତରକୁ ଫେରନ୍ତୁ । ଯେଉଁ ଲୋକଟା ଆମକୁ ଏତେ ବଡ଼ ସ୍ୱାଧୀନତା ଦେଇଗଲା, ଆମେ ତା'କୁ ଦେଲେ କ'ଣ? ଅନୁରୋଧ ଅନ୍ତତଃ ଆଜି ଦିନଟା ବିନା ସ୍ୱାର୍ଥରେ ତା'କଥାଟା ଟିକିଏ ଭାବନ୍ତୁ । ହୁଏତ ତା'ସ୍ୱପ୍ନ ସାର୍ଥକ ହୋଇପାରେ । ଏ ଥିଲା ନାଟକ 'ସ୍ୱପ୍ନ'ର ବାର୍ତ୍ତା।

ରାଉରକେଲା ସିଭିକ୍ ସେଣ୍ଟରଠାରେ ସଂକଳ୍ପର ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ମଞ୍ଚସ୍ଥ ହେଲା ନାଟକ 'ଏକ ଆତ୍ମହତ୍ୟା ସମ୍ପର୍କରେ' । ୨୦୦୬ ମସିହା ଅକ୍ଟୋବର ୨୫ ତାରିଖ ଦିନ ନିର୍ଦ୍ଦେଶନାରେ ରାମଚନ୍ଦ୍ର ମହାପାତ୍ର ଥିଲେ। ବିଭିନ୍ନ ଭୂମିକାରେ ଥିଲେ ରାମଚନ୍ଦ୍ର, ବାପି, ପ୍ରଦୀପ ପଣ୍ଡା, କ୍ଷୀରୋଦ, ଜ୍ୟୋତ୍ସା ମିଶ୍ର । ଏସ୍.ଏମ୍.କ୍ରିଏଟିଭ୍ ଆର୍ଟସ୍, ବାଲେଶ୍ୱର ପକ୍ଷରୁ ନାଟକଟି ମଂଚସ୍ଥ ହୋଇଥିଲା।

ଭୁବନେଶ୍ୱର ଷ୍ଟେଟ୍ ବ୍ୟାଙ୍କ୍ କ୍ୱାଟର୍ସର ଜଣେ କିରାଣୀଙ୍କ ସମଗ୍ର ପରିବାର ଆତ୍ମହତ୍ୟା କରିଥିଲେ। ଆତ୍ମହତ୍ୟାଟି ସୁପରିକଳ୍ପିତ ଥିଲା। ପରିବାରର ମୁଖ୍ୟ କ୍ୟାନ୍‌ସର୍ ରୋଗରେ

ପୀଡ଼ିତ ହେବାପରେ ଅଜସ୍ର ଟଙ୍କା ତା'ଚିକିତ୍ସା ପାଇଁ ଖର୍ଚ୍ଚ ହେଲା। ସାଙ୍ଗସାଥୀଙ୍କଠାରୁ ଧାର, ଉଧାର ମଧ୍ୟ ବଢ଼ିଗଲା। ଗଭୀର ମାନସିକ ଯନ୍ତ୍ରଣା ଭୋଗୁଥିଲେ ପରିବାରର ମୁଖ୍ୟ ନିଗମ। ସ୍ତ୍ରୀ ସୁଚେତା ସୁନ୍ଦରୀ ଥିଲେ । ସାହାଯ୍ୟର ହାତ ବଢ଼ାଉଥିବା ପ୍ରତାପଙ୍କୁ ନିଗମ ସନ୍ଦେହ କରୁଥିଲେ। ପୁଅ ନିଲୁ ଓ ଝିଅ ସୀମା ଦୁହେଁ ପାଠ ଓ ଖେଳ ଉଭୟରେ ଚମ୍ପିଆନ୍ ଥିଲେ । ରୁଗ୍‌ଣ ମାନସିକତାର ବଶବର୍ତ୍ତୀ ହୋଇ ନିଗମ ଆତ୍ମହତ୍ୟାପାଇଁ ଯୋଜନା କରିଛନ୍ତି। ସେଥିରେ ସାମିଲ କରିଛନ୍ତି ନିଜର ସ୍ତ୍ରୀ ସୁଚେତାଙ୍କୁ । ପ୍ରଥମେ ପୁଅ ଝିଅ ଦୁହିଁଙ୍କୁ ବିଷ ଦେଇ ମରଣ ମୁହଁକୁ ଠେଲି ଦେଇଛନ୍ତି । ମୃତ୍ୟୁର ବିଭୀଷିକା ଦେଖି ଥରି ଉଠିଛି ମା'ର ମନ। ମାତ୍ର ନିଗମ ବାଧ୍ୟ କରିଛି ସୁଚେତାଙ୍କୁ ସୁଇସାଇଡ୍ କରିବା ପାଇଁ ଏବଂ ପରେ ନିଜେ ମଧ୍ୟ ମୃତ୍ୟୁବରଣ କରିଛି। ପରଦିନ ସକାଳୁ ପୋଲିସ୍ ଦରଜା ଭାଙ୍ଗି ମୃତଦେହଗୁଡ଼ିକୁ ଉଦ୍ଧାର କରିଛି।

"ଏ ସମାଜରେ ଏମିତି କିଛି ମଣିଷ ଅଛନ୍ତି ଯେଉଁମାନେ ବାଘଠାରୁ ବି ଭୟଙ୍କର। ସେମାନଙ୍କର ବିନାଶ ନହେଲାଯାଏଁ ଏ ସମାଜରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ। ମାନବ ଜାତିର ମଙ୍ଗଳପାଇଁ ଯଦି ଏ ଜାନବର୍‌ଗୁଡ଼ାକୁ ଶିକାର କରାଯାଏ ତେବେ କ୍ଷତି କ'ଣ ?"– ଏହା ଥିଲା ସ୍ୱସ୍ତିଝଙ୍କାର ଆୟୋଜିତ ନାଟକ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିବା ନାଟକ 'କ୍ରାନ୍ତି'ର ବାର୍ତ୍ତା। ୨୦୦୬ ମସିହା ଫେବୃଆରୀ ୩ ତାରିଖରେ ସିଭିକ୍ ସେଣ୍ଟରଠାରେ ଅଭିନୀତ ଏହି ନାଟକକୁ ସର୍ବମୋଟ ପାଞ୍ଚୋଟି ପୁରସ୍କାର ମିଳିଥିଲା। ଏହି ନାଟକକୁ ନିର୍ଦ୍ଦେଶନା ଦେଇଥିଲେ ରାମଚନ୍ଦ୍ର ମହାପାତ୍ର ଏବଂ ସଂଗୀତ ପରିଚାଳନା କରିଥିଲେ ମନୋରଂଜନ ପଣ୍ଡା। ବିଭିନ୍ନ ଭୂମିକାରେ ଥିଲେ ବାପି, ରତ୍ନାକର, ପ୍ରଦୀପ, ପ୍ରକାଶ, ଆଶିଷ, ଶ୍ରୀତମ, ପ୍ରଦ୍ୟୁମ୍ନ, ଏବଂ ଅମ୍ବିକା।

ଆଦିବାସୀମାନଙ୍କ ଉପରେ ଚାଲିଥିବା ଜୁଲୁମ୍ ପ୍ରତିବାଦରେ ଦାନା ବାନ୍ଧିଥିବା ଅସନ୍ତୋଷ କିପରି ଏକ ବିସ୍ଫୋରଣରେ ରୂପାନ୍ତରିତ ହୋଇଛି, ତା'ର ଏକ ସଫଳ ନମୂନା ଥିଲା କ୍ରାନ୍ତି। ସରଳ ଆଦିବାସୀମାନଙ୍କୁ ଶୋଷଣ କରି ପୁଞ୍ଜିପତି ଦଲାଲଗୋଷ୍ଠୀ, ସରକାରୀ ଅଫିସର ଆଦି ମାଲାମାଲ୍ ହୁଅନ୍ତି। ଏହି ଆଦିବାସୀ ମାନଙ୍କୁ ଶୋଷଣରୁ ମୁକ୍ତ କରିବାକୁ ଆସି ଏକ ଗାନ୍ଧୀବାଦୀ ପରିବାର ରକ୍ତମୁଖା ସାଜେ। ସରଳ ଶିକ୍ଷିତ ଅଧ୍ୟାପକ ଅନ୍ୟାୟର ପ୍ରତିବାଦ କରି ଚାକିରି ଛାଡ଼ି ନକ୍ସଲ ହୁଏ। ଶୋଷକ ଗୋଷ୍ଠୀକୁ ଶିକ୍ଷା ଦେବାକୁ ଯାଇ ସେ କରିଥିଲେ ଗୋଟିଏ ପରେ ଗୋଟିଏ ହତ୍ୟା। ଜନଜାତିର ଅକୁଣ୍ଠ ସମର୍ଥନ ତାଙ୍କୁ ମଣିଷରୁ ମହାପୁରୁଷରେ ରୂପାନ୍ତରିତ କରେ। ସରକାର ତାଙ୍କୁ ଫାସୀ ଦିଅନ୍ତି । ତଥାପି ଆନ୍ଦୋଳନ ଅବ୍ୟାହତ ରହେ। ସରଳ ପୋଲିସ୍ କନେଷ୍ଟବଲ୍ ପ୍ରତିବାଦ ସ୍ୱରୂପ ଚାକିରି ଛାଡ଼ି ଆନ୍ଦୋଳନରେ ଝାସ ଦିଏ। ଏତିକି କ'ଣ ସରକାର ଆଉ ବୁଦ୍ଧିଜୀବୀମାନଙ୍କ ପାଇଁ ଯଥେଷ୍ଟ ନୁହେଁ ? ଆଦିବାସୀ ଜୀବନଯନ୍ତ୍ରଣାକୁ ସାର୍ଥକଭାବେ ପରିବେଷଣ କରିପାରିଥିଲା 'କ୍ରାନ୍ତି'।

ସ୍ମୃତି ଝଙ୍କାର ପ୍ରଯୋଜିତ ନାଟକ ପ୍ରତିଯୋଗିତାର ଚତୁର୍ଥ ସଂଧ୍ୟାରେ ଜାନୁଆରୀ ୧୭ ତାରିଖ ୨୦୦୭ ମସିହାରେ ମଂଚସ୍ଥ ହୋଇଥିଲା 'ଆମେକ୍ରାନ୍ତି'ର ନାଟକ 'ନିଷିଦ୍ଧ ସଂଳାପ'। ଫେବୃଆରୀ ୪ ତାରିଖରେ ଏହା ଉଦଳାର ସଂସ୍କୃତି ଭବନରେ ପୁନଶ୍ଚ ମଂଚସ୍ଥ ହୋଇଥିଲା। ରାମଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶିତ ଏହି ନାଟକରେ ଅଂଶଗ୍ରହଣ କରିଥିଲେ ରତିକାନ୍ତ, ରାମଚନ୍ଦ୍ର ପ୍ରଦ୍ୟୁମ୍ନ, ଆଶିଷ, ସୁଶାନ୍ତ, ପ୍ରକାଶ, ରତ୍ନାକର ଓ ରଞ୍ଜିତା ଭଟ୍ଟାଚାର୍ଯ୍ୟ।

"କାମନାର କାନ୍‌ଭାସ୍‌ରେ କିଏ ଚିତ୍ର ଆଙ୍କିପାରେ-ପତ୍ନୀ ନା ପ୍ରେମିକା ? ନାରୀର ସାର୍ଥକତା ନାରୀତ୍ୱରେ ନା ମାତୃତ୍ୱରେ ? ପ୍ରେମର ପରିଭାଷା ବିମଳ ପ୍ରତୀକ୍ଷା ନା ପରିପୂର୍ଣ୍ଣ ଆତ୍ମସମର୍ପଣ ?"-ରାମପୁର କଲେଜର ଇତିହାସ ବିଭାଗର ଛାତ୍ରୀ ସାଗରିକା ଦାସଙ୍କର ଏଭଳି ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇପାରିନଥିଲେ ନାଟ୍ୟକାର ସିଦ୍ଧାନ୍ତ ମହାପାତ୍ର। ପରିବର୍ତ୍ତିତ ପରିସ୍ଥିତିରେ ନାଟକର ଏବଂ ଜୀବନର ନାୟିକା ସାଜିଛନ୍ତି ସାଗରିକା। ଥିଏଟର ପାର୍ଟିର ପାରସ୍ପରିକ କନ୍ଦଳ ବ୍ୟଭିଚାର ଅପରାଜିତ ଥିଏଟର୍ସକୁ ନର୍କଗାମୀ କରାଏ। ଇଞ୍ଜିନିୟର୍ ଚାକିରି ଛାଡ଼ି କଲମ ଧରିଥିବା ନାଟ୍ୟକାର ସିଦ୍ଧାନ୍ତଙ୍କର ଅକାଳ ମୃତ୍ୟୁ ହୁଏ। ତାଙ୍କ ନାମରେ ଉଦ୍ଦିଷ୍ଟ ଏକ ପୁରସ୍କାର ଗ୍ରହଣ କରିବାକୁ ଆଗେଇ ଆସନ୍ତି ନିର୍ଦ୍ଦେଶକ, ନାୟକ ଏବଂ ନାୟିକା। ନାୟକ ଅଂଜନ ପରିଜା, ନିର୍ଦ୍ଦେଶକ ବିନୋଦ ସାହାଣୀ, ନାୟିକା ସାଗରିକା ଦେବୀ କିଏ ଏହି ସମ୍ମାନର ହକ୍‌ଦାରପୁରସ୍କାର ପ୍ରକୃତରେ ପାଆନ୍ତି ସିଦ୍ଧାନ୍ତଙ୍କ ଦାଦା ଯାହାର ଅର୍ଥକୁ ସେ କଳାକାରମାନଙ୍କ କଲ୍ୟାଣ ପାଇଁ ଦାନ କରିଦିଅନ୍ତି । ଦାଦା ରାମଚନ୍ଦ୍ର ମହାପାତ୍ର ବାଷ୍ପରୁଦ୍ଧ କଣ୍ଠରେ କହନ୍ତି-"ବୁଢ଼ାରେ ! କି ଲାଭ ପାଇଲୁ ଇଂଜିନିୟର୍ ଚାକିରି ଛାଡ଼ି ନାଟକ ଲେଖିବାରେ ? କେତେଥର ମୁଁ ତତେ ଏକଥା ମନା କରିଛି। ହେଲେ ମୋ କଥା ମୋଟେ ଶୁଣିଲୁନି।"

ଓଡ଼ିଶା ମଞ୍ଚର ଏକ ଗହନ କଥା ରୂପ ନେଇଥିଲା ନାଟକରେ। ନାଟକଟି ଶେଷରେ ଏକ ପ୍ରଶ୍ନବାଚୀ ଉତ୍ତୋଳନ କରିଥିଲା- "ମଞ୍ଚର ଅଧପତନ ପାଇଁ ଦାୟୀ କିଏ ?" ମଞ୍ଚର ପାଦପ୍ରଦୀପ ଅତି ଦୟନୀୟ ଭାବେ ଲିଭିଗଲା । ସେହି କରୁଣ ସଜଳ ସ୍ମୃତିର ଆଲେଖ୍ୟ ହେଉଛି 'ନିଷିଦ୍ଧ ସଂଳାପ'।

ଲୋକନାଟକ ମହୋତ୍ସବ ରାଉରକେଲାଠାରେ ୨୦୦୭ ମସିହା ଡିସେମ୍ବର ୨ ତାରିଖରେ ସଂକଳ୍ପ ନାଟ୍ୟସଂସ୍ଥା ପକ୍ଷରୁ ଅଭିନୀତ ହେଲା ନାଟକ ଦୂର ଆକାଶର ତାରା। ନିର୍ଦ୍ଦେଶକ ଥିଲେ ଚିତ୍ତ ରଣା ଏବଂ ସଂଗୀତ ପରିଚାଳନା କରିଥିଲେ ଶରତ ଧଳ। ବିଭିନ୍ନ ଭୂମିକାରେ ଗଙ୍ଗାଧର ଜେନା, ଗୁରୁପଦ ସ୍ୱାଇଁ, ସରୋଜ ବଳ, ଅଶୋକ ବଳ, ଶ୍ରୀକାନ୍ତ ବାରିକ, ନିମାଇଁ ଆଚାର୍ଯ୍ୟ, କିଶୋର ମହାନ୍ତି, ଦ୍ୱିଜବର ବସ୍ତିଆ, ଲକି, ପୂଜା, କନକ ଲତା ଦାସ ଏବଂ ସସ୍ମିତା ମିଶ୍ର ଥିଲେ।

ପିତାମାତାଙ୍କ ଅବାଧ୍ୟ ହୋଇ ଘରୁ ଚାଲିଯାଇଥିବା ସନ୍ତାନଟି ଯେତେବେଳେ ରାଜନୀତିର ପଶାପାଲିରେ ଛନ୍ଦିହୋଇ ଅଣନିଶ୍ୱାସୀ ହୋଇପଡ଼େ ସେତେବେଳେ ତା'ର ଚୈତନ୍ୟ ଉଦୟ ହୁଏ। ସେଠାରୁ ଲୁଚି ସେ ସୀମାନ୍ତ ବାହିନୀରେ ଯୋଗ ଦିଏ ଜଣେ ସୈନିକ ଭାବରେ। ଏ ଦିଗରେ ତାକୁ ସାହାଯ୍ୟର ହାତ ବଢ଼ାଏ ତା'ର ପ୍ରେମିକା ଅର୍ଥାତ୍ ମନ୍ତ୍ରୀଙ୍କ ଏକମାତ୍ର ଅଲିଅଳି କନ୍ୟା। କ୍ରୋଧିତ ବାପା ଦୁଷ୍ମନ୍ତ ନିଜ ପୁଅ ଭାରତର କୌଣସି ଖୋଜଖବର ନିଅନ୍ତି ନାହିଁ। ରିଟାୟାର୍ଡ଼ ହେଡ୍‌ମାଷ୍ଟରଙ୍କ ପେନ୍‌ସନ୍‌କୁ ଚକ୍ରାନ୍ତ କରି ତାଙ୍କ ବନ୍ଧୁ ମନ୍ତ୍ରୀ ଅରବିନ୍ଦ ବନ୍ଦ କରିଦିଅନ୍ତି। ଏ ଦିଗରେ ଦୁଷ୍ମନ୍ତଙ୍କୁ ସାହାଯ୍ୟ କରନ୍ତି ମନ୍ତ୍ରୀଙ୍କ କନ୍ୟା ଦେବିକା। ଦେବିକାକୁ ମନେମନେ ବୋହୂଭାବେ ସ୍ୱୀକାର କରିନିଅନ୍ତି ଦୁଷ୍ମନ୍ତଙ୍କ ସ୍ତ୍ରୀ ଶକୁନ୍ତଳା । ଠିକ୍ ଏହି ସମୟରେ ବିଷାଦର କାଳିମା ଘୋଟିଆସେ। କାଶ୍ମୀର ସେକ୍ଟରରୁ ଯୁଦ୍ଧ କରୁକରୁ ସହିଦ୍ ହୁଏ ଭାରତ। ତା'ର ଶବକୁ ଗ୍ରହଣ କରିବା ପାଇଁ ବିମାନବନ୍ଦରକୁ ଅଗ୍ରସର ହୁଅନ୍ତି ଦୁଷ୍ମନ୍ତ। ସ୍ଥାଣୁ ପାଲଟିଯାଆନ୍ତି ଶକୁନ୍ତଳା। ଦୁର୍ନୀତି ଅଭିଯୋଗରେ ଆରେଷ୍ଟ ହୁଅନ୍ତି ଅରବିନ୍ଦ। ଦୁଷ୍ମନ୍ତଙ୍କ ପାଖରେ କ୍ଷମାପ୍ରାର୍ଥୀ ହୁଅନ୍ତି। ଏଭଳି ଏକ ଦୁଃଖଦ ମୁହୂର୍ତ୍ତରେ ଛାତିକୁ ପଥର କରି ସ୍ତ୍ରୀକୁ ଆଶ୍ୱାସନା ଦିଅନ୍ତି ଦୁଷ୍ମନ୍ତ। ଭାରତ ହୋଇଯାଏ ସେମାନଙ୍କ ପାଇଁ ଦୂର ଆକଶର ତାରା।

ଏଇ ନାଟକଟି କଳାକାରର ୧୮ଶ ତମ ବାର୍ଷିକ ଉତ୍ସବରେ ବାଲେଶ୍ୱରଠାରେ ଅଭିନୀତ ହୁଏ। ପୁନଶ୍ଚ ବାଲେଶ୍ୱରର ଗାନ୍ଧୀ ସ୍ମୃତିଭବନଠାରେ ୨୦୦୮ ଫେବୃଆରୀ ୧୯ ତାରିଖରେ ମଧ୍ୟ ଏହି ନାଟକ "ବିନ୍ଦୁବଳୟ"ର ନାଟକ ଉତ୍ସବରେ ଭାଗ ନିଏ। 'କଳାକାର ନାଟ୍ୟ ସଂସ୍ଥା' ପକ୍ଷରୁ ଏଇ ନାଟକର ନିର୍ଦ୍ଦେଶନା ଦିଅନ୍ତି ରାମଚନ୍ଦ୍ର ମହାପାତ୍ର।

୨୦୦୮ ମସିହା ଜାନୁଆରୀ ମାସରେ ହିରାକୁଦଠାରେ ହିଣ୍ଡାଲକୋ ପକ୍ଷରୁ ଆୟୋଜିତ ନାଟକ ପ୍ରତିଯୋଗିତାରେ ଭାଗ ନିଏ ନାଟକ 'ଫ୍ରଣ୍ଟ ଲାଇନ୍'। ପ୍ରତିଯୋଗିତାରେ ଚତୁର୍ଥ ରଜନୀ ଜାନୁଆରୀ ୧୬ ତାରିଖ ଦିନ ସମ୍ବଲପୁର ବିଶ୍ୱବିଦ୍ୟାଳୟ ନାଟ୍ୟସଂସଦ ପକ୍ଷରୁ ଏହି ନାଟକ ଅଧ୍ୟାପକ ଲିଙ୍ଗରାଜ ମେହେରଙ୍କ ନିର୍ଦ୍ଦେଶନାରେ ମଂଚସ୍ଥ ହୁଏ।

ସମାଜ ସହିତ ତାଳ ଦେଇ ମଣିଷର ପ୍ରକୃତି ଚିନ୍ତାଧାରାର ପରିବର୍ତ୍ତନ ଘଟୁଛି। ସାହିତ୍ୟ ସମାଜ ଅଫିସ୍‌ରେ ନିଜର ଫଟୋ ଟଙ୍ଗାଇବା ପାଇଁ ସାହିତ୍ୟିକମାନଙ୍କ ମଧ୍ୟରେ କମ୍ପିଟିସନ୍ ଆରମ୍ଭ ହୁଏ। ରାତାରାତି ସାହିତ୍ୟ ସୃଷ୍ଟି ହୁଏ। ଶିଳ୍ପପତିମାନେ ସାହିତ୍ୟର ଠିକା ନେବାପାଇଁ ଆଗେଇ ଆସନ୍ତି। ସାହିତ୍ୟର ସୌକୁମାର୍ଯ୍ୟ ନଷ୍ଟହୁଏ। କବି ବଂଶୀଧରଙ୍କ ଆଶା ତାଙ୍କର ଗୋଟିଏ ଫଟୋ ସାହିତ୍ୟ ସମାଜ ଅଫିସ୍‌ରେ ସ୍ଥାନ ପାଉ। ପୁଅ ବୋହୂ ତ କେହି ସାହିତ୍ୟର ଧାର ଧରନ୍ତି ନାହିଁ । ତେଣୁ ବଂଶୀଧର ନିର୍ଭର କରନ୍ତି ନାତି ଉପରେ

ଆଉ ସାହିତ୍ୟ ସମାଜ ଅଫିସ୍‌ର ଜନୈକ ଚତୁର୍ଥ ଶ୍ରେଣୀ କର୍ମଚାରୀ ଉପରେ ଯେ କି ତାଙ୍କର ଆଶାକୁ ପୂରଣ କରିପାରିବ।- "ମୁଁ ଜାଣିଛି ତୋ ବାପ ମୋ ପାଇଁ କିଛି କରିବ ନାହିଁ । ତେଣୁ ତୋତେ ହିଁ ଏସବୁ କରିବାକୁ ପଡ଼ିବ। ସାହିତ୍ୟ ସମାଜ ଅଫିସ୍‌ରେ ସେଦିନ ଯେଉଁ ଜାଗାଟା ମାପିଥିଲୁ, ସେଇଠି ମୋ ଫଟୋଟିଏ ରଖିବୁ। କର୍ପୁର ମାଳ, ଟଙ୍କା ଦଶ ହଜାର ଓ ଅନ୍ୟାନ୍ୟ ଜିନିଷ ପତ୍ର ତୋ ଭରସାରେ ଛାଡ଼ିଯାଉଛି। ଦାମକୁ ସବୁ ବୁଝାଇ ଦେଇଛି।ତୁ ତା'ପାଖରେ ପହଞ୍ଚିଲେ ସେ ସବୁକାମ ବୁଝାଇଦେବ। ତା'ପାଇଁ ଦୁଇ ହଜାର ଟଙ୍କା ନୀଳ ଲଫାପାରେ ଅଛି। ମୋ ମଲାପରେ ଏ ଟଙ୍କା କେବଳ ତୁ ଖୋଲିବୁ। ତୁ ଏତିକି କରିପାରିବୁ ବୋଲି ମୋର ବିଶ୍ୱାସ ଅଛି।"

ସାଂପ୍ରତିକ ଯୁଗର ସାହିତ୍ୟ ରାଜନୀତି ପ୍ରତି ତୀକ୍ଷ୍ଣ କଟାକ୍ଷପାତ କରିଛି ନାଟକ 'ଫ୍ରଣ୍ଟ ଲାଇନ୍'।

ସତ୍ୟ ଭୀଷଣ ଭୟଙ୍କର। ତା'ର ସାମ୍ନା କରିବା ଯେ କେତେ କଷ୍ଟକର ତାହା ଅନୁଭବି ହିଁ ଜାଣେ। ଯାତ୍ରା ଦୁନିଆର ବୟସ୍କ କଳାକାର ସନ୍ତୋଷ ଚୌଧୁରୀ ଏସବୁର ମାଇଲଖୁଣ୍ଟ। କଳାର ନିଶାରେ ଏକଦା ଘରଦ୍ୱାର ଛାଡ଼ି ଯାତ୍ରା ଦୁନିଆକୁ ଆଦରି ନେଇଥିବା ଲଇ କଳାକାର ଜଣକ ଶେଷରେ ପାଇଲେ କ'ଣ ? ନା ପରିବାର, ନା ପାର୍ଟି କେହି ତାଙ୍କୁ ବୁଝିପାରିଲେ ନାହିଁ। ଜରାଜୀର୍ଣ୍ଣ ରୋଗାକ୍ରାନ୍ତ ଶରୀର ନେଇ ସନ୍ତୋଷ ଫେରିଲେ ଘରକୁ। ହେଲେ ସେତେବେଳକୁ ତାଙ୍କ ପରିବାର ଆଉ ପରିବାର ହୋଇ ନଥିଲା। ନାନା ବିଶୃଙ୍ଖଳାରେ ଛନ୍ଦି ହୋଇ ପଡ଼ିଥିବା ପରିବାରରେ ମଧ୍ୟ ନିଜକୁ ଠିକ୍ ଭାବେ ସାମିଲ କରିପାରିଲେ ନାହିଁ। ତା'ପରେ କ'ଣ ଘଟିବ ବା ଘଟିବା ଉଚିତ ତାକୁ ନାଟ୍ୟକାର ଦର୍ଶକମାନଙ୍କ ଉପରେ ଛାଡ଼ିଦେଇଛନ୍ତି। କାରଣ କୌଣସି କଥା ଶେଷ ହୁଏନାହିଁ। ହୁଏତ ସେଇଠୁ ଏକ ମହାଜାଗତିକ ପ୍ରକ୍ରିୟାର ଆରମ୍ଭ ହୋଇପାରେ। ତେଣୁ ଶେଷକଥାର ଶେଷ ନାହିଁ। ଜୋର୍ କରି ଶେଷ ନିଷ୍ପତ୍ତିରେ ପହଞ୍ଚିବା ଆଦୌ ସମୀଚିନ ନୁହେଁ। ଏହା ହିଁ ନାଟକର ସନ୍ଦେଶ।

'ଶେଷକଥା' ନାଟକଟି ଅନୁଗୁଳର ସଭାଘର ମଞ୍ଚରେ ନାଟ୍ୟମ୍‌ରେ ନାଟ୍ୟମେଳାରେ ୨୦୦୯ ମସିହା ଜାନୁଆରୀ ୨୩ ତାରିଖରେ 'ଆମେକ୍ରାନ୍ତି', ଉଦଳା ପକ୍ଷରୁ ମଞ୍ଚସ୍ଥ ହୋଇଥିଲା। ବିଭିନ୍ନ ଭୂମିକାରେ ଥିଲେ ରତିକାନ୍ତ, ରତ୍ନାକର, ପ୍ରଦ୍ୟୁମ୍ନ, ସିଲୁ, ବାପୁନି, ମୁନା, ଜ୍ଞାନ, ଦେବେନ୍ଦ୍ର ଓ ବିନି। ରାମଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶିତ ଏହି ନାଟକରେ ସଂଗୀତ ନିର୍ଦ୍ଦେଶକ ଥିଲେ ମନୋରଞ୍ଜନ ପଣ୍ଡା। ନାଟକଟି ଭିନ୍ନସ୍ୱାଦର ଥିବାରୁ ଦର୍ଶକ ଉତ୍କଣ୍ଠା ଶେଷଯାଏ ଲାଗିରହିଥିଲା।

ପିଲାଦିନରୁ ରେଡ଼ିଓ ନାଟକ ପ୍ରତି ମୋର ଏକ ଅହେତୁକ ଦୁର୍ବଳତା ରହିଆସିଥିଲା। ସକାଳେ, ସନ୍ଧ୍ୟାରେ ରେଡ଼ିଓ ନାଟକ ପାଇଁ ମୁଁ ସବୁକାମ ବନ୍ଦ କରି ପ୍ରସ୍ତୁତ ହୋଇ ରହୁଥିଲି ଶୁଣିବା ପାଇଁ। କେମିତି ରେଡ଼ିଓ ନାଟକ ଲେଖିବି ସେଥିପାଇଁ ମନରେ ଅନେକ ଦିନୁ ମଞ୍ଜିଟିଏ ପୋତା ହୋଇଥିଲା। ୧୯୭୯ ମସିହାରେ ମନୋରଞ୍ଜନ ଦାସଙ୍କ ସହିତ ଭେଟହୁଏ ତାଙ୍କ ଘରେ। ଅନେକ ଥର ଆକାଶବାଣୀ କେନ୍ଦ୍ରକୁ ଆସିଛି, ମନ କଥା ତାଙ୍କୁ ପ୍ରକାଶ କରିଛି। ସେ ଅଭୟ ଦିଅନ୍ତି ରେଡ଼ିଓ ନାଟକ ଲେଖିବା ପାଇଁ। ବହୁ ରେଡ଼ିଓ ନାଟକ ଶୁଣିଛି। ଅଷ୍ଟମରୁ ଏକାଦଶଯାଏଁ ସ୍କୁଲରେ ପଢିବାବେଳେ ଅନେକ ଥର ନାଟକ ଲେଖି ଆକାଶବାଣୀ କଟକ କେନ୍ଦ୍ରକୁ ପଠାଏ। ଛଅ ମାସ ପରେ ସେସବୁ ଅମନୋନୀତ ହୋଇ ଫେରେ । ସାଧା କାଗଜ, ଗାରପକା କାଗଜ ଯାହା ଯେଉଠି ମିଳିଲା ତା'ଉପରେ ଲେଖି ପକାଇଦିଏ। ରେଡ଼ିଓ ନାଟକର ସିନା ମୁଁ ମୁଗ୍ଧ ଶ୍ରୋତା, ହେଲେ ତା'ରଚନାର ଟେକ୍‌ନିକ୍ ମୋତେ ଜଣା ନଥାଏ।

ମନୋରଞ୍ଜନ ଦାସଙ୍କଠାରୁ ଆଶୀର୍ବାଦ ପାଇ ଲେଖିବସିଲି ରେଡ଼ିଓ ନାଟକ। ପ୍ରଥମ ରେଡ଼ିଓ ନାଟକ 'ଅସ୍ତରାଗର ଏଲିଜି', ଯାହା ତା ୧୦.୦୯.୧୯୮୧ରେ ପ୍ରସାରିତ ହୋଇଥିଲା କଟକ ଆକାଶବାଣୀରୁ। ସେହି ସମୟରେ ମୁଁ ବାଣୀବିହାରର ଛାତ୍ରଥାଏ। ପ୍ରତିଭା ଶତପଥୀଙ୍କ 'ଅସ୍ତରାଗର ଏଲିଜି' ନାମରେ ଗୋଟିଏ ବହି ବାହାରିଥାଏ, ଯାହା ମୋତେ ବହୁତ ଭଲ ଲାଗିଥିଲା। ବିଶ୍ୱବିଦ୍ୟାଳୟର ଶସ୍ତା ପ୍ରେମକାହାଣୀ ଏବଂ ଦିଲୀପ କୁମାରଙ୍କ କୌଣସି ଏକ ହିନ୍ଦୀ ସିନେମାରୁ ଖିଅଟିଏ ସଂଗ୍ରହ କରି 'ଅସ୍ତରାଗର ଏଲିଜି' ଲେଖିକରି ମନୋରଞ୍ଜନ ବାବୁଙ୍କ ଘରେ ଦେଇ ଆସିଲି। ସିଏ କହିଲେ, ତିନି ମାସ ଭିତରେ ନିଶ୍ଚୟ ବାଜିବ। ତିନି ମାସ ପରେ ତାଙ୍କୁ ଭେଟି ନାଟକ କଥା ପଚାରିଲି। ସେ ଦୁଃଖର ସହିତ କହିଲେ, ନାଟକର ପାଣ୍ଡୁଲିପିଟି ଉଇ ଖାଇଦେଇଛି। ନାଟକର ଆଉ ଗୋଟିଏ କପି ଦେବା ପାଇଁ କହିଲେ ଏବଂ ସିଧା ଆକାଶବାଣୀ ଅଫିସ୍‌ରେ ଦେବାପାଇଁ ମତ ଦେଲେ। ତାଙ୍କୁ ହଁ ମାରି ଦେଇ ଆସିଲି । ମୋ ପାଖରେ କପି ନଥିଲା । ପାଞ୍ଚରୁ ଛଅ ଦିନ ଲାଗିପଡ଼ି ପୁଣିଥରେ ଲେଖିଲି। ତାହା ପ୍ରସାରିତ ହେବାପରେ ମୁଁ ପୁରାପୁରି ହିରୋ ହୋଇଗଲି। ୧୯୮୨ ମସିହାରେ ଲେଖିଲି 'ଅନ୍ଧକାରର ପୂରବୀ' । ତା'ନାମ ରଖିଥିଲି 'ଧର୍ଷିତା ମାଟି' । ପ୍ରଯୋଜକ ହିଂମାଂଶୁ ଭୂଷଣ ସାବତ ନାଁଟିକୁ ବଦଳାଇବା ପାଇଁ କହିଲେ ଏବଂ ନାଟକର ଏକ ଡାଇଲଗ୍ ଭିତରୁ 'ଅନ୍ଧକାରର ପୂରବୀ' ନାଁଟିକୁ ବାଛିଲେ। ସେ ସମୟରେ ଖବର କାଗଜରେ ଏକ ନାରୀ ଧର୍ଷଣ ଖବର ହଇଚଇ ସୃଷ୍ଟି କରିଥିଲା। ସେଇଥିରୁ ଖୋରାକ୍ ସଂଗ୍ରହ କରି 'ଅନ୍ଧକାରର ପୂରବୀ' ରଚନା କରିଥିଲି ଯାହା କଟକ କେନ୍ଦ୍ରରୁ ତା.୦୩.୦୫.୧୯୮୨ରେ ପ୍ରସାରିତ ହୋଇଥିଲା।

ବୌଦ୍ଧଯୁଗର ଚର୍ଚ୍ଚିତ ନାରୀଚରିତ୍ର ଆମ୍ରପାଲ୍ଲୀରୁ ଖିଅ ସଂଗ୍ରହ କରି ଆଧୁନିକ ସମାଜର ଘଟଣା ସ୍ରୋତରେ ତାକୁ ଯୋଡ଼ି ଦେଇଥିଲି। ଇତିହାସ, କଳ୍ପନା, ଏବଂ ଆଧୁନିକତାର ତ୍ରିବେଣୀ ସଂଗମ ହୋଇଥିଲା ଏହି ନାଟକରେ। ନାଟକଟି ତା.୧୪.୦୩.୧୯୮୩ରିଖରେ କଟକରୁ ପ୍ରସାରି ହୋଇଥିଲା ଯାହାର ନାମଥିଲା 'ଅମ୍ବାପଲ୍ଲୀ ସହ ଦିନେ' । ସେହି ବର୍ଷ ଇଣ୍ଡିଆ ଟୁଡ଼େରେ ଏକ ସତ୍ୟ ଘଟଣା ପ୍ରକାଶିତ ହୋଇଥିଲା। କାହାଣୀକୁ ମୋତେ ଦେଇଥିଲେ ଅଭିନେତା ବନ୍ଧୁ ସମରଜିତ୍ ପଟ୍ଟନାୟକ। ଭୁଲବଶତଃ ଜଣେ ନିର୍ଦ୍ଦୋଷ ବ୍ୟକ୍ତିକୁ ପଚିଶ ବର୍ଷ ଧରି ଜେଲ୍‌ରେ ରଖାଯାଇଛି। ମାନବାଧିକାର କର୍ମୀ ଏବଂ ଜଣେ ଯୁବ ଆଇନଜ୍ଞ ଚେଷ୍ଟାରେ ସେ ମୁକ୍ତ ହେଲେ। ସେତେବେଳକୁ ତାଙ୍କ ମୁଣ୍ଡ କାମ କରୁନଥିଲା। ସେ ପୂରାପୂରି ଅଥର୍ବ ହୋଇଯାଇଥିଲେ। ସେହି କାହାଣୀକୁ କଳ୍ପନା ମିଶାଇ ରୂପ ଦେଲି 'ଏକ ମୃତବ୍ୟକ୍ତି ସପକ୍ଷରେ' ଯାହା ପ୍ରସାରିତ ହୋଇଥିଲା ତା.୦୬.୦୨.୧୯୮୩ରେ।

ମନୋରଂଜନ ଦାସଙ୍କ ବୌଦ୍ଧିକ ନାଟକର ପ୍ରଭାବ ମୋ ଉପରେ କିଛି ପରିମାଣରେ ପଡ଼ିଥିଲା। ଏକ ଦାର୍ଶନିକ ଭାବଭିତ୍ତିକ କଥାବସ୍ତୁକୁ ଆଧାର କରି ରଚନା କଲି 'ସବୁଜ ଅନ୍ଧାର' ଏବଂ 'ଅନ୍ୟଏକ ବର୍ତ୍ତମାନ'। ଉଭୟ ନାଟକରେ ଦର୍ଶନ ରହିଥିଲା। ମଣିଷ ଜୀବନ ହେଉଛି ଏକ ବିଦ୍ୟାଳୟ-ଏଇ ଦର୍ଶନ ଉପରେ ଗଢି ଉଠିଥିଲା ନାଟକ 'ସବୁଜ ଅନ୍ଧାର'। ଉଭୟ ନାଟକ ୧୯୮୩ ମସିହାରେ ପ୍ରସାରିତ ହୋଇଥିଲା।

ସବୁ ଯୁଗରେ ଦଳିତର ଯନ୍ତ୍ରଣା ରହିଛି ଏବଂ ରହିବ। ଏମିତି ଏକ ଧାରଣାକୁ ନେଇ ଲେଖିଲି ନାଟକ 'ଶେଷ ପାହାଚ'। ନାଟକଟି ଆଶାତୀତ ଭାବେ ସଫଳତା ଲାଭ କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ଆଦୃତ ହୋଇଥିଲା। ପୌରାଣିକ ଯୁଗରେ ଏକଲବ୍ୟ ଏବଂ ଶମ୍ବୁକ, ଐତିହାସିକ ଯୁଗରେ ବାରଶ' ବଢେଇ ଏବଂ ତାଜମହଲ ଶିଳ୍ପୀ, ଆଧୁନିକ ଯୁଗରେ ସାଧାରଣ ଜଣେ ଚାଷୀ-ସମସ୍ତେ ଅବହେଳିତ। ସେମାନଙ୍କ ପିଠି ଉପରେ ଚଢ଼ି ଅନ୍ୟମାନେ ଉଠିଛନ୍ତି। ହେଲେ ଦଳିତ, ଅବହେଳିତ ମଣିଷଟି ପାଇଛି କ'ଣ? ଏଇ ନାଟକର ପ୍ରସାରଣ ତାରିଖ ହେଉଛି ତା.୧୩.୧୦.୧୯୮୫।

ସମାଜରେ ବଡ଼ମ୍ବା ରାଜାଙ୍କର ଦୟନୀୟ ଅବସ୍ଥାର ଚିତ୍ରଟିଏ ପ୍ରକାଶ ପାଇଥିଲା ୧୯୮୬ ମସିହାରେ ସେଇଠୁ ଖୋରାକ୍ ସଂଗ୍ରହ କରି ଲେଖିଲି ନାଟକ 'ଅପରାହ୍ଣର ଅବଶୋଷ'। ଯାହା ରେଡ଼ିଓ ଟିଭି ଓ ମଞ୍ଚରେ ବେଶ ଆଦୃତି ଲାଭ କରିଥିଲା। ଭାଙ୍ଗି ପଡୁଥିବା ରାଜତନ୍ତ୍ର ଏବଂ ଜଣେ ରାଜାଙ୍କର ଦୟନୀୟ ଅବସ୍ଥାର କରୁଣ ଚିତ୍ର ଏଇ ନାଟକରେ ସ୍ଥାନ ପାଇଥିଲା। ବୟସ୍କର ଯନ୍ତ୍ରଣା ଏଠି ଥିଲା ମୁଖ୍ୟ ପ୍ରସଙ୍ଗ । ନାଟକଟି ପ୍ରସାରିତ ହୋଇଥିଲା ତା.୦୭.୦୪.୧୯୮୬ରିଖରେ।

ଜଗତସିଂହପୁରର ଏକ ସତ୍ୟ ଘଟଣାକୁ ସଂଗ୍ରହ କରି ଗଳ୍ପ ଲେଖିଥିଲେ ଅନାଦି ସାହୁ 'ଶିଥିଳ ଦୁକୂଳ' ଏବଂ 'ପାଣ୍ଡୁର ବଳୟ' । ପରିସ୍ଥିତିର ଚାପରେ ଗୋଟିଏ ଝିଅ ବାଧ୍ୟ ହୋଇଛି ବେଶ୍ୟାବୃତ୍ତି କରିବା ପାଇଁ। ବେଶ୍ୟାର ହୃଦୟ ପଛପଟେ ଲୁଚି ରହିଥିବା ଆଉ ଗୋଟିଏ ହୃଦୟକୁ ଆବିଷ୍କାର କରିଥିଲି ନାଟକ 'ଲୀଳାବିଧୃତ କଳେବର'ରେ ଯାହା ବିବିଧ ଭାରତୀ କଟକ କେନ୍ଦ୍ରରୁ ପ୍ରସାରିତ ହୋଇଥିଲା ତା.୨୬.୧୦.୧୯୮୬ରିଖରେ। 'ଶେଷ ପାହାଚ' ଭଳି ନାଟକ ଭେଟି ଦେଇସାରିଲା ପରେ ଏଭଳି ଏକ ନାଟକ କାହିଁକି ଲେଖିଲ ବୋଲି ପ୍ରଶ୍ନ କରିଥିଲେ ବିବିଧ ଭାରତୀର ତତ୍‌କାଳୀନ ନିର୍ଦ୍ଦେଶକ ଡ.ଜୟନ୍ତ କୁମାର ଦାଶ। ମୋର ଉତ୍ତର ଥିଲା "ବଞ୍ଚିବା ପାଇଁ କିଛି ଟଙ୍କା ମୋର ଦରକାର ଥିଲା ତାଏ ଏ ନାଟକ ମୋତେ ଦେଇଛି ଏବଂ ଦେଇଛି କିଛି ସ୍ୱପ୍ନ ପୁରୁଣା ବିଫଳତାକୁ ଭୁଲି ନୂଆ ନାଟକ ଲେଖିବା ପାଇଁ।"

କଟକ ଗହ୍ଲାଡ଼ିଆଁ ଚୁନଭାଟି ପାଖରେ ଜଣେ ଖ୍ରୀଷ୍ଟିଆନ୍ ବଙ୍ଗାଳି ପରିବାରରେ ମୁଁ ରହୁଥିଲି। ଷ୍ଟୁଆର୍ଟ ସ୍କୁଲ୍‌ର ଅବସରପ୍ରାପ୍ତ ଶିକ୍ଷକ ସେନଗୁପ୍ତ ଏବଂ ତାଙ୍କ ସହଧର୍ମିଣୀ ମୋତେ ବହୁତ ସ୍ନେହ କରୁଥିଲେ। ତାଙ୍କର ଦୁଇ ଝିଅ ଥିଲେ। ମୁଁ ଇଣ୍ଟର୍‌ଭ୍ୟୁକୁ ବାହାରିଲେ ଉଭୟ ମଉସା-ମାଉସୀ ମୋ ପାଇଁ ପ୍ରଭୁ ଯିଶୁଙ୍କ ପାଖରେ ପ୍ରାର୍ଥନା କରୁଥିଲେ। ମାଉସୀ ବହୁତ ବଙ୍ଗଳା ବହି ପଢୁଥିଲେ। କାହାଣୀ ଭଲ ଲାଗିଲେ ମୋତେ ଶୁଣାଉଥିଲେ। ଦିନେ ବୁଢା ବୁଢୀ ଦୁହେଁ ରାଧା କୃଷ୍ଣ ବିଷୟରେ ମୋ ସହିତ ମତ ବିନିମୟ କଲେ । ସେହି ମତ ବିନିମୟ ଭିତରୁ ଜନ୍ମ ନେଇଥିଲା ନାଟକ 'ରାଧା' ଯାହା ପ୍ରସାରିତ ହୋଇଥିଲା ତା.୨୯.୧୨.୧୯୮୬ ମସିହାରେ । ରାଧା ଚରିତ୍ରକୁ ରୂପ ଦେଲାବେଳେ ମୋ ଭିତରଟା କେଜାଣି କାହିଁକି ବାହୁନି ଉଠୁଥିଲା। ବାସ୍ତବରେ ରାଧାକୁ, ନା ସମାଜ ନା ମଣିଷ କେହି ବୁଝିପାରି ନ ଥିଲେ। ନାଟକଟି ଶୁଣି ମଉସା ମାଉସୀ ବହୁତ କାନ୍ଦିଥିଲେ।

ଗପି ବସିଲେ ବହୁତ କଥା, ନିଜ ନାଟକ ବିଷୟରେ କେତେକଥା ତ କହି ଗଲିଣି। ଆଉ ସେତିକି।

●●●

# ଏବେ କିଛି ପରଦା ପଛର କଥା

ନାରାୟଣ ସାହୁ

ମନେ ପଡୁଛି ୧୯୭୯-୮୦ ମସିହା କଥା । ମୁଁ ରହୁଥାଏ ବକସିବଜାର ବେପାରୀ ସାହିରେ । ଏଠି ଅଧିକାଂଶ ଲୋକ ବେପାରବଣିଜ କରନ୍ତି । ପ୍ରାୟତଃ ଅଣଓଡ଼ିଆ। ଦିନଯାକ ସମସ୍ତେ ନିଜନିଜ କାମରେ ବ୍ୟସ୍ତ ରହନ୍ତି। ରାତିରେ କ୍ଲବ ଘରେ ତାସ୍, କ୍ୟାରମ୍, ଗଂଜପା ଆରମ୍ଭ ହୁଏ। ଏଠି ଜଣେ ବୟସ୍କ ଲୋକ ଚା ଦୋକାନ କରିଥାନ୍ତି । ସମସ୍ତେ ତାଙ୍କୁ 'ବାବା' ନାମରେ ଡାକନ୍ତି। ତାଙ୍କରି ଉଦ୍ୟମରେ ସାହି ଯୁବକମାନେ ନାଟତାମସା କରନ୍ତି। ରାତି ହେଲେ ଏଠି ସମସ୍ତେ ମାତି ଯାଆନ୍ତି। ସାହିର ଯୁବକମାନେ ମୁଁ ଲେଖାଲେଖି କରୁଥିବା ଜାଣି ମତେ ତାଙ୍କ କ୍ଲବକୁ ଡାକନ୍ତି ଏବଂ ସେମାନଙ୍କ ପାଇଁ ନାଟକଟିଏ ଲେଖିବା ପାଇଁ ଅନୁରୋଧ କରନ୍ତି।

ତିନି ଚାରୋଟି ନାଟକ ସେମାନଙ୍କ ପାଇଁ ଲେଖେ। ଏହି କ୍ଲବ୍ ମଧ୍ୟ ବକ୍ସି ବଜାର ଝୁନଝୁନୱାଲା ଭବନ ଭିତରେ ଥିବା ଖୋଲା ପଡ଼ିଆରେ ନାଟକ ଅଭିନୟ ଜାରି ରଖେ। ହର ପଟ୍ଟନାୟକ ମଧ୍ୟ ଦୁଇଟି ନାଟକର ନିର୍ଦ୍ଦେଶନା ଦିଅନ୍ତି। ସେଇ ନାଟକ ଦୁଇଟି ହେଲା 'ତାମସୀ ତୃଷ୍ଣା' ଏବଂ 'ସଂଘର୍ଷ'। 'ତାମସୀ ତୃଷ୍ଣା'ର ବିଷୟ ଥିଲା ସେ ସମୟରେ ଘଟିଥିବା ଜଘନ୍ୟ ହତ୍ୟାକାଣ୍ଡ ବିଷୟରେ। ବଲାଙ୍ଗୀରର ସାମ୍ବାଦିକ ଶତପଥୀଙ୍କ ଉପରେ ଗାଡ଼ି ଚଢାଇ ଯେଭଳି ବର୍ବରୋଚିତ ଭାବେ ମାରି ଦିଆଗଲା, ସେଇଠୁ ଖିଅ ସଂଗ୍ରହ କରି ନାଟକଟି ଲେଖାହେଇଥିଲା। ଅତିଥି ଥିଲେ ତତ୍କାଳୀନ ପୋଲିସ ପ୍ରଶାସନର ବରିଷ୍ଠ ଅଧିକାରୀ ଶ୍ରୀ ଅନାଦି ସାହୁ। ବିଷୟଟି 'ସବଜୁଡ଼ିସିଆଲ' ଥିବାରୁ ଏହା ଉପରେ କାହିଁକି ନାଟକ ଲେଖିଲେ ବୋଲି ପ୍ରଶ୍ନ ଉଠାଇଥିଲେ। ଆଇନକାନୁନ ବିଷୟ ମତେ ଜଣା ନଥିଲା ବୋଲି ତାଙ୍କୁ ଜଣାଇଥିଲି। ନାଟକଟି କିନ୍ତୁ ଆଶାତୀତ ଭାବେ ସଫଳ ହୋଇଥିଲା। ବିଶେଷ କରି ସାମ୍ବାଦିକ ଉପରେ ଗାଡ଼ି ଚଢିବା ସିନ୍‌ଟି ବେଶ ଚମତ୍କାର ହୋଇଥିଲା। ଏହି ବାହାଦୁରି ହରର ପ୍ରାପ୍ୟ।

ନାଟକ ରିହର୍ସାଲ ଶେଷ ହେଲାବେଳକୁ ରାତି ଏଗାର ସାଢେ ଏଗାର ହୋଇଯାଏ। ଏଇଠି ମଜା କଥାଟିଏ ମନେ ପଡୁଛି। ନାଟକରେ ଅଭିନୟ କରୁଥିବା ଅଭିନେତ୍ରୀଟିକୁ ଛାଡ଼ିବାପାଇଁ ଆମ କ୍ଲବର କଳାକାରମାନଙ୍କ ଭିତରେ ପ୍ରତିଯୋଗିତା ଆରମ୍ଭ ହୋଇଯାଏ।

ରିକ୍ସାରେ ହିରୋଇନ୍‌କୁ ନେଇ ତା ଘରେ ଛାଡ଼ିବାକୁ ହେବ। ସେତେବେଳେ ଅଟୋ ଆସି ନଥିଲା। ରିକ୍ସାରେ ଏକା ଅଭିନେତ୍ରୀଟି ଯାଇ ପାରିବ ନାହିଁ। ତା ସାଙ୍ଗରେ ଜଣେ ଛାଡ଼ିବାକୁ ଯିବ। କଥା ହେଉଛି, ହିରୋଇନ୍‌କୁ ଅତି ପାଖରୁ ଅନୁଭବ କରିହେବ। ଦେହକୁ ଦେହ ବାଜିବ। କିଛିଟା ଉଷୁମ ନିଶ୍ଚୟ ଲାଗିବ। ଅନୁଭୂତିଟା ହେଉ ପଛେ ସାମାନ୍ୟ, ଅଭିଆଡ଼ା ଯୁବ କଳାକାରମାନଙ୍କ ପାଇଁ ତାହା ଏକ ବିଚିତ୍ର ଅନୁଭବ।

ଆମ ପିଲାଏ ଛକାଛକି ହୋଇ ରହିଥାନ୍ତି। କାହା ଭାଗ୍ୟରେ ପଡ଼ିବ ସେହି ଅନୁଭବର ସମୟଟି। ଶେଷକୁ ସ୍ଥିର ହୁଏ ଡାଇରେକ୍ଟର କିମ୍ବା ରାଇଟର୍ ଯିଏ ହେଉ ଜଣେ ଛାଡ଼ିବାକୁ ଯିବେ। ତେଣୁ ରିହର୍ସାଲ କେଇଦିନ ଅଭିନେତ୍ରୀଟିକୁ ତା ଘରେ ମତେ ରିକ୍ସାରେ ଛାଡ଼ିବାକୁ ପଡ଼େ। କାହା ଘର ଶଙ୍କରପୁର ଗଳି ତ କାହାଘର ରାଉସାପାଟଣା, ପୁଣି କାହାଘର ପିଠାପୁର।

ରାତି ଏଗାରଟା ବେଳକୁ ଲୋକ ଗହଳି କମି ଆସୁଥାଏ। କିନ୍ତୁ ଗଳିର ଛକ ଚଉତରା ଯାଗାରେ ସାହି ଯୁବକମାନଙ୍କର ଗୁଲିଖଟି ଗପ ଚାଲିଥାଏ। ଶଙ୍କରପୁର ଗଳିକୁ ରିକ୍ସା ମୁହାଁଏ । ପ୍ରଥମ ଘଣ୍ଟି ଶବ୍ଦ ବଜାଏ ରିକ୍ସାବାଲା। ଗଳି ଚଉତରାଟି ଚଳଚଂଚଳ ହୋଇଉଠେ। ସାଙ୍ଗେ ସାଙ୍ଗେ ଭାସି ଆସେ ବେସୁରା ସଙ୍ଗୀତ-"ଏତେ ରାତିରେ କାହିଁ ଏ ଯାଉଛ ନାଗର / ଦେହେ ବାସୁଅଛି ଏ କାହା ଅତର।"ରିକ୍ସା ଚଉତରା ପାଖ ଦେଇ ଗଲାବେଳେ ଏକା ସାଙ୍ଗରେ ଗର୍ଜି ଉଠେ ଅନେକ ହୁଇସିଲ। ସନ୍ତର୍ପଣରେ ଯାଉଥିବା ରିକ୍ସାଟି ଥରି ଉଠେ।

ଚଉତରା ପାସ୍ କଲା ପରେ କିଛି ଅଶ୍ରାବ୍ୟ ଭାଷାର ଗାଳି ଆସେ। ଗୋଟିଏ ଖଣ୍ଡିତ ବାକ୍ୟ ଏଠାରେ ଉଦ୍ଧାର କରାଯାଇପାରେ, 'ଶଳା ଭାତୁଆଟାରେ। ମୁହଁରେ ଟିକିଏ ପାଣି ନାହିଁ।' ପୁଣି ଝିଅଟିକୁ ତା ଘରେ ଛାଡ଼ି ଫେରିଲା ବେଳକୁ ପୁଣି ଥରେ ଗୀତର ଲହର ଛୁଟେ, 'ବାସି ହୋଇଲା ମୋ ଫୁଲ ଶେଯ...।' ଆଠ ଦଶ ଦିନ କାଳ ଏ ଗୀତ ଆଉ ହୁଇସିଲ୍ ସ୍ୱର ଶୁଣିଶୁଣି ଅଭ୍ୟାସ ପଡ଼ି ଯାଇଥିବାରୁ ଆଉ ବାଧେ ନାହିଁ। ସବୁକିଛି ଦେହସୁହା ହୋଇଯାଏ।

ଆଜି ବେପାରୀ ସାହି ଗଲେ ଭାରି ଖାଁ ଖାଁ ଲାଗେ, କାରଣ ବାବା ନମଧାରୀ ବ୍ୟକ୍ତି ଜଣକ ଆରପାରିରେ। କଳାକାରଗଣ ବାହାସାହା ହେଇ ପିଲା ଛୁଆ ଧରି ବ୍ୟସ୍ତ। ପ୍ରିମିୟର କ୍ଲବ ଅଛି। ହେଲେ ସେ ଉତ୍ତେଜନା ନାହିଁ। ଆଉ ନାଟ ତାମ୍‌ସା ମଧ୍ୟ ନାହିଁ। ତା ସ୍ଥାନ ମାଡ଼ିବସିଛି ଶସ୍ତା ମେଲୋଡ଼ି। ହର ବି ତୁଳସୀପୁର ଛାଡ଼ି ରହିଲା ସିଡିଏରେ ଏବେ ଆର ପାରିରେ। ବୟସ ଏବଂ ବ୍ୟସ୍ତତା ଯେମିତି ସବୁ କିଛି ଓଲଟପାଲଟ କରି ଦେଇଛି।

କଟକ ସହର ବେପାରୀ ସାହିରେ ରହଣିର ଅନୁଭୂତି ନିଆରା । ଏଠି ରହୁଥାନ୍ତି ସାମ୍ବାଦିକ ମୁରଲୀଧର ମଲ୍ଲିକ ଏବଂ ତାଙ୍କ ପୁଅ ଅଧ୍ୟାପକ ଖଗେନ୍ଦ୍ରନାଥ ମଲ୍ଲିକ । ଖଗେନ୍ଦ୍ର ବାବୁଙ୍କ ସହିତ କଟକର ବିଭିନ୍ନ ଯାଗାକୁ ଯାଇଛି । ବିଶେଷ କରି ଗଡ଼ଗଡ଼ିଆ ମହାଦେବଙ୍କ ପାଖକୁ ଅନେକ ସନ୍ଧ୍ୟା ଯାଇଛି । ଏଠାକୁ ଆସନ୍ତି ସୁବୋଧ ଚାଟାର୍ଜୀ । ସାହିତ୍ୟଠାରୁ ଧର୍ମ ପର୍ଯ୍ୟନ୍ତ ଆଲୋଚନା ହୁଏ । ସୁବୋଧ ଚାଟାର୍ଜୀ ମୋ ସହିତ ରେଭେନ୍ସାରେ ଏମ୍.ଫିଲ୍ କରୁଥିଲେ । ବେଳେବେଳେ ସୁବୋଧ ବାବୁ ମୋତେ ତାଙ୍କ କ୍ଲାସ୍‌ମେଟ୍ ବୋଲି ପରିଚୟ କରାଇଦିଅନ୍ତି । ଭାରି ଲାଜମାଡ଼େ । ଦିନେ ସୁବୋଧ ବାବୁ ନୟାଗଡ଼ର ଜଣେ ଅଧ୍ୟାପକଙ୍କ ନାଟକ ବହି ଗଡ଼ଗଡ଼ିଆ ଠାରେ ଉନ୍ମୋଚନ କରିବାର ପ୍ରସ୍ତାବ ଦିଅନ୍ତି । ତଦନୁସାରେ ରବିବାର ଦିନ ଗଣିତ ଅଧ୍ୟାପକ ରାମଚନ୍ଦ୍ର ମିଶ୍ରଙ୍କର ଏକ ନାଟକ ଏଠାରେ ଉନ୍ମୋଚନ କରାଯାଏ । କେତେଜଣ ସାହିତ୍ୟ ପ୍ରେମୀ ଏଠାରେ ନାଟକ ବିଷୟରେ ଚର୍ଚ୍ଚା କରନ୍ତି । ରାମଚନ୍ଦ୍ର ମିଶ୍ରଙ୍କ ସହିତ ସେହି ପରିଚୟ କ୍ରମେ ଘନିଷ୍ଠତାରେ ପରିଣତ ହୁଏ । ଚାକିରିରୁ ଅବସର ଗ୍ରହଣ କଲାପରେ ମଧ୍ୟ ନାଟ୍ୟକାର ରାମଚନ୍ଦ୍ର ମିଶ୍ର କଟକ, ଭୁବନେଶ୍ୱର ଆସିଲେ ମୋ ବାଟ ଦେଇ ଯାଆନ୍ତି । ନିକଟରେ ରାମ ବାବୁ ନାଟକ ପାଇଁ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି । ବିଳମ୍ବରେ ହେଉ ପଛେ ଏହି ବର୍ଷିଆନ ନାଟ୍ୟକାରଙ୍କୁ ସତୁରୀ ବର୍ଷ ପରେ ସାହିତ୍ୟ ଏକାଡ଼େମୀ ସ୍ୱୀକୃତି ଦେଇଛି । ଗଡ଼ଗଡ଼ିଆ ଘଟଣାଟି ଏଠାରେ ଉଲ୍ଲେଖ କରିବାର କାରଣ ହେଉଛି ଏହା ପରଠୁ ରାମ ବାବୁ ବେଶ୍ ସକ୍ରିୟ ହୋଇଛନ୍ତି । ଅଦ୍ୟାବଧି ତାଙ୍କର ପ୍ରାୟ ପନ୍ଦରଟି ନାଟକ ପ୍ରକାଶିତ ହୋଇ ସାରିଲାଣି ।

କଟକ ରହଣି ସମୟରେ ଭେଟ ହୁଏ ହରିଶ ମହାନ୍ତି, ହର ପଟ୍ଟନାୟକ, ମିହିର ଦାସ, ପ୍ରମୋଦ ମହାନ୍ତି, ରବି ମିଶ୍ର, ଚଣ୍ଡି ପରିଜା, ସୁବ୍ରତ ଦାସ, ଏବଂ ଅନ୍ନପୂର୍ଣ୍ଣାର ରବି ପରିଜାଙ୍କ ସହ । ଏଇଠି ପରିଚିତ ହୁଏ ମନୋରଂଜନ ଦାସ, ନରସିଂହ ମହାପାତ୍ର, ଶରତ ମହାନ୍ତି, ଅକ୍ଷୟ ମହାନ୍ତି, ସାମୁଏଲ୍ ସାହୁ, ପୀର ମିଶ୍ର, ଝରଣା ଦାସ, ନଟ୍‌ବର ସେଣ, ମିହିର ମେହେର, ଭଂଜକିଶୋର ପଟ୍ଟନାୟକ, ଗୋପାଳ ଛୋଟରାୟ, କାର୍ତ୍ତିକ ରଥ, ରତ୍ନାକର ଚଇନି, ହାଡ଼ିବନ୍ଧୁ ସାହୁ, ରଣଧୀର ଦାସ, ବୀରେନ୍ ରାଉତରାୟ, କାର୍ତ୍ତିକ ଘୋଷ, ବସନ୍ତ ସାହୁଙ୍କ ସହିତ । ଏ ସମସ୍ତ ବ୍ୟକ୍ତିଙ୍କ ସହିତ କିଛି ନା କିଛି ଅନୁଭୂତି ରହିଛି ।

ଦିନେ ପ୍ରିମୟର କ୍ଲବର ପିଲାଏ ସ୍ଥିର କରନ୍ତି ଢେଙ୍କାନାଳର 'ଶିଳ୍ପୀ' ଦ୍ୱାରା ଆୟୋଜିତ ନାଟକ ପ୍ରତିଯୋଗିତାରେ ଭାଗ ନେବା ପାଇଁ । ସେଥିପାଇଁ ନାଟକ ଲେଖାହୁଏ । ନାଟକର ନାମ ରହେ 'ସଂଘର୍ଷ', ଯାହାପରେ ବଦଳି ଯାଇ 'ଓ ସବାଶେଷ ଲୋକ' ରୂପ ଗ୍ରହଣ କରେ । ନାଟକ ନିର୍ଦ୍ଦେଶନା ହର ଉପରେ ପଡ଼େ । ଏହି ନାଟକ ପ୍ରାୟ ତିରିଶ

ଭାଗ ହର ସଂଶୋଧନ କରେ। ପ୍ରତିଯୋଗିତା ବିଷୟରେ ଆମର କାହାରି ଧାରଣା ନଥିବାରୁ ହର କଥାକୁ ସମସ୍ତେ ମାନି ନିଅନ୍ତି। ଏବେ ବି ମନେପଡୁଛି ହରର ସେଇ କଥାଟି 'ଆଜି ସିନା ନୂଆ ବୋଲି ତମେ ଏତିକି କାଟିବାକୁ ଅନୁମତି ଦଉଛ, ହେଲେ ଦିନ ଆସିବ, ତମେ ତମ ନାଟକରେ କାହାର ଟିପ ଛୁଆଁଇ ଦବନି।' କଥାଟି ପରେ ପୂରାପୂରି ସତ୍ୟରେ ପରିଣତ ହେଲା।

'ସଂଘର୍ଷ' ନାଟକ ରିହର୍ସାଲ ବେପାରୀ ସାହି ଦୁର୍ଗା ମଣ୍ଡପରେ ଆରମ୍ଭ ହୋଇଥିଲା। ପରେ ଏହାକୁ ଭଂଜ ମଣ୍ଡପକୁ ନିଆଗଲା। ଦିନକୁ ଦଶଥର ରିହର୍ସାଲ। ତିନିଦିନ ଭିତରେ ନାଟକର ସଂଳାପ ସମସ୍ତଙ୍କର ମୁଖସ୍ଥ ହୋଇଗଲା। ଅବଶ୍ୟ କଷ୍ଟକର ସଂଳାପଗୁଡ଼ିକୁ ଉଠାଇ ଦିଆଯାଇଥିଲା। ପ୍ରତିଯୋଗିତା ଦିନ ପାଖେଇ ଆସିଲା। ତା ପୂର୍ବରୁ 'ଶିଳ୍ପୀ' ସମ୍ପାଦକ ପ୍ରଶାନ୍ତ ମହାନ୍ତିଙ୍କ ବାରମ୍ବାର ଫୋନ ନାଟକର ଭଲ ମନ୍ଦ ବିଷୟରେ। ନାଟକର ଜଣେ କଳାକାର ପପୁ ଭଗତଙ୍କ ଦୋକାନରେ ସେତେବେଳେ ଫୋନ୍‌ଟି ଥିଲା, ତେଣୁ ଢେଙ୍କାନାଳ ଶିଳ୍ପୀ ପ୍ରତିଯୋଗିତାର ଟିକିନିଖି ଖବର ଆମେ ପାଉଥିଲୁ।

'ସଂଘର୍ଷ' ନାଟକଟି ବୋଧହୁଏ ୧୯୮୪ ମସିହାରେ ଶିଳ୍ପୀ ନାଟକ ପ୍ରତିଯୋଗିତାକୁ ଯାଇଥିଲା। ହର ନିର୍ଦ୍ଦେଶନା ସହିତ ମୁଖ୍ୟ ଚରିତ୍ର ସବାଶେଷ ଲୋକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା। ଅନ୍ୟ କଳାକାରଗଣ ଥିଲେ-ନିଲୁ, ନାଲୁ, ପପୁ, ପନୁ, ବାବୁଆ । ସଂଗୀତ ପରିଚାଳନା ଚଣ୍ଡି ପରିଜା ଦାୟିତ୍ୱରେ ଥିଲା । ଦୁଇଟି ଟ୍ରେକରରେ ଆମେ ଦଶଟାବେଳକୁ ଢେଙ୍କାନାଳ ବାହାରିଲୁ । ଆମ ଗାଡ଼ିରେ ଯେତିକି ଥିଲେ ସମସ୍ତେ ଭଲରେ ପହଞ୍ଚିଲୁ ମାତ୍ର ହର ଯାଉଥିବା ଟ୍ରେକରଟି ଚୌଦ୍ୱାରଠାରେ ଦୁର୍ଘଟଣାର ସମ୍ମୁଖୀନ ହେଲା। ହର ସହିତ ଅନ୍ୟ ଦୁଇଜଣ କଳାକାର ଖଣ୍ଡିଆ ଖାବରା ହୋଇଥିଲେ। ବେଶି କ୍ଷତି ହୋଇଥିଲା ହରର। ଛାତି, ହାତ, ମୁଣ୍ଡ ସବୁଠି ଆଘାତ ଲାଗିଥିଲା । ତଥାପି ସେମାନେ ଢେଙ୍କାନାଳରେ ପହଞ୍ଚିଥିଲେ। ଢେଙ୍କାନାଳ ଡାକ୍ତରଖାନାରେ ସେମାନଙ୍କର ଚିକିତ୍ସା ଚାଲିଲା। ହରର ବେଶି କ୍ଷତି ହୋଇଥିବାରୁ ଦେହ ସାରା ବ୍ୟାଣ୍ଡେଜ୍ ବନ୍ଧାଗଲା।

ସେ ଦିନ ଆମ ନାଟକ ପ୍ରଥମେ ଥିଲା। ଦୁର୍ଘଟଣା ପାଇଁ ଆମର ନାଟକ ପ୍ରଦର୍ଶନ ବନ୍ଦ ରହିଲା। ମଞ୍ଚରେ ଘୋଷଣା କରିଦିଆଗଲା। ତେଣୁ ସେ ଦିନର ଦ୍ୱିତୀୟ ନାଟକ କଣାସ ନାଟ୍ୟ ସଂସ୍ଥାର 'କଟାକ୍ଷ' ମଞ୍ଚସ୍ଥ ହେଲା। ରୁମ୍‌ରେ ମତେ ମନ ଦୁଃଖରେ ବସିଥିବାର ଦେଖି ହର ମୋ ପାଖକୁ ଆସି କହିଲା "ନାରଣ ବାବୁ ମନ ଦୁଃଖ କାହିଁକି କରୁଛ ! ନାଟକ କରିବା"। ମୁଁ ମନା କଲି। ଏମିତି ଅବସ୍ଥାରେ କି ନାଟକ ହବ ? କାହାରି ମନରେ ସରସତା ନ ଥାଏ । ହଠାତ, ହର ପ୍ରଶାନ୍ତ ବାବୁଙ୍କୁ ଜଣାଇ ଦେଲା, ନାଟକ

ହବ, ସେହି ଅନୁସାରେ ସାଙ୍ଗେସାଙ୍ଗେ ପ୍ରସ୍ତୁତି ଆରମ୍ଭ ହୋଇଗଲା। ନାଟକ ହବ ବୋଲି ମଞ୍ଚରେ ଘୋଷଣା କରି ଦିଆଗଲା।

ମଞ୍ଚକୁ ହର ଆସିଲା, କେତେଟା ସିନ ପରେ ତା ଦେହରୁ ରକ୍ତ ଥପ ଥପ ବହୁଥିବା ଦେଖାଗଲା । ବ୍ୟାଣ୍ଡେଜ୍ ଯାକ ରକ୍ତରେ ଜୁଡୁବୁଡୁ। ଦର୍ଶକ ଭାବିଲେ ରଙ୍ଗ ଲଗାଯାଇଛି । ଶେଷ ସିନ୍ ରେ ସବାଶେଷ ଲୋକ ପଡ଼ିଯାଇଛି। ତା ଉପରେ ଅତ୍ୟାଚାର ଚାଲିଛି । ଦେଖାଗଲା ହର ଆଉ ଉଠୁନି। ପରଦା ପକାଇ ଦିଆଗଲା। ସାଙ୍ଗେ ସାଙ୍ଗେ ତାକୁ ଡାକ୍ତରଖାନାକୁ ନିଆଗଲା । ନାଟକଟି ଜୀବନ୍ତ ହୋଇଥିବାରୁ ହର ଶ୍ରେଷ୍ଠ ନିର୍ଦ୍ଦେଶକ ପୁରସ୍କାର ପାଇଲା। ତେବେ ଗୋଟେ ସପ୍ତାହ ତାକୁ ଢେଙ୍କାନାଳରେ ରହିବାକୁ ପଡ଼ିଥିଲା। ଦେହ ଭଲ ହେବାରୁ କଟକ ଆସିଲା।

ଏଇଠି ଭେଟ ହୋଇଥିଲା ନାଟ୍ୟକାର ନିର୍ଦ୍ଦେଶକ ଦିଲୀଶ୍ୱର ମହାରଣାଙ୍କ ସହିତ। ତାଙ୍କ 'କଳା ପରିଷଦ' ସହିତ ସମ୍ପର୍କ ଆହୁରି ବଢ଼ିଲା। ଯେତେବେଳେ ମୋର ଜଣେ ଶାଳକ ମନୋରଂଜନ ପଟ୍ଟନାୟକ ଢେଙ୍କାନାଳ ବାସିନ୍ଦା ହେଲେ, ଆହୁରି ସମ୍ପର୍କ ଢେଙ୍କାନାଳ ସହିତ ବଢ଼ିଲା। ସେତେବେଳେ ମୋ ନାଟକ ପାଇଁ ଭଲ କଳାକାର ଭାବରେ ପାଇଲି ଶଶି ପାଣିକୁ । ଅବଶ୍ୟ ଏଇଟି ହେଉଛି ମୋ ନିର୍ଦ୍ଦେଶକ ହରିଶ ମହାନ୍ତିଙ୍କ ଆବିଷ୍କାର। ସାମ୍ବାଦିକ ବନ୍ଧୁ ମାନସ ରଥ ମଧ୍ୟ ଭେଟ ହେଲେ । ସମ୍ପର୍କ ନିବିଡ଼ ହେଲା।

ପୁଣି ଫେରି ଆସୁଛି କଟକକୁ। ମୋ ସମୟର ଦୁଇଜଣ ନିର୍ଦ୍ଦେଶନାରେ ଭଲ ନାଁ କରିଥିଲେ। କ୍ଲାସିକାଲ୍ ଡ୍ରାମା ପାଇଁ ହରିଶ୍ ମହାନ୍ତି ଏବଂ ଆଧୁନିକ ନାଟକ ପାଇଁ ହର ପଟ୍ଟନାୟକ। ଉଭୟ ସଙ୍ଗୀତ ମହାବିଦ୍ୟାଳୟର ଛାତ୍ର। 'ଅନ୍ନପୂର୍ଣ୍ଣା-ବି' ସହିତ ମଧ୍ୟ କିଛିକାଳ ପାଇଁ ଜଡ଼ିତ ଥିଲେ। ଅନ୍ନପୂର୍ଣ୍ଣା ଧିମେଇଗଲା ପରେ କଟକର ଅନ୍ୟ ଦୁଇଟି ଗୁରୁତ୍ୱପୂର୍ଣ୍ଣ ନାଟ୍ୟ ସଂସ୍ଥା ହେଉଛି 'ସ୍ମୃତି' ଏବଂ ହରର 'ସମାବେଶ'। ଦୁଇଟି ଯାକ ନାଟ୍ୟ ସଂସ୍ଥା ନାଟକ ପ୍ରଦର୍ଶନ କରନ୍ତି, ତେବେ ନିୟମିତ ଭାବେ ନୁହେଁ। ଏବେ ବି 'ସମାବେଶ' କଟକ ଏବଂ ଭୁବନେଶ୍ୱରରେ ନାଟକ ପ୍ରଦର୍ଶନ ଜାରି ରଖିଛି କିନ୍ତୁ 'ସ୍ମୃତି' ପୂରାପୂରି ନୀରବ। କାରଣ ହରିଶ ନିଜର ଷ୍ଟୁଡ଼ିଓ କଳାଠାରୁ ନାଟକ ଛାଡ଼ି ଦେଇଛି କହିଲେ ଭୁଲ୍ ହେବ ନାହିଁ।

ଘଟଣା କ୍ରମେ 'ସ୍ମୃତି' ସହ ମୁଁ ଜଡ଼ିତ ହୁଏ। ମୁଁ ଲେଖେ, ହରିଶ ନିର୍ଦ୍ଦେଶନା ଦିଏ। ଏତିକିବେଳେ ଆମର ସମ୍ପର୍କ ନିବିଡ଼ ହୁଏ ସେ ସମୟର ପୋଲିସ୍ ଅଧିକାରୀ ଅନାଦି ସାହୁଙ୍କ ସହିତ। ଗଳ୍ପ-ଉପନ୍ୟାସରେ ସେ ଭଲ ନାଁ କମେଇଥାନ୍ତି। 'ଜଙ୍ଗଲି ସହର', 'ଜରାସନ୍ଧ' ଆଦି ଉପନ୍ୟାସ ଲେଖି ସେ ଚର୍ଚ୍ଚାକୁ ଆସିଥାନ୍ତି। ତାଙ୍କ ରଚିତ 'ଜଙ୍ଗଲି ସହର'କୁ କାର୍ତ୍ତିକ ରଥ ନାଟ୍ୟରୂପ ପ୍ରଦର୍ଶନ କରି ନାଟକରେ ହଇଚଇ ସୃଷ୍ଟି

କରିଥାନ୍ତି । ଅନାଦି ବାବୁ ଜଣେ ଅମାୟିକ ଲୋକ । ତାଙ୍କ ଭିତରେ ଗର୍ବ ଅଭିମାନ ନଥିଲା । ଆମେ ନାଟକ ରିହର୍ସାଲ୍ କଲାବେଳେ ସେ ଏବଂ ତାଙ୍କ ପତ୍ନୀ ଆସି ବସନ୍ତି । ଆମ ପାଇଁ ବରା ଆଳୁଚପ୍ ଧରି ଆସିଥାନ୍ତି । ଭାରି ଭଲ ଲାଗେ ତାଙ୍କ ବ୍ୟବହାର । ତାଙ୍କର ଦୁଇଟି ଗପର ନାଟ୍ୟରୂପ ମୁଁ ପ୍ରସ୍ତୁତ କରିଥିଲି । 'ଶିଥିଳ ଦୁକୂଳ' ଏବଂ 'ପାଣ୍ଡୁର ବଳୟ' । ପ୍ରଥମଟିର ନାଟ୍ୟ ରୂପ ପ୍ରସ୍ତୁତ କଲାବେଳେ ସେତେବେଳେର ଜଣେ ବରିଷ୍ଠ ପୋଲିସ୍ ଅଧିକାରୀ ଏଥିପାଇଁ ମତେ ନିରୁତ୍ସାହିତ କରି କହିଥିଲେ, 'ନିଜେ ମୌଳିକ ନାଟକ ନ ଲେଖି କାହିଁକି ଅଯଥା ଯା ତା ଗପକୁ ନାଟକ କରି ନିଜ ଶକ୍ତିର ଅପଚୟ କରୁଛ" । ସେଇ ଜିଦ୍‌ରେ ମୁଁ ତାଙ୍କ ଗପକଟୁନାଟ୍ୟରୂପ ପାଇଁ ସ୍ଥିର କଲି । ମତେ ନିରୁତ୍ସାହିତ କରିଥିବା ପୋଲିସ୍ ଅଧିକାରୀ ବିଭାଗ ସର୍ବୋଚ୍ଚ ପାହ୍ୟାରେ ରହି ଅବସର ଗ୍ରହଣ କରିସାରିଛନ୍ତି । ଅନାଦି ବାବୁଙ୍କର ଦୁଇଟି ଯାକ ବହି 'ଶିଥିଳ ଦୂଳ' ଏବଂ 'ପାଣ୍ଡୁର ବଳୟ' ବେଶ୍ ହିଟ୍ ହୋଇଥିଲା । ସବୁ ନାମି ଦାମୀ କଳାକାର ଏଥିରେ ଭାଗ ନେଇଥିଲେ । 'ଶିଥିଳ ଦୂଳ' ଏକ ଅଭାଗିନୀ ଝିଅର ଜୀବନ କାହାଣୀ ଯାହାକୁ ବାପ ଭାଇ ବେଶ୍ୟାବୃତ୍ତି କରିବାକୁ ଏକରକମ୍ ବାଧ୍ୟ କରିଥିଲେ । ଘଟଣାଟି ଅନାଦି ବାବୁ ସଂଗ୍ରହ କରିଥିଲେ ଜଗତସିଂହପୁର ଅଞ୍ଚଳରୁ । କାହାଣୀଟି ରୋଚକ ଥିବାରୁ ତାକୁ ଆଉ ଟିକିଏ ଖାଦ ମିଶାଇ ଆମେ ପ୍ରସ୍ତୁତ କଲୁ । ହରିଶ୍‌ର ନିର୍ଦ୍ଦେଶନା ବେଶ୍ ଉଚ୍ଚକୋଟୀର ଥିଲା । କଳା ବିକାଶ କେନ୍ଦ୍ରରେ ଏଇ ନାଟକଟି ବେଶ୍ ଚହଳ ପକାଇଥିଲା । ନାଟକର ବ୍ୟାନର ଏବଂ ହୋଡ଼ିଙ୍ଗ ମଧ୍ୟ ବେଶ୍ ଆଖିଦୃଶିଆ ଥିଲା ।

'ଶିଥିଳ ଦୁକୂଳ' ନାଟକର ଗୋଟିଏ ଘଟଣା ମନେପଡୁଛି । ଆମ ନାଟକ ହେଲେ ଶୈଳବାଳା ମହିଳା କଲେଜ କିଛି ଅଧ୍ୟାପିକା ଏବଂ ଛାତ୍ରୀ ବରାବର ଆସୁଥିଲେ । କାରଣ ତାଙ୍କ କଲେଜରେ ସେତେବେଳେ ନାଟକର ନିର୍ଦ୍ଦେଶନା ହର କିମ୍ବା ହରିଶ୍ ଦେଉଥିଲେ । ହରିଶର ନିର୍ଦ୍ଦେଶନା ବେଶ ଉଚ୍ଚକୋଟୀର ଥିଲା । ଏକଦା ସେହି କଲେଜର କୌଣସି ନାଟକରେ ମୁଖ୍ୟ ରୋଲ କରୁଥିବା ଝିଅଟିକୁ ହରିଶ ପ୍ରେମ କରି ବସିଲା । ପରବର୍ତ୍ତୀ କାଳରେ ସେମାନେ ପରସ୍ପରକୁ ବିବାହ କଲେ । ଏଥିପାଇଁ ଆମ ସମସ୍ତଙ୍କର କିଛି ନା କିଛି ଭୂମିକା ରହିଛି । ଅବଶ୍ୟ ବିବାହ ପରେ ଅନାଦି ବାବୁଙ୍କ ସୌଜନ୍ୟରୁ ସେହି ଝିଅଟିକୁ ଶିକ୍ଷୟତ୍ରୀ ଚାକିରିଟିଏ ମିଳିଲା, ଯାହା ଆଜି ପର୍ଯ୍ୟନ୍ତ ଅତୁଟ ରହିଛି ।

'ଶିଥିଳ ଦୁକୂଳ' ନାଟକରେ ବହୁ କଳାକାରଙ୍କ ଭାଗ୍ୟ ଫିଟିଗଲା, ଯେଉଁମାନେ ସିନେମା ଏବଂ ସିରିଏଲ୍ ଜଗତରେ ପ୍ରବେଶ କରିଥିଲେ । ଏ ନାଟକରେ ରୋଲ କରିଥିଲେ ରବି ମିଶ୍ର, ଶଶି ପାଣି, ମିହିର ଦାସ, ପ୍ରମୋଦ ମହାନ୍ତି, ବର୍ଦ୍ଧନ, ବୀରେନ, ଶାନ୍ତି ନନ୍ଦ ଆଉ ରୀତା ରବର୍ଟ । ନାଟକର ରିହର୍ସାଲ ଭଞ୍ଜମଣ୍ଡପରେ ଚାଲିଥିଲା । ସେ ସମୟରେ

ପାୱାରକଟ୍ ହେଉଥିଲା। କିଛି ନାମୀ ଦାମୀ କଳାକାର ଏଇ ପାୱାରକଟ୍‌ର ଅସଦବ୍ୟବହାର କରିବାକୁ ପଛାଉନଥିଲେ । ଅନ୍ଧାର ସେମାନଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ ଆଣି ଦେଉଥିଲା । ପ୍ରାୟ ନାଟ ତାମସାରେ ଏଭଳି ଚାଲେ। ଏଇ ପ୍ରସଙ୍ଗରେ ଗୋଟିଏ କଥା ମନେପଡୁଛି । ଅନ୍ନପୂର୍ଣ୍ଣାରେ ମୋର ନାଟକ ଚାଲିଥାଏ । କଟକରେ ହିରୋଇନ ନ ମିଳିବାରୁ ଜଟଣୀ ଅଂଚଳରୁ ବଙ୍ଗାଳୀ ଝିଅକୁ ଅଭିନେତ୍ରୀ ରୋଲ ପାଇଁ ଅଣାଯାଇଥିଲା। ଝିଅଟି ସତୁରୀ ବର୍ଷର ବୁଢ଼ୀ ରୋଲ କରୁଥିଲା । କ୍ଲବର କିଛି କଳାକାର ମତେ ଅପଦୁଆ ଦେଲେ ଏଥର ରାଇଟର ଆମକୁ ଭସାଇ ଦେଲେ । ଟଙ୍କା ଦେଇ ହିରୋଇନ୍ ଅଣାଯିବ ଅଥଚ ଝିଅଟା ବୁଢ଼ୀ ରୋଲ୍ କରିବ ! ମୁଁ ସେ ସ୍କ୍ରିପ୍ଟ ବଦଳାଇବା ଅବସ୍ଥାରେ ନଥିଲି । ଶେଷ ସିନ୍‌ରେ ବୁଢ଼ୀ ମରିଯାଇଛି। ଚାରିପୁଅ ବୁଢ଼ୀର ଶବ ଉଠାଇବେ କ'ଣ, ଜବରଦସ୍ତି ମା'କୁ ଗେଲ କରିବାକୁ ଲାଗିଲେ। ତା ପରେ ମଂଚ ଅନ୍ଧକାର ହେବାକୁ ବାଧ୍ୟ ହୋଇଥିଲା।

କଳାବିକାଶ କେନ୍ଦ୍ରରେ 'ଶିଥିଳ ଦୁକୂଳ' ଚାଲିଥାଏ। ସାରା ସହରଟା ନାଟକ ଚର୍ଚ୍ଚାରେ ମତୁଆଲା । ଶେଷ ସନ୍ଧ୍ୟାରେ ଆସିଥାନ୍ତି ନାଟକ ଦେଖିବାକୁ ଜଣେ ବିଖ୍ୟାତ ଅର୍ଥନୀତି ଅଧ୍ୟାପିକା ଆଉ ଜଣେ ଟେଲିଭିଜନ୍ ଦୁନିଆର ଚର୍ଚ୍ଚିତ ପ୍ରଯୋଜକ ପ୍ରଫୁଲ୍ଲ ମହାନ୍ତି । ପ୍ରଫୁଲ୍ଲ ବାବୁ ଜଣେ ଭଲ ସିନେମା ନିର୍ଦ୍ଦେଶକ । ବାଛି ବାଛି ସିରିଏଲ କରନ୍ତି। ଏଇ କିଛି ଦିନ ତଳେ ତାଙ୍କର ଦେହାନ୍ତ ଘଟିଛି । ମନେ ପଡୁଛି ସେଦିନ କଥା। ମୁଁ ଉଭୟଙ୍କ ପାଖରେ ବସିଥାଏ । ଅଧ୍ୟାପିକା ଜଣକ ନାଟକ ଭିତରେ ଏପରି ମଜି ଯାଇଥିଲେ ଯେ ଅଭିନେତ୍ରୀ ଉପରେ ହେଉଥିବା ଅତ୍ୟାଚାରକୁ ଆଉ ସହି ପାରିଲେ ନାହିଁ । ସାଙ୍ଗେ ସାଙ୍ଗେ ପ୍ରଫୁଲ୍ଲ ବାବୁଙ୍କୁ କହିଲେ "Who is that bastard writer" ତାକୁ ଚପଲରେ ପିଟିବାକୁ ଇଚ୍ଛା ହେଉଛି।" ନାଟକରେ ଏମିତି ଅତ୍ୟାଚାର ପ୍ରଦର୍ଶନ କରାଯାଏ ? ନାଟକ ଶେଷ ପର୍ଯ୍ୟନ୍ତ ତାଙ୍କ ଭିତରେ ଯେ ଅସ୍ଥିରତା ଲାଗି ରହିଥିଲା । ନାଟକ ଶେଷ ହେବାରୁ ପ୍ରଫୁଲ୍ଲ ବାବୁ କହିଲେ- "ରାଇଟରକୁ ଖୋଜୁଥିଲେ । ହେଇ ତ ସିଏ ପାଖରେ ବସିଛି, କ'ଣ କହିବ କୁହ।" ମୋ ତାଳଠୁ ତଳିପାଯାଏ ଅଧ୍ୟାପିକା ଜଣକ ଅନେଇଗଲେ, ଖାଲି ଏତିକି କହିଲେ-'ଏମିତି ସବୁ ନାଟକ ଲେଖାଯାଏ?' ସେମାନେ ଚାଲିଗଲା ପରେ ମୁଁ ଆଉ ଆମ ଟିମ୍ ଭାବୁଥିଲୁ, ନାଟକ ଶତକଡ଼ା ଶହେଭାଗ ସଫଳ ହୋଇଛି।

ମନେ ପଡୁଛି ୧୯୮୪ ମସିହା କଥା । ମୋର କିଛି କର୍ମ ସଂସ୍ଥାନ ନଥାଏ । ଟିଉସନ ଥାଏ ଏକମାତ୍ର ଭରସା। ରେଡ଼ିଓ ଏବଂ ଟେଲିଭିଜନରେ ନାଟକ ପ୍ରସାରିତ ହେବାଦ୍ୱାରା କିଛି ଅର୍ଥ ଆସେ। ସାଆନ୍ତ ସାହିର ଡ୍ରେନ କଡ଼ର ଗୋଟିଏ ଘରେ ଆଉ ଜଣେ ବନ୍ଧୁଙ୍କ ସହ ଭଡ଼ାରେ ରହିଥିଲି। ବନ୍ଧୁ ଜଣକ ଜିଲ୍ଲାପାଠାଗାର ଲାଇବ୍ରେରୀ ଆସିଷ୍ଟାଣ୍ଟ ଥିଲେ। ନାଁ ମନେ ପଡୁନି, ଘର ବାଲିଚନ୍ଦ୍ରପୁର ଅଂଚଳରେ । ଆମେ ଷାଠିଏ ଟଙ୍କା

ଦେଉଥିଲୁ। ପଖାଳ ଆଉ ବଡ଼ି ଚୁରା, ଶୁଖୁଆ ଗୁଣ୍ଡ ଥିଲା ଆମର ନିତି ଦିନିଆ ଖାଦ୍ୟ। ଅସ୍ୱାସ୍ଥ୍ୟକର ପରିବେଶ ଏବଂ ପୁଷ୍ଟିହୀନ ଖାଦ୍ୟ ଖାଇବା ଦ୍ୱାରା ମୋର ସ୍ୱାସ୍ଥ୍ୟଭଗ୍ନ ହେଲା। ବେଳେବେଳେ ରାସ୍ତାକଡ଼ ଝୁମ୍ପୁଡ଼ି ହୋଟେଲରେ ଖାଇବାକୁ ପଡୁଥିଲା।

ମୋର ଦୁର୍ଭାଗ୍ୟକୁ ଟି.ବି. ରୋଗର ଶିକାର ହେଲି । ରମା ଦେବୀ ଚିଠି ଲେଖିଦେଲେ କଟକ ମେଡ଼ିକାଲ କଲେଜ ଛାତିରୋଗ ବିଭାଗ ମୁଖ୍ୟ ପ୍ରଫେସର ହରିହର ଦାସଙ୍କ ପାଖକୁ । ଯକ୍ଷ୍ମା ବିଭାଗର ଏକ ନମ୍ବର ବେଡ୍ ମତେ ମିଳିଲା। ଡାକ୍ତରଖାନାର ବାଥରୁମ୍ ଲାଟ୍ରିନ ଅତି ଅପରିଷ୍କାର ଥିବାରୁ ମୁଁ କଲେଜ ହଷ୍ଟେଲରେ ମୋର ନିତ୍ୟକର୍ମ ସାରେ। ଏଥିପାଇଁ ବନ୍ଧୁ ଲରେନ୍ସ ସାମୁଏଲ୍ ମହାନ୍ତି ବହୁତ ସାହାଯ୍ୟ କରିଥିଲେ। ପ୍ରିମିୟର କ୍ଲବରେ ମୋ ନାଟକରେ ରୋଲ କରିଥିବା ଅଧିକାଂଶ କଳାକାର ମେଡ଼ିକାଲ ଆସନ୍ତି । ଅଣ୍ଡା, କ୍ଷୀର, ପଇଡ଼, ପାଉଁରୁଟି, ଫଳ ଆଣି ଦେଇଯାନ୍ତି । କମେଡ଼ି ଚରିତ୍ରରେ ଜଣେ କଳାକାର ଥାଏ। ତାକ ନାଁ ଜୁଗୁନୁ । ରାତି ଦିନ ସଦା ମସ୍ତ ରହିବା ତାର ସ୍ୱଭାବ । କିନ୍ତୁ ରୋଲବି ଭଲ କରନ୍ତି । ପ୍ରାୟ ଅଧିକାଂଶ ରାତିରେ ପେଟେ ପିଇକରି ଆସେ ଏବଂ ମତେ ରାତି ଏଗାରଟାରେ ଅଣ୍ଡା, ପଇଡ଼ ଜୋର କରି ଖୋଇବା ପରେ ବାବୁ ଯାଏ।

ମେଡ଼ିକାଲରେ ଥିବା ବେଳେ ହର ଏବଂ ହରିଶଙ୍କ ଉଦ୍ୟମକୁ ମୁଁ କେବେ ଭୁଲି ପାରିବିନି। ହର ଘରୁ ଏବଂ ହରିଶର ଭଉଣୀ ଘରୁ ମଟନ କଲିଜା ମୋ ପାଇଁ ଆସେ। ମେଡ଼ିକାଲରେ ରହିଥିବା ଦୁଇ ସପ୍ତାହ ଏ ଦୁଇ ଜଣଙ୍କ ଘରୁ ମୋର ଖାଇବା ଦିପହର ବେଳା ଆସେ। ଏଥିପାଇଁ ପ୍ରଫେସର ଦାଶଙ୍କଠାରୁ ମତେ ଗାଳି ଶୁଣିବାକୁ ପଡ଼ିଛି। ରାତି ଏଗାରଟା ପର୍ଯ୍ୟନ୍ତ ନାଟୁଆବନ୍ଧୁମାନେ ପ୍ରତିଦିନ ଆସନ୍ତି। ଏଇଠି ବନ୍ଧୁ ଲୁଲୁ ମହାନ୍ତି କଥା ଭୁଲି ପାରିବିନି।

ହର, ହରିଶ, ଲୁଲୁ ଏବଂ ଅନ୍ୟ କଳାକାର ମିଶି ମୋ ଚିକିତ୍ସା ପାଇଁ ଦୁଇଟି ସୋ'ର ବନ୍ଦୋବସ୍ତ କଲେ। କଳାବିକାଶ କେନ୍ଦ୍ରରେ ନାଟକ 'ସଂଘର୍ଷ' ଏବଂ ଅନ୍ନପୂର୍ଣ୍ଣାରେ 'ପାଣ୍ଡୁର ବଳୟ' ହେବ ବୋଲି ସ୍ଥିର ହେଲା। ଟିକେଟ ମଧ୍ୟ ବିକ୍ରି ହେଲା। ଟେଲିଭିଜନରେ ଶରତ ମହାନ୍ତି ଏବଂ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗର ଅଧ୍ୟାପକ ବନ୍ଧୁଗଣ ଏ ଦିଗରେ ଆଗେଇ ଆସିଲେ। କଳାବିକାଶ କେନ୍ଦ୍ରରେ ଯେଉଁ ଦିନ ସୋ' ହେଲା, ସେ ଦିନ ସନ୍ଧ୍ୟାରେ ପ୍ରଫେସର ଦାଶଙ୍କ ୱାର୍ଡ଼ ପରିଦର୍ଶନ ଥିଲା । ସେ ଆସି ମତେ ଖୋଜିଲେ। ମୁଁ ସେତେବେଳେ କଳାବିକାଶ କେନ୍ଦ୍ରରେ ଥିଲି। ରାତି ଦଶଟାକୁ ମେଡ଼ିକାଲ ଫେରିଲି । ନର୍ସ କହିଲା, "ସାର ଖୋଜୁଥିଲେ।" ମନରେ ଛନକା ପଶିଲା ଯଦି ମା' ରମାଦେବୀ ଜାଣିବେ, କଥାଟା ଅସୁବିଧା ହେବ। ପରଦିନ ସକାଳେ ପ୍ରଫେସର ଦାଶଙ୍କୁ କ୍ଷମା ମାଗିନେଲି।

ଦୁଇଟି ଯାକ ସୋ'ରେ ବେଶ୍ ସାହାଯ୍ୟ ମିଳିଥିଲା। ଖାଇବା ପିଇବା ଏବଂ ମଂଚ ଖର୍ଚ୍ଚ ଯାଇ ମୋ ପାଇଁ ପାଂଚ ଶହ ଟଙ୍କା ବଂଚିଥିଲା। କୌଣସି ଅଭିନେତ୍ରୀ ତାଙ୍କର ରୋଲ୍ ଖର୍ଚ୍ଚ ନେଇ ନଥିଲେ । ସେଇଠୁ ଗଣି କରି ପ୍ରାୟ ୪/୫ବର୍ଷ ପର୍ଯ୍ୟନ୍ତ ଯିଏ ଯେଉଁଠି ମତେ ଦେଖିଲା ସେଇ ଗୋଟିଏ କଥା-"ଦେହ ଭଲ ଅଛି ତ ?" ଭାରି ଖରାପ ଲାଗୁଥାଏ। କହିବି କାହାକୁ ?

ମହାନ୍ତିଲେନ୍‌ରେ ଜଣେ ବନ୍ଧୁ 'ସମାଜ'ରେ ସାହାଯ୍ୟ ନିବେଦନ କରି ସମ୍ବାଦଟିଏ ବାହାର କରିଦେଲେ। ଚାରିଆଡ଼େ ହାଲ୍ଲା ହୋଇଥିଲା ମୋ ରୋଗ ବିଷୟରେ। ଗାଁରେ ଭାଳେଣି ପଡ଼ିଗଲା। ବେଶି ବାଧିଲା ମୋ ବୋଉକୁ। ସେ ଖବର ଶୁଣି କଟକରେ ହାଜର। ସେ ମତେ ଆଉ ରଖେଇ ବସେଇ ଦେଲାନି । ବାଧ୍ୟ ହୋଇ ମତେ ଗାଁକୁ ଯିବାକୁ ପଡ଼ିଲା। ଦି ମାସ ଯାଏ ଗାଁରେ ରହିଲା ପରେ ମୁଁ ପୁଣି ଫେରିଲି କଟକ।

ଥାଉ ଏତିକି। ନାଟକ ଜୀବନର ଏମିତି ଅକୁହା-ଅଭୂଲା ଅନୁଭବ ସବୁକୁ ନେଇ ବହିଟିଏର ଯୋଜନା ବି ଅଛି। ଦେଖାଯାଉ, କେତେ ଶୀଘ୍ର ସରୁଛି !

●●●

# ପରିଚିତି


| | |
|---|---|
| ନାମ | ପ୍ରଫେସର ଡ. ନାରାୟଣ ସାହୁ |
| ଜନ୍ମ | ୨୧.୧୧.୧୯୫୫ |
| ସ୍ଥାୟୀ ଠିକଣା | ଗ୍ରାମ- ଅରଡ଼ାସାହି ପୋ.ଅ. – ବଗଡ଼ା,<br>ଜିଲ୍ଲା – କେନ୍ଦ୍ରାପଡ଼ା |
| ଯୋଗାଯୋଗ ଠିକଣା : | ପ୍ରଫେସର<br>ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ<br>ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର<br>ଭୁବନେଶ୍ୱର – ୭୫୧୦୦୪<br>ଫୋନ୍ : (୦୬୭୪)୨୫୬୭୫୧୩ (ଅଫିସ୍)<br>(୦୬୭୪)୨୫୮୯୦୪୭ (ଘର)<br>ମୋବାଇଲ : ୯୪୩୭୯୧୯୧୨୩ |
| ଶିକ୍ଷାଗତ ଯୋଗ୍ୟତା | ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି., ଡି.ଲିଟ୍ |
| ବୃତ୍ତି | ଅଧ୍ୟାପନା |
| ପ୍ରବୃତ୍ତି | ନାଟ୍ୟ ରଚନା |


# ପ୍ରକାଶିତ ସୃଷ୍ଟିସମ୍ଭାର

## ନାଟକ

- ⇨ ପ୍ରଶ୍ନ – ପୁସ୍ତକ ମହଲ, ଭୁବନେଶ୍ୱର, ୧୯୮୨
- ⇨ ଆଶ୍ରା ଖୋଜିବୁଲୁଥିବା ଈଶ୍ୱର– ତକ୍ଷଶିଳା, ବାଲୁବଜାର, କଟକ, ୧୯୯୦
- ⇨ କାହାଣୀ ସବାଶେଷ ଲୋକର – କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୯୨
- ⇨ ସୁବର୍ଣ୍ଣ ସକାଳ – କାହାଣୀ, କଟକ, ୧୯୯୮
- ⇨ ଏକାଙ୍କିକା ମାଧୁରୀ – ତାରାତାରିଣୀ, ବ୍ରହ୍ମପୁର, ୧୯୯୮
- ⇨ ମୂକ – ଆର୍ଯ୍ୟ ପ୍ରକାଶକ, କଟକ, ୨୦୦୦
- ⇨ ପୁନଶ୍ଚ ସଂଗ୍ରାମ – ଫ୍ରେଣ୍ଡ୍ସ ପବ୍ଲିଶର୍ସ, କଟକ, ୨୦୦୦
- ⇨ ଅପରାହ୍ନର ଅବଶୋଷ – ବିଦ୍ୟାପୁରୀ, କଟକ, ୨୦୦୨

